ଜାତୀୟ ଜୀବନଚରିତ ମାଳା

# ଝାନ୍‌ସୀର ରାଣୀ
# ଲକ୍ଷ୍ମୀବାଈ

ପ୍ରତିଭା ରାନଡେ

ଅନୁବାଦ

ଅପର୍ଣ୍ଣା ମହାନ୍ତି



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN 978-81-237-5773-5

ପ୍ରଥମ ସଂସ୍କରଣ 2010 (ଶକାବ୍ଦ 1931)



Jhansi Ki Rani Laxmibai *(Oriya)*

**ଟ. 105.00**

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5, ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍-II
ବସନ୍ତକୁଞ୍ଜ, ନୂଆଦିଲ୍ଲୀ - 110070 କର୍ତ୍ତୃକ ପ୍ରକାଶିତ ।

# ବିଷୟ ସୂଚୀ

# ପ୍ରସ୍ତାବନା

ଇତିହାସ କିପରି ଲେଖା ହେବା ଉଚିତ – ଏ ସଂପର୍କରେ ସାରା ବିଶ୍ୱର ଐତିହାସିକ ଓ ଆଲୋଚକମାନଙ୍କ ମଧ୍ୟରେ ସର୍ବଦା ବିଚାର ବିମର୍ଶ ହୋଇଆସିଛି । ଇତିହାସ ଲେଖିବାର ଶୈଳୀ, ତା'ର ପୃଷ୍ଠଭୂମିରେ ଥିବା ଦଲିଲ, ଉଦ୍ଦେଶ୍ୟ ଇତ୍ୟାଦିକୁ ଆଧାର କରି ଏହି ଚର୍ଚ୍ଚା କରାଯାଇଥାଏ । ବିଶ୍ୱବିଖ୍ୟାତ ଐତିହାସିକ ବିଲ୍ ଡ୍ୟୁରୋଣ୍ଡ କହନ୍ତି ଯେ ''ଇତିହାସ ରଚନା ମୁଖ୍ୟତଃ ଅନୁମାନ ଏବଂ ତର୍କ ଆଧାରିତ ଅଟେ, ପୂର୍ବବର୍ତ୍ତୀ କାଳ ସୀମାର ଅନ୍ତର୍ନିହିତ ପ୍ରଭାବ ଇତିହାସ ଲେଖା ଉପରେ ପଡ଼ିବା ସ୍ୱାଭାବିକ ।'' ବିଲ୍ ଡ୍ୟୁରୋଣ୍ଡଙ୍କ ଏହି ଉକ୍ତି ସହିତ ନିଜର ଏକ ମତ ସଂଯୁକ୍ତ କରି ମୁଁ କହିରଖେ ଯେ ମଣିଷର ସ୍ୱଭାବର ଦ୍ୱନ୍ଦ୍ୱ, ତା'ର ଆଶା–ଆକାଙ୍କ୍ଷା, ପ୍ରତିଷ୍ଠା–ଅପ୍ରତିଷ୍ଠା ସହିତ ସମାଜର ଆଚରଣ, ଚାପ, ସମାଜରେ ପ୍ରବାହିତ ଛୋଟ ଛୋଟ ପ୍ରବୃତ୍ତିକୁ ମଧ୍ୟ ଧ୍ୟାନ ଦେବା ଉଚିତ । ତା'ହେଲେ କେବଳ ଇତିହାସର ଲେଖକ ଇତିହାସର ନିକଟତର ହୋଇପାରିବ ।

୧୮୫୭ ମସିହାର ସ୍ୱାଧୀନତା ସଂଗ୍ରାମ ଭାରତବର୍ଷର ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ତଥା ଚିରସ୍ମରଣୀୟ ଘଟଣା ଅଟେ । ଲୋକମାନ୍ୟ ତିଳକ ସ୍ୱପ୍ରକାଶିତ ସମ୍ବାଦପତ୍ର 'କେଶରୀ'ରେ ତା ମେ ୭, ୧୮୯୫ ତାରିଖରେ ପ୍ରକାଶିତ 'ଝାନ୍‌ସୀ ରାଣୀ' ଶୀର୍ଷକ ନିଜର ଅଗ୍ରଲେଖାରେ ଏହି ଯୁଦ୍ଧ ସଂପର୍କରେ ଲେଖିଛନ୍ତି – ''ସେହି ସଂପୂର୍ଣ୍ଣ ଘଟଣା ସ୍ମରଣକୁ ଆସିଲେ ହୃଦୟ କମ୍ପି ଉଠିବ ନାହିଁ, ଏପରି ଭାରତୀୟ କେବଳ ଜଣେ ଅଧେ ଥିବେ ।'' ଆଜି ପ୍ରାୟ ଦେଢ଼ଶହ ବର୍ଷ ପରେ ବି ସେ କଥା ମନେପଡ଼ିଲେ ସାରା ଶରୀର ରୋମାଞ୍ଚିତ ହୋଇଉଠେ । ସେହି ଯୁଦ୍ଧ ପରେ ସମଗ୍ର ହିନ୍ଦୁସ୍ଥାନ ଇଂରେଜମାନଙ୍କ କବଳକୁ ଚାଲିଯାଇଥିଲା । ଇଷ୍ଟଇଣ୍ଡିଆ କଂପାନୀ ହିନ୍ଦୁସ୍ଥାନର ଶାସନକୁ ଏକପ୍ରକାର ରାଷ୍ଟ୍ରୀୟକରଣ କରିଦେଲା ଏବଂ ଇଂଲଣ୍ଡର ରାଣୀ ଭିକ୍ଟୋରିଆ ବ୍ରିଟିଶ୍ ଶାସନତନ୍ତ୍ର ପ୍ରତିଷ୍ଠା କରିଦେଲେ । ୧୮୫୭ର ଏହି ସଂଗ୍ରାମରେ ଯେଉଁ ଛୋଟବଡ଼ ରାଜ୍ୟ ଭାଗ ନେଇ ନ ଥିଲେ ସେହି ରାଜ୍ୟ ଓ ତା'ର ରାଜାମାନେ ବ୍ରିଟିଶ୍ ସାମ୍ରାଜ୍ୟ ଅଧୀନରେ ରାଜକାର୍ଯ୍ୟ କରିବାକୁ ଲାଗିଲେ । ଭାରତୀୟମାନଙ୍କର ମାନସିକତା ସମାଜ ଓ ରାଜନୀତି ଉପରେ ଏହି ଯୁଦ୍ଧର ପରିଣତି ଗଭୀର ପ୍ରଭାବ ପକାଇଥିଲା, ଯାହାର ଦୂରଗାମୀ ପରିଣାମ ଆମକୁ ଦେଖିବାକୁ ମିଳିଲା ।

ବ୍ରିଟିଶ୍ ଲୋକଙ୍କ ମୁହଁ ଆମ୍ପିଳା କରାଇବାରେ ଏହି ସଂଗ୍ରାମ କୌଣସି ତ୍ରୁଟି କରି ନ ଥିଲା । ଭାରତବର୍ଷ ବ୍ରିଟିଶ୍ ସାମ୍ରାଜ୍ୟର ଏକପ୍ରକାର ମୁକୁଟ ପରି ରହିଲା । ଫିରିଙ୍ଗିମାନଙ୍କ ପ୍ରତି ଏତେ କ୍ରୋଧ ଥିଲା ଯେ, ଏହି ସଂଗ୍ରାମରେ ଭାରତୀୟ ସିପାହିମାନେ ନିର୍ମମ ଭାବରେ ଇଂରେଜମାନଙ୍କୁ ସଂହାର କରିଥିଲେ ।

ସେହି ନରସଂହାରର ଆତଙ୍କ ଇଂରେଜମାନଙ୍କ ଅନ୍ତରରେ ବସା ବାନ୍ଧିଥିଲା । ଫଳରେ ଯେତେବେଳେ ୧୯୪୭ରେ ଭାରତ ସ୍ୱାଧୀନ ହେଲା ସେତେବେଳେ ଭାରତୀୟମାନେ ପୁଣି କାଳେ ବ୍ୟାପକ ଇଂରେଜ ସଂହାର ଚଳାଇଲେ ସେହି ଭୟରେ ୧୯୪୭ ପୂର୍ବରୁ ଅଧିକାଂଶ ଇଂରେଜ ଏବଂ ଗୋରା ଆଙ୍ଗ୍ଲୋଇଣ୍ଡିଆନ୍ ଲୋକେ ଭାରତ ଛାଡ଼ି ଇଂଲଣ୍ଡକୁ ପଳାୟନ କରିଥିଲେ ।

୧୮୫୭ ମସିହା ମଇ ୧୦ ତାରିଖରେ ମିରଟରେ ସିପାହିମାନଙ୍କ ବିଦ୍ରୋହ ସହିତ ଏହି ସଂଗ୍ରାମର ଅୟମାରମ୍ଭ କରାଗଲା ଏହା ପୂର୍ବରୁ ଫେବୃୟାରୀ ୨୬ ତାରିଖରେ ବହରାମପୁରର ପଦାତିକ ଓ ଘୋଡ଼ସବାର ସିପାହି, ୨୯ ମାର୍ଚ୍ଚରେ ବାରାକ୍‌ପୁର ବାଟାଲିଅନ୍‌ର ପଦାତିକ ସୈନ୍ୟବାହିନୀର ଜଣେ ସିପାହି ମଙ୍ଗଳପାଣ୍ଡେ ଏବଂ ୩ ମାର୍ଚ୍ଚରେ ଲକ୍ଷ୍ନୌରେ ମୁତୟନ ପଦାତିକ ସୈନ୍ୟବାହିନୀର ବାଟାଲିୟନ ନୂଆ କାରତୁସ୍‌ର ପ୍ରୟୋଗକୁ ବିରୋଧ କରି ୧୮୫୭ରେ କ୍ରାନ୍ତିକୁ ମୂର୍ତ୍ତରୂପ ପ୍ରଦାନ କରିଥିଲେ । ବିଦ୍ରୋହ କରିଥିବା ଲୋକଙ୍କୁ ଦଣ୍ଡିତ ମଧ କରାଯାଇଥିଲା । କିଛି ଲୋକଙ୍କୁ ବରଖାସ୍ତ କରାଗଲା । କିଛି ଲୋକଙ୍କୁ ଚୀନ୍‌ରେ ଥିବା ସୈନିକଶିବିରକୁ ସ୍ଥାନାନ୍ତରିତ କରିଦିଆଗଲା । କିନ୍ତୁ ମଙ୍ଗଳପାଣ୍ଡେ ଏବଂ ଈଶ୍ବରପାଣ୍ଡେ, ଏ ଦୁହିଁଙ୍କୁ ଯଥାକ୍ରମେ ୮ ଏପ୍ରିଲ୍ ଏବଂ ୨୧ ଏପ୍ରିଲ୍‌ରେ ଫାଶୀରେ ଚଢ଼େଇ ଦିଆଗଲା । ଏହା ପରେ ପରେ ୧୦ ମଇ ଦିନ ମିରଟର ସିପାହିମାନେ ବିଦ୍ରୋହ ଘୋଷଣା କରିଦେଲେ ଓ ଆଖିପିଛୁଳାକେ ଏହା ସାରା ଭାରତବର୍ଷରେ ନିଆଁ ପରି ବ୍ୟାପିଗଲା । ସେହିଦିନଠାରୁ ୧୮୫୭ର ଏହି କ୍ରାନ୍ତି, ସିପାହିବିଦ୍ରୋହ ଅଥବା ସ୍ୱାଧୀନତାସଂଗ୍ରାମ ଚର୍ଚ୍ଚାର ବିଷୟ ହୋଇ ରହିଆସିଛି । ଏହି ସଂଗ୍ରାମ ପ୍ରତି ଦୁଇଟି ଦୃଷ୍ଟିକୋଣ ରହିଛି – "ଏହି ସଂଗ୍ରାମରେ ସାମିଲ ହୋଇଥିବା ରାଜାମାନେ କେବଳ ନିଜର ସ୍ୱାର୍ଥବଶତଃ ଇଂରେଜମାନଙ୍କ ବିରୋଧରେ ଲଢ଼ିଥିଲେ । ସେମାନଙ୍କ ଆଖି ଆଗରେ ହିନ୍ଦୁସ୍ଥାନର ସ୍ୱତନ୍ତ୍ରତାର କୌଣସି କଳ୍ପନା ହିଁ ନ ଥିଲା । ସିପାହିମାନେ କେବଳ ଏଇଥିପାଇଁ ଲଢ଼ିଥିଲେ ଯେ ସେମାନେ ଇଂରେଜ ଅଧୀନରେ ଚାକିରି କରିବାକୁ ଚାହୁଁ ନ ଥିଲେ । ସେମାନଙ୍କୁ ଇଂରେଜମାନଙ୍କର ଶାସନ ପସନ୍ଦ ହେଉ ନ ଥିଲା । ସେଇ କାରଣରୁ ସେମାନେ ଲଢୁ ନ ଥିଲେ ଯେ ସେମାନଙ୍କୁ କୌଣସି ଜଣେ ନିର୍ଦ୍ଦିଷ୍ଟ ଶାସକର ଆବଶ୍ୟକତା ଥିଲା । ଏହି କାରଣରୁ ବିଦ୍ରୋହ ପରେ ସିପାହିମାନେ ନିଜ ନିଜର ପୂର୍ବର ରାଜାମାନଙ୍କୁ ପୁନଶ୍ଚ ରାଜସିଂହାସନରେ ବସାଇ ଦେଇଥିଲେ । ମିରଟର ସିପାହିମାନେ ଦିଲ୍ଲୀ ଯାଇ ବାହାଦୁରଶାହଙ୍କୁ ସିଂହାସନରେ ବସାଇଲେ, କାନପୁରର ସିପାହିମାନେ ନାନାସାହେବଙ୍କୁ "ପେଶବା ବା ସରଦାର ପଦରେ ବସାଇଲେ, ସେହିପରି ଝାନ୍ସୀର

ସିପାହିମାନେ ରାଣୀ ଲକ୍ଷ୍ମୀବାଈଙ୍କୁ ରାଜ୍ୟର ଦାୟିତ୍ୱ ସମର୍ପଣ କଲେ । ଘୁଷୁରି ଓ ଗାଈର ଚର୍ବିଯୁକ୍ତ କାରତୁସ୍‌ର ପ୍ରୟୋଗରେ ଜାତି ଓ ଧର୍ମରୁ ବିଚ୍ୟୁତ ହେବାର ଭୟ ଥିଲା । ସେହି ଭୟରେ ସିପାହିମାନେ ବିଦ୍ରୋହ କରିଥିଲେ । ସେଥିରେ ରାଷ୍ଟ୍ରୀୟ, ରାଜନୀତିକ ସ୍ୱତନ୍ତ୍ରତାର ଭାବନା ନ ଥିଲା ।'' ସେପରି ମନୋବୃତ୍ତି ରଖୁଥିବା ଲୋକମାନେ ଏହି ସଂଗ୍ରାମକୁ 'ସିପାହିବିଦ୍ରୋହ' କହିଲେ 'ସିପାହିମାନଙ୍କ ମେଳି' ମଧ୍ୟ କହିଲେ । ସ୍ୱାଧୀନତା ପୂର୍ବରୁ ଇଂରେଜମାନଙ୍କ ଭୟରେ ଲୋକମାନେ ଏହାକୁ ମେଳି ବା ବିଦ୍ରୋହ ମଧ୍ୟ କହୁଥିଲେ । ସ୍ୱାଧୀନତା ପରେ ବି ବହୁ ବିଦ୍ୱାନ୍ ଏହାକୁ ବିଦ୍ରୋହ ଭାବରେ ମାନି ନେଇଥିଲେ । ସେମାନଙ୍କ ମଧ୍ୟରେ ସମାଜବାଦୀ ବିଚାରଧାରାର ମାନବେନ୍ଦ୍ର ରାୟ, ଐତିହାସିକ ଏବଂ ଲେଖକ ଡଃ ସୁରେନ୍ଦ୍ରନାଥ ସେନ, ଡଃ ଆର୍.ସି. ମଜୁମ୍‌ଦାର ଆଦି ପ୍ରମୁଖ ଥିଲେ । ଏହି ଆଧାର ଅନୁଯାୟୀ ନ.ର. ଫାଟକ ଏହି ଯୁଦ୍ଧକୁ 'ସିପାହିମେଳି' ବୋଲି କହିଥିଲେ ।

ଏହି ବିଷୟକୁ ନେଇ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ପ୍ରବଳ ମତଭେଦ ରହିଛି । କେତେ ଲୋକଙ୍କ ଅନୁସାରେ ପୂରା ଭାରତବର୍ଷରେ ଆନୁପାତିକ ଭାବେ ଏହି ବିଦ୍ରୋହ ଗୋଟିଏ ଛୋଟ ପ୍ରଦେଶରେ କରାଯାଇଥିଲା । ଇଂରେଜ ସେନାବାହିନୀରେ ମୃତୟନ ଭାରତୀୟ ସୈନିକମାନଙ୍କ ମଧ୍ୟରୁ ଖୁବ୍ ଅଳ୍ପସଂଖ୍ୟକ ସୈନ୍ୟମାନେ ଏହି ବିଦ୍ରୋହ କରିଥିଲେ । ଅବଶିଷ୍ଟ ଅନ୍ୟ ସିପାହିମାନେ ଇଂରେଜମାନଙ୍କ ପକ୍ଷରେ ହିଁ ଯୁଦ୍ଧ କରିଥିଲେ । ଅଧିକାଂଶ ଜନସାଧାରଣ ଇଂରେଜଙ୍କର ହିତୈଷୀ, ପ୍ରଶଂସକ ଓ ଇଂରେଜମାନଙ୍କୁ ସହଯୋଗ କରୁଥିଲେ । ଏହିପରି ଇଂରେଜୀ ଶିକ୍ଷିତ ଓ ନୂତନ ପାଶ୍ଚାତ୍ୟ ଚିନ୍ତାଧାରା ପ୍ରତି ଆକୃଷ୍ଟ ବ୍ୟକ୍ତି ଏହି ସଂଗ୍ରାମରେ ଇଂରେଜମାନଙ୍କୁ ସମର୍ଥନ କରୁଥିଲେ । ଫିରିଙ୍ଗିମାନଙ୍କ ବିରୋଧରେ ସ୍ୱରଉତ୍ତୋଳନ କରିଥିବା ରାଜା ମହାରାଜା, ନବାବ, ସରଦାର, ଜମିଦାରମାନଙ୍କ ମଧ୍ୟରେ ପାରସ୍ପରିକ ବୁଝାମଣା ଓ ସଂପର୍କ ପୂରାପୂରି ଶୂନ୍ୟ ହିଁ ଥିଲା । ପ୍ରତ୍ୟେକ ନିଜ ନିଜର ସ୍ୱାର୍ଥ ନିମନ୍ତେ ଲଢୁଥିଲେ । ମିଳିମିଶି ଏକ ହୋଇ ଇଂରେଜମାନଙ୍କ ବିରୋଧରେ ଲଢ଼ିବାର ଭାବନା ସେମାନଙ୍କ ଭିତରେ ନ ଥିଲା । ସେମାନେ ନିଜ ନିଜର ସ୍ୱାର୍ଥ ସଂପର୍କରେ ଅଧିକ ସଚେତନ ଥିଲେ, ରାଷ୍ଟ୍ରୀୟ ଭାବନା ପ୍ରତି ସଚେତନ ନ ଥିଲେ । ସେମାନଙ୍କ ମନରେ ସେହି ଭାବନାର ସଂପୂର୍ଣ୍ଣ ଅଭାବ ଥିଲା । ପରିଣାମରେ ସେମାନେ ବିଦ୍ରୋହୀ ସିପାହିମାନଙ୍କୁ ସକ୍ଷମ, ପ୍ରବଳ, ଦୃଢ଼ପ୍ରତିଜ୍ଞ ଏବଂ ରାଷ୍ଟ୍ରପ୍ରେମରେ ପ୍ରେରଣା ସମ୍ବଳିତ କୁଶଳ ନେତୃତ୍ୱ ପ୍ରଦାନ କରିବାରେ ଅସଫଳ ହେଲେ । ଏହା ଏକ ପରସ୍ପରଠାରୁ ବିଚ୍ଛିନ୍ନ ଅସଙ୍ଗଠିତ ବିଦ୍ରୋହ ଥିଲା ଏବଂ ଫିରିଙ୍ଗିମାନେ ଭାରତୀୟ ସିପାହି, ସାଧାରଣ ଜନତା ଏବଂ ଭାରତବର୍ଷର ରାଜା–ମହାରାଜାଙ୍କ ସହଯୋଗରେ ଏହି ବିଦ୍ରୋହକୁ ଭାଙ୍ଗି ଦେଇଥିଲେ । ଫଳରେ ସାମନ୍ତବାଦର ବିଲୋପ ଘଟିଲା । ଅଲଗା ଅଲଗା ଶାସନାଧୀନ ବିଚ୍ଛିନ୍ନ ଭାରତୀୟ ରାଜ୍ୟମାନଙ୍କରେ ଏକ ରାଷ୍ଟ୍ରୀୟ ଚେତନାର ଅଭ୍ୟୁଦୟ ହେଲା । ବ୍ୟକ୍ତିସ୍ୱାତନ୍ତ୍ର୍ୟ, ସମତା, ନ୍ୟାୟ ଇତ୍ୟାଦି ପ୍ରଗତିବାଦୀ ବିଚାରଧାରାର ପ୍ରଭାବ ତୀବ୍ର ଭାବରେ ଜନମାନସରେ ପଡ଼ିବା ଯୋଗୁଁ ପ୍ରାଚୀନ ପରମ୍ପରାଗତ ବିଚାରଧାରାକୁ ଏକ

ନୂଆ ଦିଗ୍‌ଦର୍ଶନ ମିଳିଲା । ଏକଚ୍ଛତ୍ର ତଥା କାର୍ଯ୍ୟଦକ୍ଷ ପ୍ରଶାସନ ଯୋଗୁଁ ଜନମାନସର ଜୀବନକୁ ସ୍ଥିରତା, ସୁରକ୍ଷା ଏବଂ ନବଜାଗରଣର ସୂତ୍ର ଧୀରେ ଧୀରେ ଘେରିବାକୁ ଲାଗିଲା ଏବଂ ଲୋକଙ୍କୁ ନୂଆ ସୁଯୋଗ ମିଳିବା ଆରମ୍ଭ ହେଲା । ସେଥିପାଇଁ ଲେଖକମାନେ ନିଜ ଲେଖାରେ କୃତଜ୍ଞତାର ଭାବନା ବ୍ୟକ୍ତ କଲେ । ୧୮୫୭ର ଏହି ସ୍ୱାଧୀନତା ସଂଗ୍ରାମର ଶତବାର୍ଷିକୀ ପୂର୍ତ୍ତି ଅବସରରେ ଇତିହାସ ରଚନା ନିମନ୍ତେ ଭାରତ ସରକାରଙ୍କ ଦ୍ୱାରା ନିୟୋଜିତ କାର୍ଯ୍ୟକ୍ରମ ଭିତରେ ଡଃ ଆର. ସି. ମଜୁମଦାରଙ୍କ 'ଦ ସିପୟ ମ୍ୟୁଟିନୀ ଏଣ୍ଡ ଦ ରିଭୋଲ୍ଟ ଅଫ୍ ୧୮୫୭' (ସିପାହିବିଦ୍ରୋହ) ଓ ଡଃ ସୁରେନ୍ଦ୍ରନାଥ ସେନ୍‌ଙ୍କ ଦ୍ୱାରା ଲିଖିତ '୧୮୫୭' ଶୀର୍ଷକ ଦୁଇଟି ବହି ୧୯୫୭ରେ ପ୍ରକାଶିତ ହେଲା, ଯେତେବେଳେ କି ନ.ର. ଫାଟକଙ୍କ ୧୮୫୭ର 'ସିପାହିଙ୍କ ମେଳି' ନାମକ ପୁସ୍ତକ ୧୯୫୮ରେ ପ୍ରକାଶିତ ହେଲା ।

## ଲୋକମାନଙ୍କ ସହଯୋଗ

ଯେପରିକି ଡଃ ସେନ ନିଜ ପୁସ୍ତକରେ ଉଲ୍ଲେଖ କରିଛନ୍ତି "୧୮୫୭ ମସିହାରେ ହିନ୍ଦୁସ୍ଥାନ ଏକ ରାଷ୍ଟ୍ରର ସିଦ୍ଧାନ୍ତ ଗର୍ଭାବସ୍ଥାରେ ହିଁ ରହିଥିଲା ।" ଏହା ନିଜ ନିଜ ଭିତରେ ଏକ ବାସ୍ତବିକତା ଥିଲା । ଏହାର ଅର୍ଥ ଲୋକଙ୍କ ମନରେ ରାଷ୍ଟ୍ରୀୟ ଭାବନାର ଅଭାବ ଥିଲା, ଏପରି ଚେତନା ନ ଥିଲା କହିଲେ ଚଳିବ । ନିଜର ରାଜା ମହାରାଜା, ନବାବ– ସେମାନଙ୍କର ଆଶ୍ରିତ ପ୍ରଦେଶ, ସେତିକି ହିଁ ଲୋକଙ୍କ ଆଖିରେ ନିଜର ଦେଶ ଥିଲା । ସେମାନଙ୍କ କାମଦାମ ଗ୍ରାମପଞ୍ଚାୟତ ରୀତିରେ କରାଯାଉଥିଲା । ଦେଶାଭିମାନ ସ୍ଥାନରେ ଗ୍ରାମାଭିମାନ, ରାଜ୍ୟାଭିମାନ ଅଧିକ ମହତ୍ତ୍ୱପୂର୍ଣ୍ଣ ଥିଲା । ଦିଲ୍ଲୀର ସିଂହାସନରେ ଅନେକ ରାଜା ଆସିଲେ ଏବଂ ଗଲେ । ସୁଲତାନଶାହୀ ଚାଲିଲା, ମୁଗଲଶାହୀ ବି ଚାଲିଲା । କିନ୍ତୁ ଦୂର ଦୂର ଯାଏଁ ରାଜ୍ୟର ନାଗରିକମାନଙ୍କର ଏଥିରେ କିଛି ଯାଏଆସେ ନ ଥିଲା । ବାରମ୍ବାର ଚାଲିଥିବା ପରସ୍ପର ଭିତରେ ଯୁଦ୍ଧ ସେମାନଙ୍କ ଜୀବନରେ ବ୍ୟବଧାନ ତ ସୃଷ୍ଟି କରୁଥିଲା । ତଥାପି ସେମାନେ ବିଚଳିତ ହେଉ ନ ଥିଲେ । ନିଜର ରାଜା ଏବଂ ନବାବଙ୍କ ପ୍ରତି ସେମାନଙ୍କର ନିଷ୍ଠା ସମର୍ପିତ ଥିଲା । ଏହି ପରମ୍ପରା ଶହ ଶହ ବର୍ଷ ଧରି ପ୍ରଚଳିତ ଥିଲା । ୟୁରୋପରେ ସର୍ବପ୍ରଥମେ ଏକ ରାଷ୍ଟ୍ର ଏବଂ ରାଷ୍ଟ୍ରୀୟତାର ଚେତନା ଅନୁଭୂତ ହେଲା । ୧୮୫୭ର ସଂଗ୍ରାମ ପରେ ତାହାର ପରିଣାମସ୍ୱରୂପ ହିନ୍ଦୁସ୍ଥାନରେ ବି ତାହା ଅନୁଭୂତ ହେବାରେ ଲାଗିଲା ।

କିନ୍ତୁ ୟୁରୋପୀୟ ବ୍ୟାଖ୍ୟା ଅନୁସାରେ ଏହି ଭାବନା ଏଠାରେ ସଂପୂର୍ଣ୍ଣଭାବରେ ଗ୍ରହଣୀୟ ହେଲା ନାହିଁ । ନର୍ମଦା ନଦୀର ଦକ୍ଷିଣରେ ଥିବା ପ୍ରଦେଶ ଉତ୍ତରବାସୀଙ୍କ ନିମନ୍ତେ ସଂପୂର୍ଣ୍ଣ ଅଜଣା ଥିଲା । ତାମିଲ, ତେଲଗୁ, କନ୍ନଡ଼, ମାଲାୟାଲମ ପରି ଯେଉଁ ଚାରୋଟି ଭାଷା ସେ ସବୁ ଅଞ୍ଚଳରେ ପ୍ରଚଳିତ ଥିଲା, ସେସବୁ ବିଷୟରେ ସ୍ୱାଧୀନତାର ବହୁବର୍ଷ ପରେ ବି ଉତ୍ତର ଭାରତର ଲୋକଙ୍କୁ ଜଣା ନ ଥିଲା । ସେଥିପାଇଁ ଦାକ୍ଷିଣାତ୍ୟର ବାସିନ୍ଦାମାନଙ୍କୁ ସାଧାରଣତଃ ମାଡ୍ରାସୀ କୁହାଯାଉଥିଲା । ୧୯୫୮ରେ କଲିକତାର ବଙ୍ଗାଳୀମାନେ ଆମକୁ

ମଧ୍ୟ ମାଡ୍ରାସୀ ଭାବୁଥିଲେ । ବଙ୍ଗଳା ବ୍ୟତୀତ ମଧ୍ୟ ଭାରତବର୍ଷ ଦୂର ଦୂର ଯାଏଁ ବ୍ୟାପି ରହିଛି, ଏ କଥା ବହୁତ ଲୋକଙ୍କୁ ଜଣା ନ ଥିଲା । ଦକ୍ଷିଣର ଭାଷା, କଳା, ସଂସ୍କୃତି ସହିତ ଲୋକମାନଙ୍କର ପରିଚୟ ନ ଥିଲା । ଆସାମର ପ୍ରଖ୍ୟାତ ସଂଗୀତକାର ଭୂପେନ୍ ହଜାରିକା ଏହି ଦୁଃଖକୁ ପ୍ରକାଶ ମଧ୍ୟ କରିଛନ୍ତି । ଯଦି ଏହା ଆଜିର ବାସ୍ତବିକତା, ତେବେ ଦେଢ଼ଶହ ବର୍ଷ ପୂର୍ବେ ସାଧାରଣ ଲୋକେ ଏକ ରାଷ୍ଟ୍ରଭାବେ ସଂପୂର୍ଣ୍ଣ ହିନ୍ଦୁସ୍ଥାନ ସହିତ କେବେବି ପରିଚିତ ନ ଥିଲେ, ପ୍ରତ୍ୟେକ ନିଜ ନିଜ ଅଧିକାର ପାଇଁ ଲଢୁଥିଲେ । ଏପରି କହିବା ଅର୍ଥ ବିପର୍ଯ୍ୟସ୍ତ ହୋଇଯିବା । ଏପରି ପରିସ୍ଥିତିରେ ଯେଉଁ ଭାବନା ଅପରର, ଯାହା ଏହି ମାଟିରୁ ଅଙ୍କୁରିତ ହୋଇ ନାହିଁ, ସେହି ଭାବନାକୁ ପ୍ରମାଣ ବୋଲି ଧରିନେଇ ''ବିଦ୍ରୋହୀମାନଙ୍କ ଭିତରେ ଏହି ଭାବନା ନ ଥିଲା'' କହିବା ଅପ୍ରାସଙ୍ଗିକ ହେବ ।

ଏହା ସତ୍ୟ ଯେ ଇଂରେଜ ସେନାବାହିନୀରେ ବହୁ ସିପାହି ନିଜ ମାଲିକଙ୍କ ପ୍ରତି ନିଷ୍ଠାବାନ୍ ଥିଲେ । ସୁବେଦାର ସୀତାରାମଙ୍କ ଆତ୍ମବୃତ୍ତାନ୍ତ ଏହାର ପ୍ରମାଣ ପ୍ରସ୍ତୁତ କରେ । ବଙ୍ଗବାହିନୀରେ ସେ ୪୦ ବର୍ଷ ଧରି ଜଣେ ସିପାହି ଭାବରେ କାର୍ଯ୍ୟ କରିଥିଲେ । ତାଙ୍କୁ ପଦୋନ୍ନତି ଦେଇ ସୁବେଦାର କରି ଦିଆଗଲା କିନ୍ତୁ ଏହି ନିର୍ଣ୍ଣୟକୁ ନେଇ ସେ ସୁଖୀ ନ ଥିଲେ । ନିଜଠାରୁ ବୟସରେ ଅନେକ ସାନ ହୋଇଥିଲେହେଁ କେବଳ ଇଂରେଜ ହୋଇଥିବା ଯୋଗୁଁ ଅନୁଭବହୀନ ଯୁବକ ଅଧିକାରୀମାନଙ୍କର ବୋଲହାକ କରିବା, ସେମାନଙ୍କର ଆଦେଶ ପାଳନ କରିବାକୁ ସେ ନିଜର ଅପମାନ ବୋଲି ଭାବୁଥିଲେ । ଏହା ସତ୍ତ୍ୱେ ତାଙ୍କର ପ୍ରଭୁନିଷ୍ଠା ଅଟଳ ଥିଲା । ୧୮୫୭ରେ ବିଦ୍ରୋହୀ ସୈନିକମାନେ ତାଙ୍କୁ ବନ୍ଦୀ କରିଥିଲେ ଏବଂ ଇଂରେଜମାନଙ୍କ ପକ୍ଷ ଛାଡ଼ି ସେମାନେ ପକ୍ଷଭୁକ୍ତ ହେବାପାଇଁ ତାଙ୍କର ମନରେ ପରିବର୍ତ୍ତନ ଆଣିବାକୁ ଭରପୂର ଉଦ୍ୟମ କରିଥିଲେ । କିନ୍ତୁ ସୀତାରାମ ନିଜର ପ୍ରଭୁଭକ୍ତି ତ୍ୟାଗ କରି ନ ଥିଲେ । ବିଦ୍ରୋହୀ ସୈନିକଙ୍କ କବଳରୁ ମୁକ୍ତ ହେଲା ପରେ ସେ ପୁଣି ବିଦ୍ରୋହୀମାନଙ୍କ ବିରୋଧରେ ଲଢ଼ିଲେ । ନିଜର ଇଂରେଜ ଅଧିକାରୀମାନଙ୍କ ଆଗ୍ରହ ଯୋଗୁଁ ସେ ସୈନ୍ୟବାହିନୀରେ ନିଜ କାର୍ଯ୍ୟକାଳର ସ୍ମୃତିକୁ ହିନ୍ଦୀରେ ଲେଖି ପ୍ରକାଶ କରିଥିଲେ । ତା'ପରେ ୧୮୭୩ରେ ଏହାର ଇଂରାଜୀ ଅନୁବାଦ 'ଫ୍ରମ ସିପୟଟୁ ସୁବେଦାର' (ସୁବେଦାର ସୀତାରାମ୍) ପ୍ରକାଶିତ ହେଲା ।

ଏହି ପୁସ୍ତକ ପଢ଼ିଲା ପରେ ସୀତାରାମ ଓ ତାଙ୍କ ପରି ଅଗଣିତ ସିପାହିମାନଙ୍କର ମାନସିକତାକୁ ଧାରଣା କରିହୁଏ । ଯୁଦ୍ଧର ଧାଁ– ଦଉଡ଼ ଭିତରେ ସୀତାରାମ ନିଜ ପଲଟଣ ପାଖରୁ ଦୂରେଇ ଯାଇଥିଲେ ଓ ଏଠି ସେଠି ଘୂରି ବୁଲୁଥିଲେ । ଅନେକ ସ୍ଥାନରେ ବିଦ୍ରୋହୀ ସିପାହିମାନଙ୍କ ସହିତ ତାଙ୍କର ହାତାହାତି ହୋଇଥିଲା । ଏହି ସିପାହିମାନେ ସୀତାରାମଙ୍କୁ ନିଜ ପଟକୁ ଆଣିବା ଲାଗି ନିରନ୍ତର ପ୍ରଯତ୍ନଶୀଳ ଥିଲେ । ନିଜ ସମର୍ଥନରେ ସେମାନେ ବାଢୁଥିବା ସମସ୍ତ ମତ–ମନ୍ତବ୍ୟ ସୀତାରାମଙ୍କୁ ତଥ୍ୟପୂର୍ଣ୍ଣ ଲାଗୁଥିଲା । କିନ୍ତୁ ସୀତାରାମଙ୍କ ରକ୍ତରେ ନମକହାରାମି ନ ଥିଲା । ସେଇଥିପାଇଁ ସେ ବିଦ୍ରୋହୀ ସିପାହିମାନଙ୍କ ପକ୍ଷରେ

ଯାଇ ନ ଥିଲେ । ଫଳରେ ବିଦ୍ରୋହୀ ସିପାହିମାନେ ତାଙ୍କୁ ଧରିନେଇ ହତ୍ୟା କରିବାର ଧମକ ଦେଇଥିଲେ । ତଥାପି ତାଙ୍କର ସ୍ୱାମୀ–ନିଷ୍ଠା ଅବିଚଳିତ ରହିଥିଲା । ପରେ ପରେ ତାଙ୍କୁ ଖବର ମିଳିଲା ଯେ ତାଙ୍କର ସେନାବାହିନୀ ଯେଉଁ ବିଦ୍ରୋହୀ ସିପାହିମାନଙ୍କୁ ବନ୍ଦୀ କରିଛି ସେମାନଙ୍କ ଭିତରେ ତାଙ୍କର ନିଜ ପୁଅ ମଧ୍ୟ ରହିଛି । ସେହି ସମସ୍ତ ସିପାହିଙ୍କୁ ଗୁଳି କରି ଉଡ଼ାଇଦେବାର ହୁକୁମ୍ ସୀତାରାମଙ୍କ ପାଇଁ ଅସହନୀୟ ଥିଲା । ସେ ନିଜର ଇଂରେଜ ମେଜରଙ୍କୁ ପ୍ରାର୍ଥନା କଲେ ଯେ ‘‘ମୋତେ ମୋ ପୁଅଙ୍କୁ ଗୁଳି ମାରି ହତ୍ୟା କରିବାର ଆଦେଶ ଦିଅନ୍ତୁ ନାହିଁ’’ ତାଙ୍କୁ ଏହି ଅମାନବୀୟ କାର୍ଯ୍ୟରୁ ରିହାତି ତ ମିଳିଲା । କିନ୍ତୁ ତାଙ୍କ ପୁଅକୁ ଗୁଳି କରି ମାରିଦିଆଗଲା । ମେଜର ସାହେବ ସୀତାରାମଙ୍କୁ ତାଙ୍କ ପୁଅର ଅନ୍ତିମ ସଂସ୍କାର ନିମନ୍ତେ ଅନୁମତି ବି ପ୍ରଦାନ କଲେ । ଅନ୍ୟ ମୃତ ସିପାହିମାନଙ୍କର କୌଣସି ଅନ୍ତିମ ସଂସ୍କାର କରା ନ ଯିବା ପାଇଁ କଟକଣା ଲଗାଇ ଦିଆଗଲା । ଶବକୁ ଦାହ ନ କରି ପୋତିଦେବା ପାଇଁ କୁହାଗଲା । କେବଳ ତାଙ୍କରି ପୁଅର ଅନ୍ତିମ ସଂସ୍କାର ନିମନ୍ତେ ଅନୁମତି ମିଳିଲା । ସେତିକିରେ ସୀତାରାମ ଭାବବିଭୋର ହୋଇପଡ଼ିଲେ । ଉପକାରର ଏହି ବୋଝତଳେ ସୀତାରାମ ଏତେ ନଇଁ ପଡ଼ିଲେ ଯେ ଯଥାଶୀଘ୍ର ମେଜର ସାହେବ ପଦୋନ୍ନତି ପାଇ ଜେନେରାଲ ହୋଇଯାନ୍ତୁ ବୋଲି ସେ ଈଶ୍ୱରଙ୍କୁ ପ୍ରାର୍ଥନା କଲେ । ପୁଅ ମରିଯିବାର ଦୁଃଖ ତ ତାଙ୍କୁ ବହୁତ ବାଧୁଥିଲା ତଥାପି ନିଜ ପୁଅର ଏପରି କାର୍ଯ୍ୟ ନିମନ୍ତେ ସେ ଲଜ୍ଜାବୋଧ କରୁଥିଲେ ଯେ ତାଙ୍କ ପୁଅର ଏପରି ଦୁର୍ଭାଗ୍ୟ କାହିଁକି ହେଲା, କାହିଁକି ସେ ନିମକହାରାମ ହୋଇଗଲା ? ଅନ୍ନଦାତା ବିରୋଧରେ କାହିଁକି ଉଠି ଠିଆ ହୋଇପଡ଼ିଲା ?

ସୀତାରାମଙ୍କ ଏହି ମାନସିକତା ନିଜର ପରାକାଷ୍ଠା ପ୍ରଦର୍ଶନ କରିଥିଲା ଏବଂ ବିଚିତ୍ର ବି ଲାଗୁଥିଲା । ତଥାପି ଏହା ପଛରେ ତତ୍କାଳୀନ ଅନ୍ଧଶ୍ରଦ୍ଧା, ଆତ୍ମଗୌରବ ଓ ସ୍ୱାଭିମାନର ଅଭାବ ଓ ଅନିଶ୍ଚିତ ଭବିଷ୍ୟତ୍‌ର ଚିନ୍ତା ସ୍ପଷ୍ଟ ଦେଖାଯାଉଥିଲା । ଇଂରେଜମାନଙ୍କ ପକ୍ଷରେ ଲଢୁଥିବା ସିପାହିମାନଙ୍କର ମାନସିକତା ଉପରେ ଏହି ପ୍ରକାରର ଚାପ ଯେ କେତେ ପ୍ରବଳ ଥିଲା, ସୀତାରାମଙ୍କ ଆତ୍ମକଥା ଏହା ଅନୁଭବ କରାଇଥାଏ ।

ଏହି ସଂଗ୍ରାମ ପ୍ରତି ଜନମାନସର ଉଦାସୀନତା କଥା ଉଠାଇ ବହୁ ଇଂରେଜ ଲେଖକ ନିଜ ଲେଖାରେ ଏହାର ଅନ୍ୟ ଦିଗଟି ପ୍ରତି ଆଲୋକପାତ କରିଛନ୍ତି । ବସ୍ତୁତଃ ଇତିହାସରେ ଆଜିଯାଏଁ ଦେଖାଯାଇଛି ଯେ ସାଧାରଣ ଜନତା ଯୁଦ୍ଧଠୁଁ ସବୁବେଳେ ଚାରିହାତ ଦୂରରେ ରହିଆସିଛନ୍ତି । ଯଦି ଆମେ ମହାଭାରତ ସମୟର କୌରବ ପାଣ୍ଡବ ଯୁଦ୍ଧ କଥା ବି ଦେଖିବା ତା’ହେଲେ ଦେଖାଯିବ ଯେ ଯୁଦ୍ଧ ଆରମ୍ଭ ହେଲାମାତ୍ରେ କୁରୁକ୍ଷେତ୍ରର ଆଖପାଖର ସାଧାରଣ ଲୋକେ ଯୁଦ୍ଧ ଦେଖିବା ପାଇଁ ସେଠାରେ ଉପସ୍ଥିତ ରହୁଥିଲେ ଓ ଦୂରରୁ ହିଁ ଯୁଦ୍ଧର ମଜା ଉଠାଉଥିଲେ । ସୂର୍ଯ୍ୟାସ୍ତ ପରେ ଯୁଦ୍ଧ ବନ୍ଦ ହେଲେ ଆହତମାନଙ୍କର ସେବା ଶୁଶ୍ରୂଷାରେ ଲାଗି ଯାଉଥିଲେ । କିନ୍ତୁ ନିଜେ ଯୁଦ୍ଧରେ ସାମିଲ ହେଉ ନ ଥିଲେ । ସର୍ବସାଧାରଣଙ୍କ ଭିତରେ କୃଷକ ଓ ଛୋଟବଡ଼ ବ୍ୟବସାୟୀ ସାମିଲ୍ ଥିଲେ । ନିଜ କାମଧନ୍ଦା ବନ୍ଦ କରି

ଯୁଦ୍ଧରେ ଭାଗ ନେବା ସେମାନଙ୍କ ପାଇଁ ସମ୍ଭବ ନ ଥିଲା । ବ୍ୟବସାୟୀମାନେ ମଧ୍ୟ ବ୍ୟବସାୟର ଅଭିବୃଦ୍ଧି ନିମନ୍ତେ ସ୍ଥାୟୀ ପ୍ରଶାସନର ଆବଶ୍ୟକତା ଅନୁଭବ କରନ୍ତି । ସେଥିପାଇଁ ଯୁଦ୍ଧ ପସନ୍ଦ କରନ୍ତି ନାହିଁ । ଯୁଦ୍ଧ ବ୍ୟତୀତ କିମ୍ବା ଯୁଦ୍ଧ ପରେ ଯେଉଁ ଶାସନ ସ୍ଥିରତା ପ୍ରଦାନ କରିପାରିବ, ସେମାନେ ସେହି ପ୍ରକାର ରାଜନୀତି ଇଚ୍ଛା କରନ୍ତି । ତାକୁ ହିଁ ସମର୍ଥନ କରନ୍ତି । ୧୮୫୭ର ସଂଗ୍ରାମରେ ଇଂରେଜମାନଙ୍କ ପକ୍ଷର ତରାଜୁ ଭାରି ହେବା ଦେଖି ଦିଲ୍ଲୀର କେତେକ ଅମୀର, ସେଠ, ସାହୁକାରମାନେ ଇଂରେଜମାନଙ୍କୁ ହିଁ ସବୁ ପ୍ରକାରର ସହାୟତା କରିଥିଲେ । ପରେ ପରେ ଇଂରେଜମାନେ ଏହି ଲୋକମାନଙ୍କୁ ପୁରସ୍କୃତ ମଧ୍ୟ କରିଥିଲେ । ଆଜି ମଧ୍ୟ ସେହି ବଂଶର ଲୋକମାନେ ନିଜର ବିତ୍ତଶାଳୀ ହେବାର ସୌଭାଗ୍ୟକୁ ଉପଭୋଗ କରୁଛନ୍ତି ।

ଅପରପକ୍ଷରେ ସିଲ୍‌ବେଷ୍ଟର, ମୀଡ଼ ଏବଂ ସ୍ୱୟଂ ହ୍ୟୁରୋଜଙ୍କ ପରି ଇଂରେଜ ଅଧିକାରୀମାନେ ସାଧାରଣ ଜନତାଙ୍କ ଦ୍ୱାରା ପ୍ରଦର୍ଶିତ ପ୍ରବୃତ୍ତି ଓ ଆଚରଣର ସ୍ୱଷ୍ଟ ଉଲ୍ଲେଖ କଲେ । ଝାନ୍‌ସୀରୁ କାଲ୍‌ପୀ, ଏହା ପରେ କାଲ୍‌ପୀରୁ ଗୋଆଲିଅର ପର୍ଯ୍ୟନ୍ତ ମଝିରେ ଥିବା ଜନତା ତଥା ବୁନ୍ଦେଲଖଣ୍ଡର ଅନ୍ୟ ଇଲାକାର ଗ୍ରାମବାସୀ, ଚାଷୀ, ବଢ଼େଇ, କମାର, ଅନ୍ୟ ବ୍ୟବସାୟୀ ଏବଂ ସାଧାରଣ ଲୋକେ ପଇସା ଦେଲେ ବି ଇଂରେଜ ସୈନ୍ୟମାନଙ୍କର କୌଣସି କାମ କରିବାକୁ ମନା କରିଦେଉଥିଲେ । ସେମାନଙ୍କୁ କୌଣସି ପ୍ରକାର ସାହାଯ୍ୟ କରୁ ନ ଥିଲେ । ଏପରିକି ପିଇବାକୁ ପାଣି ଦେବାକୁ ମଧ୍ୟ ମନା କରି ଦେଉଥିଲେ । ଇଂରେଜ ସେନାବାହିନୀରେ କାର୍ଯ୍ୟରତ ଭାରତୀୟ ସିପାହିମାନଙ୍କୁ ଗାଳି ମଧ୍ୟ ବର୍ଷଣ କରୁଥିଲେ । ଇଂରେଜମାନଙ୍କୁ ସମର୍ଥନ କରି ଲଢୁଥିବାରୁ ସେମାନଙ୍କୁ ଜାତିରୁ ବହିଷ୍କାର କରିବାର ଧମକ ଦେଉଥିଲେ । ଇଂରେଜମାନଙ୍କ ବିରୋଧରେ ଜନମାନସକୁ ପ୍ରଭାବିତ କରିବାର କାମଟି ସାଧୁ, ସନ୍ନ୍ୟାସୀ, ଫକିରମାନେ ମଧ୍ୟ କରୁଥିଲେ । ସେମାନେ ଗାଁକୁ ଗାଁ ବୁଲି ଲୋକଙ୍କ ସହିତ ସଂପର୍କ ରଖୁଥିଲେ, ସେମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ ଏବଂ ସେମାନଙ୍କୁ ଇଂରେଜମାନଙ୍କ ଦ୍ୱାରା ହେଉଥିବା ଅତ୍ୟାଚାର ଓ ଲୁଟ୍‌ପାଟ୍ ବିଷୟରେ ଅବଗତ କରାଉଥିଲେ । ଝାନ୍‌ସୀ ଇଲାକାରେ 'ହରବୋଲେ' ନାମକ ଏକ ସଂପ୍ରଦାୟ ରହୁଥିଲେ, ଯେଉଁମାନେ ଅତି ସକାଳୁ ଉଠି ହାତରେ ଏକତାରା ଧରି ଭିକ୍ଷା ମାଗୁ ମାଗୁ ଗାଉଥିଲେ ।

ଧନ ବିଦେଶ ଚାଲିଯାଉଛି
ଭାରି ଦୁଃଖ ହେଉଛି ।

ଜନଜାଗୃତିର ଏହି ପ୍ରାଚୀନ ପ୍ରଣାଳୀକୁ ସେ ସମୟରେ ନିର୍ଭୟରେ ବ୍ୟବହାର କରାଯାଉଥିଲା । ଇଂରେଜ ଅଧିକାରୀମାନେ ଏହାର ଉଲ୍ଲେଖ କରିଛନ୍ତି । ଜନଜାଗୃତିର ଅନ୍ୟ ଏକ ଉପାୟ ମଧ୍ୟ ଗ୍ରହଣ କରାଗଲା । "ସବ୍ ଲାଲ ହୋ ଯାୟେଗା, ରୁଷ କା ସମ୍ରାଟ୍, ହିନ୍ଦୁସ୍ଥାନ କୀ ମଦଦ କେ ଲିୟେ ଆନେୱାଲେ ହୈଁ" ଏହି ପ୍ରକାରର ସୂଚନା ଦେଉଥିବା ପୋଷ୍ଟର ଦିଲ୍ଲୀର ଜାମା ମସଜିଦ, ଲାଲକିଲ୍ଲା, ସର୍ବୋଚ୍ଚ ନ୍ୟାୟାଳୟ ପରି

ମହତ୍ତ୍ୱପୂର୍ଣ୍ଣ ଅଟ୍ଟାଳିକାର ପାଚେରିରେ ମଇ ଦଶ ତାରିଖ ପୂର୍ବରୁ ହିଁ ଲାଗିବା ଆରମ୍ଭ ହୋଇଗଲା । ଏହି ପୋଷ୍ଟର ଦେଖିବାମାତ୍ରେ ଦିଲ୍ଲୀରେ ଥିବା ଇଂରେଜ ଅଧିକାରୀମାନେ ଚିରି ଫିଙ୍ଗି ଦେଉଥିଲେ । ତା' ପରଦିନ ପୁଣି ସେଇ ପୋଷ୍ଟରକୁ ଲଗାଇ ଦିଆଯାଉଥିଲା । ଦିଲ୍ଲୀର ଜନସାଧାରଣ ଭିନ୍ନ ଭିନ୍ନ ସ୍ଥାନରେ ଏକାଠି ହୋଇ ପୋଷ୍ଟରରେ ଛାପା ହୋଇଥିବା ଖବର ଉପରେ ଚର୍ଚ୍ଚା ମଧ୍ୟ କରିବାକୁ ଲାଗିଲେ । ଦିଲ୍ଲୀର ଗଳି, ବସ୍ତିରେ ଇଂରେଜମାନଙ୍କ ବିରୋଧରେ ମହାଯୁଦ୍ଧ ହେବାର ଓ ରକ୍ତନଦୀ ବହିବାର ସଂଭାବନାକୁ ନେଇ ଯୁକ୍ତିତର୍କ ବି ହେବାକୁ ଲାଗିଲା । ଏହି ପ୍ରକାରର ପୋଷ୍ଟର ଲକ୍ଷ୍ନୌର ମୁଖ୍ୟ ଅଟ୍ଟାଳିକାମାନଙ୍କର ପାଚେରିରେ ଲଗାହେବାର ଦେଖାଗଲା । ସେପଟେ ସୁଦୂର ଦାକ୍ଷିଣାତ୍ୟର ମାଡ୍ରାସରେ ମଧ୍ୟ ଏହି ଧରଣର ପୋଷ୍ଟର ଦେଖିବାକୁ ମିଳିଲା । ଚାର୍ଲ୍ସ ବାଲ ତାଙ୍କର 'ମ୍ୟୁଟିନୀ' ନାମକ ପୁସ୍ତକରେ ଏହି ସଂଗ୍ରାମ ସଂପର୍କରେ ବର୍ଣ୍ଣନା କରି ଲେଖିଛନ୍ତି – ''ମୋ ଦେଶର ଭାଇମାନେ, ଧର୍ମରେ ନିଷ୍ଠା ରଖୁଥିବା ଲୋକମାନେ ଉଠ, ତିଆର ହୋଇଯାଅ, ନିଜ ହିନ୍ଦୁସ୍ଥାନରୁ ଫିରିଙ୍ଗିମାନଙ୍କୁ ମାରି ଘଉଡ଼ାଇ ଦେବାପାଇଁ ଏକଜୁଟ ହୁଅ, ଆମ ହିନ୍ଦୁସ୍ଥାନୀ ମା'ଙ୍କ ଉପରେ ଇଂରେଜମାନେ ଆତଙ୍କବାଦ ଚଳାଇଛନ୍ତି, ଆମ ଉପରେ ଜୁଲମ୍ କରାଯାଉଛି, ସେଥିରୁ ମୁକ୍ତି ପାଇବା ପାଇଁ ଏବେ କେବଳ ଏକମାତ୍ର ଚିକିତ୍ସା ହେଉଛି– ଇଂରେଜମାନଙ୍କ ବିରୋଧରେ ଯୁଦ୍ଧ... ଇଂରେଜମାନଙ୍କ ବିରୋଧରେ ଯୁଦ୍ଧର ଏହି ରଣଭୂମିରେ ଯିଏ ବୀରଗତି ପ୍ରାପ୍ତ ହେବ, ତାଙ୍କୁ ଶହୀଦ କୁହାଯିବ । ନିଜ ଦେଶ ପାଇଁ, ଧର୍ମ ପାଇଁ ଲଢ଼ିବାବାଲା ସେହି ପରାକ୍ରମୀ ବୀରମାନଙ୍କ ପାଇଁ ସ୍ୱର୍ଗର ଦ୍ୱାର ଉନ୍ମୁକ୍ତ ହୋଇଯିବ ଏବଂ ଯେଉଁମାନେ ଦେଶଦ୍ରୋହୀ, ଭୀରୁ, କାପୁରୁଷ ସାଜି ଏହି ରାଷ୍ଟ୍ରୀୟ କାର୍ଯ୍ୟରୁ ଦୂରେଇଯିବେ, ସେମାନଙ୍କ ପାଇଁ ନରକର ଦ୍ୱାର ଖୋଲି ଦିଆଯିବ । ହେ ଦେଶବାସୀ, ଆପଣମାନଙ୍କୁ କେଉଁ ରାସ୍ତାରେ ଯିବାକୁ ହେବ ତା'ର ନିର୍ଣ୍ଣୟ ସ୍ୱୟଂ ଆପଣମାନେ କରିବେ ।'' ଏହି ପ୍ରକାରର ଛାପା ଇସ୍ତାହାର ଜାଗା ଜାଗାରେ ଲଗାଇ ଦିଆଗଲା । ଏହାଦ୍ୱାରା ଜନମାନସରେ ଇଂରେଜମାନଙ୍କର ଦାସତ୍ୱ ଏବଂ ଉତ୍ପୀଡ଼ନ ବିରୋଧରେ ପ୍ରତିକ୍ରିୟା ସୃଷ୍ଟି କରିବାର ଉଦ୍ଦେଶ୍ୟ ଥିଲା (ଖଣ୍ଡ–୧, ପୃ. ୪୦) । ଏହି ଉଦାହରଣରୁ ଗୋଟିଏ କଥା ସ୍ପଷ୍ଟ ହୁଏ ଯେ ସାଧାରଣ ଜନତାଙ୍କୁ ଇଂରେଜଙ୍କ ବିରୋଧରେ ମତାଇବା କାମଟି ଯୋଜନାବଦ୍ଧ ଭାବରେ କରାଯାଉଥିଲା । ଯୁଦ୍ଧରେ ପ୍ରତ୍ୟକ୍ଷ ଭାଗ ନ ନେଲେ ହେଁ ସାଧାରଣ ଜନତାଙ୍କ ମନରେ ଏହି ଯୁଦ୍ଧପ୍ରତି କେତେ କୌତୂହଳ ଥିଲା ସମ୍ବାଦପତ୍ର ପଢ଼ିଲେ ତାହା କଳ୍ପନା କରିହୁଏ । ଲୋକମାନଙ୍କ ପାଖରେ ସବୁଠାରୁ ତାଜା ସମ୍ବାଦ ପରିବେଷଣ କରିବା ସମ୍ବାଦପତ୍ରମାନଙ୍କର ପୁଣ୍ୟ କାର୍ଯ୍ୟ ଅଟେ । ସେଥିପାଇଁ ଲୋକଙ୍କ ଉତ୍ସୁକତା ବଢ଼ାଉଥିବା ବିଷୟ ଉପରେ ଲଗାତାର ସମ୍ବାଦ ପରିବେଷଣ କରାଯାଉଥିଲା, ଯାହାର ଆବଶ୍ୟକତା ମଧ୍ୟ ଥିଲା । ସ. ସଂ. ମାଲଶେ 'ସତାବନୀ ଉଠାବାଚୀ ସମକାଳୀନ କାତ୍ରଣେ' (ସତାବନେ ବିଦ୍ରୋହର ସମକାଳୀନ ଲେଖା) ନାମକ ଏକ ଛୋଟ ପୁସ୍ତକର ସଂପାଦନା କରି ତତ୍କାଳୀନ ସମ୍ବାଦପତ୍ରମାନଙ୍କର କାର୍ଯ୍ୟପଦ୍ଧତି ଉପରେ ଆଲୋକପାତ କରିଛନ୍ତି । ସେଥିପାଇଁ ମାଲଶେ

'ଜ୍ଞାନପ୍ରକାଶ', 'ଜ୍ଞାନୋଦୟ' ଏବଂ 'ଇନ୍ଦୁପ୍ରକାଶ' ପରି ମରାଠୀ ସମାଚାରପତ୍ରରେ ପ୍ରକାଶିତ ସମ୍ବାଦର ସହାୟତା ନେଇଛନ୍ତି ।

ମଇ ୧୦ ତାରିଖ ଦିନ ମିରଠରେ ଏହି ସଂଗ୍ରାମର ସ୍ଫୁଲିଙ୍ଗ ଜଳି ଉଠିଥିଲା । କିନ୍ତୁ ଏହା ପୂର୍ବରୁ ହିଁ ଲୋକଙ୍କ ମନର ବ୍ୟଥା ସଂବାଦପତ୍ରମାନଙ୍କରେ ଛାପା ହେବା ଆରମ୍ଭ ହୋଇଯାଇଥିଲା । ୧୮୫୭ ମସିହା ଫେବୃୟାରୀ ୨୩ ତାରିଖ ଦିନ 'ଜ୍ଞାନପ୍ରକାଶ' ସମ୍ବାଦପତ୍ର 'ଇଂଲିଶମେନ୍' ନାମ ଇଂରାଜୀ ସମ୍ବାଦପତ୍ରରେ ୧୦ ଫେବୃୟାରୀରେ ପ୍ରକାଶିତ ଏବଂ ସମ୍ବାଦ ଉଲ୍ଲେଖପୂର୍ବକ ଏକ ସମ୍ବାଦ ପ୍ରକାଶିତ କଲା– ''ଗଭର୍ଣ୍ଣର ଜେନେରାଲ ଲର୍ଡ଼ କ୍ୟାନିଙ୍ଗ୍'' ସମସ୍ତ କମାଣ୍ଡିଂ ଅଫିସରଙ୍କୁ ହୁକୁମ ଦେଲେ କି ଚର୍ବି ଲାଗିଥିବା କାରତୁସ୍ କଳା ସିପାହିଙ୍କ ପାଇଁ ନୁହେଁ, କେବଳ ଗୋରା ସିପାହିଙ୍କ ପାଇଁ ଉଦ୍ଦିଷ୍ଟ । ଅଳ୍ପ ସମୟ ପରେ ସୈନିକ ଶିବିରରେ ବିତରଣ କରାଯାଉଥିବା ରୁଟି ସଂପର୍କରେ ଖବର ପ୍ରକାଶିତ କରାଗଲା । ମେ ୧୮ ତାରିଖ ସଂଖ୍ୟାରେ 'ଜ୍ଞାନପ୍ରକାଶ' ଅନ୍ୟ ଏକ ଖବର ଛାପିଲା– ''ସବୁ ଗୋରାଲୋକଙ୍କୁ ମାରି ପକାଇବା ପାଇଁ ବଙ୍ଗାଳୀ ପଲଟଣର ଯୋଜନାର ପର୍ଦ୍ଦାଫାଶ ହୋଇଛି । ସେହି କାରଣରୁ ସେନାରେ ମୁତୟନ ଥିବା କଳା ଲୋକଙ୍କର ଚାକିରି ଛଡ଼େଇ ନିଆଯାଇପାରେ । ଏପରି ହେଲେ ଆତ୍ମନାଶର ସମ୍ଭାବନା ସୃଷ୍ଟି ହୋଇପାରେ । ସେଥିପାଇଁ 'ଜ୍ଞାନପ୍ରକାଶ' ଏହି ପରାମର୍ଶ ଦେଉଛି ଯେ ଯେଉଁମାନଙ୍କ ମନରେ ରାଜ୍ୟକ୍ରାନ୍ତି କରିବାର ଉତ୍କଣ୍ଠା ରହିଛି ସେମାନେ ନିଜ ବିଚାରକୁ ଆପାତତଃ ସ୍ଥଗିତ ରଖନ୍ତୁ ।''

ତଦନନ୍ତର ଗଭର୍ଣ୍ଣର ଜେନେରାଲଙ୍କ କାଉନ୍‌ସିଲ୍‌ଙ୍କ ଆଦେଶ ଅନୁସାରେ ପୁନେ, ମୁମ୍ବଇର ନିବାସୀମାନେ ଇଂରେଜମାନଙ୍କର ବିଜୟ ନିମନ୍ତେ ଈଶ୍ୱରଙ୍କୁ ପ୍ରାର୍ଥନା ମଧ୍ୟ କଲେ । ଏହି ସମ୍ବାଦ ମଧ୍ୟ 'ଜ୍ଞାନପ୍ରକାଶ'ରେ ଛପା ହେଲା । ଏହା ଅତିରିକ୍ତ ସିପାହିଙ୍କର ବିଦ୍ରୋହ–ବହ୍ନି ସ୍ଥାନେ ସ୍ଥାନେ ଜଳି ଉଠିଲା । ସେଥିରେ ସାମିଲ ହେଉଥିବା ରାଜା–ମହାରାଜା ନବାବ ଓ ବେଗମଙ୍କ ଖବରକୁ ମଧ୍ୟ ସମ୍ବାଦପତ୍ରମାନେ ନିରନ୍ତର ପ୍ରକାଶ କରିବାକୁ ଲାଗିଲେ । 'ଜ୍ଞାନପ୍ରକାଶ' ତା'ର ୧୨ ମାର୍ଚ୍ଚ ୧୮୬୦ ସଂଖ୍ୟାରେ ଇଂରାଜୀ ସମ୍ବାଦପତ୍ରର ଦୃଷ୍ଟାନ୍ତ ଦେଇ ପ୍ରକାଶ କଲା ଯେ, ''ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ ମୃତ୍ୟୁବରଣ କରି ନାହାନ୍ତି, ଜୀବିତା ଅଛନ୍ତି ଓ ଲାହୋରର ରାଣୀଙ୍କ ପାଖରେ ସୁରକ୍ଷିତ ଅଛନ୍ତି ।'' 'ବିଦ୍ରୋହୀମାନଙ୍କର ପାରସ୍ପରିକ ବିଶ୍ୱାସ' ଶୀର୍ଷକ 'ଇଂଲିଶ୍‌ମେନ୍'ରେ ପ୍ରକାଶିତ ଏକ ଲେଖାକୁ ପୁନା ଅବଜରଭର୍ ଛପାଇଥିଲା । ସେହି ଲେଖାକୁ ଜ୍ଞାନପ୍ରକାଶ ୧୮୫୭, ୭ ଅକ୍ଟୋବର ସଂଖ୍ୟାରେ ପ୍ରକାଶିତ କଲା– ''ବିଦ୍ରୋହୀଙ୍କୁ ଧରି ସରକାରଙ୍କୁ ଜିମା ଦେବା ଲୋକଙ୍କୁ ମୋଟା ଅଙ୍କର ପୁରସ୍କାର ଦିଆଯିବାର ଘୋଷଣା ସତ୍ତ୍ୱେ ଲୋକମାନେ କାହାକୁ ହେଲେ ଧରି ସରକାରଙ୍କୁ ସମର୍ପଣ କରି ନ ଥିଲେ । ଏପରି ଏକତା ସାରା ଏସିଆରେ କେଉଁଠି ହେଲେ ଲୋକଙ୍କ ଭିତରେ ଦେଖିବାକୁ ମିଳି ନ ଥିଲା । କିନ୍ତୁ ଯୁଦ୍ଧର ଘଟଣାଚକ୍ର ଯେତିକି ଯେତିକି ଆବର୍ତ୍ତିତ ହେବାରେ ଲାଗିଲା ସେତିକି ସେତିକି କିଛି ଲୋକ ବିଦ୍ରୋହୀମାନଙ୍କୁ ଛଳନାରେ ଧରି ଇଂରେଜମାନଙ୍କୁ ସମର୍ପିଦେଲେ ।

୧୮୬୨ ମସିହା ଫେବୃୟାରୀ ସଂସ୍କରଣରେ 'ଜ୍ଞାନୋଦୟ' ପତ୍ରିକା ଲେଖିଥିଲା ଯେ– ''ନାନାସାହେବ ପେଶବାଙ୍କ ସାନଭାଇ ବାନାସାହେବଙ୍କୁ ଯେତେବେଳେ କୁଚବିହାରର ରାଜା ଧରାପକେଇ ଦେଇଥିଲେ ସେତେବେଳେ ସେ ତାଙ୍କ ପାଦରେ ରୁପାର ବେଡ଼ି ପିନ୍ଧାଇ ତାଙ୍କୁ ଇଂରେଜମାନଙ୍କୁ ସମର୍ପଣ କରିଥିଲେ ।'' ନାନାସାହେବ ପେଶବାଙ୍କ ସଂପର୍କିତ ସଂବାଦ, ତାଙ୍କର ଧରାପଡ଼ିବାର ଖବର ଅକ୍ଟୋବର ୧୮୯୪ ପର୍ଯ୍ୟନ୍ତ ଛପା ଚାଲିଲା । ଏହା ବ୍ୟତୀତ ନାନାସାହେବ ଧରା ପଡ଼ିବାର କିମ୍ବା ତାଙ୍କର ମୃତ୍ୟୁ ସଂପର୍କରେ ଆଜିଯାଏ ବି କିଛି ଠିକ୍ ବିବରଣୀ ମିଳେ ନାହିଁ । ୧୮୬୦, ୧୬ ଜାନୁୟାରୀ ସଂଖ୍ୟା 'ଜ୍ଞାନୋଦୟ'ରେ ଲେଖାଯାଇଛି ଯେ ''ବିଠୁରରେ ଥିବା ନାନାସାହେବଙ୍କ ମହଲର ଶଙ୍ଖ ମଲମଲ ପଥରକୁ ସରକାର ଜବତ କରିଛନ୍ତି ଏବଂ କାନପୁରରେ ଥିବା ସର୍କାରୀ ଖ୍ରୀଷ୍ଟିୟାନ ଗିର୍ଜାଘରର ଚଟାଣ ତିଆରି କରିବାପାଇଁ ସେହି ପଥରକୁ ବ୍ୟବହାର କରିଛନ୍ତି ।'' ଖବରକାଗଜରେ ପ୍ରକାଶିତ ଏପରି ଖବରମାନଙ୍କରୁ ଗୋଟିଏ କଥା ବୁଝା ପଡୁଛି ଯେ 'ଜ୍ଞାନପ୍ରକାଶ', 'ଇନ୍ଦୁପ୍ରକାଶ' ଆଦି ବିଦ୍ରୋହୀମାନଙ୍କୁ ନିଷେଧ ତ କରୁଥିଲେ । କିନ୍ତୁ ସେଥିରେ ମଧ ସେମାନଙ୍କର ଅସହାୟତା, ବିଷାଦ ଓ ଅସମର୍ଥତାର ସ୍ୱର ସ୍ପଷ୍ଟ ଶୁଣାଯାଉଥିଲା । 'ଜ୍ଞାନପ୍ରକାଶ' ଅତ୍ୟନ୍ତ ସତର୍କତାର ସହିତ ଏହାକୁ ବିଦ୍ରୋହ ନ କହି 'ରାଜ୍ୟକ୍ରାନ୍ତି' କହିଥିଲା, ଯେତେବେଳେ କି 'ଜ୍ଞାନୋଦୟ'ର ଭାବନା କିଛି ଅନ୍ୟ ପ୍ରକାରର ଥିଲା । 'ଜ୍ଞାନୋଦୟ' ଇଂରେଜ ସରକାରକୁ ସିଂହ ଓ ବିଦ୍ରୋହୀମାନଙ୍କୁ ଶିଆଳ କହି ସେମାନଙ୍କୁ ଉପହାସ କରିଥିଲା । 'ଜ୍ଞାନୋଦୟ' ପତ୍ରିକା ଖ୍ରୀଷ୍ଟିୟାନ କଳକବ୍‌ଜା ଦ୍ୱାରା ପରିଚାଳିତ ହେଉଥିଲା । ତେଣୁ ଏସବୁ ପଛରେ ଏଇ କାରଣଟି ନ ଥିଲା କି ? ପାରନିସ୍‌ଙ୍କ ଦ୍ୱାରା ଲିଖିତ 'ଝାନ୍‌ସୀର ରାଣୀ'ଙ୍କ ଜୀବନଚରିତ ଉପରେ ତିଳକ ୭ ମେ ୧୮୯୫ରେ 'କେଶରୀ'ରେ ଏକ ଅଗ୍ରଲେଖା ଲେଖିଥିଲେ ଯେଉଁଥିରେ ତିଳକ କହିଥିଲେ ଯେ ଆମରି ମଧ୍ୟରେ ବିଦ୍ୱାନ୍ ଓ ନିରପେକ୍ଷତାର ଡିଣ୍ଡିମ ପିଟୁଥିବା ଲେଖକମାନେ ଇଂରାଜୀ ଗ୍ରନ୍ଥ ଉପରେ ସଂପୂର୍ଣ୍ଣ ବିଶ୍ୱାସ କରି ନିଜର ଲୋକମାନଙ୍କୁ ହିଁ ଚୋର–ଚଣ୍ଡାଳଙ୍କଠାରୁ ଦୁଷ୍ଟ ପ୍ରମାଣିତ କରିବାର ପ୍ରୟାସ କରିଛନ୍ତି ? ଏହାଠାରୁ ଅଧିକ ନିନ୍ଦନୀୟ ଓ ଦୁର୍ଭାଗ୍ୟପୂର୍ଣ୍ଣ କଥା ଆଉ କ'ଣ ହୋଇପାରେ ?

୧୮୯୫ରେ ବର୍ଣ୍ଣିତ ତିଳକଙ୍କର ଏହି ମନୋବୃତ୍ତି କେବଳ ସେହି ସମୟ ଭିତରେ ସୀମିତ ନ ଥିଲା ।

## ନେତୃତ୍ୱ ଏବଂ ରାଷ୍ଟ୍ରୀୟତାର ଭାବନା

ଏହି ଯୁଦ୍ଧର ମହତ୍ତ୍ୱପୂର୍ଣ୍ଣ ନେତୃତ୍ୱ ଗ୍ରହଣ କରିବାମାନଙ୍କ ଭିତରେ ଥିଲେ ନାନାସାହେବ ପେଶବା, ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ ଏବଂ ନାନାସାହେବଙ୍କ ସେନାପତି ତାନ୍ତିଆ ଟୋପେ । ୧୮୫୧ ମସିହାରେ ଦ୍ୱିତୀୟ ବାଜିରାଓଙ୍କ ମୃତ୍ୟୁ ପରେ କଂପାନୀ ସରକାର ନାନାସାହେବଙ୍କୁ ପେନ୍‌ସନ୍ ଦେବା ବନ୍ଦ କରି ଦେଇଥିଲେ । ନିଜର ପେନ୍‌ସନ୍ ପ୍ରାପ୍ତି ପାଇଁ ନାନାସାହେବ,

ରାଜ୍ୟ ଉପରେ ନିଜର ପୋଷ୍ୟପୁତ୍ରର ଅଧିକାର ପାଇଁ ଓ ଜବତ ଝାନ୍‌ସୀ ଫେରିପାଇବା ପାଇଁ ରାଣୀ ଲକ୍ଷ୍ମୀବାଈ ଏହି ସଂଗ୍ରାମରେ ସାମିଲ୍ ହୋଇଥିଲେ । ସେଥିରେ ରାଷ୍ଟ୍ରୀୟତାର ଭାବନା ନ ଥିଲା । ଏହି ଯୁଦ୍ଧକୁ ବିଦ୍ରୋହର ସଂଜ୍ଞା ଦେଉଥିବା ଲୋକମାନେ ଏହାହିଁ କହିଥାନ୍ତି । ଉପଲବ୍ଧ ତଥ୍ୟର ଆଧାରରେ ଆମେ କହିପାରିବା ଯେ ଏପରି ମତାମତ ପୂରାପୂରି ସତ୍ୟ ନୁହେଁ । ଯଦିଓ ନାନାସାହେବଙ୍କର ପେନ୍‌ସନ୍‌ର ଆବଶ୍ୟକତା ଥିଲା, ଲକ୍ଷ୍ମୀବାଈଙ୍କର ନିଜ ରାଜ୍ୟ ଫେରିପାଇବାର ଥିଲା ତ ଏଥିରେ ତ୍ରୁଟି କେଉଁଠି ରହିଲା ? ସେମାନଙ୍କର ଯାହା ଅଧିକାର ଥିଲା ତାହାହିଁ ସେମାନଙ୍କର ଦାବି ଥିଲା । ଇଂରେଜମାନେ ତାକୁ ଅନ୍ୟାୟପୂର୍ବକ ଛଡ଼େଇ ନେଇଥିଲେ । ନିଜ ଅଧିକାର ଫେରିପାଇବା ପାଇଁ ସେମାନେ ଏହି ଯୁଦ୍ଧରେ ଯୋଗ ଦେଇଥିଲେ କାହିଁକିନା ସେମାନଙ୍କ ଦୃଷ୍ଟିରେ ତାଙ୍କର ନିଜ ରାଜ୍ୟ ହିଁ ରାଷ୍ଟ୍ରୀୟତାର ପ୍ରତୀକ ଥିଲା । ଆଜି 'ରାଷ୍ଟ୍ରୀୟତା' ଶବ୍ଦଟିକୁ ଆମ ପାଇଁ ଯେଉଁ ଲକ୍ଷ୍ୟରେ ଅଭିପ୍ରେତ ସେ ସମୟରେ ସେମାନଙ୍କର ସେହି ଚେତନା ନ ଥିଲା, ଦିଲ୍ଲୀର ସିଂହାସନରେ ଯିଏ ବି ଆସୀନ ଥା'ନ୍ତୁ ନା କାହିଁକି, ପ୍ରତ୍ୟେକ ରାଜା–ମହାରାଜା, ନବାବ, ନିଜ ନିଜ ପ୍ରଦେଶରେ ସ୍ୱତନ୍ତ୍ର ଥିଲେ । ସେହି ରାଜ୍ୟକୁ ରକ୍ଷା କରିବା ସେମାନଙ୍କର ଦାୟିତ୍ୱ ଥିଲା ଏବଂ ସେମାନେ ତାକୁ ହିଁ ନିଜର ରାଷ୍ଟ୍ରୀୟତା ବୋଲି ବିଚାର କରୁଥିଲେ ।

ସିପାହିମାନେ ଧର୍ମ ନାମରେ ବିଦ୍ରୋହ କରିଥିଲେ । ବିଦେଶୀ ଓ ଅନ୍ୟ ଧର୍ମର ଶାସକଙ୍କୁ ହଟାଇବା ଏବଂ ସ୍ୱଦେଶୀ ରାଜ୍ୟ ସ୍ଥାପନର ଆକାଙ୍‌କ୍ଷାରୁ ଧର୍ମକୁ ସୁରକ୍ଷିତ ରଖିବାର ଭାବନା ଦ୍ୱାରା ଅନୁପ୍ରେରିତ ହୋଇ ମିରଠ ଛାଉଣୀର ସିପାହିମାନେ ସହରରେ ଇଂରେଜମାନଙ୍କର ନରସଂହାର କରି ଦିଲ୍ଲୀ ରାଜାଙ୍କ ପାଖରେ ପହଞ୍ଚିଥିଲେ । ସେଠାରେ ବାହାଦୁରଶାହଙ୍କୁ ରାଜଗାଦିରେ ବସାଇ ପୁନରାୟ ବାଦଶାହୀ ଶାସନ ଆରମ୍ଭ କରିଥିଲେ । ଯଦି ଏହା ରାଷ୍ଟ୍ରୀୟ ଭାବନା ହୋଇ ନ ଥାନ୍ତା ତେବେ ସିପାହିମାନେ ଦିଲ୍ଲୀ ଯାଇ ନ ଥାନ୍ତେ । ବରଂ କାରତୁସ୍‌ରେ ଗାଈ ଓ ଘୁଷୁରି ଚର୍ବି ନ ଲଗାଇବା, ସିପାହିମାନଙ୍କର ଦରମା ବଢ଼ାଇବା, ଭାରତୀୟ ସିପାହିମାନଙ୍କୁ ବରିଷ୍ଠତା ଅନୁସାରେ ପଦୋନ୍ନତି ଦେଇ ଇଂରେଜ ଅଧିକାରୀମାନଙ୍କ ସହିତ ସମାନ ବେତନ ଓ ଅନ୍ୟ ସୁବିଧା ସୁଯୋଗ ଦେବା, ଭାରତୀୟ ସରକାରୀ ଅଧିକାରୀମାନଙ୍କୁ ଇଂରେଜମାନଙ୍କ ପରି ସବୁ ପ୍ରକାରର ଭତ୍ତା ଦେବା ପରି ଦାବି ରଖି, କମ୍ପାନୀ ସରକାରଙ୍କଠାରୁ ଏ ସବୁ ହାସଲ କରି ଚୁପ୍‌ଚାପ୍ ବସି ଯାଇଥାନ୍ତେ । କିନ୍ତୁ ସେମାନେ ଏପରି କିଛି କରି ନ ଥିଲେ, ଦିଲ୍ଲୀ ବ୍ୟତୀତ ଅଲଗା ଅଲଗା ଜାଗାରେ ସିପାହିମାନଙ୍କ ଦ୍ୱାରା ବିଦ୍ରୋହ ସଂଗଠିତ କଲା ପରେ ସେମାନେ ଅଧିକ ସଂଖ୍ୟାରେ ଦିଲ୍ଲୀଆଡ଼କୁ ପ୍ରସ୍ଥାନ କରିଥିଲେ କାରଣ ହିନ୍ଦୁସ୍ଥାନର କେନ୍ଦ୍ରୀୟ ସତ୍ତା ଦିଲ୍ଲୀରେ ଥିଲା, ହିନ୍ଦୁସ୍ଥାନର ବାଦଶାହ ଦିଲ୍ଲୀରେ ଥିଲେ । ତାଙ୍କର ଶକ୍ତିକୁ ମଜଭୁତ୍ କରିବା ଅତ୍ୟନ୍ତ ଆବଶ୍ୟକ ଥିଲା । ସେହି ବିଦ୍ରୋହୀ ସିପାହିମାନଙ୍କ ମନରେ ଏହି ଭାବନା ଥିଲା ।

କାନପୁର ଏବଂ ଝାନ୍ସୀରେ ସିପାହିମାନଙ୍କ ଦ୍ୱାରା ବିଦ୍ରୋହ କରାଯିବା ପରେ ନାନାସାହେବ ଏବଂ ଲକ୍ଷ୍ମୀବାଈ ନିଜ ନାମରେ ଶାସନ କରିବା ଆରମ୍ଭ କରିଦେଲେ । ପୁନଶ୍ଚ ପେଶବା ପଦବୀ ପ୍ରାପ୍ତିର ଆନନ୍ଦରେ ନାନାସାହେବ ଉତ୍ସବ ଆୟୋଜନର ଘୋଷଣା କରିଦେଲେ । ରାଣୀ ଲକ୍ଷ୍ମୀବାଈ ଗାଁର ରାଜପ୍ରାସାଦ ଛାଡ଼ି ପୁଣି ଦୁର୍ଗରେ ଯାଇ ରହିଲେ । ସେ ରାଜ୍ୟର ଦାୟିତ୍ୱ ସଂଭାଳିବାର କାମ ମଧ୍ୟ ଆରମ୍ଭ କଲେ । ରାଣୀ ସେତିକିରେ ଅଟକି ଗଲେ ନାହିଁ । ବରଂ ସେ ଆଖପାଖ ତଥା ଦୂରଦୂରାନ୍ତର ଲୋକଙ୍କ ସହିତ ସଂପର୍କ ସ୍ଥାପନ କଲେ । ସମସ୍ତଙ୍କୁ ଏକଜୁଟ କରି ଇଂରେଜଙ୍କୁ ଦରିଆପରି କରି ସେମାନଙ୍କ ଦେଶକୁ ଫେରେଇଦେବାର ପ୍ରଯତ୍ନ ମଧ୍ୟ ଆରମ୍ଭ କରିଦେଲେ । ରାଣୀ ଲକ୍ଷ୍ମୀବାଈ ବାଣପୁର ରାଜାଙ୍କ ସହିତ ଲଗାତାର ସଂପର୍କ ରଖିଥିଲେ । ସମସ୍ତେ ଏକାଠି ହାତମିଳାଇ ଇଂରେଜମାନଙ୍କ ବିରୋଧରେ ଲଢ଼ିବାର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଉଥିଲେ । ନିଜ ପତ୍ରରେ ରାଣୀ ଲେଖିଥିଲେ– "ଭାରତ ଆମର ସ୍ୱଦେଶ । ବିଦେଶୀଙ୍କ ଦାସତ୍ୱରେ ରହିବା ଭଲ ନୁହେଁ । ତାଙ୍କ ସହିତ ଯୁଦ୍ଧ କରିବା ଭଲ । ମୋର ମତାମତ ଏହି ଯେ ଭାରତ ଉପରେ ବିଦେଶୀଙ୍କ ଶାସନ ରହିବା ଉଚିତ ନୁହେଁ ଏବଂ ମୋର ନିଜ ଉପରେ ଭରସା ଅଛି ଏବଂ ମୁଁ ସୈନ୍ୟବାହିନୀଙ୍କୁ ପ୍ରସ୍ତୁତ କରୁଛି । ତେଣୁ ଇଂରେଜମାନଙ୍କ ସହିତ ଯୁଦ୍ଧ କରିବା ଅତ୍ୟନ୍ତ ଜରୁରି ଅଟେ ।" ଏହି ପତ୍ରରେ ରାଣୀ ଲକ୍ଷ୍ମୀବାଈଙ୍କ ଉଦ୍ଦେଶ୍ୟ ଏକ ଖୋଲାବହି ପରି ସ୍ପଷ୍ଟ । ଭାରତ ଉପରେ ବିଦେଶୀଙ୍କ ଶାସନ ଅନାକାଂକ୍ଷିତ, ତେଣୁ ଇଂରେଜମାନଙ୍କ ବିରୋଧରେ ଯୁଦ୍ଧ ନିତାନ୍ତ ଆବଶ୍ୟକ–ରାଣୀ ଲକ୍ଷ୍ମୀବାଈଙ୍କର ଏହାହିଁ ଥିଲା ଦୃଢ଼ ବକ୍ତବ୍ୟ । ଏହିପରି ଏହି ଯୁଦ୍ଧ ସଂପର୍କରେ ତାଙ୍କର ବିଚାର ନିଃସନ୍ଦେହରେ ସ୍ପଷ୍ଟ ହୋଇଥାଏ ।

ସେଆଡ଼େ ନାନାସାହେବ ମଧ୍ୟ ନିଜର ଜନସଂପର୍କ ଅଭିଯାନ ଆରମ୍ଭ କରିଦେଲେ । କାନପୁରର କୋତ୍ୱାଲ ହୋଲସିଂହ, ଅଯୋଧ୍ୟାର କାଳିକାପ୍ରସାଦ କାନୁନ୍‌ଗୋ ଏବଂ ଶିରସୋଲ୍‌ର ଥାନାଦାରଙ୍କୁ ନାନାସାହେବ ପତ୍ର ଲେଖିଲେ । ନରଗୁଣି ରାଜ୍ୟର ରାଜାଙ୍କୁ ଜୁନ ୧୮୫୮ରେ ପରାଜିତ କରିବା ପରେ ରାଜାଙ୍କ ପାଖରୁ ମିଳିଥିବା ପତ୍ରଗୁଡ଼ିକ ଭିତରେ ନାନାସାହେବ ରାଜାଙ୍କୁ ଲେଖିଥିବା ପତ୍ର ମଧ୍ୟ ମିଳିଥିଲା । ସେହି ପତ୍ରରେ ନାନାସାହେବ ଲେଖିଥିଲେ ଯେ– "ବାଣିଜ୍ୟ କରିବାର ଲକ୍ଷ୍ୟରେ ବିଧର୍ମୀ ଇଂରେଜମାନେ ଆମ ଦେଶରେ ପ୍ରବେଶ କଲେ ଏବଂ ଛଳ–କପଟ କରି ହିନ୍ଦୁ, ମୁସଲମାନ ରାଜ୍ୟଗୁଡ଼ିକୁ ଅଧିକାର କରିନେଲେ । ନ୍ୟାୟର ଦ୍ୱାହି ଦେଉଥିବା ଏହି ଫିରିଙ୍ଗିମାନେ ଆମର ସଂପତ୍ତି ହଡ଼ପ କରି ନେଇଛନ୍ତି, ଅନାଚାରୀ ସାଜି ଆମର ଜାତି ଧର୍ମ ନଷ୍ଟ କରିବାରେ ଲାଗିଛନ୍ତି । କପଟୀ ଇଂରେଜମାନେ ହିନ୍ଦୁ ଏବଂ ମୁସଲମାନମାନଙ୍କ ଧର୍ମ ପରିବର୍ତ୍ତନ କରି ସେମାନଙ୍କୁ ଖ୍ରୀଷ୍ଟିୟାନ୍ କରି ଦେଉଛନ୍ତି । ଏପରି ଦୁରାଚାରୀ, ଅନ୍ୟାୟୀ, ଅତ୍ୟାଚାରୀ, ବିଧର୍ମୀ ଇଂରେଜଙ୍କୁ ଦଣ୍ଡିତ କରି, ସେମାନଙ୍କର ବିନାଶ କରି, ହିନ୍ଦୁ ଓ ମୁସଲମାନମାନଙ୍କର ପୂର୍ବବର୍ତ୍ତୀ ରାଜ୍ୟମାନଙ୍କୁ ପୁନଶ୍ଚ ପ୍ରତିଷ୍ଠିତ କରି ନିଜ ଦେଶକୁ ରକ୍ଷା କରିବାପାଇଁ ଈଶ୍ୱର ମତେ ନିଯୁକ୍ତ କରିଛନ୍ତି ।

ନର୍ମଦା ନଦୀର ଉତ୍ତରଭାଗର ରାଜ୍ୟ ମୁଁ ଜିତିସାରିଛି । ଏବେ ଆପଣ ନିଜ ତରବାରି କୋଷମୁକ୍ତ କରି ଇଂରେଜମାନଙ୍କୁ ସଂହାର କରନ୍ତୁ । ବର୍ତ୍ତମାନ ୟୁରୋପୀୟ ଦେଶମାନଙ୍କରେ ପରସ୍ପର ମତଭେଦ ମୁଣ୍ଡ ଟେକୁଛି । ଫ୍ରାନ୍ସ ଏବଂ ରୁଷ ଇଂରେଜମାନଙ୍କର ବିନାଶ ପାଇଁ ଅଥୟ ହୋଇ ପଡ଼ିଛନ୍ତି । ଇରାନ୍, ଆଫଗାନିସ୍ଥାନ ଏବଂ ବେଲୁଚିସ୍ଥାନ ଆମକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି । ଲୋକଙ୍କ ମନରେ ଭ୍ରମ ସୃଷ୍ଟି କରିବାକୁ ଇଂରେଜ ଭୁଲ୍ ଖବରକୁ ପ୍ରୋତ୍ସାହିତ କରୁଛନ୍ତି । ଆପଣ ସେହି ଖବରକୁ ବିଶ୍ୱାସ କରନ୍ତୁ ନାହିଁ ।'' ଏହି ପତ୍ରମାନଙ୍କୁ ବିଭିନ୍ନ ଭାଷାରେ ଅନୁବାଦ କରି ଭିନ୍ନ ଭିନ୍ନ ସ୍ଥାନକୁ ପଠାଇ ଦିଆଯାଇଥିଲା ।

ପତ୍ରକାର ବି ୱିଲିୟମ୍ ରସଲ ତାଙ୍କର ୧୮୫୭ର ଶେଷଭାଗରେ ଲିଖିତ 'ମାଇଁ ମ୍ୟୁଟିନି ଡାଇରୀ' ନାମକ ପୁସ୍ତକରେ ଲେଖିଛନ୍ତି– '୧୮୫୬ ମସିହାର ଆଦ୍ୟଭାଗରେ ଇ ନାନାସାହେବ ଅମ୍ବାଲାରୁ କାମ୍ପୁପର୍ଯ୍ୟନ୍ତ ସୈନ୍ୟଶିବିରମାନଙ୍କୁ ଗସ୍ତ କରି ସୈନିକମାନଙ୍କ ସହିତ କଥାବାର୍ତ୍ତା କରିଥିଲେ । ଏଥିରେ ମଧ୍ୟ ନାନାସାହେବ ଝାନ୍ସୀ, ଲକ୍ଷ୍ନୌ, ଦିଲ୍ଲୀ ଓ ବାରାଣସୀ ଗସ୍ତ କରିଥିବାର ଉଲ୍ଲେଖ ରହିଛି । ମିଷ୍ଟର ଫୋବସ୍ ମିସେଲ୍ ତାଙ୍କର 'ଦି ଗ୍ରେଟ୍ ମ୍ୟୁଟିନି' ନାମକ ଗ୍ରନ୍ଥରେ ଲେଖିଛନ୍ତି ''ନାନାସାହେବ ନିଜର ବିଶ୍ୱସନୀୟ ବ୍ୟକ୍ତି ଅଜୀମୁଲ୍ଲାଙ୍କୁ ନିଜର ଓକିଲ ନିଯୁକ୍ତ କରି ପେନ୍‌ସନ୍ ସଂପର୍କରେ କଥାବାର୍ତ୍ତା କରିବାକୁ ଲଣ୍ଡନ ପଠାଇଥିଲେ । ସେଠାରୁ ଫେରିବା ବାଟରେ ସେ କନ୍‌ଷ୍ଟାଣ୍ଟିନୋପଲ ଯାଇ ସେଠାରେ ରୁଷର ସେନାଧିକାରୀମାନଙ୍କ ସହିତ ସଂପର୍କ ସ୍ଥାପନ କରିଥିଲେ ଏବଂ ଭାରତବର୍ଷ ତଥା ଇଂରେଜମାନଙ୍କ ଭିତରେ ଯୁଦ୍ଧ ହେବାର ସ୍ଥିତି ଉପୁଜିଲେ ରୁଷର ସାହାଯ୍ୟ ପାଇବାର ଆଶ୍ୱାସନା ମଧ୍ୟ ପ୍ରାପ୍ତ ହୋଇଥିଲେ । ରୁଷର ସମ୍ରାଟ୍ ଏବଂ ଦିଲ୍ଲୀର ବାଦଶାହଙ୍କ ଭିତରେ ଦେଢ଼ ଦୁଇଶହ ବର୍ଷ ଧରି ସଂପର୍କ ସ୍ଥାପିତ ହୋଇଥିଲା । ୧୬୪୬ରେ ବାଦଶାହ ଶାହାଜାହାନଙ୍କୁ ପତ୍ର ଜରିଆରେ ରୁଷ ସମ୍ରାଟ୍ ମୈତ୍ରୀ ପ୍ରସ୍ତାବ ରଖିଥିଲେ । ୧୬୬୬ରେ ଭାରତରୁ ହସ୍ତକଳା କୌଶଳ ଏବଂ ଅନ୍ୟ ବହୁମୂଲ୍ୟ ବସ୍ତୁର ଆମଦାନୀ ନିମନ୍ତେ ପ୍ରସ୍ତାବ ମଧ୍ୟ ଦେଇଥିଲେ । ୧୬୭୫ରେ ରୁଷ ସମ୍ରାଟ୍ ଆଉରଙ୍ଗଜେବଙ୍କୁ ପତ୍ର ଲେଖି ରୁଷୀୟ ଦୂତଙ୍କୁ ଆଗ୍ରା ଦରବାର ନିମନ୍ତେ ମନୋନୀତ କରିବାର ଇଚ୍ଛା ମଧ୍ୟ ପ୍ରକଟ କରିଥିଲେ ।

ତାନ୍ତିଆ ଟୋପେଙ୍କ ବ୍ୟବହୃତ ଜିନିଷପତ୍ରରୁ ମିଳିଥିବା ଚିଠିରୁ ଜଣାଯାଏ ଯେ ତାନ୍ତିଆ ଟୋପେ, ରାଣୀ ଲକ୍ଷ୍ମୀବାଈ, ବାଜପୁରର ରାଜା, ବୁନ୍ଦେଲଖଣ୍ଡର ଅନ୍ୟ ଜାଗିରଦାର, ସରଦାର, ଥାନେଦାରମାନଙ୍କ ମଧ୍ୟରେ ପରସ୍ପର ପତ୍ର ବ୍ୟବହାର ଚାଲିଥିଲା । ଜଣେ ଅନ୍ୟଜଣଙ୍କୁ ସୂଚନା ଦେବା, ପାରସ୍ପରିକ ସହଯୋଗର ଆଦାନ–ପ୍ରଦାନ ମଧ୍ୟ ଜାରି ଥିଲା ।

ଏହା ବ୍ୟତୀତ ପ୍ରତି ଗ୍ରାମର ପଟୱାରୀ, ଜନସାଧାରଣ ଏପରିକି ଜ୍ୟୋତିଷ, ପଣ୍ଡିତ, ମାନ୍ତ୍ରିକମାନେ ଏହି ଯୁଦ୍ଧର ସହଯୋଗର ଇଚ୍ଛା ରଖିଥିଲେ ଓ ସହଯୋଗ ପାଇଁ ସର୍ବଦା ତତ୍ପର ରହୁଥିଲେ । ନିଜ ମୁଖିଆଙ୍କର ବିଜୟପାଇଁ ପୂଜାପାଠ ମଧ୍ୟ କରୁଥିଲେ । ଜଣେ

ଜ୍ୟୋତିଷ ତ ବିଜୟ କାମନା କରି ଓ ସୁରକ୍ଷା ଭାବନା ସହିତ ଏକ ତାବିଜ ମନ୍ତ୍ରିତ କରି ତାନ୍ତିଆ ଟୋପେଙ୍କ ପାଖକୁ ପଠାଇଥିଲେ ।

ଯଦି ଏହି ଯୁଦ୍ଧ ବିଶୁଦ୍ଧ ସିପାହିମାନଙ୍କର ବିଦ୍ରୋହ, ସିପାହିଙ୍କ ମେଳି କିମ୍ବା ପେନ୍‌ସନ୍ ଓ ନିଜ ରାଜ୍ୟ ଫେରିପାଇବା ପର୍ଯ୍ୟନ୍ତ ସୀମିତ ଥିଲା ତା'ହେଲେ ଏତେ ହଙ୍ଗାମା ହେବାର ହିଁ ନ ଥିଲା । ୧୮୫୭ ପୂର୍ବରୁ ମଧ୍ୟ ଅନେକ ବିଦ୍ରୋହ ସଂଘଟିତ ହୋଇସାରିଥିଲା । ଦକ୍ଷିଣରେ ଥିବା ବେଲ୍ଲୁର ସୈନ୍ୟଛାଉଣୀରେ ସେତେବେଳେ ମଧ୍ୟ ବିଦ୍ରୋହର ସ୍ଫୁଲିଙ୍ଗ ଜଳି ଉଠିଥିଲା; ଯେତେବେଳେ ଛାଉଣୀର ହିନ୍ଦୁସ୍ଥାନୀ ସିପାହିମାନଙ୍କର ମୁଣ୍ଡରେ ତିଳକ ଲଗାଇବା, ଦାଢ଼ି ରଖିବା ଅଥବା କାନରେ କୁଣ୍ଡଳ ପିନ୍ଧିବା ଉପରେ କଟକଣା ଜାରି ହୋଇଥିଲା । ଏହି କଟକଣା ଯୋଗୁଁ ହିନ୍ଦୁ ଏବଂ ମୁସଲମାନମାନଙ୍କର ଧର୍ମୀୟ ଭାବନାକୁ ଆଘାତ ଲାଗିଥିଲା ଏବଂ ସେଥିପାଇଁ ସେମାନେ ଏହି ବିଦ୍ରୋହ କରିଥିଲେ । ୧୮୩୯ରେ ସାତାରାର ଛତ୍ରପତି ପ୍ରତାପ ସିଂହଙ୍କୁ ତାଙ୍କ ପଦରୁ ହଟାଇ କଂପାନୀ ସରକାର ତାଙ୍କ ରାଜ୍ୟକୁ ଅଧିକାର କରି ନେଇଥିଲା । ସେତେବେଳେ ସାତାରା ନିକଟବର୍ତ୍ତୀ କରାଡ଼ଗ୍ରାମର ଧାରରାୟ ପାୱାର କଂପାନୀ ସରକାର ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ନରସିଂହରାଓ ପେଟକର ଏକହଜାର ସୈନିକଙ୍କର ସହାୟତାରେ 'ବାଦାମୀ' ନାମକ ଦୁର୍ଗକୁ ହସ୍ତଗତ କରି ନେଇଥିଲେ । କିନ୍ତୁ କପାଂନୀ ସରକାର ବେଲଗାଓଁ, ଧାରୱାଡ଼ର ସୈନ୍ୟମାନଙ୍କ ସହାୟତାରେ ସେମାନଙ୍କୁ ପରାସ୍ତ କରିଥିଲା । ଏହା ପରେ ୧୮୪୬ ଯାଏଁ ଖାନ୍‌ଦେଶର ସଶସ୍ତ୍ର ଭୀଲ୍‌ମାନେ ତିନିଚାରିଥର ଇଂରେଜମାନଙ୍କ ବିରୋଧରେ ଯୁଦ୍ଧ ବି କରିଥିଲେ । ୧୮୪୪ରେ କୋହ୍ଲାପୁର ରାଜ୍ୟର ଶାସକ ଦାଜୀବା ପଣ୍ଡିତ ପାଞ୍ଚଶହ ସୈନିକଙ୍କ ସହାୟତାରେ ସମାନଗଡ଼ ଅଧିକାର କରିନେଲେ ଏବଂ ୧୭ ଦିନ ପର୍ଯ୍ୟନ୍ତ ସେଠାରୁ ଲଢ଼େଇକରି ଶେଷରେ ଆତ୍ମସମର୍ପଣ କରିଦେଇଥିଲେ । ଏହିପରି ଛୋଟ ଛୋଟ ବିଦ୍ରୋହର ଅଗ୍ନିକଣା କୁହୁଳୁଥିଲା, କିନ୍ତୁ ୧୮୫୭ର ବିଦ୍ରୋହ ଜାଳ ବ୍ୟାପକରୂପରେ ପ୍ରସାରିତ ହୋଇଥିଲା, ଏଥିରେ ଏକ ଦୂରଗାମୀ ପରିଣାମ-କାରକ କଥା ଥିଲା ।

ମକାର୍ଥୀ ନାମକ ଇତିହାସକାର 'History of Our Own Times' ପୁସ୍ତକର ତୃତୀୟ ଖଣ୍ଡର ଆରମ୍ଭରେ ଲେଖିଛନ୍ତି "ଏହା କେବଳ ସିପାହିମାନଙ୍କର ବିଦ୍ରୋହ ନ ଥିଲା" । କୌଣସି ପ୍ରକାରେ ଏହାକୁ ବିଶୁଦ୍ଧ ସିପାହି ବିଦ୍ରୋହ କୁହାଯାଇ ନ ପାରେ । ସୈନିକମାନଙ୍କ ଭିତରେ ଅଶାନ୍ତି, ଦେଶସାରା ବ୍ୟାପିଥିବା ଇଂରେଜମାନଙ୍କ ପ୍ରତି ଦ୍ୱେଷ, ଲୋକମାନଙ୍କର ଧର୍ମ ପ୍ରତି ଆସ୍ଥା, ହିନ୍ଦୁସ୍ଥାନ ଉପରେ ଇଂରେଜମାନଙ୍କ ଜବରଦସ୍ତି କବ୍‌ଜା କରିବା ଇତ୍ୟାଦି ଏକ ମିଶ୍ରିତ ପରିଣାମ ଥିଲା, ୧୮୫୭ର ସଂଗ୍ରାମ । ସେଠିକାର ରାଜାମହାରାଜା ଏବଂ ସିପାହିମାନେ ଏହି ସଂଗ୍ରାମରେ ସାମିଲ୍ ଥିଲେ । ନିଜର ପୁରୁଣା ଧର୍ମୀୟ ଶତ୍ରୁତାକୁ ଭୁଲିଯାଇ ହିନ୍ଦୁ ଏବଂ ମୁସଲମାନମାନେ ସଂଗଠିତ ଭାବରେ ଖ୍ରୀଷ୍ଟିୟାନମାନଙ୍କ ବିରୋଧରେ ଉଠି ଠିଆ ହୋଇଯାଇଥିଲେ । ଇଂରେଜମାନଙ୍କ ନିମନ୍ତେ ବିଦ୍ୱେଷ ଓ ତା'ର ପ୍ରତିକାର କାରଣରୁ

ହିଁ ଏହି ବ୍ୟାପକ ବିଦ୍ରୋହକୁ ଅଧିକ ଗତିଶୀଳତା ମିଳିଥିଲା । କାରତୁସ୍‌କୁ ନେଇ ସଂଘର୍ଷ ଏହି ଶ୍ୱାସରୋଧକାରୀ ବାତାବରଣର ନିଆଁରେ ଘିଅ ଢାଳିବା କାମ କରିଥିଲା । ଯଦି ଏହି ସ୍ଫୁଲିଙ୍ଗ ଜଳି ଉଠି ନ ଥାନ୍ତା, ତା'ହେଲେ ମଧ୍ୟ କିଛି ନା କିଛି କାରଣ ଖୋଜା ପଡ଼ିଥାନ୍ତା । ମିରଠର ସିପାହିମାନଙ୍କୁ ସେତେବେଳେ ଏକ କାରଣ ମିଳିଯାଇଥିଲା, ଏକ ନେତୃତ୍ୱ ମଧ୍ୟ ମିଳିଯାଇଥିଲା । ପରିଣାମସ୍ୱରୂପ ଏହା ରାଜ୍ୟକ୍ରାନ୍ତି ରୂପରେ ରୂପାନ୍ତରିତ ହୋଇଗଲା । ପ୍ରାତଃକାଳୀନ ସୂର୍ଯ୍ୟାଲୋକରେ ଚକ୍ ଚକ୍ କରୁଥିବା ତରବାରି ହାତରେ ଧରି ଏହି ସିପାହିମାନେ ଯେତେବେଳେ ଯମୁନାନଦୀ ପାରି ହୋଇଗଲେ ସେତେବେଳେ ସେମାନେ ଇତିହାସର ଏକ ମହତ୍ତ୍ୱପୂର୍ଣ୍ଣ, ନିର୍ଣ୍ଣାୟକ ଅଧ୍ୟାୟ ଲେଖିଦେଇଥିଲେ ଏବଂ ସୈନିକ-ବିଦ୍ରୋହ, ରାଷ୍ଟ୍ରୀୟ-ସ୍ୱତନ୍ତ୍ରତା-ସଂଗ୍ରାମରେ ପରିଣତ ହୋଇଗଲା ।

ଦିଲ୍ଲୀର ବାଦଶାହ ବାହାଦୁରଶାହା ଜାଫର୍‌ଙ୍କ ଉପରେ କଂପାନୀ ସରକାର ପରେ ରାଜଦ୍ରୋହ ମକଦ୍ଦମା ଦାୟର କରିଥିଲା । ସେତେବେଳେ ମେଜର ହେରିଅଟ୍ ସରକାରୀ ଓକିଲ ଭାବରେ ମକଦ୍ଦମା ପରିଚାଳନା କରିଥିଲେ । ସେହି ମେଜର ହେରିଅଟ୍ ଲେଖିଛନ୍ତି- ''କ୍ଷମତା ପାଇଁ ଅଲଗା ଅଲଗା ଧର୍ମ, ରୀତିନୀତି, ପରମ୍ପରା ଓ ବର୍ଣ୍ଣବିଦ୍ୱେଷକୁ ମାନୁଥିବା ଲୋକଙ୍କର ମୂଳୋତ୍ପାଟନ ନିମନ୍ତେ ଏଠିକାର ଜନସାଧାରଣ ପ୍ରୟାସ ଆରମ୍ଭ କରି ଦେଇଥିଲେ । ଚର୍ବିଲଗା କାରତୁସ୍ ବ୍ୟତିରେକେ ନିଶ୍ଚିତଭାବରେ ଏହା ପଛରେ ଅନ୍ୟ କିଛି କାରଣ ରହିଥିବ, ମତେ ଏହିପରି ହିଁ କହିବାକୁ ପଡ଼ିପାରେ । ଯେପରି, ଯେଉଁ ଉତ୍ସାହର ସହିତ ଏକକାଳୀନ ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତଯାଏଁ ଏହି ଯେଉଁ ବିଦ୍ରୋହ ସଂଘଟିତ ହେଲା, ତା'ର ପୃଷ୍ଠଭୂମିରେ ବୁଦ୍ଧିମତାପୂର୍ବକ ନିୟୋଜିତ ଏକ ବ୍ୟାପକ ଷଡ଼୍‌ଯନ୍ତ୍ର ଥିଲା । ଯେଉଁଠି କାରତୁସ୍‌ର କୌଣସି ପ୍ରଶ୍ନ ହିଁ ନ ଥିଲା, ସେଠାରେ କେବଳ ଗୋରାଲୋକଙ୍କ ପ୍ରତି ପ୍ରତିଶୋଧପରାୟଣତାରୁ ଏହି ବିଦ୍ରୋହ ସଂଗଠିତ ହୋଇଥିଲା- ଏହା ପ୍ରତି ଧ୍ୟାନ ଦିଆଯିବା ଉଚିତ ।''

''ଇଂରେଜମାନଙ୍କ ବିରୋଧରେ ଏହି ସଂଗ୍ରାମ ସାର୍ବଜନିକ ନ ଥିଲା । କେବଳ କେତେକ ପ୍ରଦେଶରେ ହିଁ ଶତ୍ରୁତାର ଭାବନା ଜଳି ଉଠିଥିଲା । ଦାକ୍ଷିଣାତ୍ୟରେ ତ କିଛି ହିଁ ହୋଇ ନ ଥିଲା ।'' ସେନ୍ ଏବଂ ମଜୁମ୍‌ଦାର ନିଜ ନିଜ ଗ୍ରନ୍ଥରେ ଏପରି ବର୍ଣ୍ଣନା କରିଛନ୍ତି ଏବଂ ଏହି ଆଧାରରେ ଅନୁମାନ ବି ଲଗାଇଛନ୍ତି ଯେ ଏହି ଯୁଦ୍ଧକୁ 'ସ୍ୱତନ୍ତ୍ରତା ସଂଗ୍ରାମ' କୁହାଯାଇ ନ ପାରେ, କାରଣ ଏହାର ବ୍ୟାପ୍ତି କେବଳ ଉତ୍ତରଭାରତ ପର୍ଯ୍ୟନ୍ତ ହିଁ ସୀମିତ ଥିଲା ।

୧୯୦୫ରେ ବିନାୟକ ଦାମୋଦର ସାବରକର ଇଂଲଣ୍ଡରେ ଥିବାବେଳେ ଲେଖିଥିବା ନିଜ ପୁସ୍ତକରେ ୧୮୫୭ର ଘଟଣାର କୌଣସି ଉଲ୍ଲେଖ କରି ନ ଥିଲେ । ଦକ୍ଷିଣର ଘଟଣା ତ ଅନ୍ଧକାରରେ ବୁଡ଼ିଥିଲା ଇ ।

କିନ୍ତୁ ଡଃ. ବା.ଦ. ଦିବେକର ନାମକ ଇତିହାସକାର, ଅର୍ଥଶାସ୍ତ୍ରର ସଂଶୋଧକ ଓ ଅଧ୍ୟାପକ ଏହି ଘଟଣାବଳୀ ଉପରେ ଆଲୋକପାତ କଲେ । ବ୍ରିଟିଶ୍ ପାର୍ଲିଆମେଣ୍ଟର ଦସ୍ତାବିଜ୍, ବ୍ରିଟିଶ୍ ଅଧିକାରୀମାନଙ୍କ ମଧ୍ୟରେ ହୋଇଥିବା ପତ୍ର ବ୍ୟବହାର, ଏଥି ସହିତ ଦକ୍ଷିଣ ଭାରତର ରାଜା ମହାରାଜା, ସରଦାର, ଜାଗିରଦାରଙ୍କ ଦପ୍ତର, ସରକାରୀ କାର୍ଯ୍ୟାଳୟରୁ ପ୍ରାପ୍ତ ଦସ୍ତାବିଜ୍ ସବୁର ଅଧ୍ୟୟନ କରି 'South India in 1857 War of Independence' ନାମକ ପୁସ୍ତକ ସେ ୧୯୯୦ ମସିହାରେ ଲେଖିଥିଲେ । ଏହାର ହିନ୍ଦୀ ଅନୁବାଦ ୨୦୦୧ ମସିହାରେ ପ୍ରକାଶିତ ହେଲା ।

ଡଃ ଦିବେକର ଆଣ୍ଡାମାନର କାରାଗୃହରେ ବନ୍ଦୀ ହୋଇଥିବା ଲୋକଙ୍କର ତାଲିକା ଦେଖି ଏହି ନିଷ୍କର୍ଷରେ ପହଞ୍ଚିଲେ ଯେ– "୧୮୫୭ର ଯୁଦ୍ଧରେ ସାମିଲ ହୋଇଥିବା ସମଗ୍ର ହିନ୍ଦୁସ୍ଥାନର ଆଠଶହରୁ ଅଧିକ ଲୋକ ଆଣ୍ଡାମାନରେ କାରାଦଣ୍ଡ ଭୋଗୁଥିଲେ । ସେମାନଙ୍କ ମଧ୍ୟରେ ୨୬୦ରୁ ଅଧିକ ନାମ ଦକ୍ଷିଣଭାରତୀୟ ଲୋକଙ୍କର ଅଟେ । ବ୍ରିଟିଶ୍ ସରକାର କେବଳ ୨୬ ଜଣ ଲୋକଙ୍କର ନାମତାଲିକା ପ୍ରସ୍ତୁତ କରିଥିଲେ । ଶ୍ରୀ ଦିବେକର ଏହା ମଧ୍ୟ ଲେଖିଛନ୍ତି ଯେ ପେଠର ରାଜା ଭଗତରାଓ, ନୀଳକଂଠ ରାଓ, ନରଗୁନ୍ଦର ରାଜା ଭାସ୍କର ରାଓ ଏବଂ ବାବାସାହେବ ଭାବେ ଏହି ଦୁହିଁଙ୍କୁ ଇଂରେଜମାନେ ଫାଶୀ ଦେଇଥିଲେ । କୋହ୍ଲାପୁରର ଛତ୍ରପତିଙ୍କ ସାନଭାଇ ଚୀନାସାହେବଙ୍କୁ କରାଚୀର ସୀମାସେପାରିକୁ ପଠାଇ ଦିଆଯାଇଥିଲା । ସେଠାରେ ସେ ମୃତ୍ୟୁବରଣ କରିଥିଲେ । କୋବଲମ୍‌ର ରାଜା ଦୀପ ସିଂହ, ସତାରାର ଛତ୍ରପତିଙ୍କ ଭଣଜା ରାମରାଓ ଜଙ୍ଗବାହାଦୁର, ଜମଖିଣ୍ଡିର ରାଜା ରାମଚନ୍ଦ୍ର ରାଓ ଆଦି ରାଜାଙ୍କ ସହିତ ବ୍ରିଟିଶ୍ ସେନାବାହିନୀର ଅଧିକାଂଶ ହିନ୍ଦୁସ୍ଥାନୀ ଅଧିକାରୀ, ସିପାହି, ରାଜ୍ୟାଧିକାରୀଙ୍କୁ ମଧ୍ୟ ଆଣ୍ଡାମାନ ପଠାଇ ଦିଆଯାଇଥିଲା ।

୧୮୫୭ରେ ମିରଠର ବିଦ୍ରୋହ ସହିତ ମୁମ୍ବଇ ଏବଂ ପୁନେର ସୈନିକମାନେ ମଧ୍ୟ କମ୍ପାନୀ ସରକାର ବିରୋଧରେ ସ୍ୱର ଉତ୍ତୋଳନ କରିବାର ପ୍ରଚେଷ୍ଟା କରୁଥିଲେ । ଏହାର ସୂଚନା ପାଇବାମାତ୍ରେ ସରକାର ତୁରନ୍ତ କାର୍ଯ୍ୟାନୁଷ୍ଠାନ କରି ଲୋକମାନଙ୍କୁ ଗିରଫ କଲେ । ସେମାନଙ୍କର ଗତିବିଧିକୁ କବର ଦେଇଦେଲେ । ଏହିସବୁ ଚାଲିଥିବାବେଳେ ବି ତ୍ରିବକେଶ୍ୱର, ସାବନ୍ତବାଡ଼ି, ଓ୍ୱରଙ୍ଗାବାଦ, ଗୋଲକୁଣ୍ଡା, ହାଇଦ୍ରାବାଦ, ବୀଜାପୁର, କାରୱାଡ଼, ରାଜମହେନ୍ଦ୍ରୀ, ଚିଙ୍ଗଲପଟ, ମହୀଶୂର, ବେଲଗାଁବ, ଗୋଆସ୍ଥିତ ସତାରୀମହଲ, କୋଏମ୍ବାଟୁର, ବୀଡ଼, କଡ଼ାପ୍ପୋ, ସୋହରାପୁର, ମାଲଖେଡ଼, ଗୁଲବର୍ଗ, ଧାରବାଡ଼, ବିଶାଖାପଟନମ୍, ତେଲିଚେରୀ, କାଲିକଟ ଆଦି ବିଭିନ୍ନ ସ୍ଥାନରେ କେଉଁଠି ସାଧାରଣ ଲୋକେ ତ, କେଉଁଠି ଅଭିଜାତ ରାଜା । ସରଦାର, ଜାଗିରଦାର ପ୍ରଭୃତି ଆଗେଇଯାଇ ବିଦ୍ରୋହ କରିଥିଲେ । ବ୍ରିଟିଶ୍ ସୈନ୍ୟମାନେ ସଙ୍ଗେ ସଙ୍ଗେ ସେହି ସ୍ଥାନରେ ହିଁ ଧରପଗଡ଼ କରିଥିଲେ, ଯୁଦ୍ଧ କରିଥିଲେ, ଲୋକଙ୍କୁ ଫାଶୀ ଦେଇଥିଲେ, କଳାପାଣି ପଠାଇଥିଲେ, ବନ୍ଦୀ କରିଥିଲେ, ତୋପ ମୁହଁରେ ଉଡ଼େଇ ଦେଇଥିଲେ, ଆଣ୍ଡାମାନରେ ଆଜୀବନ କାରାଦଣ୍ଡ ଭୋଗିବାକୁ ପଠାଇଦେଇ ଏହି

ବିଦ୍ରୋହକୁ ନେତୃତ୍ୱହୀନ ତଥା ଷାଣ୍ଣ କରିଦେଇଥିଲେ । କେବଳ ମୁମ୍ବଇ ସୈନିକ ଛାଉଣୀର ୧୨୧୩ ଭାରତୀୟ ସୈନିକଙ୍କ ଉପରେ କୋର୍ଟ ମାର୍ଶାଲ ମକଦ୍ଦମା ଦାୟର ହୋଇଥିଲା । ସେମାନଙ୍କ ମଧ୍ୟରୁ ୧୬୭ ସିପାହିଙ୍କୁ ପ୍ରାଣଦଣ୍ଡ ଦିଆଯାଇଥିଲା ଏବଂ ୮୭ ଲୋକଙ୍କୁ ସୀମାପାର ପଠାଇ ଦିଆଯାଇଥିଲା ।

୧୮୫୭ ମସିହା ସେପ୍ଟେମ୍ବର ୩ ତାରିଖଦିନ ମାଡ୍ରାସ ସରକାରଙ୍କ ବିଚାର ବିଭାଗ, ଗଭର୍ଣ୍ଣର ଜେନେରାଲ୍‌ଙ୍କ ନିକଟକୁ ପଠାଇବାପାଇଁ ପ୍ରସ୍ତୁତ କରିଥିବା ରିପୋର୍ଟରେ କହିଛନ୍ତି । "ମାଡ୍ରାସ ଏବଂ ପାଖଆଖର ରାଜ୍ୟମାନଙ୍କରେ ଚର୍ବିଯୁକ୍ତ କାରତୁସ୍, ଜବତ୍ କରାଯାଇଥିବା ରାଜ୍ୟ ଏବଂ ଇଂରେଜ ଅତ୍ୟାଚାରକୁ କେନ୍ଦ୍ର କରି ସାଧାରଣ ଜନତା ଏବଂ ସୈନ୍ୟଶିବିରମାନଙ୍କରେ କଡ଼ା ଶବ୍ଦରେ ଆଲୋଚନା ହେଉଛି । ବ୍ରିଟିଶ୍ ଶାସନର ଅତିଶୀଘ୍ର ପତନ ଘଟିବ – ଏପରି ଖୋଲାଖୋଲି କୁହାଯିବା ଆରମ୍ଭ ହେଉଛି । ବଙ୍ଗଳାର ସୈନ୍ୟମାନେ ଏଠାକୁ ଆସୁଛନ୍ତି ଏବଂ ଏଠିକାର ଲୋକମାନଙ୍କ ମଧ୍ୟରେ ରାଜଦ୍ରୋହର ଭାବନା ଜାଗ୍ରତ କରିବାକୁ ପ୍ରୟାସ କରୁଛନ୍ତି । ବ୍ରିଟିଶ୍ ଶାସନ ଯୋଗୁଁ ହିଁ ଏଠି ଅନେକ ଲୋକ ନିଜର ଜୀବିକା ହରାଇଛନ୍ତି– ସାଧାରଣ ଲୋକଙ୍କ ମଧ୍ୟରେ ସବୁବେଳେ ଏହି ପ୍ରକାରର ଚର୍ଚ୍ଚା ହେଉଛି । ଏଠାରେ ଖାଦ୍ୟପଦାର୍ଥର ଅଭାବ ରହିଛି ଏବଂ ଏହା ବହୁ କଷ୍ଟରେ ଉପଲବ୍ଧ ହେଉଛି । ଖାଦ୍ୟଶସ୍ୟର ଦର ଆକାଶଛୁଆଁ ହୋଇଛି । ବିଶାଖାପଟ୍ଟନମ୍, ବେଙ୍ଗଲୋର ପରି ସ୍ଥାନରେ ଖାଦ୍ୟପଦାର୍ଥକୁ କେନ୍ଦ୍ର କରି ଦଙ୍ଗା–ଫସାଦ ବି ହୋଇଯାଇଛି ।"

(୧୮୫୭ର ସ୍ୱତନ୍ତ୍ରତା ଯୁଦ୍ଧ, ସୁଲଗତା ହୁଆ, ଦକ୍ଷିଣ ହିନ୍ଦୁସ୍ଥାନ–ଡାଃ. ଓ୍ୱା.ଦ. ଦିବେକର, ପୃ. ୧୨)

ମହୀଶୂରର ଇଂରେଜ କମିଶନର ସାର ପାର୍କ କବ୍‌ବନ, ଗଭର୍ଣ୍ଣର ଜେନେରାଲଙ୍କୁ ୧୮୫୮, ଫେବୃୟାରୀ ୨୬ ତାରିଖରେ ନିଜର ବିସ୍ତୃତ ରିପୋର୍ଟ ପ୍ରେରଣ କରିଥିଲେ । ସେଥିରେ କୁହାଯାଇଥିଲା "ବ୍ରାହ୍ମଣମାନଙ୍କ ମଧ୍ୟରେ ଅସନ୍ତୋଷ ଅଛି । ଇଂରେଜମାନଙ୍କ ନିମନ୍ତେ ସେମାନଙ୍କ ମନରେ ଶତ୍ରୁତାର ଭାବନା ଅଛି । ଧାର୍ମିକ ସଙ୍ଗଠନର ମୁଖ୍ୟ, ବଡ଼ ବଡ଼ ଶେଠ–ସାହୁକାର, ଛୋଟବଡ଼ ନଗରୀର ମୁଖିଆ, ଗ୍ରାମର ପ୍ରଧାନ–ସମସ୍ତେ ବ୍ରିଟିଶ୍ ଶାସନର ବିରୋଧରେ ଅଛନ୍ତି ।"

ବ୍ରିଟିଶ୍ ସରକାରଙ୍କ ପାଇଁ ସେମାନଙ୍କ ମନରେ ପ୍ରତିଶୋଧ ଓ ଶତ୍ରୁତାର ପରାକାଷ୍ଠା ରହିଛି । ସେମାନଙ୍କ ପାଖକୁ ଉତ୍ତରଭାରତୀୟଙ୍କ ପତ୍ର ଆସୁଛି ଏବଂ ଲୋକମାନେ ସେହି ପତ୍ରକୁ ଅତି ଆଗ୍ରହରେ ପଢୁଛନ୍ତି । ଉତ୍ତରରୁ ଆସୁଥିବା ଲୋକଙ୍କୁ ମୁଣ୍ଡରେ ବସାଉଛନ୍ତି । ଏଠାକାର ଲୋକଙ୍କ ଘରେ ରାଜଦ୍ରୋହୀମାନଙ୍କର ବୈଠକ ଆୟୋଜନ କରାଯାଉଛି । ସେଠାରେ ଆମ ଶାସନର ମୂଳୋତ୍ପାଟନର ଷଡ଼୍‌ଯନ୍ତ୍ର ରଚନା କରାଯାଉଛି ।" (ଉପରୋକ୍ତ ଗ୍ରନ୍ଥ ପତ୍ର–୧୩)

ଶ୍ରୀ ଦିବେକର ଏହି ଭାବରେ ବତାଇବାକୁ ଚେଷ୍ଟା କରିଛନ୍ତି ଯେ ବାଦଶାହ ବାହାଦୁରଶାହ ଏବଂ ନାନାସାହେବଙ୍କ ଦୂତ ଦକ୍ଷିଣର ଲୋକମାନଙ୍କ ସହିତ ସଂପର୍କ ଜାରି ରଖିଥିଲେ । ସେମାନଙ୍କର ପତ୍ର ଓ ଅନ୍ୟାନ୍ୟ ବିବରଣୀକୁ ଭିନ୍ନ ଭିନ୍ନ ଭାଷାରେ ଅନୁବାଦ କରାଇ ପୁନେ, ମୁମ୍ବଇ, ଖାନ୍ଦେଶ, ନାସିକ, କୋଲାପୁର, ଧାରୱାଡ଼, ମହୀଶୂର, ହାଇଦରାବାଦ, ରାଜମହେନ୍ଦ୍ରୀ, ମାଡ୍ରାସ, କୋଏମ୍ବାଟୁର ପରି ଦୂରଦୂରାନ୍ତର ସ୍ଥାନରେ ପହଞ୍ଚାଇ ଦିଆଯାଉଥିଲା ।

କର୍ଣ୍ଣାଟକର ନେତା ଭୀମରାଓ ମୁଂଦର୍ଗୀ କୋପ୍ପଲର ଲଢ଼ାଇରେ ୧୮୫୮ ମସିହା ଜୁନ ମାସରେ ନିହତ ହୋଇଥିଲେ । ସେ ପିନ୍ଧିଥିବା କୋଟ୍‌ରୁ ନାନାସାହେବଙ୍କର ଘୋଷଣାପତ୍ରର ୧୨ କପି ପ୍ରାପ୍ତ ହୋଇଥିଲା । କୋପ୍ପଲର ଜିଲ୍ଲା ଅଧିକାରୀ ଏହାର ଇଂରାଜୀ ଅନୁବାଦ କରି ନିଜ ରିପୋର୍ଟ ସହିତ ଗଭର୍ଣ୍ଣର ଜେନେରାଲଙ୍କ ନିକଟକୁ ପଠାଇ ଦେଇଥିଲେ ।

ଶ୍ରୀ ଦିବେକରଙ୍କ ଏହି ପୁସ୍ତକରୁ ଜଣାଯାଏ ଯେ ଉତ୍ତରକ୍ଷେତ୍ରର ନେତୃବର୍ଗଙ୍କର ଦକ୍ଷିଣର ଲୋକମାନଙ୍କ ସହିତ ସମ୍ପର୍କ ରହିଥିଲା । ଇଂରେଜମାନଙ୍କ ବିରୋଧରେ ଏକ ଶୃଙ୍ଖଳ ପ୍ରସ୍ତୁତ କରାଯାଇଥିଲା ଏବଂ ସଂପୂର୍ଣ୍ଣ ହିନ୍ଦୁସ୍ଥାନରେ ପ୍ରତ୍ୟେକ ନିଜ ନିଜ ସ୍ଥାନରେ ଛୋଟବଡ଼ ବିଦ୍ରୋହ ସଂଗଠିତ କରି ବ୍ରିଟିଶ୍ ଶାସନକୁ ବଦଳେଇ ଦେବାରେ ଏକ ମହାନ୍ ପ୍ରୟୋଗ କରିଥିଲେ- ଏହି କଥା ନିର୍ବିବାଦରେ ପ୍ରମାଣିତ ହୋଇଯାଏ । ତେଣୁ ସେନ୍–ମଜୁମଦାରଙ୍କ ପରି କହିବାନୁଯାୟୀ ଯେ–ଏହି ଯୁଦ୍ଧ କେବଳ ସିପାହିମାନଙ୍କର ବିଦ୍ରୋହ ଥିଲା, ସିପାହି–ମେଳି ଥିଲା, ଏହି ବିଦ୍ରୋହ କେବଳ ସୀମିତ ଅଞ୍ଚଳରେ ହୋଇଥିଲା–ସ୍ୱତଃ ନିରାଧାର ଲାଗେ ।

ବୁନ୍ଦେଲଖଣ୍ଡରେ ନିଯୁକ୍ତ ଇଂରେଜମାନଙ୍କର ସେନାପତି ହ୍ୟୁରୋଜ ସ୍ୱୟଂ ଏହି ଯୁଦ୍ଧ ସଂପର୍କରେ ନିଜର ଅଭିପ୍ରାୟ ବ୍ୟକ୍ତ କରି କହିଛନ୍ତି ଯେ– "ଆମେ ଯେତିକି ଯେତିକି ଏହି ଘଟଣାର ପୃଷ୍ଠା ଓଲଟାଇଲୁ ସେତିକି ସେତିକି ଆମର ଧ୍ୟାନ ଏ ଦିଗରେ ଅଧିକ ଆକର୍ଷିତ ହେଲା ଯେ ଏହି ବିଦ୍ରୋହ କେବଳ ସେନାବାହିନୀର ସିପାହିମାନଙ୍କର ନ ଥିଲା ବରଂ ଏହାର ଜଡ଼ ରାଜନୀତିକ ସ୍ୱରୂପରେ ଥିଲା । ଦିଲ୍ଲୀର ବାଦଶାହ, ଅଯୋଧ୍ୟାର ନବାବ ଏବଂ ନାନାସାହେବ ଏହି ତିନିଜଣ ଏହି ଷଡ଼୍‌ଯନ୍ତ୍ରର ମୁଖ୍ୟ ସୂତ୍ରଧର ଥିଲେ । ଏହି ତିନିଜଣ ନିଜ ନିଜ ରାଜ୍ୟ ଫେରିପାଇବାକୁ ଚାହୁଁଥିଲେ ।"

ଆଲେକ୍‌ଜାଣ୍ଡାର ଡଫ ଏକ ସ୍କଟିସ୍ ମିଶ୍‌ନାରୀ ସହିତ ସଂପର୍କିତ ଥିଲେ । ୧୮୫୭ ବେଳକୁ ସେ କଲିକତାରେ ରହୁଥିଲେ । ଇଂଲଣ୍ଡର ଲୋକମାନଙ୍କୁ ସେ ସମୟର ପରିସ୍ଥିତିର ଏକ ଧାରଣା ଦେବାକୁ ଯାଇ ଡଫ୍ 'Free Church of Scotland' ନାମକ ଏହି ବିଦେଶୀ ମିଶନ କମିଟିର କାର୍ଯ୍ୟନିର୍ବାହୀ ରେଭରେଣ୍ଡ ଡାଃ ଟ୍ରାବିଡ଼୍ରୀଙ୍କୁ ମୋଟ ୨୫ଟି ଚିଠି ଲେଖିଥିଲେ । ସେହି ସମସ୍ତ ଚିଠି 'The Indian Rebellion : Its Causes and Results' ନାମକ ପୁସ୍ତକ ରୂପରେ ୧୮୫୮ ମସିହାରେ ପ୍ରକାଶିତ ହେଲା, ସେଥିରେ ଡଫ୍‌ଙ୍କ ବକ୍ତବ୍ୟ ଏହିପରି ଥିଲା ଯେ– "୧୮୫୭ର ଯୁଦ୍ଧ ସିପାହିମାନଙ୍କର ବିଦ୍ରୋହ ନ

ଥିଲା, ଏହା ତ ଏକ ରାଜ୍ୟକ୍ରାନ୍ତି ଥିଲା, ଅନ୍ୟାୟ ବିରୋଧରେ ପ୍ରତିଶୋଧ ଥିଲା । ଏହା ସ୍ୱତନ୍ତ୍ରତାର ଯୁଦ୍ଧ ଥିଲା ।'' ଆଲେକ୍‌ଜାଣ୍ଡାର ଡଫ୍ ଆଉ ଟିକେ ଆଗେଇ ଯାଇ ଏପରି ମଧ୍ୟ ପରାମର୍ଶ ଦେଇଥିଲେ ଯେ ''ଯଦି ଇଂରେଜମାନେ ହିନ୍ଦୁସ୍ଥାନରେ ନିଜର ଶାସନକୁ ସବୁଦିନ ପାଇଁ ପ୍ରତିଷ୍ଠା କରିବାକୁ ଚାହାଁନ୍ତି, ଏହାକୁ ଅଧିକ ମଜଭୁତ୍ କରିବାକୁ ଚାହାଁନ୍ତି ତା'ହେଲେ ସେମାନଙ୍କୁ ହିନ୍ଦୁସ୍ଥାନରେ ଶତ-ପ୍ରତିଶତ ଖ୍ରୀଷ୍ଟିୟାନ ଧର୍ମକୁ ସ୍ଥାପିତ କରିବାକୁ ହେବ । ସେଥିପାଇଁ ସଂପୂର୍ଣ୍ଣ ହିନ୍ଦୁସ୍ଥାନକୁ ନିରସ୍ତ କରିବାକୁ ହେବ ଏବଂ ହିନ୍ଦୁସ୍ଥାନୀମାନଙ୍କ ଭିତରେ ବୀରତ୍ୱର ଯେଉଁ ଭାବପ୍ରବଣତା ଅଛି, ସେହି ଭାବନାକୁ ଦୁର୍ବଳ କରିଦେବାକୁ ହେବ । ନିଜର ପ୍ରତ୍ୟେକ ପତ୍ରରେ ଏହି କଥା ଉପରେ ଗୁରୁତ୍ୱ ଦେଲାବେଳେ ଡଫ୍ ଏହା ଭୁଲିଯାଇ ନ ଥିଲେ ଯେ ସେ ମଧ୍ୟ ଏକ ଲଢୁଆ ଜାତିର ସଦସ୍ୟ ଅଟନ୍ତି । ଇଭାନ୍‌ଜେଲିଷ୍ଟ (ଖ୍ରୀଷ୍ଟିୟାନ ଧର୍ମ ପ୍ରଚାରକ)ମାନେ ଏକ ନିର୍ଣ୍ଣାୟକ ଲଢ଼ାଇ ପରେ ସ୍କଟ୍‌ଲାଣ୍ଡର ମୂଳବାସିନ୍ଦା ହାଇଲ୍ୟାଣ୍ଡରର୍ସଙ୍କୁ ଜୋରଜବରଦସ୍ତ ଖ୍ରୀଷ୍ଟିୟାନ୍ କରି ସେମାନଙ୍କ ଭିତରେ ନିହିତ ମୂଳ ଜାତିଧର୍ମର ସ୍ମୃତିକୁ ପୂରାପୂରି ନିଶ୍ଚିହ୍ନ କରିଦେଇଥିଲେ । ସେମାନଙ୍କ ଭିତରେ ଯେଉଁ ସାହସର ଭାବନା ଥିଲା ତାକୁ ପୂରାପୂରି ଉପାଡ଼ି ଫିଙ୍ଗି ଦେଇଥିଲେ । ସେହି ଘଟଣାର ଉଲ୍ଲେଖ କରି ଡଫ୍ କହିଛନ୍ତି ଯେ ''ଏହା ପରେ ତା'ର ଯେଉଁ ଉତ୍ତମ ପରିଣତି ହେଲା ତାକୁ ଦେଖି ଯାହା କିଛି ହେଲା ତାହା ଉଚିତ ହିଁ ସାବ୍ୟସ୍ତ ହେଲା'' (ପୃ. ୨୦୧) । ଏହାର ତାତ୍ପର୍ଯ୍ୟ ହେଲା ଡଫ୍ ହିନ୍ଦୁସ୍ଥାନର ଅସ୍ମିତାକୁ ପୂରାପୂରି ନିଶ୍ଚିହ୍ନ କରିଦେବାର ପରାମର୍ଶ ହିଁ ଦେଇଥିଲେ । ହିନ୍ଦୁସ୍ଥାନର ହିନ୍ଦୁ ଏବଂ ମୁସଲମାନମାନଙ୍କ ମନରେ ଇଂରେଜ ମିଶନାରୀଙ୍କ ସମ୍ବନ୍ଧରେ କାହିଁକି ଏତେ ତିରସ୍କାର, ଦ୍ୱେଷ ଏବଂ ଭୟ ଥିଲା-ଡଫ୍‌ଙ୍କ ଏହି ବକ୍ତବ୍ୟରୁ ତା'ର ଅନୁମାନ କରାଯାଇପାରେ ।

ଏହି ଯୁଦ୍ଧ ଆରମ୍ଭ ହେବାର ବର୍ଷକ ଭିତରେ- ୨୭ ମେ ୧୮୫୯ର ଅକ୍ଟୋବରରେ 'London Times' ସମାଚାର ପତ୍ର ଲେଖିଲା ଯେ- ''ଏହି ବିଦ୍ରୋହ ଯୋଗୁଁ ହିନ୍ଦୁସ୍ଥାନର ଦୂରଦୂରାନ୍ତଯାଏଁ ବ୍ୟାପିଥିବା ପ୍ରଦେଶର ଲୋକମାନେ ଏକଜୁଟ ହୋଇଗଲେ । ନେପାଳରୁ ଗୁଜରାଟ ଏବଂ ରାଜସ୍ଥାନର ମରୁଭୂମିଠାରୁ ନିଜାମଙ୍କର ହାଇଦରାବାଦଯାଏଁ ସ୍ୱତନ୍ତ୍ରତା ନିମନ୍ତେ ଲଢ଼ିବାବାଲାଙ୍କର ଏକ ଜୁଆର ବ୍ୟାପିଗଲା । ଏହି କାରଣରୁ ଏ ସଂଘର୍ଷକୁ ଏକ ରାଷ୍ଟ୍ରୀୟ ସ୍ୱରୂପ ମିଳିଲା । ଛୋଟ ଛୋଟ ରାଜ୍ୟମାନେ ନିଜ ନିଜର ସ୍ୱାର୍ଥ, ପରସ୍ପରର ରୀତିନୀତି, ପରମ୍ପରା ଓ ଧର୍ମ ପ୍ରତି ନିଜର ବିଦ୍ୱେଷ ଭାବନାକୁ ଭୁଲିଯାଇ ଏହାର ଊର୍ଦ୍ଧ୍ୱକୁ ଉଠି ସେହି ଅତ୍ୟନ୍ତ ନିର୍ଣ୍ଣାୟକ ଏବଂ ମହତ୍ତ୍ୱପୂର୍ଣ୍ଣ ଜନକ୍ରାନ୍ତିରେ ସହଯୋଗ କରିବାର ବ୍ୟାକୁଳତା ଓ ଉତ୍ସୁକତାରୁ ଖୋଲାଖୋଲି ଲମ୍ଫ ପ୍ରଦାନ କରିଥିଲେ । ସମସ୍ତଙ୍କର ଦୃଷ୍ଟି ସେହି ଘଟଣା ଉପରେ ନିବଦ୍ଧ ଥିଲା । ସେହି ବିଦ୍ରୋହକୁ ଦମନ କରିବାର ଆମର ପ୍ରଚେଷ୍ଟା ଯୋଗୁଁ ହିନ୍ଦୁସ୍ଥାନରେ ରାଷ୍ଟ୍ରୀୟତାର ଭାବନା ଜନ୍ମ ନେଇଥିଲା । ଭବିଷ୍ୟତ୍‌ରେ ଏହାର ଅଧିକ ପ୍ରଖର ପ୍ରଭାବ ପଡ଼ିବା ଅନିବାର୍ଯ୍ୟ ଅଟେ ।

ଇତିହାସକାର ମକାର୍ଥୀ, ସେନାପତି ହ୍ୟୁରୋଜ, ଡଫ୍ ମିଶନାରୀ ଆଲେକ୍‌ଜାଣ୍ଡାର ଏବଂ 'ଲଣ୍ଡନ ଟାଇମ୍‌ସ' ପରି ସମ୍ବାଦପତ୍ର ପରି ବହୁ ଇଂରେଜ ଏହି ଯୁଦ୍ଧର ପୃଷ୍ଠଭୂମିରେ ସ୍ୱତନ୍ତ୍ରତାର ପ୍ରେରଣା ଏବଂ ରାଜନୀତିକ ଉଦ୍ଦେଶ୍ୟକୁ ଖୋଜି ବାହାର କରିଥିଲେ, ସେଥିପାଇଁ ଏହି ଯୁଦ୍ଧକୁ କେବଳ ସିପାହିମାନଙ୍କର ବିଦ୍ରୋହ କୁହା ନ ଯାଇ, ସ୍ୱତନ୍ତ୍ରତା ସଂଘର୍ଷ କୁହାଗଲା । ଭାରତୀୟମାନଙ୍କ ମନରେ ଏ ସମ୍ବନ୍ଧରେ କୌଣସି ପ୍ରକାରର ସନ୍ଦେହ ନ ଥିଲା ।

## କେବଳ ମୁକ୍ତିସଂଗ୍ରାମ

ଏହି ମୁକ୍ତିସଂଗ୍ରାମକୁ 'ସ୍ୱତନ୍ତ୍ରତା ସଂଗ୍ରାମ' କହିବାର ସାହସ ସର୍ବପ୍ରଥମେ କରିଥିଲେ ସ୍ୱାତନ୍ତ୍ର୍ୟ ବୀର ବି.ଦା. ସାବରକର । ୧୯୦୯ରେ ତାଙ୍କ ପୁସ୍ତକର ପ୍ରଥମ ଇଂରାଜୀ ସଂସ୍କରଣ ପ୍ରକାଶିତ ହେଲା । ଏହି ପୁସ୍ତକର ପ୍ରକାଶନର ଇତିହାସ ଅତ୍ୟନ୍ତ କୌତୂହଳପୂର୍ଣ୍ଣ । ଏହା ପାଠକଲେ ଏହି ସଂଗ୍ରାମ ପ୍ରତି ବ୍ରିଟିଶ୍ ସରକାରଙ୍କ ଦୃଷ୍ଟିକୋଣ ଏବଂ ହିନ୍ଦୁସ୍ଥାନୀ ଲୋକଙ୍କର ଦୃଷ୍ଟିକୋଣ ପୂରାପୂରି ସ୍ପଷ୍ଟ ହୋଇଯାଏ । ୨୪ ବର୍ଷ ବୟସରେ ସାବରକର ଲଣ୍ଡନରେ ରହି ନିଜର ଛାତ୍ରଜୀବନରେ ପ୍ରଥମ ମରାଠୀ ପୁସ୍ତକ ରଚନା କରିଥିଲେ । 'Free India Society'ର ସାପ୍ତାହିକ ବୈଠକରେ ସଦସ୍ୟମାନଙ୍କୁ ସେ ତା'ର ଆଭିମୁଖ୍ୟ ଇଂରାଜୀରେ ଶୁଣାଉଥିଲେ । ବ୍ରିଟିଶ୍ ସରକାର କାନରେ ଏ ସୂଚନା ପଡ଼ିବାକ୍ଷଣି ସେ ଗୁପ୍ତଚରମାନଙ୍କ ଜରିଆରେ ଏହି ପୁସ୍ତକର ଦୁଇଟି ଅଧ୍ୟାୟ ହସ୍ତଗତ କରି ତାକୁ ସ୍କଟ୍‌ଲ୍ୟାଣ୍ଡ ୱାର୍ଡ଼କୁ ହସ୍ତାନ୍ତର କଲେ । ଦୁଇଟି ଅଧ୍ୟାୟ ଉଭେଇଯିବାର ରହସ୍ୟ ବୁଝିବାମାତ୍ରେ ହିଁ ପୁସ୍ତକଟି ପ୍ରକାଶିତ ହେବାର ଆବଶ୍ୟକତା ଗୁରୁତ୍ୱ ଅନୁଭୂତ ହେଲା । ପୁସ୍ତକର ହାତଲେଖା କପିକୁ ଅତ୍ୟନ୍ତ ଗୋପନୀୟତାର ସହ ଭାରତବର୍ଷକୁ ଅଣାଗଲା । କିନ୍ତୁ ସେଥିରେ ଲିଖିତ ବିଷୟବସ୍ତୁକୁ ଦେଖିବାମାତ୍ରେ ହିଁ ଜଣାଗଲା ଯେ ଏହି ପୁସ୍ତକ ପ୍ରକାଶିତ ହେଲେ ସରକାରଙ୍କ ରୋଷଦୃଷ୍ଟିରେ ପଡ଼ିବାକୁ ହେବ, ଏଥିରେ ଦ୍ୱିରୁକ୍ତି ନ ଥିଲା । ସେହି କାରଣରୁ କେହି ମଧ ତାକୁ ପ୍ରକାଶ କରିବାକୁ ରାଜି ହେଲେ ନାହିଁ । ସୋଲାପୁରର 'ସ୍ୱରାଜ୍ୟ' ସାପ୍ତାହିକର ସଂପାଦକ ଶ୍ରୀ ଲିମୟେ ତାହା ଛାପିବାକୁ ସ୍ଥିର କଲେ । କିନ୍ତୁ ଯେପରି ତାଙ୍କ ପୁଲିସ୍ ଚଢ଼ାଉ କରିବାର ସୂଚନା ମିଳିଲା ସେହି ପୁସ୍ତକର ହାତଲେଖା ପାଣ୍ଡୁଲିପିକୁ ଗୋପନରେ ବଡ଼ ଚତୁରତାର ସହିତ ପୁନର୍ବାର ସାବରକରଙ୍କ ନିକଟକୁ ପ୍ୟାରିସ୍ ପଠାଇ ଦିଆଗଲା । ଜର୍ମାନୀରେ ସଂସ୍କୃତ ଭାଷାର ଦେବନାଗରୀ ଲିପିର ଟାଇପ୍ ଉପଲବ୍ଧ ହେଉଥିବାରୁ ତାହାକୁ ଜର୍ମାନୀରେ ଛାପିବାକୁ ସ୍ଥିର କରାଗଲା । କିନ୍ତୁ ସେଠାରେ କେହି ମରାଠୀ ବୁଝିବାଲୋକ ନ ଥିବାରୁ ଏବଂ ମୁଦ୍ରଣ ଅକ୍ଷରର ଅନୁପସ୍ଥିତିରୁ ବହୁ ଧନ ଓ ସମୟର ଅପବ୍ୟୟ ସତ୍ତ୍ୱେ ସମସ୍ତ ଉଦ୍ୟମ ନିଷ୍ଫଳ ହୋଇଗଲା ।

ପରବର୍ତ୍ତୀ କାଳରେ ଏହି ପୁସ୍ତକକୁ ଇଂରାଜୀରେ ପ୍ରକାଶ କରିବାର ନିର୍ଣ୍ଣୟ ନିଆଗଲା ଏବଂ ସାବରକରଙ୍କ ସାହାଯ୍ୟରେ ଏହାର ଅନୁବାଦ ମଧ କରାଗଲା । ଇଂଲଣ୍ଡରେ ଏହି

ପୁସ୍ତକ ପ୍ରକାଶିତ ହୋଇଯିବ– ଏହି ଭୟରେ ବ୍ରିଟିଶ୍ ସରକାର ଛପାହେବା ପୂର୍ବରୁ ଏହା ଉପରେ କଟକଣା ଜାରି କଲେ । ପୁସ୍ତକ ପ୍ରକାଶିତ ହେବା ପୂର୍ବରୁ ଏହା ଉପରେ ଏ ପ୍ରକାର କଟକଣା ଜାରି ହେବା ନିଜେ ନିଜର ଏକ ବିରଳ ଉଦାହରଣ ଅଟେ । ଏହି କଟକଣାକୁ ବିଦ୍ରୂପ କରି ସାବରକରଙ୍କର ଏକ ଲେଖା 'ଲଣ୍ଡନ ଟାଇମ୍ସ'ରେ ଛପାହେଲା ତ ନିଶ୍ଚୟ, ଏହା ସହିତ ନିଜର ପତ୍ରରେ ସେ ନିଜର ଟିପ୍ପଣୀ ବି ଦେଲେ– "ବ୍ୟକ୍ତିଗତ ସ୍ୱତନ୍ତ୍ରତା, ଲେଖକୀୟ ସ୍ୱତନ୍ତ୍ରତାର ଦ୍ୱାହି ଦେଉଥିବା ଇଂଲଣ୍ଡର ଏପରି ବ୍ୟବହାର ନିନ୍ଦନୀୟ ଅଟେ ।" ଏହା ପରେ ସେହି ଇଂରାଜୀ ପୁସ୍ତକ ଇଂଲଣ୍ଡରେ ଛପା ହେଲା ଏବଂ ତା'ର କପି ସାରା ବିଶ୍ୱରେ ଥିବା ହିନ୍ଦୁସ୍ଥାନୀ କ୍ରାନ୍ତିକାରୀ, ସାଧାରଣ ଜନତାଙ୍କ ଯାଏଁ ଗୋପନରେ ପ୍ରେରିତ ହେଲା । କ୍ରାନ୍ତିକାରୀମାନଙ୍କ ପାଇଁ ସ୍ୱାଧୀନତାର ଆକାଙ୍କ୍ଷା ରଖୁଥିବା ଲୋକମାନଙ୍କ ପାଇଁ ଏହି ପୁସ୍ତକ 'ଗୀତା' ପରି ଥିଲା । ପଞ୍ଜାବୀ, ଉର୍ଦ୍ଦୁ, ହିନ୍ଦୀରେ ଏହାର ଅନୁବାଦ ଗୁପ୍ତଭାବରେ ପ୍ରକାଶିତ ହେଲା । ସ୍ୱୟଂ ଭଗତ ସିଂହ, ରାସବିହାରୀ ବୋଷ ଏହାର ସଂସ୍କରଣମାନ ପ୍ରକାଶିତ କଲେ । ଏହି ପୁସ୍ତକ ଏକପ୍ରକାରର ହିନ୍ଦୁସ୍ଥାନୀ ଲୋକଙ୍କ ପାଇଁ ପ୍ରେରଣା ଏବଂ ସ୍ଫୂର୍ତ୍ତିର ପ୍ରତୀକ ପାଲଟିଗଲା । ଚାରିଆଡୁ ଏହି ପୁସ୍ତକ ଉପରେ ଥିବା କଟକଣାକୁ ଉଠାଇବାର ଦାବି ଉଠିଲା କିନ୍ତୁ ସରକାର ନିଜର କାନ ବନ୍ଦ କରି ରଖିଥିଲେ । ୧୯୩୬ରେ ପ୍ରଥମ ପ୍ରାନ୍ତୀୟ ନିର୍ବାଚନ ପରେ ଯେଉଁସବୁ ପ୍ରାନ୍ତରେ କଂଗ୍ରେସର ମନ୍ତ୍ରିମଣ୍ଡଳ ଥିଲା, ସେଠାରେ ମଧ୍ୟ ଏହି କଟକଣାକୁ ଉଠାଇ ଦିଆଗଲା ନାହିଁ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏହି ଦାବି ଆହୁରି ପ୍ରବଳ ହେଲା । ଯଦି କଟକଣା ଉଠା ନ ଯାଏ, ତେବେ ଆଜ୍ଞାର ଅବମାନନା କରି ପୁସ୍ତକ ପ୍ରକାଶ କରିବାର ଘୋଷଣା କରି ଦିଆଗଲା । ଏହି ବିରୋଧ ଯେତେବେଳେ ଚରମ ସୀମାରେ ପହଞ୍ଚିଗଲା ସେତେବେଳେ କଂଗ୍ରେସ ମନ୍ତ୍ରିମଣ୍ଡଳ ୧୯୪୬ ମସିହା ମେ ମାସ ୨୨ ତାରିଖରେ ସାବରକରଙ୍କ ସମସ୍ତ ପୁସ୍ତକ ଉପରୁ ନିଷେଧାଜ୍ଞା ପ୍ରତ୍ୟାହାର କରିନେଲା । ଏହାର ଅନୁବାଦ ଭିନ୍ନ ଭିନ୍ନ ଭାଷାରେ କରାଗଲା । କିନ୍ତୁ ମୂଳ ମରାଠୀ ହାତଲେଖା ଏବେ ବି ନିଖୋଜ ଥିଲା । ପରବର୍ତ୍ତୀ ସମୟରେ ଏହି ଇଂରାଜୀ ପୁସ୍ତକର ମରାଠୀ ଅନୁବାଦ କରି ୧୯୬୫ ମସିହାରେ '୧୮୫୭ର ସ୍ୱତନ୍ତ୍ରତା ସମର' ନାମରେ ଏହାକୁ ପ୍ରକାଶ କରାଗଲା । ଏହି ଗ୍ରନ୍ଥର ମୂଳ ମରାଠୀ ହାତଲେଖା ଗ୍ରନ୍ଥ ବର୍ତ୍ତମାନ ମୁମ୍ବଇର ସ୍ୱତନ୍ତ୍ରତାର ବୀର ସାବରକର ସ୍ମାରକରେ ସଂରକ୍ଷିତ ହୋଇଅଛି ।

ନିଜର ଏହି ପୁସ୍ତକର ପୃଷ୍ଠଭୂମି ସ୍ପଷ୍ଟ କରିବାପୂର୍ବକ ସାବରକର କହିଛନ୍ତି– "ନିଜର ଅତୀତକୁ ଯେଉଁ ରାଷ୍ଟ୍ର ବିସ୍ମୃତ ହୋଇଯାଏ, ତାକୁ ତା'ର ଉଜ୍ଜ୍ୱଳ ଭବିଷ୍ୟଦ୍ କଦାପି ଦେଖାଯାଏ ନାହିଁ । ଏହା ମଧ୍ୟ ସତ୍ୟ ଯେ ରାଷ୍ଟ୍ର ନିମନ୍ତେ କେବଳ ପୂର୍ବପୁରୁଷଙ୍କ ଯଶୋଗାଥା ଗାଇବାକୁ ବସି ନ ଯାଇ, ରାଷ୍ଟ୍ରର ଉଜ୍ଜ୍ୱଳ ଭବିଷ୍ୟଦ୍ ନିର୍ମାଣ ପାଇଁ ତା'ର ଉପଯୋଗ କରିବା ଅତ୍ୟନ୍ତ ଆବଶ୍ୟକ । ଇତିହାସର ଗୋଲାମ ସାଜି ବଞ୍ଚିବା ଅପେକ୍ଷା ରାଷ୍ଟ୍ର ସ୍ୱୟଂ ନିଜର ଇତିହାସ୍ ରଚନା କରି ଗୌରବପୂର୍ଣ୍ଣ ଜୀବନ ଜିଇଁବା ଉଚିତ ।"

"ମୁସଲମାନମାନଙ୍କ ବିଷୟରେ ଶତ୍ରୁତାର ଭାବନା ଶିବାଜୀଙ୍କ ସମୟରେ ନ୍ୟାୟୋଚିତ ଏବଂ ଆବଶ୍ୟକ ହୋଇଥାଇପାରେ, କିନ୍ତୁ ସେହି ସମୟର ସମାଜରେ ହିନ୍ଦୁମାନଙ୍କର ଅନ୍ତରରେ ବସା ବାନ୍ଧିଥିବା ସେହି ଶତ୍ରୁତାର ଭାବନାକୁ ଆଜି ଯୁଗରେ ମଧ ଧରି ରଖିବା ପୂରାପୂରି ଅନ୍ୟାୟପୂର୍ଣ୍ଣ ଏକ ପାଗଳାମି ବୋଲି ପ୍ରମାଣିତ ହେବ ।" ଏହି ସୁସ୍ପଷ୍ଟ ଉଦ୍ଦେଶ୍ୟରେ ସାବରକର ୧୮୫୭ର ଗୌରବଗାଥା ଗାଇଥିଲେ । ସେହି କାରଣରୁ ବ୍ରିଟିଶ୍ ସରକାର ଏହି ପୁସ୍ତକକୁ ପ୍ରକାଶ କରିବାପାଇଁ କୁଣ୍ଠିତ ହେଉଥିଲେ । ସେଥିରୁ ହିନ୍ଦୁସ୍ଥାନୀ ଲୋକଙ୍କୁ ଇଂରେଜମାନଙ୍କ ବିରୋଧରେ ପ୍ରତିଶୋଧ ନେବାର ପ୍ରେରଣା ମିଳୁଥିଲା । ଏହି ପୁସ୍ତକ ୧୮୫୭ରେ ଇଂରେଜମାନଙ୍କ ବିରୋଧରେ ଲଢୁଥିବା ଲୋକଙ୍କ ପ୍ରତି ଏକପ୍ରକାର ଅତ୍ୟନ୍ତ ଆଦର ଓ କୃତଜ୍ଞତାପୂର୍ଣ୍ଣ ଭାବରେ ଲେଖାଯାଇଥିବା ପ୍ରଥମ ପୁସ୍ତକ ଥିଲା । ଏହା ପୂର୍ବରୁ ୧୮୫୭ର ଶେଷ ପର୍ଯ୍ୟାୟରେ ଇଂରେଜମାନେ ଯେତେବେଳେ ଦିଲ୍ଲୀକୁ ନିଜ ଅଧିକାରଭୁକ୍ତ କରିଥିଲେ ଓ ବାହାଦୁରଶାହଙ୍କୁ ଗୃହବନ୍ଦୀ କରି ରଖିଥିଲେ, ତା'ପରେ ଇଂରେଜ ଲେଖକମାନେ ଏହି ଯୁଦ୍ଧ ସହିତ ସଂପର୍କିତ ବହୁ ପୁସ୍ତକ ଲେଖି ପ୍ରକାଶ କଲେ । ଏହି ବିଷୟରେ ଇଂରାଜୀରେ ସହସ୍ର ପୁସ୍ତକ ରଚିତ ହୋଇଅଛି ତଥା ଏବେ ମଧ ଲେଖା ଚାଲିଛି । ସେଥିମଧ୍ୟରୁ ଅଧିକାଂଶ ପୁସ୍ତକ ସେତେବେଳେ ହିନ୍ଦୁସ୍ଥାନରେ ବାସ କରୁଥିବା ତଥା ଏହି ଯୁଦ୍ଧରେ ପ୍ରତ୍ୟକ୍ଷ ବା ପରୋକ୍ଷଭାବେ ଜଡ଼ିତ ଥିବା ଇଂରେଜ ଲେଖକମାନଙ୍କ ଦ୍ୱାରା ଲେଖାଯାଇଛି । ଅଧିକାଂଶ ପୁସ୍ତକରେ ଇଂରେଜମାନଙ୍କ ବିରୋଧରେ ହିନ୍ଦୁସ୍ଥାନୀ ଲୋକମାନଙ୍କ ଦ୍ୱାରା ଏପରି ବିଦ୍ରୋହ କରାଯିବା ନିମନ୍ତେ କ୍ରୋଧ, ଦ୍ୱେଷ ଏବଂ ଭୟ ବ୍ୟକ୍ତ କରାଯାଇଛି । ସେଥିରେ ସେମାନେ ନିଜ ବିଜୟର ଅଭିମାନ ଓ ଆନନ୍ଦ ମଧ ଲିପିବଦ୍ଧ କରିଛନ୍ତି । ବ୍ରିଟିଶ୍ ଶାସକମାନଙ୍କ ଦ୍ୱାରା ହିନ୍ଦୁସ୍ଥାନୀମାନଙ୍କ ଉପରେ ଯେଉଁ କ୍ରୂର ଅତ୍ୟାଚାର କରାଯାଉଥିଲା, ନରସଂହାର କରାଯାଉଥିଲା ସେସବୁ ପ୍ରତି ସେମାନଙ୍କ କୌଣସି ପ୍ରକାର ଅପରାଧବୋଧ ଦେଖାଯାଇ ନାହିଁ । ଉପରନ୍ତୁ ଏହାର ବିପରୀତରେ ସେମାନଙ୍କ ରଚନାରେ ବିଷୋଦ୍‌ଗାର ରହିଛି, ପ୍ରତିଶୋଧର ଆନନ୍ଦ ରହିଛି, ଈଶ୍ୱରଙ୍କ ପ୍ରତି ଶ୍ରଦ୍ଧା ବ୍ୟକ୍ତ ହୋଇଛି ଏବଂ କୃତଜ୍ଞତାର ଭାବନା ରହିଛି ।

## ଲେଖକମାନଙ୍କର ଟୀକା-ଟିପ୍ପଣୀ

୧୮୫୭ର ମୁକ୍ତି ସଂଗ୍ରାମ ପରେ ଭାରତୀୟ ଲେଖକମାନଙ୍କଦ୍ୱାରା ଲେଖାଯାଇଥିବା ପୁସ୍ତକର ସଂଖ୍ୟା ଅତ୍ୟନ୍ତ ନଗଣ୍ୟ । ନାନାସାହେବ ଓ ଲକ୍ଷ୍ମୀବାଈଙ୍କ ଯୋଗୁଁ ତଥା ଇଂରେଜମାନଙ୍କ ସପକ୍ଷରେ ଲଢୁଥିବା ମୁମ୍ବଇ ପଲଟଣରେ ନିଯୁକ୍ତ ସୈନିକମାନଙ୍କ ଯୋଗୁଁ ଏହି ସଂଗ୍ରାମରେ ମରାଠୀ ଭାଷାଭାଷୀଙ୍କ ଯୋଗଦାନ ସର୍ବାଧିକ ଥିଲା । ତଥାପି ମରାଠୀଭାଷୀମାନେ ଏହି ଘଟଣାକୁ ନେଇ ଖୁବ୍ କମ୍ ପୁସ୍ତକ ରଚନା କରିଛନ୍ତି । ବିଶ୍ରାମ ରାଷିଜୀ ଧୋଲେ ସେ ସମୟର ଜଣେ ପ୍ରଗତିବାଦୀ ବିଚାରକ ଏବଂ ପ୍ରଖ୍ୟାତ ଡାକ୍ତର ଥିଲେ । ହ୍ୟୁରୋଜଙ୍କ

ସୈନ୍ୟ ସହିତ ଝାନ୍‌ସୀ-କାଲ୍‌ପୀ ଗୋଆଲିଅର ଯୁଦ୍ଧରେ ଉପସ୍ଥିତ ମଧ୍ୟ ଥିଲେ । ନିଜ ଅନୁଭବ ଉପରେ ଆଧାରିତ ପୁସ୍ତକଟିଏ ସେ କାହିଁକି ଲେଖିଲେ ନାହିଁ ସେ ପ୍ରଶ୍ନ ମନରେ ଉଠେ । ଯଦି ସେହି ପୁସ୍ତକ ଲେଖାଯାଇଥାନ୍ତା, ତେବେ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଦସ୍ତାବିଜ୍ ସବୁଦିନ ପାଇଁ ଉପଲବ୍ଧ ହୋଇପାରିଥାନ୍ତା ।

ଆଲିବାବା ନିକଟରେ ଥିବା ବରସଇ ଗ୍ରାମର ନିବାସୀ ବିଷ୍ଣୁଭଟ୍ଟ ଗୋଡ଼ସେ ନାମକ ଜଣେ ଯୁବକ ବ୍ରାହ୍ମଣ ସେହି ଦଙ୍ଗା-ଫସାଦରେ ଫସି ଯାଇଥିଲେ । ତାଙ୍କ ଉପରେ ଦାରିଦ୍ର୍ୟ ଏବଂ କରଜର ବୋଝ ଅତ୍ୟଧିକ ଥିଲା । ଗୋଆଲିଅରର ବାୟଜାବାଈ ସିନ୍ଧେ ଉତ୍ତରରେ ଏକ ବିଶାଳ ମହାଯଜ୍ଞ କରୁଛନ୍ତି ଓ ସେଠାରେ ମୋଟା ଦକ୍ଷିଣା ପାଇବା ଆଶାରେ ଗୋଡ଼ସେ ଭଟ୍ଟ ଏବଂ ତାଙ୍କର ମାମୁ ମାର୍ଚ୍ଚ ୧୮୫୭ରେ ତୀର୍ଥାଟନ ଦୃଷ୍ଟିରୁ ଉତ୍ତରଦିଗକୁ ପ୍ରସ୍ଥାନ କରିଥିଲେ । ଏହିପରି ଭ୍ରମଣ କରୁ କରୁ ସେମାନଙ୍କୁ ଖବର ମିଳିଲା ଯେ ପୃଥିବୀରେ ଗୋଟିଏ ବଡ଼ ରାଜ୍ୟକ୍ରାନ୍ତି ହେବାର ଅଛି । ଲୁଟ୍‌ପାଟ୍, ମରାମରି ବି ହେବ । ଇଂରେଜମାନଙ୍କର ବୁଦ୍ଧି ଭ୍ରଷ୍ଟ ହୋଇଯାଇଛି, ଏଥିରେ ସନ୍ଦେହ ନାହିଁ । ଧର୍ମ ପାଇଁ ପ୍ରାଣ ଦେଇଦେବୁ କିନ୍ତୁ ବିଧର୍ମୀ ହେବୁ ନାହିଁ । ସମସ୍ତ ସିପାହି ମିଶି ଧର୍ମର ଦ୍ୱାହି ଦେଇ ଅଫିସରମାନଙ୍କୁ ତିନିଥର ମନା କରିଦେବୁ । ଯଦି ସେମାନେ ମାନିବେ ନାହିଁ ତା'ହେଲେ ଯେଉଁ ଯେଉଁ ଛାଉଣୀରେ ଗୋରା ଲୋକ ଥିବେ ତାଙ୍କୁ ହତ୍ୟା କରି ଗୋଳାବାରୁଦ, ମାଗାଜିନ୍ ଏବଂ ଖଜଣାଖାନାକୁ କବ୍‌ଜା କରି ଛାଉଣୀରେ ନିଆଁ ଲଗେଇ ଦିଆଯିବ । ଏହିପରି ଗୋପନ ପରାମର୍ଶ ପତ୍ରଦ୍ୱାରା ପ୍ରେରଣ କରାଯାଇଥିଲା । କିନ୍ତୁ ମାମୁ-ଭଣଜା ଭାବିଲେ ଯେ-ଆମେ ତ ଗରିବ ବ୍ରାହ୍ମଣ, ଧର୍ମକାର୍ଯ୍ୟ ଉଦ୍ଦେଶ୍ୟରେ ବାହାରିଛୁ, ଆମର ଡରିବାର କ'ଣ ଅଛି- ଏହା ଭାବି ସେମାନେ ଯାତ୍ରା ଜାରି ରଖିଲେ । ୧୮୫୭ ନଭେମ୍ବରରେ ସେ ଦୁହେଁ ଝାନ୍‌ସୀରେ ପହଞ୍ଚିଲେ । ସେତେବେଳେ ସେଠାରେ ରାଣୀ ଲକ୍ଷ୍ମୀବାଈଙ୍କର ଶାସନ ଚାଲିଥିଲା । ୪ ଏପ୍ରିଲ୍‌କୁ ରାଣୀ ଝାନ୍‌ସୀରୁ କାଲ୍‌ପୀ ଉଦ୍ଦେଶ୍ୟରେ ଯାତ୍ରା କଲେ, ପରେ ପରେ ଏ ଦୁହେଁ ମଧ୍ୟ ନିଜର ଆଗାମୀ ଯାତ୍ରା ପାଇଁ ବାହାରିଗଲେ । ଶେଷକୁ ୧୮୬୦ ଆଦ୍ୟଭାଗରେ କାଶୀଯାତ୍ରା ସମାପ୍ତ କରି ସେମାନେ ନିଜ ଗାଁକୁ ଫେରିଆସିଲେ । ତା'ପରେ ଗ୍ରାମବାସୀଙ୍କୁ ସେମାନେ ନିଜ ଯାତ୍ରାର ସ୍ମରଣୀୟ ଘଟଣାସବୁ ଶୁଣାଇଲେ । ସେମାନଙ୍କ ବିବରଣୀ ଶୁଣିଲା ପରେ ସେ ସମୟର ଜଣେ ମହତ୍ତ୍ୱପୂର୍ଣ୍ଣ ଲେଖକ, ବିଚାରକ ଚିନ୍ତାମଣି ବିନାୟକ ବୈଦ୍ୟଙ୍କ ଅନୁରୋଧକ୍ରମେ ଏବଂ ସ୍ୱୟଂ ଗୋଡ଼ସେ ଭଟ୍ଟଙ୍କ ଆଗ୍ରହ ହେବାରୁ ସେ ୧୮୮୩ ମସିହାରେ ଯୁଦ୍ଧର ୨୫ ବର୍ଷ ପରେ ସେ ସବୁ ବିବରଣୀ ଲିପିବଦ୍ଧ କରି ସଂପୂର୍ଣ୍ଣ କଲେ ଏବଂ ନିଜର ହାତଲେଖା ପାଣ୍ଡୁଲିପି ଶ୍ରୀ ବୈଦ୍ୟଙ୍କୁ ପ୍ରଦାନ କରିଥିଲେ । ବିଷୟ ଅତ୍ୟନ୍ତ ଜ୍ୱଳନଶୀଳ ଥିଲା, ତେଣୁ ତତ୍‌କାଳୀନ ଆଇନଜ୍ଞ ମହାଦବ ରାଓ ଆପ୍‌ଟେ ଉକ୍ତ ପୁସ୍ତକକୁ ଲେଖକଙ୍କ ଜୀବନାବସ୍ଥାରେ ନ ଛପାଇବାକୁ ପରାମର୍ଶ ଦେଇଥିଲେ । ସେହି କାରଣରୁ ଉକ୍ତ ପୁସ୍ତକର ଛାପାକାମକୁ ସ୍ଥଗିତ ରଖାଯାଇଥିଲା । ଯେତେବେଳେ ଏହି ଯୁଦ୍ଧର ୫୦ ବର୍ଷ ପୂର୍ଣ୍ଣ ହେଲା,

ସେତେବେଳେ "ମାଝାପ୍ରବାସ (ମୋର ପ୍ରବାସ)" ଶୀର୍ଷକରେ ଏକ ପୁସ୍ତକ ପ୍ରକାଶ କରାଗଲା । ଶ୍ରୀ ବୈଦ୍ୟ ଏହି ପୁସ୍ତକକୁ ସଂପାଦିତ କରି ଛପାଇଥିଲେ । ସେଥିରେ ଲୋକମାନଙ୍କର ଅନୁଚିତ ଆଚରଣ ସହିତ ସମ୍ବନ୍ଧିତ ବର୍ଣ୍ଣନାକୁ ସେ ବାଦ ଦେଇଥିଲେ । ଏହା ପରେ ୧୯୬୬ରେ ନ.ର. ଫାଟକ 'ମାଝାପ୍ରବାସ' ନିମନ୍ତେ ପ୍ରସ୍ତାବନା ଲେଖି ତାହା ପ୍ରକାଶ କଲେ ।

୧୯୭୪ରେ ଦ.ବା. ପୋତଦାର ଏଇ ପୁସ୍ତକ ସଂପାଦନ କରି, ସେଥିରୁ ଯେଉଁସବୁ ଅବାଞ୍ଛନୀୟ ଅଂଶ ବାଦ ଦିଆଯାଇଥିଲା, ସେସବୁକୁ ଯୋଗ କରି ଏକ ନୂତନ ସଂସ୍କରଣ ପ୍ରକାଶ କଲେ ।

ବିଷ୍ଣୁଭଟ୍ଟ ନିଜର ଅନୁଭବ ଓ ଶୁଣିଥିବା ବାସ୍ତବତାକୁ ନେଇ ଏହି ପୁସ୍ତକ ରଚନା କରିଥିବାରୁ ଏହାର ନିଜର ଏକ ଅତୁଳନୀୟ ମହତ୍ତ୍ୱ ରହିଛି । ଯୁଦ୍ଧର ହଙ୍ଗାମା, ବିଶେଷତଃ ତାଙ୍କର ଝାନ୍‌ସୀ ସଂପର୍କରେ ପ୍ରତ୍ୟକ୍ଷଦର୍ଶୀ ଅନୁଭବ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଅଟେ । ତାଙ୍କର ବର୍ଣ୍ଣନାର ମୂଳ ଆଧାର ହେଉଛି ତାଙ୍କର ଅନୁଭବ । ତାଙ୍କର ଭାଷା ସକ୍ଷମ ଏବଂ ସଶକ୍ତ । ତାଙ୍କର ପରୀକ୍ଷଣ ଶକ୍ତି ଅତ୍ୟନ୍ତ ପ୍ରଖର ଥିଲା । ମାନବୀୟ ସ୍ୱଭାବର ସୂକ୍ଷ୍ମାତିସୂକ୍ଷ୍ମ ପ୍ରମୁଖ ବୈଶିଷ୍ଟ୍ୟକୁ ଚିହ୍ନିବା କଳା ସହିତ ସେ ପୂରାପୂରି ଅବଗତ ଥିଲେ । ଏହା ସହିତ ତାଙ୍କର ଏହି ପୁସ୍ତକରେ ପ୍ରକୃତିର ସୁନ୍ଦର ବର୍ଣ୍ଣନା ମଧ୍ୟ ମିଳିଥାଏ । ପ୍ରବାସଯାତ୍ରା ସମୟରେ ସେ ଦେଖିଥିବା ବିଶାଳ ଅରଣ୍ୟ, ନାନାବିଧ ବୃକ୍ଷଲତା, ସୁନ୍ଦର ସୁନ୍ଦର ଫୁଲ-ପତ୍ର, ତା'ର ସୁବାସ, ନଈ, ନାଳ, କୂପ, ରାସ୍ତାରେ ଭେଟ ହୋଇଥିବା ଅଲଗା ଅଲଗା ଯାତ୍ରୀ, ଲୋକଙ୍କ ଶ୍ରଦ୍ଧା, ଲୋକଙ୍କ ଆଚରଣ ଇତ୍ୟାଦିର ବର୍ଣ୍ଣନା ସେ ଅତ୍ୟନ୍ତ ସୁନ୍ଦର ଭାବରେ କରିଛନ୍ତି । ତାଙ୍କର ଚତୁଃପାର୍ଶ୍ୱରେ ସେ ସମୟରେ ଯୁଦ୍ଧ ହେଉଥିଲା, ହଣାମରାର ଜ୍ୱାଳାମୁଖୀ ଫିଟି ପଡୁଥିଲା । ତଥାପି ଏହି ବ୍ରାହ୍ମଣଙ୍କର ଚିନ୍ତା ଥିଲା ଯେ ସ୍ନାନ ଏବଂ ପୂଜା କିପରି ହେବ ? ଖାଇବା , ପିଇବା ଓ ପାନ-ତମାଖୁର କ'ଣ ବ୍ୟବସ୍ଥା କରାଯିବ ? କିନ୍ତୁ ଯୁଦ୍ଧର ବିବରଣୀ ଜାଣିବା ପାଇଁ ତାଙ୍କର କୌଣସି ଜିଦ୍ କିମ୍ବା ଅଭିନିବେଶ ଆଦୌ ନ ଥିଲା । ତାଙ୍କୁ ସେହି ଯୁଦ୍ଧ, ସେଠିକାର ବାତାବରଣ, ସେଠାର ଲୋକ ଯେପରି ଦେଖାଯାଇଥିଲେ ସେ ଠିକ୍ ସେହିପରି ନିଜ ପୁସ୍ତକରେ ସେସବୁ ଚିତ୍ରଣ କରିଥିଲେ, ଏହାହିଁ ସେହି ପୁସ୍ତକର ବୈଶିଷ୍ଟ୍ୟ ଅଟେ । ଶେଷରେ ଗୋଡ଼ସେ ଭଟ୍ଟଜୀ ଲେଖିଛନ୍ତି, "ସବୁ ମିଶି ଏହି ଅନୁଭବ ମିଳିଲା ଯେ ଟଙ୍କା ରୋଜଗାର କରିବା କେତେ କଷ୍ଟକର କଥା" ଏହି ପଂକ୍ତିଟି ପଢ଼ିଲେ ହସ ନିଶ୍ଚୟ ଲାଗିବ । ଏହି ଦୃଷ୍ଟିରୁ ମରାଠୀ ସାହିତ୍ୟକୁ ସମୃଦ୍ଧ କରିବା ଦିଗରେ 'ମାଝାପ୍ରବାସ'କୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଓ ଚିତ୍ତାକର୍ଷକ ଗ୍ରନ୍ଥ ଭାବରେ ଗ୍ରହଣ କରାଯିବ । ଅନ୍ୟ ଭାଷାର ଲୋକମାନେ ୧୮୫୭ର ସଂଗ୍ରାମ ବିଷୟରେ ଯେତେବେଳେ ଲେଖାଲେଖି କରନ୍ତି ସେତେବେଳେ 'ମାଝାପ୍ରବାସ' ଗ୍ରନ୍ଥକୁ 'ସନ୍ଦର୍ଭ ଗ୍ରନ୍ଥ' ରୂପରେ ବ୍ୟବହାର କରିଥାନ୍ତି ।

ଏହି ଯୁଦ୍ଧ ପରେ ବହୁବର୍ଷ ବିତିଗଲାଣି ଏବଂ ଧୀରେ ଧୀରେ ଏହି ଯୁଦ୍ଧର ଇତିହାସ, ଝାନ୍‌ସୀର ରାଣୀଙ୍କର ଚରିତ୍ର ଲେଖାହେବା ଆରମ୍ଭ ହେଲାଣି । ଏହି ଦୁଇଟି ଭିତରେ ପାର୍ଥକ୍ୟ ମଧ୍ୟ ଜଣାପଡ଼ିଲାଣି । ଇତିହାସ ଲେଖିବା ସମୟରେ ସରକାରଙ୍କ ରୋଷଦୃଷ୍ଟିରେ ନ ପଡ଼ୁ, ଏ କଥାକୁ ଧ୍ୟାନରେ ରଖି-ଇଂରେଜମାନେ ହିନ୍ଦୁସ୍ଥାନୀମାନଙ୍କୁ ଭଲଭାବରେ ବୁଝି ପାରି ନ ଥିଲେ, ସେମାନଙ୍କ ଧର୍ମୀୟ ଭାବନାକୁ ଆଘାତ ଦେବାରୁ ସିପାହିମାନେ ବିଦ୍ରୋହ କଲେ । ଏପରି କଥା କହି ଏହି ଯୁଦ୍ଧର ପରିଣାମସ୍ୱରୂପ ଲୋକମାନେ ବହୁତ କଷ୍ଟ ପାଇଲେ ବୋଲି ସେମାନଙ୍କ ପ୍ରତି ଦୁଃଖ ଓ ବ୍ୟଥା ବ୍ୟକ୍ତ କରାଯାଇଛି ।

'କେଶରୀ'ର ପ୍ରାକ୍ତନ ସଂପାଦକ ନରସିଂହ ଚିନ୍ତାମଣି କେଲକର ୧୯୪୦ରେ ଫ୍ରାନ୍‌ସର ଜୋଆନ୍ ଅଫ୍ ଆର୍କଙ୍କ ଜୀବନଚରିତ ଲେଖିଲେ ଓ ତା'ର ଶୀର୍ଷକ ଦେଲେ 'ଫ୍ରାନ୍‌ସର ଝାନ୍‌ସୀବାଲୀ' । କାରଣ 'ଝାନ୍‌ସୀବାଲୀ' କହିଲେ ଅନୁପମ ଗୁଣଶୀଳତା ଏବଂ ଆଦର୍ଶବାଦୀ ଆଚରଣର ପରିଚୟ ମିଳିଥାଏ । କେଲ୍‌କରଙ୍କୁ ରାଣୀ ଲକ୍ଷ୍ମୀବାଈଙ୍କଠାରୁ ଜୋଆନ ଅପେକ୍ଷାକୃତ ଶ୍ରେଷ୍ଠ ଲାଗିଛନ୍ତି କାରଣ ସେ ଫ୍ରାନ୍‌ସ ପାଇଁ ଲଢ଼ିଛନ୍ତି, ନିଜର ସ୍ୱାର୍ଥ ପାଇଁ ନୁହେଁ । କିନ୍ତୁ ପୁସ୍ତକର ଶେଷଭାଗରେ ସେ ଲେଖିଛନ୍ତି- ''ଆଜି ହିନ୍ଦୁସ୍ଥାନ ଉପରେ ବିଦେଶୀ ଶାସନ ଥିବାରୁ ଓଜସ୍ୱୀ, ପ୍ରେରଣାଦାୟକ, ରାଷ୍ଟ୍ରଭକ୍ତି, ଲୋକକଲ୍ୟାଣ-ପୋଷକ, ସାହିତ୍ୟର ନିର୍ମାଣ କରିବା ଖୁବ୍ ମୁସ୍କିଲ୍ କାର୍ଯ୍ୟ ଅଟେ, ଏହା ଏକ ତତ୍କାଳୀନ ସତ୍ୟ ଓ ତଥ୍ୟ ଅଟେ । ଲେଖନୀ ଉପରେ ଆଇନ୍‌ର କଟକଣା ପଦେ ପଦେ ବାଧା ସୃଷ୍ଟି କରୁଥିଲା । ଏପରି ପରିସ୍ଥିତିରେ ଇଂରେଜମାନେ ସ୍ୱୟଂ ଯେଉଁ ନାରୀଙ୍କର ଗୁଣ-ଗୌରବ ଗାନ କରୁଥିଲେ ସେହି ଜୋଆନଙ୍କର ଚରିତ୍ରକୁ ଯଦି ଆମେ ଆମ ତରୁଣ ତରୁଣୀଙ୍କୁ ପଢ଼ିବାକୁ ଦେବା ତ କାଇଦା କଟକଣାର ବନ୍ଧନକୁ ଅତିକ୍ରମ କରି ସେମାନଙ୍କ ପ୍ରାଣରେ ଦେଶପ୍ରେମର ଉନ୍ମାଦନା ଜାଗ୍ରତ ହେବ । ଏହି ପ୍ରତୀକ୍ଷା ଅଛି ଏବଂ ଏହା ସଫଳ ହେଉ ଏପରି ପ୍ରାର୍ଥନା ମଧ୍ୟ ଅଛି । ଏହାର ଅର୍ଥ ହିନ୍ଦୁସ୍ଥାନୀ ଲୋକଙ୍କ ମନରେ ମୁକ୍ତିର ଜ୍ୱାଳା ପ୍ରଜ୍ୱଳିତ କରିବାପାଇଁ ଝାନ୍‌ସୀ ରାଣୀଙ୍କ ଚରିତ ଲେଖିବା ବଦଳରେ ତାଙ୍କୁ ବିଦେଶିନୀ ଜୋଆନଙ୍କ ଚରିତ ଲେଖିବାକୁ ହେଲା । କାରଣ ଇଂରେଜଙ୍କ ସହିତ ଲଢ଼େଇ କରିଥିବା ଫ୍ରାନ୍‌ସର ଜୋଆନଙ୍କ ସମ୍ବନ୍ଧରେ ଚାରିଶହ ବର୍ଷ ପରେ ଇଂରେଜମାନଙ୍କର ପରିବର୍ତ୍ତନ ହୋଇଥିଲା । ଇଂରେଜମାନେ ତାଙ୍କୁ ସନ୍ଥ ଉପାଧିରେ ଭୂଷିତ କରିଥିଲେ ।

ବ୍ରିଟିଶ ସରକାରଙ୍କ ପ୍ରତି ମନରେ ଏତେ ଭୟ ଥାଇ ଏହି ସଂଗ୍ରାମକୁ ମୁକ୍ତି-ଯୁଦ୍ଧ କହିବା, ଏଥିରେ ଅଗ୍ରଣୀ ବ୍ୟକ୍ତିମାନଙ୍କୁ ସମ୍ମାନ କରିବା କେତେ ଦୂରୁହ କାର୍ଯ୍ୟ ଥିଲା, ଏକଥା ଦୃଷ୍ଟି ଆକର୍ଷଣର ଅପେକ୍ଷା ରଖେ । କିନ୍ତୁ ଯେତିକି ଯେତିକି ଲୋକମାନଙ୍କୁ ସ୍ୱତନ୍ତ୍ରତାର ବାସ୍ତବ ଅର୍ଥ ଧୀରେ ଧୀରେ ବୁଝାପଡ଼ିଲା, ସେତିକି ସେତିକି ସେମାନଙ୍କ ମନରୁ ଆତଙ୍କ ଊଣା ହେବାକୁ ଲାଗିଲା । ତଥାପି ଲୋକଙ୍କ ମନରୁ ଡର କମିଲା ନାହିଁ ବରଂ ଭିନ୍ନ ବିଚାରରେ ଜଡ଼ ଦୃଢ଼ ହେବାକୁ ଲାଗିଲା । ବ୍ରିଟିଶ୍‌ମାନଙ୍କ ଯୋଗୁଁ ସାମନ୍ତବାଦର ବିନାଶ ହୋଇ ଆଧୁନିକ

ବିଚାରର ଭିତ୍ତି ଦୃଢ଼ ହେବାରେ ଲାଗିଲା ଏହା ସତ୍ୟ ବି ଥିଲା ଏବଂ ଏହାର ସ୍ୱାଗତ ମଧ୍ୟ କରାଗଲା । ଜ୍ୟୋତିବା ଫୁଲେ ୧୮୭୩ରେ 'ଗୋଲାମଗିରି'ରେ ସର୍ବପ୍ରଥମେ ଏହାର ଚର୍ଚ୍ଚା କଲେ । ଫୁଲେ କହିଲେ "ଈଶ୍ୱରଙ୍କ କୃପାରୁ ଦଳିତମାନଙ୍କ ଉପରେ ଦୟା କରି ଇଂରେଜମାନେ ବ୍ରାହ୍ମଣମାନଙ୍କ ଉପଦ୍ରବ ସମାପ୍ତ କରିଦେଲେ ।" ଏହା ଖୁବ୍ ଭଲ ହେଲା କାହିଁକିନା ଇଂରେଜ ଶାସନ ହେତୁ ଜାତିପ୍ରଥାର ଚକ୍ରରେ ଆବଦ୍ଧ ଦଳିତମାନେ ଶାନ୍ତିରେ ନିଃଶ୍ୱାସ ମାରିଲେ । ଫୁଲେଙ୍କର ଏପରି ବକ୍ତବ୍ୟ ସ୍ୱୟଂ ଏକ ବାସ୍ତବିକତା ଥିଲା । ତତ୍‌ସହିତ ପାଶ୍ଚାତ୍ୟ ବିଚାରଧାରାର ପରିଚୟ ପାଇଥିବା, ନିଜର ପ୍ରାଚୀନ ପରମ୍ପରା, ରୀତି-ନୀତିକୁ ବୋଝ ଭାବୁଥିବା, ପ୍ରାଚୀନ ସମାଜ-ବ୍ୟବସ୍ଥା, ବ୍ୟକ୍ତିଗତ ଅଧିକାରରେ ସଂଶୋଧନର ଆବଶ୍ୟକତା ଅନୁଭବ କରୁଥିବା, ସମାନତା ଓ ସମାନ ନ୍ୟାୟର ମହତ୍ତ୍ୱ ବୁଝୁଥିବା ନ୍ୟାୟମୂର୍ତ୍ତି ରାଣାଡ଼େଙ୍କ ପରି ସୁଧାରବାଦୀ, ବିଚାରଶୀଳ ବ୍ୟକ୍ତିମାନେ ଏହି ଯୁଦ୍ଧ ପ୍ରତି ଉଦାସୀନତା ପ୍ରଦର୍ଶନ କରିଥିଲେ ।

ବାହାଦୁରଶାହ ଜଫରଙ୍କ ଦୂତ ସାଜି ରାଜା ରାମମୋହନ ରାୟ ତ ବାଦଶାହଙ୍କୁ ଜଣେଇଲେ ଯେ- "ନିଜ ଅଧିକାର ପାଇଁ ପ୍ରଯତ୍ନ କରିବା ବଦଳରେ କମ୍ପାନୀ ସରକାରଙ୍କଦ୍ୱାରା ପ୍ରଦତ୍ତ ପେନ୍‌ସନ ସ୍ୱୀକାର କରିନେଇ ତାଙ୍କର ଲାଲକିଲ୍ଲା ତ୍ୟାଗ କରି ମହରୋଲି ଗାଁରେ ଥିବା ମହଲରେ ରହିବା ଉଚିତ ।" ଏଠାରେ ଏକଥା ମଧ୍ୟ ବିଶେଷଭାବରେ ଜଣାଇବା ଜରୁରି ଯେ ଇଂରେଜ ଶାସନର ବିରୋଧ ମୂଳରେ କୌଣସି ତାର୍କିକ ବିଚାର ଦେଖା ଦେଇ ନ ଥିଲା । ବିଦେଶୀ ସତ୍ତାକୁ ଉତ୍ପାଟନ କରି ଫିଙ୍ଗିଦେବାବେଳେ, ସ୍ୱରାଜ୍ୟର, ସ୍ୱାଧୀନତାର ଉନ୍ମାଦନା ଥିଲା ନିଶ୍ଚୟ କିନ୍ତୁ ସେତେବେଳେ ସେହି ବିଦେଶୀ ଶାସନର ସଚ୍ଚା ସ୍ୱରୂପର ପରିଚୟ ଯେ ମିଳିଥିଲା ଏହା ସ୍ପଷ୍ଟ ଜଣାଯାଏ ନାହିଁ । ଏହି ପରିଚୟ ଶିବାଜୀ ମହାରାଜଙ୍କୁ ମିଳିଥିଲା । "ଇଂରେଜଙ୍କର ପ୍ରଭୁତ୍ୱ ସାହୁକାରଙ୍କ ପରି ନ ଥିଲା ।" ତାଙ୍କର ଏହି ବାକ୍ୟ ପ୍ରସିଦ୍ଧ ଅଟେ । ସେହିପରି ରାଘୋବାଙ୍କ ପତ୍ନୀ ଆନନ୍ଦୀବାଈ ଯେତେବେଳେ ନଜରବନ୍ଦୀ ଥିଲେ, ଧାରରୁ ନାନା ଫଡ଼ନବିସ୍‌ଙ୍କୁ ଲେଖିଥିବା ପତ୍ରରେ ସେ କହିଥିଲେ ଯେ "ଫିରିଙ୍ଗିମାନଙ୍କ ପ୍ରତି ସାବଧାନ ରୁହ, ସେମାନଙ୍କୁ ନିଜ ରାଜନୀତିରେ ସାମିଲ ହେବାକୁ ଦିଅ ନାହିଁ" ଓ ନିଜେ ନାନା ଫଡ଼ନବିସ୍ ଏ ସଂପର୍କରେ ଅତ୍ୟନ୍ତ ସଚେତନ ଥିଲେ । ଏହି କାରଣରୁ "ନାନା ଫଡ଼ନବିସ୍‌ଙ୍କ ଜୀବିତ ଥିବାଯାଏଁ ପୁନେର ଇଂରେଜମାନଙ୍କର ପାଦ ସୁଦୃଢ଼ ହେବା କଷ୍ଟକର ହୋଇପଡ଼ିବ" ଇଂରେଜମାନଙ୍କ ମନରେ ଏପରି ପୂରା ବିଶ୍ୱାସ ଥିଲା ।

ନାନାସାହେବ ପେଶବାଙ୍କ ଚିଠିପତ୍ରରୁ କମ୍ପାନୀ ସରକାରଙ୍କ ଦ୍ୱାରା ଲଗାଯାଇଥିବା କରର ବୋଝ, ସେମାନଙ୍କ ଦ୍ୱାରା କରାଯାଉଥିବା ଲୁଟ୍‌ପାଟ, ମାଲଗୁଜାରୀ ଆଦାୟ କରିବା, ରାଜ୍ୟମାନଙ୍କ ଉପରେ ଅନଧିକାର କବ୍‌ଜା କରିବା, ଅଥବା ରାଜ୍ୟର ରାଜାମାନଙ୍କୁ ନିଜର ଅଧୀନ କରିବାର ପ୍ରଯତ୍ନ ଆଦି ବିଷୟର ଉଲ୍ଲେଖ ମିଳିଥାଏ । କିନ୍ତୁ ଏକ ବିଦେଶୀ ସତ୍ତାକୁ ଆମ ଉପରେ ଶାସନ କରିବାର ନୈତିକ ଅଧିକାର ନାହିଁ, ଯା'ଠାରୁ ବି ମହତ୍ତ୍ୱପୂର୍ଣ୍ଣ କଥା

ହେଲା ଯେ ଇଂରେଜ ଶାସନର ତାତ୍ପର୍ଯ୍ୟ ହେଉଛି ଉପନିବେଶବାଦୀ ସତ୍ତାର ପ୍ରତିଷ୍ଠା ହେବା, ଆମରି ଅର୍ଥରୁ ସେମାନେ ନିଜର ପୁଞ୍ଜି ନିର୍ମାଣ କରି ସେହି ପୁଞ୍ଜି ଜରିଆରେ ଆମକୁ ଶୋଷଣ କରିବାର ଅଧିକାର ଇଂରେଜମାନଙ୍କର ନାହିଁ, ଏପରି ବିଚାର କେବେହେଲେ ପ୍ରସ୍ତୁତ କରାଯାଇ ନ ଥିଲା ।

ତତ୍କାଳୀନ ବିଦ୍ୱାନ୍‌ମାନଙ୍କ ମନକୁ ମଧ୍ୟ ଏହି ବିଚାର କାହିଁକି ଆସି ନ ଥିଲା ? କ'ଣ ଏପରି ନୁହେଁ ଯେ ଇଂରେଜ ଶାସନ ଚାଲିଗଲା ପରେ ପୁନରାୟ ପୂର୍ବବତ୍ ମୋଗଲ, ପେଶବା, ନବାବମାନଙ୍କର ଶାସନ ଫେରି ନ ଆସିବ, ଏହି ବିଚାର ସେମାନଙ୍କୁ ଆତଙ୍କିତ କରୁଥିଲା ? ନୂତନ ବିଚାରଧାରା ଏବଂ ଯନ୍ତ୍ର-ଯୁଗ ଫଳରେ ପଶ୍ଚିମରେ ଆସିଥିବା ଜାଗରଣ, ପ୍ରଗତି ସେମାନଙ୍କୁ ଦେଖାଯାଉଥିଲା, ଆମେ ଏଥିରୁ ବଞ୍ଚିତ ହୋଇ ନ ରହୁ ଏହି ଇଚ୍ଛାରୁ ବିଚାରକମାନେ ନିଜକୁ ଏହି ଯୁଦ୍ଧରୁ ହୁଏତ ଦୂରେଇ ରଖିଥିବେ, ଏପରି ଅନୁମାନ କରାଯାଇପାରେ । ସେତେବେଳେ ସେମାନେ ଯଦି ଯନ୍ତ୍ରସଭ୍ୟତା ସହିତ ପ୍ରବେଶ କରିବାକୁ ଥିବା ଉପନିବେଶବାଦ ଏବଂ ପୁଞ୍ଜିବାଦର ପ୍ରକୃତ ସ୍ୱରୂପକୁ ଚିହ୍ନି ଇଂରେଜ ବିରୋଧୀ ସଂଗ୍ରାମକୁ ତାତ୍ତ୍ୱିକ ରୂପ ପ୍ରଦାନ କରିଥାନ୍ତେ ତା'ହେଲେ ସେହି ସମୟରେ ହିଁ ଇଂରେଜ ଶାସନର ସମାପ୍ତି ଘଟିଥାନ୍ତା ଏବଂ ବୃଦ୍ଧି ପାଉଥିବା ଉପନିବେଶବାଦକୁ ଆରମ୍ଭରୁ ମାଟିତଳେ ପୋତି ଦିଆଯାଇପାରିଥାନ୍ତା । ପରବର୍ତ୍ତୀ ସମୟରେ ତିଲକ-ଆଗରକରଙ୍କ ସହିତ ନ୍ୟାୟମୂର୍ତ୍ତି ରାଣାଡ଼େ, ଫିରୋଜଶାହ ମେହେତା ଆଦି ଇଂରେଜମାନଙ୍କ ଦ୍ୱାରା କରାଯାଉଥିବା ଲୁଟ୍‌ପାଟ୍‌ର ଲେଖାଲେଖି ପ୍ରସ୍ତୁତ କଲେ । ସେତେବେଳେ ଯାଇ ଉପନିବେଶବାଦର ପ୍ରକୃତ ସ୍ୱରୂପ ସ୍ପଷ୍ଟଭାବେ ପରିଲକ୍ଷିତ ହେଲା । ଏହି ବିଷୟ ୧୮୫୭ରେ ପ୍ରସ୍ତୁତ କରାଯାଇଥାନ୍ତା ତ ଫରାସୀ ରାଷ୍ଟ୍ରବିପ୍ଳବ, ଆମେରିକା ରାଷ୍ଟ୍ରବିପ୍ଳବକୁ ଯେଉଁ ସୈଦ୍ଧାନ୍ତିକ ସମର୍ଥନ ମିଳିଥିଲା ସେହିପରି ସମର୍ଥନ ଉକ୍ତ ସ୍ୱତନ୍ତ୍ରତା-ସଂଗ୍ରାମକୁ ମିଳିପାରିଥାନ୍ତା । ଏହାର ଅର୍ଥ ଏହି ଯୁଦ୍ଧ ଏକପ୍ରକାର ରାଷ୍ଟ୍ରବିପ୍ଳବ ନ ଥିଲା, ଏପରି କୁହାଯାଇପାରେ । କିନ୍ତୁ ଏହା କଦାପି ନୁହେଁ ଯେ ଏହା ମୁକ୍ତି-ସଂଗ୍ରାମ ନ ଥିଲା, ଯଦି ଏହା ରାଜ୍ୟକ୍ରାନ୍ତି ହୋଇଥାନ୍ତା ତା'ହେଲେ ଏସିଆ ଭୂଖଣ୍ଡରେ ନା ଉପନିବେଶବାଦ ଓ ପରାଧୀନତାର ବୀଜ ରୋପିତ ହୋଇଥାନ୍ତା ନା ଏହାର ବିଶାଳ ବୃକ୍ଷ ଠିଆ ହୋଇଯାଆନ୍ତା ।

୧୮୫୭ର ସଂଗ୍ରାମକୁ ନେଇ ଗର୍ବ କରିବା ମାନେ ଯୁଦ୍ଧ ଓ ହିଂସାକୁ ନେଇ ଗର୍ବ କରିବା ବୁଝାଯାଉଥିଲା । ସେଥିପାଇଁ ଗାନ୍ଧିଯୁଗ ଆରମ୍ଭ ହେଲା ପରେ ଏହାର ଚର୍ଚ୍ଚା ଏଠା ଲୋକଙ୍କୁ ମଞ୍ଜୁର ନ ଥିଲା । ୧୮୫୭ରୁ ୧୯୪୭ ପର୍ଯ୍ୟନ୍ତ କାଳଖଣ୍ଡରେ ସ୍ୱତନ୍ତ୍ରତା ଆନ୍ଦୋଳନର ଯେଉଁ କ୍ରମିକ ବିକାଶ ହେଲା, ତାହା ଗୋଟିଏ ପକ୍ଷରେ ଇଂରେଜଙ୍କ ବିରୋଧରେ ପ୍ରତ୍ୟକ୍ଷ ଯୁଦ୍ଧ, କ୍ରାନ୍ତିକାରୀମାନଙ୍କର ସଶସ୍ତ୍ର ବିଦ୍ରୋହ, ନରମ ଦଳ, ଗରମ ଦଳର ରାଜନୀତି ଏବଂ ଶେଷରେ ଅହିଂସା ମାଧ୍ୟମରେ ବିରୋଧ ପ୍ରଦର୍ଶନ ଥିଲା । ସଶସ୍ତ୍ର କ୍ରାନ୍ତିକାରୀମାନେ

ଏକପ୍ରକାର ପଥଭ୍ରଷ୍ଟ ଦେଶଭକ୍ତ, ସେମାନଙ୍କ ସଂପର୍କରେ ଏହିପରି ଧାରଣା ପୋଷଣ କରାଗଲା । ଏହି ଯୁଦ୍ଧକୁ ସ୍ୱତନ୍ତ୍ରତା ଯୁଦ୍ଧ କହିବା ସେମାନଙ୍କର ପସନ୍ଦ ନ ଥିଲା ।

ସ୍ୱତନ୍ତ୍ରତା ପ୍ରତି ଉତ୍ସାହ, ଦେଶ ପ୍ରତି ପ୍ରତିବଦ୍ଧତା, ରାଷ୍ଟ୍ରଭକ୍ତିର କଳ୍ପନା ସ୍ୱଷ୍ଟ ନ ହେବା ଫଳରେ ଆଜି ମଧ୍ୟ ସମାଜର ବ୍ୟାପକ ଭାବରେ ବିଚାରଧାରାରେ ବିସଙ୍ଗତି ଦେଖାଦେଉଛି । ସେଥିରେ ରାଷ୍ଟ୍ରୀୟ–ଆନ୍ତଃରାଷ୍ଟ୍ରୀୟ, ଆର୍ଥିକ ହିତସଂପର୍କ ଏବଂ ଧର୍ମୀୟ ଆସ୍ଥାର ରାଜନୀତିକ ଦ୍ୱନ୍ଦ୍ୱ ଯୋଗୁଁ ଏହି ବିସଙ୍ଗତି ଆହୁରି ଅଧିକ ଜଟିଳ ହୋଇପଡ଼ିଛି ।

କିନ୍ତୁ ସମାଜବାଦର ପ୍ରଣେତା କାର୍ଲମାର୍କ୍ସ ଏବଂ ତାଙ୍କର ମିତ୍ର ଫ୍ରେଡ଼େରିକ ଏଙ୍ଗେଲ୍ସ ଏହି ଯୁଦ୍ଧ ସଂପର୍କରେ ଗୌରବପୂର୍ଣ୍ଣ ବକ୍ତବ୍ୟ ପ୍ରଦାନ କରିଛନ୍ତି । ଦୁହେଁ ଏହି ଯୁଦ୍ଧ ସଂପର୍କରେ 'ନ୍ୟୁୟର୍କ ଟାଇମ୍ସ'ରେ ଲେଖା ଲେଖିଥିଲେ । ଦୁହିଁଙ୍କ ମଧ୍ୟରେ ପତ୍ର ବିନିମୟ ମଧ୍ୟ ହୋଇଥିଲା । ୧୯୫୯ରେ ସେମାନଙ୍କ ଦ୍ୱାରା ଲିଖିତ 'The First Indian War of Independence' ପ୍ରଥମଥର ପାଇଁ ପ୍ରକାଶିତ ହୋଇଥିଲା । ୧୮୫୭ରୁ ୧୮୫୮ ମଧ୍ୟରେ ଲେଖାଯାଇଥିବା ଲେଖା ଏବଂ ପତ୍ରରେ ମାର୍କ୍ସ କହିଥିଲେ ଯେ, ସାମ୍ରାଜ୍ୟବାଦୀ ଉପନିବେଶବାଦୀ ଇଂଲଣ୍ଡ ଯୋଜନାବଦ୍ଧ ତଥା ଅମାନୁଷିକ ଭାବରେ ଭାରତୀୟମାନଙ୍କର ଶୋଷଣ କରିଥିଲା । ହିନ୍ଦୁସ୍ଥାନୀ ଲୋକଙ୍କର ସ୍ୱାଭିମାନ, ରାଷ୍ଟ୍ରୀୟ ଭାବନାକୁ ପୀଡ଼ିତ ହୋଇଥିଲା, ସେମାନଙ୍କର ଧନସମ୍ପତ୍ତି ଲୁଟ୍ ହୋଇଥିଲା, ରାଜା–ମହାରାଜାମାନଙ୍କର ରାଜ୍ୟ ଛଳ–କପଟରେ ହଡ଼ପ କରାଯାଇଥିଲା, ଗରିବ ଚାଷୀମାନଙ୍କୁ ପୂରାପୂରି ଶୋଷଣ କରି ସେମାନଙ୍କୁ ଭୋକିଲା କାଙ୍ଗାଳ ବନାଇ ଦିଆଯାଇଥିଲା । ଏହି ସମସ୍ତ କାରଣରୁ ସଂତପ୍ତ ହିନ୍ଦୁସ୍ଥାନୀ ସିପାହିମାନେ ବିଦ୍ରୋହ କଲେ ଏବଂ ମୁସଲମାନ ବାଦଶାହଙ୍କୁ ରାଜଗାଦିରେ ବସାଇଲେ । ସେମାନଙ୍କର ଏହି ବିଦ୍ରୋହ କେବଳ ସିପାହିମାନଙ୍କର ବିଦ୍ରୋହ ନ ଥିଲା, ଏହା ଏକରକମର ସ୍ୱତନ୍ତ୍ରତା ଯୁଦ୍ଧ ହିଁ ଥିଲା । ୧୮୫୮ ମସିହା ଜାନୁୟାରୀ ୧୪ ତାରିଖରେ ଏଙ୍ଗେଲ୍ସଙ୍କୁ ଲେଖିଥିବା ଚିଠିରେ ଲେଖିଥିଲେ– "ହିନ୍ଦୁସ୍ଥାନ ଆମର ସବୁଠୁଁ ନିକଟତମ ମିତ୍ର ଦେଶ ଅଟେ ।" ଅର୍ଥ, ଭାରତୀୟ ସମାଜବାଦୀମାନଙ୍କୁ ଯାହା ବିଦ୍ରୋହ ପ୍ରତୀତ ହେଉଥିଲା ତାକୁ ହିଁ ସମାଜବାଦର ଜନକ ମାର୍କ୍ସଙ୍କୁ ସ୍ୱାଧୀନତାସଂଗ୍ରାମ ପରି ପ୍ରତୀତ ହେଉଥିଲା । ବିରୋଧୀଦଳର ନେତା ଡିଜି ରାଏଲୀ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ପ୍ରଶ୍ନ କରିଥିଲେ "ହିନ୍ଦୁସ୍ଥାନରେ ବ୍ୟାପିଥିବା ଅସନ୍ତୋଷ ସିପାହି ବିଦ୍ରୋହର ସଙ୍କେତ ଅଟେ ନା ଏହା ରାଷ୍ଟ୍ରୀୟ କ୍ରାନ୍ତି ଅଟେ ? ସିପାହିମାନଙ୍କର ଆଚରଣ ପଛରେ ତତ୍କାଳୀନ କୌଣସି କାରଣର ପ୍ରେରଣା ଥିଲା ଅଥବା ଏହା ପଛରେ କୌଣସି ଏକ ସୁନିୟୋଜିତ ଷଡ଼ଯନ୍ତ୍ର ଥିଲା ? (ମାର୍କ୍ସ, ଏଙ୍ଗେଲ୍ସ ପୃ. ୧୪୦) ।

ଆଜିର ଧର୍ମନିରପେକ୍ଷ ଗଣତାନ୍ତ୍ରିକ ଯୁଗରେ ପ୍ରଗତିବାଦୀ ଲୋକମାନଙ୍କ ପାଇଁ ଏହା ମାନିବା କଷ୍ଟକର ହୁଏ ଯେ ଏହି ଲଢ଼ାଇ ସ୍ୱଧର୍ମ ପାଇଁ ଥିଲା । କିନ୍ତୁ ଦେଢ଼ଶହ ବର୍ଷ ପୂର୍ବର ହିନ୍ଦୁସ୍ଥାନରେ ସ୍ୱଧର୍ମ ଓ ସ୍ୱରାଜ୍ୟ ମଧ୍ୟରେ ସୀମାରେଖା ଅତ୍ୟନ୍ତ ଅସ୍ୱଷ୍ଟ ଥିଲା ।

ଯେଉଁଠାରେ କୌଣସି ବାଧା ପ୍ରତିବନ୍ଧକ ନ ଥାଇ ନିଜ ଧର୍ମ ପାଳନ କରିହୁଏ, ତାକୁ ହିଁ ସ୍ୱରାଜ୍ୟ କୁହାଯାଉଥିଲା । ସେତେବେଳେ ସ୍ୱରାଜ୍ୟର ସ୍ୱତନ୍ତ୍ରତା ନିମନ୍ତେ ଏହିପରି ସିଧାସାଧା ବ୍ୟାଖ୍ୟା କରାଯାଉଥିଲା ।

ଏହି ଯୁଦ୍ଧରେ ଇଂରେଜ ସେନାପତିମାନଙ୍କ ମଧ୍ୟରେ ସାର୍ ମେଜର ଜେନେରାଲ ହେନେରୀ ହେବୋଲକ୍‌ଙ୍କ ଭୂମିକା ସବୁଠୁଁ ବେଶି ମହତ୍ତ୍ୱପୂର୍ଣ୍ଣ ଥିଲା । ଲକ୍ଷ୍ନୌ ରେସିଡେନ୍‌ସିରେ ବନ୍ଦୀ ଥିବା ଶହ ଶହ ଇଂରେଜମାନଙ୍କୁ ଉଦ୍ଧାର କରିବାରେ ହେବଲକ୍ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ପରବର୍ତ୍ତୀ କାଳରେ ଅତ୍ୟଧିକ ପରିଶ୍ରମ ଓ ଅସୁସ୍ଥତା ହେତୁ ସେ ମୃତ୍ୟୁବରଣ କରିଥିଲେ । ଲଣ୍ଡନ ସହରର ବିଶ୍ୱବିଖ୍ୟାତ ଟ୍ରାଫଲ୍‌ଗାର ସ୍କୋୟାରର ପ୍ରଶସ୍ତ ପ୍ରାଙ୍ଗଣରେ ହେବଲକ୍‌ଙ୍କର ଭବ୍ୟ ଏବଂ ସୁନ୍ଦର ପ୍ରତିମା ସ୍ଥାପନ କରି ତାଙ୍କର ସ୍ମାରକୀ ନିର୍ମାଣ କରାଯାଇଛି । ପ୍ରତିମା ଲଗାହୋଇଥିବା ଚଉତରା ଉପରେ ହେବଲକ୍‌ଙ୍କର ଶୌର୍ଯ୍ୟଗାଥାକୁ ଏହିପରି ଶବ୍ଦରେ ବର୍ଣ୍ଣନା କରାଯାଇଛି ଯେ– ''ନିଜ ଦେଶର ପ୍ରତିଷ୍ଠା ପାଇଁ ନିଜର ସର୍ବସ୍ୱ ଅର୍ପଣ କରିଥିବା ହେବଲକ୍‌ଙ୍କୁ ତାଙ୍କର ନିଜ ଦେଶ କେବେ ଭୁଲିପାରିବ ନାହିଁ ।'' ସେହି ସ୍ମାରକର ପାଦଦେଶରେ ଲେଖାଯାଇଥିବା ଶବ୍ଦକୁ ପଢ଼ିଲେ ମନରେ ଏହି ଭାବନା ଉଠେ ଯେ ଇଂରେଜମାନେ ହୃଦୟରେ ନିଜର ମୁଖ୍ୟ ସେନାପତିଙ୍କର ଗୌରବଗାନ କରିଥିଲେ, କିନ୍ତୁ ଆମେ ୧୮୫୭ର ମୁକ୍ତିସଂଗ୍ରାମରେ ବିଦେଶୀ ସତ୍ତା ବିରୋଧରେ ଲଢ଼ିବାବାଲାଙ୍କ ଉଦ୍ଦେଶ୍ୟକୁ ନେଇ ଦ୍ୱନ୍ଦରେ ପଡ଼ିବା ପରି ତ୍ରୁଟିପୂର୍ଣ୍ଣ ପରିଭାଷା ତିଆରି କରିବାରେ ଲାଗିପଡ଼ୁଛୁ । କେବଳ ଏତିକି ନୁହେଁ ସମସ୍ତ ବିଷୟକୁ ସନ୍ଦେହ ବଳୟ ଭିତରେ ରଖି ଦେଖିବାର ପ୍ରୟାସ ମଧ୍ୟ କରୁଛୁ ।

ଏହି ବର୍ଷ ୧୮୫୭ର କ୍ରାନ୍ତିକୁ ୧୫୦ ବର୍ଷ ପୂରିଗଲା । ସରକାରଙ୍କ ତରଫରୁ ଏହି ଅବସରରେ ଅନେକ କାର୍ଯ୍ୟକ୍ରମ ମଧ୍ୟ ଆୟୋଜନ କରାଗଲା । ତଥାପି ମଧ୍ୟ ଆଜି କିଛି ବିଶିଷ୍ଟ ଚିନ୍ତାନାୟକ ୧୮୫୭କୁ ସ୍ୱାଧୀନତା-ସଂଗ୍ରାମ ବୋଲି ମାନନ୍ତି ନାହିଁ, ତାକୁ 'ବିପ୍ଳବ' କହନ୍ତି । ଏହି ବିଦ୍ରୋହକୁ ସାଧାରଣତଃ 'ସିପାହି ବିଦ୍ରୋହ' ମଧ୍ୟ କୁହାଯାଏ । ଏପରି ପରିସ୍ଥିତିରେ ଆମକୁ ଏ ବିଷୟରେ ମଧ୍ୟ ଧ୍ୟାନ ଦେବାକୁ ହେବ ଯେ ଆଜିପର୍ଯ୍ୟନ୍ତ ୧୮୫୭ର ମୁକ୍ତି-ଯୁଦ୍ଧକୁ ଯେଉଁମାନେ ସାମନ୍ତବାଦୀମାନଙ୍କଦ୍ୱାରା ନିଜ ସ୍ୱାର୍ଥ ପାଇଁ କରାଯାଇଥିବା ବିଦ୍ରୋହ ବୋଲି କହିଛନ୍ତି, ସେମାନଙ୍କର ନେତା କମ୍ୟୁନିଷ୍ଟ ପାର୍ଟି (ମାର୍କ୍ସବାଦୀ)ର ପ୍ରମୁଖ ପଶ୍ଚିମବଙ୍ଗର ପୂର୍ବତନ ମୁଖ୍ୟମନ୍ତ୍ରୀ ଜ୍ୟୋତି ବସୁ ନିକଟରେ 'ପିପୁଲ୍‌ସ ଡେମୋକ୍ରାସି' ନାମକ ପତ୍ରିକାରେ କହିଛନ୍ତି ଯେ– ''ପୂର୍ବବର୍ତ୍ତୀ ଇତିହାସକାରଙ୍କର ସେହି କ୍ରାନ୍ତିର ରାଷ୍ଟ୍ରୀୟ ସ୍ୱରୂପ ଏବଂ ତା'ର ଲୋକପ୍ରିୟତାର ସଂପର୍କରେ ଆଦୌ ଧାରଣା ନ ରହିବା ଅତ୍ୟନ୍ତ ଦୁର୍ଭାଗ୍ୟପୂର୍ଣ୍ଣ କଥା..... ଏହି ଯୁଦ୍ଧର ସବୁଠୁଁ ମହତ୍ତ୍ୱପୂର୍ଣ୍ଣ ଦିଗଟି ହେଉଛି ଏହା ଉପନିବେଶବାଦ ବିରୋଧରେ ହୋଇଥିଲା..... ବିଦେଶୀ ସତ୍ତା ବିରୋଧରେ ରାଷ୍ଟ୍ରର ସ୍ୱତନ୍ତ୍ରତା ନିମନ୍ତେ ଏହା ଲଢ଼ାଯାଇଥିଲା ।'' ଜ୍ୟୋତି ବସୁ କହନ୍ତି– ''ଏହି ଯୁଦ୍ଧକୁ ୧୫୦

ବର୍ଷ ପୂରିଯାଇଛି । ଏହି ମହତ୍ତ୍ୱପୂର୍ଣ୍ଣ ଘଟଣା ସହିତ ସଂପର୍କିତ ସମସ୍ତ ଭୁଲ୍‌ଧାରଣାକୁ ସୁଧାରିବା ଆଜି ନିତାନ୍ତ ଆବଶ୍ୟକ ହୋଇପଡ଼ିଛି । ଏହି ଯୁଦ୍ଧ ସଂପର୍କରେ ସମସ୍ତ ତଥ୍ୟ ଓ ବିବରଣୀ ସମସ୍ତ ଭାରତୀୟ ଭାଷାରେ ପ୍ରକାଶିତ ହେବା ଉଚିତ ଯାହାଫଳରେ କି ଲୋକଙ୍କ ମନରୁ ଭ୍ରମ ଦୂର ହେବ ଓ ଲୋକେ ଏହି ଯୁଦ୍ଧର ମହତ୍ତ୍ୱକୁ ବୁଝିପାରିବେ ।''

ପଛକୁ ଫେରି ଇତିହାସକୁ ଚାହିଁବାର ଦରକାର କ'ଣ ? ବରଂ ଆମେ ନିଜର ଶକ୍ତିକୁ ଚିହ୍ନିପାରି ନିଜର ପରାଜୟର ସମୀକ୍ଷା କରି, ନିଜର ବାସ୍ତବିକତାକୁ ବୁଝିବିଚାରି ଯଦି ଆମ ନିଜ ଇତିହାସର ଶୂରବୀରମାନଙ୍କର ମହତ୍ତ୍ୱକୁ ବୁଝିପାରିବା ନାହିଁ, କେବଳ ସେମାନଙ୍କର ନିନ୍ଦା କରୁଥିବା, ତାହେଲେ ଏଥିରେ ଆମର ହୀନବୀର୍ଯ୍ୟତା ହିଁ ଦେଖାଯାଉଥିବ । ଇତିହାସରେ ବର୍ଣ୍ଣିତ ପରାଜୟର ସମୀକ୍ଷା ନ କରିବା ତ ଆଜିର ସମସ୍ୟାମାନଙ୍କର ସମ୍ମୁଖୀନ ହେବା କଷ୍ଟକର ହୋଇଯିବ । ଦେଢ଼ଶହ ବର୍ଷ ପରେ ଆଜି ସ୍ୱତନ୍ତ୍ର ଭାରତର ପାଣିପାଗରେ ସେଦିନର ସମସ୍ୟାବଳୀ ନୂଆ ରୂପରେ ଉପସ୍ଥିତ ଅଛି । ବିଦେଶୀମାନଙ୍କର ରାଜନୀତିକ, ଧାର୍ମିକ, ଆର୍ଥିକ, ସାଂସ୍କୃତିକ ଆକ୍ରମଣକୁ କିପରି ରୋକାଯାଇପାରିବ ? ସେଥିପାଇଁ ଆଜି ଇତିହାସକୁ ମୁକ୍ତ ଦୃଷ୍ଟିରେ, ମନରେ କୌଣସି ଦୁରାଗ୍ରହ ନ ରଖି, ପୂର୍ବାଗ୍ରହର ପ୍ରମାଣ ଆଧାରରେ ତାକୁ ଉଚିତ ଢଙ୍ଗରେ ପରିଭାଷିତ କରିବାର ଆବଶ୍ୟକତା ଅଛି ।

## ରାଣୀ ଲକ୍ଷ୍ମୀବାଈଙ୍କର ଯୋଗଦାନ

ରାଣୀ ଲକ୍ଷ୍ମୀବାଈଙ୍କ ବ୍ୟକ୍ତିତ୍ୱ ପରୀକ୍ଷଣ କଲାବେଳେ ଆମ ଇତିହାସର ଅନ୍ୟ କାର୍ଯ୍ୟଦକ୍ଷ, ସାହସିନୀ ନାରୀ ଓ ବୀରାଙ୍ଗନାମାନଙ୍କୁ ସ୍ମରଣ କରିବା ଅପରିହାର୍ଯ୍ୟ ଅଟେ । ଛତ୍ରପତି ଶିବାଜୀ ମହାରାଜଙ୍କ ବୋହୂ, ରାଜାରାମଙ୍କ ପତ୍ନୀ ତାରାରାଣୀ, ଇନ୍ଦୋରର ମହ୍ଲାରରାଓ ହୋଲକାରଙ୍କ ବିଧବା ବୋହୂ ଅହଲ୍ୟାବାଈ ଏବଂ କିତ୍ତୁର ସଂସ୍ଥାନର ବିଧବାରାଣୀ ଚିନ୍ନମା– ଏହି ତିନିଂଜଣଙ୍କ ନାମ ପ୍ରମୁଖ ଭାବେ ସ୍ମରଣକୁ ଆସେ । ଏହା ମନେ ରଖିବା ଉଚିତ ଯେ ଏହି ସମସ୍ତ ମହିଳା ବିଧବା ଥିଲେ । ତାରାରାଣୀ, ଅହଲ୍ୟାବାଈଙ୍କ ଲଢ଼ାଇ ନିଜ ଲୋକଙ୍କ ସହିତ ହୋଇଥିଲା, କିନ୍ତୁ ରାଣୀ ଚିନ୍ନାମା ଏବଂ ରାଣୀ ଲକ୍ଷ୍ମୀବାଈ ଏ ଦୁହେଁ ଇଂରେଜଙ୍କ ବିରୋଧରେ, କମ୍ପାନୀ ସରକାରଙ୍କ ଅନ୍ୟାୟ ବିରୋଧରେ ସଂଘର୍ଷ କରିଥିଲେ । ଏ ଦୁଇଜଣଙ୍କ ପୋଷ୍ୟପୁତ୍ରଙ୍କ ଅଧିକାରକୁ କଂପାନୀ ସରକାର ପ୍ରତ୍ୟାଖ୍ୟାନ କରି ଦେଇଥିଲା । ଚିନ୍ନାମାଙ୍କର ପତିଙ୍କ ଦେହାନ୍ତ ପରେ କଂପାନୀ ସରକାର ପୋଷ୍ୟସନ୍ତାନ ଗ୍ରହଣ କରିବାକୁ ନିଷେଧାଜ୍ଞା ଜାରି କରିଥିଲା ଏବଂ କିତ୍ତୁରକୁ ନିଜ ଅଧିକାରଭୁକ୍ତ କରିବାର ପ୍ରୟାସ କରିଥିଲା । ଦୁହିଁଙ୍କର ଶୌର୍ଯ୍ୟ, ଧୈର୍ଯ୍ୟ, ଯୁଦ୍ଧର ରଣନୀତି, ଯୋଜନା ସଂପର୍କୀୟ ସେମାନଙ୍କର ବୁଦ୍ଧିମତ୍ତାକୁ କେନ୍ଦ୍ର କରି ଅନେକ ଗୀତ, କବିତା ଓ ଗୌରବଗାଥା ଲେଖାଯାଇଛି । ଇତିହାସରେ ଦୁଇଜଣଯାକ ପରସ୍ପରର ପରିପୂରକ ହୋଇଯାଇଛନ୍ତି । ରାଣୀ ଲକ୍ଷ୍ମୀବାଈ ଯୁଦ୍ଧ କରୁ କରୁ ବୀରଗତି ପ୍ରାପ୍ତ ହୋଇଥିଲେ । ଚିନ୍ନାମାଙ୍କୁ ଏହି ସୌଭାଗ୍ୟ ପ୍ରାପ୍ତ ହୋଇ ନ ଥିଲା । ଯୁଦ୍ଧରେ ପରାଜିତ

ହେବା ପରେ ରାଣୀ ଚିନ୍ନାମାଙ୍କୁ ଦୁର୍ଗ ମଧ୍ୟରେ ନଜରବନ୍ଦୀ କରି ରଖାଯାଇଥିଲା । ପାଞ୍ଚବର୍ଷ ପର୍ଯ୍ୟନ୍ତ ଅପମାନ ସହି ସହି ଚିନ୍ନାମା ପ୍ରାଣତ୍ୟାଗ କରିଥିଲେ । ଲକ୍ଷ୍ମୀବାଈଙ୍କ ପୋଷ୍ୟପୁତ୍ର ବାଳକ ଦାମୋଦର ଯୁଦ୍ଧ ପରେ ବହୁବର୍ଷ ଯାଏଁ ଜଙ୍ଗଲରେ ଘୂରିବୁଲିଲେ ଓ ତା'ପରେ ଇନ୍ଦୋରର ହୋଲକର ତାଙ୍କୁ ଆଶ୍ରୟ ପ୍ରଦାନ କରିଥିଲେ । ଚିନ୍ନାମାଙ୍କର ସାବତପୁତ୍ରର ବିଧବା ଯୁବତୀ ପତ୍ନୀଙ୍କୁ ନିଜ ଆଶ୍ରୟରେ ରଖିଥିବାବେଳେ ଇଂରେଜମାନେ ତାଙ୍କୁ ବିଷଦେଇ ହତ୍ୟା କରିଥିଲେ । ସେମାନଙ୍କର ଆଶଙ୍କା ଥିଲା ଯେ କାଳେ ତାଙ୍କର ଆଖପାଖର ଲୋକମାନେ ଏକାଠି ହୋଇ ପୁନରାୟ କଂପାନୀ ସରକାରଙ୍କ ବିରୋଧରେ ଲଢ଼ିବାକୁ ଉଦ୍ୟତ ହୋଇଯିବେ । ଚିନ୍ନାମା ୧୮୨୪ ମସିହାରେ ୩୬ ବର୍ଷ ବୟସରେ ଇଂରେଜମାନଙ୍କ ବିରୋଧରେ ଦେଢ଼ମାସ ଧରି ଯୁଦ୍ଧ କରିଥିଲେ । ଯେତେବେଳେ କି ଲକ୍ଷ୍ମୀବାଈ ୧୯୫୮ରେ ୨୭ ବର୍ଷ ବୟସରେ ଦେଢ଼ମାସ ଧରି ଇଂରେଜମାନଙ୍କ ସହିତ ଲଢ଼ିଥିଲେ । ଚିନ୍ନାମା କେବଳ ନିଜର ରାଜ୍ୟ ଓ ଅଧିକାର ପାଇଁ ଲଢ଼ିଥିଲେ । କିନ୍ତୁ ଲକ୍ଷ୍ମୀବାଈ ଯଦିଓ ନିଜର ଅଧିକାର ପାଇଁ ଓ ରାଜ୍ୟର ମଙ୍ଗଳ ପାଇଁ ଲଢ଼ିଥିଲେ ତଥାପି ତାଙ୍କର ଯୁଦ୍ଧର ପରିଧି ଅତ୍ୟନ୍ତ ବ୍ୟାପକ ଥିଲା । ନିଜର ପୋଷ୍ୟସନ୍ତାନଙ୍କୁ ରାଜ୍ୟର ଅଧିକାରରୁ ବଂଚିତ କରିବାରୁ ଇଂରେଜ ସରକାରଙ୍କ ନିର୍ଣ୍ଣୟ ତାଙ୍କ ପାଇଁ ଅତ୍ୟନ୍ତ ପୀଡ଼ାଦାୟକ ଥିଲା, ତେବେବି ସେ ତୁରନ୍ତ ଇଂରେଜଙ୍କ ବିରୋଧରେ ଯୁଦ୍ଧ ଘୋଷଣା କରି ନ ଥିଲେ । ତାଙ୍କର ଆଶା ଥିଲା ଯେ ୫୦ ବର୍ଷର ବନ୍ଧୁତ୍ୱ, ସେତେବେଳେ କରାଯାଇଥିବା ଚୁକ୍ତିପତ୍ର ଓ ଆଶ୍ୱାସନାକୁ ଧ୍ୟାନ ଦେଇ ଶେଷରେ କଂପାନୀ ସରକାର ରାଜ୍ୟ ଉପରେ ତାଙ୍କର ପୋଷ୍ୟପୁତ୍ରର ଅଧିକାରକୁ ସ୍ୱୀକାର କରିନେବ । ସେଥିପାଇଁ ଲକ୍ଷ୍ମୀବାଈ କଂପାନୀ ସରକାର ସହିତ ପତ୍ରାଳାପ ଜାରି ରଖିଥିଲେ । ଝାନ୍ସୀ ଉପରେ ନିଜର ଅଧିକାର ଫେରିପାଇବା ପାଇଁ ସେ ନିଜସ୍ୱ ଏକ ଭିନ୍ନ ପନ୍ଥାକୁ ଆଦରି ନେଇଥିଲେ । ଇଂରେଜ ଯେ କେତେ ଶକ୍ତିଶାଳୀ ଶତ୍ରୁ, ତାକୁ ସେ କଥା ଜଣାଥିଲା । କାହିଁକିନା ଇଂରେଜମାନେ ନିଜର ଆଧୁନିକ ବନ୍ଧୁକ, ତୋପ ଓ ସୈନ୍ୟମାନଙ୍କ ସାହାଯ୍ୟରେ ଗୋଟିଏ ପରେ ଗୋଟିଏ ଅନେକ ରାଜାଙ୍କୁ ପରାଜିତ କରି ନିଜ ସାମ୍ରାଜ୍ୟ ବିସ୍ତାର କରିବା ଆରମ୍ଭ କରିଦେଇଥିଲେ । ଇଂରେଜମାନଙ୍କ ବିରୋଧରେ ଚିନ୍ନାମାଙ୍କର ଲଢ଼େଇ ଯଦିଓ ଲକ୍ଷ୍ମୀବାଈଙ୍କର ଜନ୍ମପୂର୍ବରୁ ହୋଇସାରିଥିଲା ତଥାପି ସେହି ଯୁଦ୍ଧ ସମ୍ପର୍କରେ ଲକ୍ଷ୍ମୀବାଈଙ୍କୁ ନିଶ୍ଚିତ ଜଣାଥିଲା । ଲକ୍ଷ୍ମୀବାଈ ସବୁବେଳେ ସଜାଗ ଥିଲେ, ତା' ସହିତ ତାଙ୍କ ମନରେ ଏପରି ବିଶ୍ୱାସ ବି ନିଶ୍ଚୟ ରହିଥିବ ଯେ ଦିନେ ନା ଦିନେ ତାଙ୍କୁ ନିଜ ରାଜ୍ୟର ଦାୟିତ୍ୱ ସଂଭାଳିବାକୁ ହେବ । ଏହାର କାରଣ ଥିଲା ସ୍ୱାମୀ–ସ୍ତ୍ରୀଙ୍କ ବୟସରେ ତିରିଶ ବର୍ଷର ବ୍ୟବଧାନ । ପ୍ରତ୍ୟକ୍ଷରୂପରେ ରାଜ୍ୟଶାସନ ପରିଚାଳନାରେ ହସ୍ତକ୍ଷେପ ନ କଲେ ମଧ୍ୟ ରାଜପରିବାରର ଲୋକେ ରାଜନୀତି ଶିକ୍ଷା କରିବାପାଇଁ ଇତିହାସର ଘଟଣାବଳୀ, ସମ୍ପର୍କୀୟ ଲୋକଙ୍କ ପରିଚୟ ପ୍ରାପ୍ତ କରିବାର ଏକ ପରମ୍ପରା ପୁରୁଷ ପୁରୁଷ ଧରି ଚଳିଆସିଛି । ସେଥି ନିମନ୍ତେ ଚିନ୍ନାମାଙ୍କର ବାସ୍ତବତା ନିଶ୍ଚିତଭାବେ ସଂପୂର୍ଣ୍ଣଭାବେ ଲକ୍ଷ୍ମୀବାଈଙ୍କୁ ଜଣାଥିବ । ଏହାର ଉଦାହରଣସ୍ୱରୂପ

କୁହାଯାଇପାରେ, ଲକ୍ଷ୍ମୀବାଈଙ୍କ ପରି ବୁଦ୍ଧିମତୀ ନାରୀ ନିଶ୍ଚୟ ଜାଣିଥିବେ ଯେ ଇଂରେଜଙ୍କ ପରି ଶକ୍ତିଶାଳୀ ଶତ୍ରୁ ସହିତ ଏକାକୀ ମୁକାବିଲା କରିବା ଅର୍ଥ ନିଶ୍ଚିତ ପରାଜୟ ବରଣ କରିବା ।

ଝାନ୍‌ସୀର ସିପାହିମାନଙ୍କଦ୍ୱାରା ବିଦ୍ରୋହ ହେଲା ପରେ ସେ ସେଥିରେ ଯୋଗ ଦେଇଥିଲେ କିମ୍ବା ଇଂରେଜମାନଙ୍କ ବିରୋଧରେ ସେ ପୂର୍ବରୁ ହିଁ ଏଥିପାଇଁ ପ୍ରସ୍ତୁତି କରି ସାରିଥିଲେ । ସେ ସଂପର୍କରେ କୌଣସି ନିର୍ଣ୍ଣାୟକ ପ୍ରମାଣ ମିଳିବା ପ୍ରଥମେ କଷ୍ଟକର ଥିଲା । ବାଣପୁର ରାଜାଙ୍କୁ ସେ ଯେଉଁ ପତ୍ର ଲେଖିଥିଲେ ତାହା ନିକଟରେ ହିଁ ପ୍ରାପ୍ତ ହୋଇଅଛି । ସେହି ପତ୍ରର ଆଧାରରେ ଏହି ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ନିର୍ବିବାଦରେ ସ୍ପଷ୍ଟ ହୋଇଯାଏ । ମେ ୧୦ ତାରିଖରେ ମିରଠରେ ଏହି ବିଦ୍ରୋହ ଆରମ୍ଭ ହେଲା । କିନ୍ତୁ ଏହା ପୂର୍ବରୁ ଅପ୍ରେଲ ୧ ତାରିଖରେ ରାଣୀ ଲକ୍ଷ୍ମୀବାଈ ରାଜା ମର୍ଦାନ ସିଂହଙ୍କୁ ପତ୍ର ଲେଖିଥିଲେ । ଏହି ପତ୍ରରେ ସେ ଲେଖିଥିଲେ ''ଆପଣ ସୈନ୍ୟବାହିନୀ ପ୍ରସ୍ତୁତ କରୁଛନ୍ତି ବୋଲି ଲେଖିଛନ୍ତି, ଏହା ପାଠ କରି ଆନନ୍ଦିତ ହେଲି । ଭାରତ ଉପରେ ବିଦେଶୀ ଲୋକଙ୍କର ଶାସନ ରହିବା ଉଚିତ ନୁହେଁ, ମୋର ଏହା ହୃଦ୍‌ବୋଧ ହୋଇଛି । ଆପଣଙ୍କ ଉପରେ ମୋର ପୂରା ଭରସା ଅଛି । ଆମେ ମଧ୍ୟ ସେନାବାହିନୀ ପ୍ରସ୍ତୁତ କରୁଛୁଁ । ଇଂରେଜଙ୍କ ବିରୋଧରେ ଯୁଦ୍ଧ କରିବା ଅତ୍ୟନ୍ତ ଆବଶ୍ୟକ'' (ବୁନ୍ଦେଲଖଣ୍ଡକା ବିସ୍ମୃତ ବୈଭବ–ବାଣପୁର : ଶ୍ରୀ କୈଲାଶ ମଡ଼ବୈୟା, ବାଣପୁର ୧୯୭୮ ପୃଷ୍ଠାଙ୍କ–୧୭) ଏହି ପତ୍ରର ଅର୍ଥ ସଂପୂର୍ଣ୍ଣ ସ୍ପଷ୍ଟ ଯେ ୧୮୫୭ର ସଂଗ୍ରାମ କେବଳ ସିପାହିମାନଙ୍କର ବିଦ୍ରୋହ ନ ଥିଲା । ରାଜା ମହାରାଜାମାନେ ଏଥିପାଇଁ ୧୦ ମଇ ପୂର୍ବରୁ ପ୍ରସ୍ତୁତି ଆରମ୍ଭ କରି ଦେଇଥିଲେ ।

ଏହି ବିଚାରର ସ୍ଫୁଲିଙ୍ଗ ୧୮୫୭ ମାର୍ଚ୍ଚ ପୂର୍ବରୁ ଜଳିସାରିଥିବାର ଅନୁମାନ କରାଯାଇପାରେ । ୧୮୫୭ ମାର୍ଚ୍ଚରେ କମ୍ପାନୀ ସରକାର ଅନେକ ରାଜାଙ୍କୁ କଲିକତା ଡକାଇଥିଲେ ଏବଂ ହିନ୍ଦୁ–ମୁସଲିମ୍ ସାମାଜିକ, ଧାର୍ମିକ ପରମ୍ପରାରେ ପରିବର୍ତ୍ତନ ଆଣିବାର ଦୃଷ୍ଟିରେ ୮୪ ସୂତ୍ରୀୟ ଯୋଜନା ପ୍ରସ୍ତୁତ କରିଥିଲେ । ସେତିକିବେଳେ ରାଜା ମର୍ଦାନ ସିଂହ କମ୍ପାନୀ ସରକାରଙ୍କୁ ଜଣାଇଥିଲେ ଯେ ''ଯଦି ସେ ୮୪ ସୂତ୍ରୀୟ ଯୋଜନାକୁ କାର୍ଯ୍ୟକାରୀ କରିବେ ତେବେ ପୂଜାପାଠରେ, ଈଶ୍ୱରଭକ୍ତିରେ ଶ୍ରଦ୍ଧା ରଖୁଥିବା ହିନ୍ଦୁମାନେ ଇଂରେଜମାନଙ୍କ ବିରୋଧରେ ଧାର୍ମିକ ବିଦ୍ରୋହ ଘୋଷଣା କରିଦେବେ ଏହା ନିଶ୍ଚୟ ମାନି ଚଳିବାକୁ ହେବ ।'' ଏହା ପରେ ରାଣୀ ଲକ୍ଷ୍ମୀବାଈ ରାଜା ମର୍ଦାନ ସିଂହଙ୍କୁ ଏକ ପତ୍ର ଲେଖିଥିଲେ ଏବଂ ପରେ ପରେ ଦୁହିଁଙ୍କ ମଧ୍ୟରେ ପତ୍ର ବିନିମୟ ଜାରି ରହିଥିଲା । ଝାନ୍‌ସୀ ସହର, କିଲ୍ଲା, ରାଜମହଲକୁ ଇଂରେଜମାନେ ପୂରାପୂରି ଧ୍ୱଂସ କରିଦେଇଥିଲେ । ବାଣପୁରର ରାଜା ମର୍ଦାନ ସିଂହ ରାଣୀଙ୍କୁ ଲେଖିଥିବା ପତ୍ରସବୁ ମିଳେ ନାହିଁ, କିନ୍ତୁ ରାଣୀ ଲକ୍ଷ୍ମୀବାଈ ରାଜା ମର୍ଦାନ ସିଂହଙ୍କୁ ଲେଖିଥିବା ପତ୍ରଗୁଡ଼ିକ ମଧ୍ୟରୁ କିଛି ପତ୍ର ନିଶ୍ଚୟ ମିଳିଥିଲା । ସେହି ପତ୍ରରୁ ରାଣୀଙ୍କ ବିଚାରଧାରା ସ୍ପଷ୍ଟ ଦୃଷ୍ଟିଗୋଚର ହୋଇଥାଏ । ଯେପରିକି 'ସ୍ୱରାଜ୍ୟ ମିଳିବା ଦରକାର', 'ଭାରତ ଆମର

ଦେଶ, ବିଦେଶୀଙ୍କ ଗୋଲାମୀ କରି ରହିବା ଉଚିତ ନୁହେଁ ଇତ୍ୟାଦି ଇତ୍ୟାଦି.... । ଏହି ପତ୍ରରୁ ଏ କଥା ବି ସ୍ପଷ୍ଟ ହୋଇଯାଏ ଯେ ରାଣୀ ଲକ୍ଷ୍ମୀବାଇ, ମର୍ଦାନସିଂହ, ନାନାସାହେବ ପେଶବା, ତାନ୍ତିଆ ଟୋପେ, ଶାହଗଡ଼ର ନରେଶ, ରାଜା ଛତ୍ରସାଲଙ୍କ ନାତି, ରାଜା ବଖତବଲୀ, ଏମାନଙ୍କ ଭିତରେ ପରସ୍ପର ସଂପର୍କ ରହିଥିଲା ଏବଂ ଏମାନେ ଇଂରେଜଙ୍କ ବିରୋଧରେ ଲଢ଼ାଇର ଯୋଜନା ଚଳାଇଥିଲେ, ଅନ୍ୟ କଥାରେ କହିଲେ ତାହାର ପ୍ରସ୍ତୁତିରେ ମଧ୍ୟ ଲାଗି ପଡ଼ିଥିଲେ ।

## ଲେଖକ ଏବଂ କଳାକାରଙ୍କ ପ୍ରେରଣା

ଯୁଦ୍ଧ ପରବର୍ତ୍ତୀ ପ୍ରାରମ୍ଭିକ ଦିନମାନଙ୍କରେ ବିଦେଶୀ ଶାସନର ଭୟ, ବିଦେଶୀ ଶାସନର ଆଇନ୍‌ଗତ ବନ୍ଧନ, ନିଜର ପ୍ରାଚୀନ ପରମ୍ପରା, ବିଚାରଧାରା ଏବଂ ପ୍ରମାଣ ଅଭାବରୁ ରାଣୀ ଲକ୍ଷ୍ମୀବାଇଙ୍କ ନିଜ ଲୋକମାନେ ଜଣା ଅଜଣାରେ ତାଙ୍କର ନିନ୍ଦା କିମ୍ବା ପ୍ରଶଂସା କରିଥିଲେ । ତାଙ୍କର ଭୂମିକା ସଂପର୍କରେ ଜାଣିବାକୁ ପ୍ରୟାସ ମଧ୍ୟ ଦେଖା ଦେଇଥିଲା ଏବଂ ପ୍ରବଳ ଅବସୋସ ମଧ୍ୟ ଦେଖା ଦେଇଥିଲା । ପାରସ୍‌ନିସ୍‌ଙ୍କ ପୁସ୍ତକ ଉପରେ ନିଜର ମତାମତ ବ୍ୟକ୍ତ କରି ଲୋକମାନ୍ୟ ତିଳକ ରାଣୀ ଲକ୍ଷ୍ମୀବାଇଙ୍କ ସଂପର୍କରେ ଲେଖିଥିଲେ– ''ନାରୀସୁଲଭ ଦୁର୍ବଳତା କାରଣରୁ ସେ କାହାର ପ୍ରରୋଚନାରେ ବିଦ୍ରୋହରେ ଅଗ୍ରଣୀ ଭୂମିକା ନେଇଥିଲେ, ଏହାକୁ ଆମେ ସ୍ୱୀକାର କରିବାକୁ ହେବ । ଲକ୍ଷ୍ମୀବାଈ ଯେପରି ହୁଅନ୍ତୁ ସେ ଜଣେ ମଣିଷ, ତଦୁପରେ ଜଣେ ସ୍ୱାଭିମାନୀ ମହିଳା ଥିଲେ । ଡାଲହାଉସୀଙ୍କ ପରି ଲୋଭୀ ଗଭର୍ଣ୍ଣର ଦ୍ୱାରା ପୀଡ଼ିତ ଥିଲେ । ଏ ସବୁକୁ ଦେଖିଲେ ସେତେବେଳେ ସେ ଯଦି କିଛି ଭୁଲ୍ ମଧ୍ୟ କରିଥାନ୍ତି ତେବେ କେହି ବିଚାରବନ୍ତ ବ୍ୟକ୍ତି ତାଙ୍କୁ ଦୋଷୀ ବୋଲି କହିପାରିବ ନାହିଁ ।'' ''ଏକୋ ହି ଦୋଷୋ ଗୁଣ ସନ୍ନିପାତେ'' ଏହି ନ୍ୟାୟର ଆଧାରରେ ତାଙ୍କର ସ୍ୱଚ୍ଛ କୃତିରେ କୌଣସି ପ୍ରକାରର କାଳିମା ଲାଗିପାରେ ନାହିଁ ଏବଂ ଇଂରେଜ ସରକାର ଯେତେ ପାଟିତୁଣ୍ଡ କଲେ ବି ମହାରାଷ୍ଟ୍ରର ଲୋକମାନଙ୍କୁ, ତାଙ୍କ ଭିତରେ ଏପରି ଅଦ୍ୱିତୀୟ ସ୍ତ୍ରୀ–ରତ୍ନ ଜନ୍ମ ନେଇଥିବାର ଅଭିମାନରେ ତିଳାର୍ଦ୍ଧ ଫରକ ପଡ଼ିବ ନାହିଁ । ଯୁଦ୍ଧର ୪୭ ବର୍ଷ ପରେ ଲୋକମାନ୍ୟ ତିଳକ ଏହିପରି ସର୍ବାନ୍ତଃକରଣରେ ରାଣୀ ଲକ୍ଷ୍ମୀବାଇଙ୍କର ପ୍ରଶଂସା କରିଥିଲେ । ତା' ସହିତ ଇଂରେଜଙ୍କ ବିରୋଧରେ ତାଙ୍କ ସଂଗ୍ରାମକୁ 'ରାଜନୀତିକ ତ୍ରୁଟି' ବୋଲି ମଧ୍ୟ ଦର୍ଶାଇଥିଲେ । ତାଙ୍କର ଦୋଷକୁ ସେ ନାରୀସୁଲଭ ଦୁର୍ବଳତା ଉପରେ ଲଦି ଦେଇଥିଲେ । ଏପରି କହି ସେ ଆଂଶିକ ରୂପରେ ଏକପ୍ରକାର ତାଙ୍କୁ ଦୋଷମୁକ୍ତ କରିଦେଲେ । ସେ ସମୟର ସମାଜରେ ନାରୀର ମନୋବୃତ୍ତିକୁ ଦୁର୍ବଳତା ଭାବେ ଧରି ନିଆଯାଉଥିଲା, ରାଜନୀତିକ ଜ୍ଞାନଧ୍ୟାନ ତ ପୂରାପୂରି ଶୂନ ବୋଲି ଧରି ନିଆଯାଉଥିଲା । ଏହାହିଁ ଥିଲା ସାମାଜିକ ଧାରଣା । କିନ୍ତୁ ପ୍ରଶ୍ନ ଉଠେ ଯେ ତିଳକ ମଧ୍ୟ କ'ଣ ନିଜକୁ ସମାଜର ଏହି ସଂକୀର୍ଣ୍ଣ ବିଚାରରୁ ମୁକ୍ତ ରଖିପାରି ନ ଥିଲେ କିମ୍ବା ଏପରି ଲେଖି ଇଂରେଜଙ୍କ ଦୃଷ୍ଟିକୋଣରୁ ରାଣୀଙ୍କୁ ଦୋଷମୁକ୍ତ

କରିବାର ତାଙ୍କର ଏହା ଏକ ନିଜସ୍ୱ ପ୍ରୟାସ ଥିଲା । ୧୮୯୦ରେ ପୁନେରେ ଆୟୋଜିତ ବକ୍ତୃତାମାଳାରେ ବସନ୍ତରାଓ ପଣ୍ଡିତ ନାମକ ଜଣେ ବ୍ୟକ୍ତି ରାଣୀ ଲକ୍ଷ୍ମୀବାଈଙ୍କ ସଂପର୍କରେ ଭାଷଣ ଦେଇଥିଲେ । ଯେତେବେଳେ ସେହି ସମ୍ବାଦ 'କେଶରୀ'ରେ ପ୍ରକାଶିତ ହୋଇଥିଲା, ଠିକ୍ ସେତିକିବେଳେ ରାଣୀଙ୍କ ପୋଷ୍ୟପୁତ୍ର ଦାମୋଦର ରାଓ ବ୍ରିଟିଶ୍ ସରକାରଙ୍କ ପାଖକୁ ନିଜର ଅଧିକାର ସଂପର୍କରେ ଏକ ନିବେଦନ ପତ୍ର ମଧ୍ୟ ପଠାଇଥିଲେ, ଯେଉଁଥିରେ କୁହାଯାଇଥିଲା– "ଯୁଦ୍ଧବେଳେ ମୋର ବୟସ ୮ ବର୍ଷ ହୋଇଥିବାରୁ ସେ ଯୁଦ୍ଧ ସହିତ ମୋର କୌଣସି ସଂପର୍କ ନ ଥିଲା; ସେଥିପାଇଁ ସରକାର ମୋର ଯେଉଁ ସମ୍ପତ୍ତି ଜବତ୍ କରିଛନ୍ତି ତାହା ମୋତେ ଫେରାଇଦେବା ଉଚିତ ।" ଗୋଟିଏପଟେ ଏ ସମ୍ବନ୍ଧରେ ଜୋରଦାର ପ୍ରୟାସ କରାଯାଉଥିଲା ତ ଅନ୍ୟପଟେ 'କେଶରୀ' ପରି ପ୍ରସିଦ୍ଧ ସମାଚାରପତ୍ରରେ ଇଂରେଜଙ୍କ ବିରୋଧ କରିଥିବା ରାଣୀଙ୍କ ପ୍ରଶଂସାର ଗୀତ ବୋଲା ହେଉଥିଲା । ତେଣୁ ହୁଏତ ସମ୍ପତ୍ତି ମିଳିବାରେ ବାଧା ଉପୁଜିପାରେ ଏକଥା ଚିନ୍ତାକରି ବୋଧହୁଏ ଦାମୋଦର ରାଓ ବସନ୍ତରାଓ ପଣ୍ଡିତଙ୍କର ଭାଷଣର ବିରୋଧ କରିଥିଲେ । ଲୋକମାନ୍ୟ ତିଳକ ବୋଧହୁଏ ଦାମୋଦର ରାଓଙ୍କ ସମସ୍ୟା ଅନୁମାନ କରିପାରିଥିଲେ, ସେଇଥିପାଇଁ ପାରସନିସ୍‌ଙ୍କ ପୁସ୍ତକରେ ନିଜର ଅଭିମତ ଲେଖିଥିଲାବେଳେ ସେ ରାଣୀଙ୍କୁ 'ଅଦ୍ୱିତୀୟ ସ୍ତ୍ରୀ–ରତ୍ନ' କହି ତ ଥିଲେ ନିଶ୍ଚୟ, କିନ୍ତୁ ତତ୍‌ସହିତ ଇଂରେଜଙ୍କର ଧ୍ୟାନ ଆକର୍ଷଣ କରିବାକୁ ତାଙ୍କ ବିରୋଧରେ କରାଯାଇଥିବା ଯୁଦ୍ଧକୁ 'ରାଜନୀତିକ ଭୁଲ୍' କହି ସେଥିପାଇଁ ନାରୀସୁଲଭ ଦୁର୍ବଳତାକୁ ଉତ୍ତରଦାୟୀ କରିଥିଲେ ଏବଂ ଦେଶପ୍ରତି ରାଣୀଙ୍କର ଗର୍ବ, ଗୌରବ ଓ ପ୍ରେମଭାବନାକୁ ଟିକେ ଊଣା କରିଦେଇଥିଲେ, ଏପରି ଅନୁମାନ କରାଯାଇପାରେ । ଅର୍ଥାତ୍ ଇଂରେଜଙ୍କ ଦୃଷ୍ଟିକୋଣରୁ ତାଙ୍କର ଏହି ତ୍ରୁଟି ପିଲାଳିଆ ସାବ୍ୟସ୍ତ ହେଉ, ଦେଶପ୍ରେମର ଉନ୍ମାଦନା ପରି ବିରାଟ ଭୁଲ୍‌ରୁ ତାଙ୍କୁ ମୁକ୍ତି ମିଳୁ, ତିଳକଙ୍କୁ କ'ଣ ଏହି ସଂକେତ ଦେବାର ନ ଥିଲା କି ? କାରଣ ଲୋକମାନ୍ୟ ତିଳକଙ୍କ ମନରେ ଲକ୍ଷ୍ମୀବାଈଙ୍କ ପ୍ରତି ଅପାର ଶ୍ରଦ୍ଧା ଏବଂ ଆଦର ଥିଲା ।

୧୮୯୫ରେ ରାଜାରାମ ଶାସ୍ତ୍ରୀ ଭାଗବତ ସବିସ୍ତାର ବିବିଧ ଜ୍ଞାନ ଲେଖି ଏକ ଅଲଗା ଏବଂ ବିପରୀତ ପକ୍ଷ ପ୍ରସ୍ତୁତ କଲେ । ସେ ଲେଖିଥିଲେ "ଯଦି ଝାନ୍‌ସୀର ରାଜଗାଦି ଶୂନ୍ୟ ହୋଇ ନ ଥାନ୍ତା, ତେବେ ଝାନ୍‌ସୀବାଲୀ ଏହି ନାରୀ ନିଜର ଅଧିକାର ଓ ସଂପଦକୁ ନେଇ ଶାନ୍ତିରେ ରହିଥାନ୍ତେ । ଝାନ୍‌ସୀ ଏବଂ ଝାନ୍‌ସୀ ପ୍ରଦେଶର ଭିନ୍ନ ଭିନ୍ନ ସ୍ଥାନରେ ଥିବା ନିଜର ରାଜମହଲରେ ବସି ସୁଖଆନନ୍ଦ ଉପଭୋଗ କରି ନିଜର ଯୌବନକୁ ସଫଳ କରିବାରେ ମସଗୁଲ ଥାଆନ୍ତେ । ଯେତେବେଳେ ନାନାସାହେବ ଏବଂ ଝାନ୍‌ସୀବାଲୀ, ଏହି ଦୁଇ ବୃହତ୍ ପାତ୍ର ବିଦ୍ରୋହ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହେଲେ ସେତେବେଳେ ତାଙ୍କ ମନରେ ଧର୍ମକୁ ରକ୍ଷା କରିବା କିମ୍ବା ଦେଶକୁ ସ୍ୱାଧୀନ କରିବା ପରି କୌଣସି ଉଦ୍ଦେଶ୍ୟ ନ ଥିଲା । ଏ ଦୁହେଁ ନିଜର ସ୍ୱାର୍ଥସିଦ୍ଧି ନିମନ୍ତେ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ । ଯଦି ବରିଷ୍ଠ ବ୍ୟକ୍ତିମାନେ କାହାରି ଉଚିତ ଅଧିକାରକୁ ଉପେକ୍ଷା କରନ୍ତି ତେବେ ତା' ବିରୋଧରେ ପ୍ରତିଶୋଧର

ଭାବନା ଜାଗ୍ରତ ହେବା କିଛି ଭୁଲ୍ କଥା ନୁହେଁ ଏବଂ ସେଥିପାଇଁ ସେପରି ଲୋକମାନଙ୍କୁ ଦୋଷ ଦେବା ମଧ ଉଚିତ ନୁହେଁ । କିନ୍ତୁ ଅଧିକାର ଛଡ଼େଇନେବା କାରଣରୁ ବିଦ୍ରୋହୀମାନଙ୍କ ସହିତ ସାମିଲ ହୋଇଯିବା କଥାଟି ସ୍ପଷ୍ଟ ସଙ୍କେତ ଦିଏ ଯେ କେବଳ ନିଜର ହରାଇଥିବା ଉଦ୍ଦେଶ୍ୟକୁ ଫେରିପାଇବା ସେମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା । ରାଜ୍ୟର ପୁନଃସ୍ଥାପନ କିମ୍ବା ଧର୍ମରକ୍ଷା ଉଦ୍ଦେଶ୍ୟରେ ସେମାନେ ବିଦ୍ରୋହୀମାନଙ୍କ ସହିତ ଯାଇ ମିଶି ନ ଥିଲେ । ଯଦି ସେପରି ହୋଇଥାନ୍ତା ତା'ହେଲେ ଇଂରେଜମାନଙ୍କ ଦ୍ୱାରା ପ୍ରଦେଶକୁ କବ୍ଜା କରିନେବାର ପରେ ପରେ ହିଁ ଝାନ୍ସୀବାଲୀ କୌଣସି ନା କୌଣସି ଆକ୍ରୋଶ ପ୍ରଦର୍ଶନ କରିଥାନ୍ତେ । ଆମେ ତେବେ ମାନିଥାନ୍ତେ ଯେ ସେ ବୁଡ଼ିଯାଇଥିବା ରାଜ୍ୟକୁ ପୁନରାୟ ପ୍ରାପ୍ତ କରିବାପାଇଁ ଯୁଦ୍ଧ କରୁଥିଲେ । କିନ୍ତୁ ରାଜ୍ୟ ଚାଲିଯିବାର ବହୁବର୍ଷ, ବହୁଦିନ ଯାଏଁ ସୁଖଶାନ୍ତିରେ ଜୀବନ ବିତାଇବା ପରେ ପାଞ୍ଚବର୍ଷ ପରେ ଯାଇ ବିଦ୍ରୋହୀଙ୍କ ସହିତ ମିଶିଥିବା ଝାନ୍ସୀବାଲୀ, ହାରିଯାଇଥିବା ରାଜ୍ୟପାଇଁ ନୁହେଁ ବରଂ ପ୍ରତିଶୋଧ ନେବା ପାଇଁ ଇଂରେଜଙ୍କ ବିରୋଧରେ ଉଭା ହେବାର ଦେଖାଯାଇଥାଏ ।

ରାଜାରାମ ଶାସ୍ତ୍ରୀ ଊନବିଂଶ ଶତାବ୍ଦୀର ବିଚାରଶୀଳ ବ୍ୟକ୍ତିମାନଙ୍କ ଭିତରେ ଗଣାଯାଇଥାନ୍ତି । ତାଙ୍କର ଭାଷା ଅସଭ୍ୟ ଏବଂ ଗ୍ରାମ୍ୟ । ରାଣୀଙ୍କ ସମ୍ବନ୍ଧରେ ତାଙ୍କର ଶବ୍ଦ କେବଳ ଲକ୍ଷ୍ମୀବାଈଙ୍କ ପାଇଁ ନୁହେଁ, ବରଂ ସଂପୂର୍ଣ୍ଣ ନାରୀଜାତିଙ୍କୁ ଅପମାନିତ କଲାପରି ଅଟେ, ତେଣୁ ଏହା ଆପତ୍ତିଜନକ ଅଟେ । ସେ ଯୁଗରେ ବାଲଶାସ୍ତ୍ରୀ ଜାଭେକର, ଲୋକହିତବାଦୀ, ବିଷ୍ଣୁଶାସ୍ତ୍ରୀ ଚିପଲୁଣକରଙ୍କ ପରି ସ୍ପଷ୍ଟବାଦୀ ବିଚାରକମାନେ ମଧ ଏପରି ଅଭଦ୍ର ଭାଷାର ଉପଯୋଗ କରି ନ ଥିଲେ । ମହାତ୍ମା ଫୁଲେଙ୍କର ଭାଷା କଠୋର ନିଶ୍ଚୟ ଥିଲା କିନ୍ତୁ ସେଥିରେ ସଂଯମ ଥିଲା । ଫୁଲେଜୀଙ୍କର ଭାଷାରେ ଜାତିପ୍ରଥା ବିରୋଧରେ ନିଷ୍ଠାପର ବ୍ୟଥା ଥିଲା । ରାଜାରାମ ଶାସ୍ତ୍ରୀଙ୍କ ଭାଷାର ପୃଷ୍ଠଭୂମିରେ ଇଂରେଜମାନଙ୍କ ପ୍ରତି ନିଷ୍ଠା ଥିଲା କି ନାହିଁ କହିବା କଷ୍ଟକର । ଶାସ୍ତ୍ରୀ ମହାଶୟ ଆରମ୍ଭରେ କହନ୍ତି– ''ଉଚିତ ଅଧିକାରକୁ ଦମନ କରିବାବାଲାଙ୍କ ପ୍ରତି ମନରେ ପ୍ରତିଶୋଧର ଭାବନା ଜାଗ୍ରତ ହେବା ଉଚିତ ଅଟେ'' କିନ୍ତୁ ଲକ୍ଷ୍ମୀବାଈ 'ଖୋଲାଖୋଲି ପ୍ରତିଶୋଧର ଭାବନାରୁ' ଇଂରେଜମାନଙ୍କ ବିରୋଧରେ ଲଢ଼ିଥିଲେ ବୋଲି ରାଜାରାମ ଶାସ୍ତ୍ରୀ ମାନି ନ ଥିଲେ । ତା'ର କାରଣ ଦର୍ଶାଇବାକୁ ଯାଇ ସେ କହିଥିଲେ ଯେ ମଧବର୍ତ୍ତୀ ସମୟକୁ ସେ 'ମଜାମଉଜ'ରେ ବିତାଇଥିଲେ । ଏହି କଥା ସେ ଇଂରେଜମାନଙ୍କ ଦ୍ୱାରା ଲେଖାଯାଇଥିବା ତଥ୍ୟକୁ ସଂପୂର୍ଣ୍ଣଭାବେ ବିଶ୍ୱାସ କରି ଲେଖିଥିଲେ । 'ସେଣ୍ଟ୍ରାଲ ଇଣ୍ଡିଆ'ରେ ଡାଃ ଲି. ଲକ୍ଷ୍ମୀବାଈଙ୍କୁ 'ଜାଝବେଲ' କହିଥିଲେ । ଜାଝବେଲ ଖ୍ରୀଷ୍ଟଙ୍କ ପୂର୍ବରୁ ଦେବତାମାନଙ୍କ ଉପରେ ବିଶ୍ୱାସ ରଖିଥିବା ନାରୀ ଥିଲେ । ସେଥିପାଇଁ ଖ୍ରୀଷ୍ଟିୟାନ୍‌ମାନେ ତାଙ୍କୁ ଭଣ୍ଡ, ଧର୍ମଦ୍ରୋହୀ, ମୂର୍ଖ ଓ ସ୍ୱେଚ୍ଛାଚାରୀ ମଧ କହୁଥିଲେ । ରାଜାରାମ ଶାସ୍ତ୍ରୀ ତା'ରି ଉପରେ ସଂପୂର୍ଣ୍ଣ ବିଶ୍ୱାସ କରିଥିଲେ । କୌଣସି ପ୍ରକାରର ସତ୍ୟାସତ୍ୟ ଜାଣିବା ପାଇଁ ଆଗ୍ରହ ନ ରଖି, ଏପରି କଥା କହିବା ରାଜାରାମ ଶାସ୍ତ୍ରୀଙ୍କ ପରି ଶିକ୍ଷିତ

ଲୋକଙ୍କୁ ଶୋଭା ପାଇ ନ ଥିଲା । ଉନବିଂଶ ଶତାବ୍ଦୀରେ ହିନ୍ଦୁ ବିଧବା ସ୍ତ୍ରୀଲୋକମାନେ ରାଜବଂଶର ହୋଇଥିଲେ ହେଁ କି ଯେ କଠୋର ଶୃଙ୍ଖଳା, ବିକଟ, ବିପରୀତ ପରିସ୍ଥିତିରେ ନିଜର ଜୀବନ ବ୍ୟତୀତ କରୁଥିଲେ ତା'ର ଅନୁଭବ ଯେ ତାଙ୍କ ପରି ଲୋକଙ୍କର ନ ଥିଲା ଏକଥା ଆମେ କିପରି କହିପାରିବା ? କିନ୍ତୁ ନିଜର ନିପୁଣତାକୁ, ନିଜର ସଦ୍‌ଗୁଣକୁ ସ୍ୱୟଂ ରକ୍ଷା କରୁଥିବା କୌଣସି ଜଣେ ନାରୀ ଏ ସଂପର୍କରେ ମନରେ କୌଣସି ଅପରାଧବୋଧ ନ ରଖି ଅଚ୍ଚବହୁତ ଅଭିମାନପୂର୍ବକ ନିଜର ସ୍ୱାଧୀନପ୍ରବୃତ୍ତିକୁ ପ୍ରଦର୍ଶନ କଲେ, ଏକ ଭିନ୍ନ ରାସ୍ତା ବାଛିଲେ ତ ଲୋକଙ୍କୁ ଏକଥା ପସନ୍ଦ ହେଲା ନାହିଁ, ଏହା ଆମ ସମାଜର ଏକ ପ୍ରାଚୀନ ପରମ୍ପରା ଅଟେ । ରାଜାରାମ ଶାସ୍ତ୍ରୀ ପ୍ରଗତିବାଦୀ ବିଚାର ପାଇଁ ପ୍ରସିଦ୍ଧ ଥିଲେ । ସେ ଲୋକମାନଙ୍କୁ ସବୁବେଳେ କହୁଥିଲେ ଯେ ଜୀବନର ସମସ୍ତ ପୁରୁଣା ପରମ୍ପରାକୁ ତିଳାଞ୍ଜଳି ଦେଇ ନୂଆ ବିଚାରର ପ୍ରଖର ସମର୍ଥନ କରିବା ଉଚିତ । କିନ୍ତୁ ନାରୀମାନଙ୍କ ସଂପର୍କରେ ସେ ନିଜର ପ୍ରାଚୀନ ରୂଢ଼ିବାଦୀ ମାନସିକତାକୁ ହିଁ ଉପଯୋଗ କରିଥିଲେ । କୌଣସି ସ୍ତ୍ରୀ ଲୋକଙ୍କ ଚରିତ୍ର ଉପରେ କାଦୁଅ ଫିଙ୍ଗିଦେବା ଖୁବ୍ ସହଜ । ସେ ଏହି ସିଧାସଳଖ ଓ ନିନ୍ଦୁକର ବାଟକୁ ଆପଣାର କରିଥିଲେ । ରାଣୀ ଲକ୍ଷ୍ମୀବାଈଙ୍କୁ 'ସ୍ୱେଚ୍ଛାଚାରୀ' କହୁଥିବା କିଛି ଇଂରେଜ ଲେଖକଙ୍କ ଉପରେ ସେ ବିଶ୍ୱାସ ରଖିଥିଲେ । ଠିକ୍ ସେହି ସମୟରେ ଇଂରେଜ ରାଣୀ ଲକ୍ଷ୍ମୀବାଈଙ୍କୁ ଅନ୍ତରର ଗଭୀରତମ ପ୍ରଦେଶରୁ କେତେକ ପ୍ରଶଂସା ମଧ୍ୟ କରିଥିଲେ, ସେଥିପ୍ରତି ଶାସ୍ତ୍ରିଜୀ କାହିଁକି ଧ୍ୟାନ ଦେଇ ନ ଥିଲେ, ମନରେ ଏ ପ୍ରଶ୍ନ ଉଠିଥାଏ ।

୧୯୫୭ରେ ଯେତେବେଳେ ମୁକ୍ତି-ସଂଗ୍ରାମକୁ ଶହେବର୍ଷ ପୂରିଲା, ସେତେବେଳେ ବହୁ ପୁସ୍ତକ ରଚନା କରାଗଲା । ସେଥିମଧ୍ୟରୁ ନ.ର. ଫାଟକ ଏବଂ ସୁମନ ତାମ୍ବେ, ଏହି ଦୁଇ ଲେଖକଙ୍କ ଦ୍ୱାରା ଲିଖିତ ଦୁଇଟି ପୁସ୍ତକର ଉଲ୍ଲେଖ କରିବା ଏଠାରେ ଜରୁରି ଅଟେ । ସୌଭାଗ୍ୟବତୀ ସୁମନ ତାମ୍ବେ ରାଣୀ ଲକ୍ଷ୍ମୀବାଈଙ୍କ ସାବତଭାଇ ଗୋବିନ୍ଦରାଓ ତାମ୍ବେଙ୍କର ବୋହୂ ଅଟନ୍ତି । ନିଜ ଜୀବିତାବସ୍ଥାରେ ଗୋବିନ୍ଦରାଓ ଲକ୍ଷ୍ମୀବାଈଙ୍କ ସହ ସମ୍ବନ୍ଧିତ ପଦାର୍ଥସବୁକୁ ସଂଗ୍ରହ କରିବାପାଇଁ ଅକ୍ଳାନ୍ତ ପ୍ରଚେଷ୍ଟା କରିଥିଲେ । ଅପ୍ରକାଶିତ, ଅନୁପଲବ୍ଧ, ସରକାରୀ, ବେସରକାରୀ ସବୁପ୍ରକାରର କାଗଜପତ୍ରକୁ ସେ ଏକତ୍ର କରିଥିଲେ । ତାକୁ ହିଁ ଆଧାର କରି ସୁମନ ତାମ୍ବେ ୧୯୫୮ରେ "ସ୍ୱାତନ୍ତ୍ର୍ୟ ଦେବତା ଝାନ୍‌ସୀର ମହାରାଣୀ ଲକ୍ଷ୍ମୀବାଈ" ଶୀର୍ଷକ ସଂକ୍ଷିପ୍ତ ଜୀବନ ଚରିତ ରଚନା କଲେ । ଆଚାର୍ଯ୍ୟ ପ୍ର.କେ. ଅତ୍ରେ ଏହାର ପ୍ରସ୍ତାବନା ଲେଖିଥିଲେ । ଏହି ପୁସ୍ତକ ପ୍ରକାଶିତ ହେବା ପୂର୍ବରୁ ନ.ର. ଫାଟକ ନିଜର ଏକ ଭାଷଣରେ ରାଣୀ ଲକ୍ଷ୍ମୀବାଈଙ୍କର କଠୋର ନିନ୍ଦା କରିଥିଲେ । ଫାଟକଜୀଙ୍କର ଏହି ପ୍ରତିକ୍ରିୟା ଉପରେ ନିଜର ଅଭିମତ ବ୍ୟକ୍ତ କରି ଆଚାର୍ଯ୍ୟ ଅତ୍ରେ ଅତ୍ୟନ୍ତ ତିକ୍ତ ମନ୍ତବ୍ୟ ଦେଇଥିଲେ ଏବଂ ଫାଟକଜୀଙ୍କର ଗୋଟି ଗୋଟି କରି ପ୍ରତ୍ୟେକ ପ୍ରଶ୍ନ ଉପରେ ନିଜର ରାୟ ପ୍ରକାଶ କରିଥିଲେ । ହୁଏତ ଏହି କାରଣରୁ ପରବର୍ତ୍ତୀ କାଳରେ ଫାଟକଜୀ ନିଜର ପୁସ୍ତକ 'ଅଠରଶହ ସତାବନର ସିପାହି ବିଦ୍ରୋହ'ରୁ ଆରୋପିତ ଅଂଶକୁ ବାଦ୍ ଦେଇଥିଲେ ।

କିଛି ଅନାମଧେୟ ଇଂରେଜ ସାହିତ୍ୟିକ ରାଣୀଙ୍କୁ କପଟୀ, ଦୁଷ୍ଟ, ଦୁରାଚାରୀ ଏପରିକି ବ୍ୟଭିଚାରିଣୀ ନାରୀ ଭାବରେ ସଂଜ୍ଞା ଦେବାକୁ ପଛାଇ ନ ଥିଲେ । ୧୯୩୩ରେ ଫିଲିପ୍ସ କାକସ ରାଣୀଙ୍କ ଜୀବନୀ ଉପରେ ଏକ ନାଟକ ରଚନା କରିଥିଲେ । ସେଥିରେ ନାଟ୍ୟକାର ଏହା ଦେଖାଇବାକୁ ପ୍ରୟାସ କରିଥିଲେ ଯେ– ରାଣୀ ନିଜର ଝାନ୍‌ସୀ ବଞ୍ଚାଇବାକୁ ଯାଇ ବ୍ରିଟିଶ୍ ଅଧିକାରୀମାନଙ୍କୁ ନିଜର ପ୍ରେମଜାଲରେ ଫସାଇବାକୁ ଚେଷ୍ଟା କରିଛନ୍ତି । ତାମ୍ବେ ପରିବାର ଏହି ନାଟକ ଉପରେ ସେମାନଙ୍କର ଆପତ୍ତି ଘୋଷଣା କରିଥିଲେ । ପରବର୍ତ୍ତୀ କାଳରେ କାକ୍ସ ନାଗପୁରରୁ ପ୍ରକାଶିତ ହେଉଥିବା 'ହିତବାଦୀ' ସମ୍ବାଦପତ୍ର ଜରିଆରେ ଖୋଲାଖୋଲି କ୍ଷମାପ୍ରାର୍ଥନା ମଧ କରିଥିଲେ । ଜର୍ଜ ମେକଡୋନାଲ୍‌ଡ ଫ୍ରେଜର ନିଜ ଉପନ୍ୟାସରେ ରାଣୀଙ୍କୁ ସ୍ୱେଚ୍ଛାଚାରୀ ବୋଲି ବର୍ଣ୍ଣନା ତ କରିଥିଲେ, ଏହା ସହିତ ତାଙ୍କୁ ଚାବୁକ୍ ଧରି ଇଂରେଜଙ୍କୁ ପ୍ରହାର କରୁଥିବା କ୍ରୂର 'ହଣ୍ଟରବାଲୀ' ବୋଲି ମଧ ଦର୍ଶାଇଥିଲେ । କିନ୍ତୁ ଏପରି କେତେକ ବ୍ୟକ୍ତି ମଧ ଥିଲେ ଯେଉଁମାନେ ରାଣୀଙ୍କ ଗୁଣାବଳୀର ମୁକ୍ତକଣ୍ଠରେ ପ୍ରଶଂସା କରିଥିଲେ । ତାଙ୍କୁ ଦୟାବାନ୍, ଉଦାର, ଶ୍ରଦ୍ଧାଳୁ, ବୁଦ୍ଧିମାନ୍, ଶୂରବୀର, ଧୈର୍ଯ୍ୟବାନ୍ ରାଣୀ ବୋଲି କହୁଥିଲେ । ହ୍ୟୁରୋଜ ଦୁଇଦିନ ପରେ ରାଣୀଙ୍କ ମୃତ୍ୟୁର ସମ୍ବାଦ ପାଇଥିଲେ । ଏହି ସମ୍ବାଦ ଶୁଣି ତାଙ୍କର ହୃଦୟ ଦ୍ରବିତ ହୋଇଯାଇଥିଲା । ତାଙ୍କର ଏହି ଭାବନା ତାଙ୍କର ବକ୍ତବ୍ୟରୁ ସ୍ପଷ୍ଟ ହୋଇଯାଏ । ସେ କହିଥିଲେ– ''ସୈନିକ ନେତାମାନଙ୍କ ମଧ୍ୟରେ ଏକମାତ୍ର ସେ ହିଁ ସବୁଠାରୁ ସାହସୀ ମଣିଷ ଥିଲେ,'' ଜଣେ ବୀର ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ବୀରଙ୍କ ପ୍ରତି ପ୍ରକଟ କରିଥିବା ଗୌରବପୂର୍ଣ୍ଣ ଏବଂ ମହତ୍ତ୍ୱପୂର୍ଣ୍ଣ ସମ୍ମାନ ଆଉ କ'ଣ ହୋଇପାରେ ?

ହ୍ୟୁରୋଜଙ୍କ ପରି ଅନ୍ୟ କେତେକ ଇଂରେଜ ଲେଖକ ରାଣୀ ଲକ୍ଷ୍ମୀବାଈଙ୍କୁ ହିନ୍ଦୁସ୍ଥାନର 'ଜୋଆନ୍ ଅଫ୍ ଆର୍କ' ନାମରେ ସମ୍ବୋଧିତ କରିଥିଲେ । ଫ୍ରାନ୍‌ସର ଜୋଆନ୍‌ଙ୍କ ସଂପର୍କରେ ସହସ୍ରାଧିକ ପୁସ୍ତକ ଲେଖାଯାଇଛି, ସେହି ଅନୁପାତରେ ରାଣୀ ଲକ୍ଷ୍ମୀବାଈଙ୍କ ଜୀବନ ଉପରେ ଖୁବ୍ କମ୍ ପୁସ୍ତକ ମିଳିଥାଏ । ଏପରି ମନେହୁଏ ଯେ ନିଜ ଦେଶର ସ୍ୱାଧୀନତା ପାଇଁ ଲଢୁଥିବା ମୁକ୍ତିଯୋଦ୍ଧାଙ୍କ ପ୍ରଶଂସା କରି ଲେଖିବାକୁ ବୋଧହୁଏ ଲୋକଙ୍କୁ ସଂକୋଚ ଲାଗିଥିବ । କାଶୀର ଗଙ୍ଗାଘାଟ ପାଖରେ ଥିବା ଏକ ଘରେ ଲକ୍ଷ୍ମୀବାଈ ଜନ୍ମ ନେଇଥିଲେ । ଏହି ଘରଟି ଆଜି ମଧ ନିଜ ପ୍ରତି ଉପେକ୍ଷା ଓ ଜୀର୍ଣ୍ଣାବସ୍ଥା ପାଇଁ ଅଶ୍ରୁ ଝରାଉଛି । ରାଣୀଙ୍କ ସ୍ମୃତିରେ ସମ୍ମାନଜନକ ସ୍ମାରକୀଟିଏ ମଧ କେହି ନିର୍ମାଣ କରି ନାହାନ୍ତି । ଏହାର ବିପରୀତରେ ମାଲିକ ଏବଂ ବିଲ୍‌ଡରଙ୍କ ମଧ୍ୟରେ ସେହି ଭୂସମ୍ପତ୍ତିକୁ ନେଇ ପରସ୍ପର କଳିଝଗଡ଼ା ଲାଗିରହିଛି । ଯେଉଁ ସ୍ଥାନରେ ରାଣୀଙ୍କର ମୃତ୍ୟୁ ହୋଇଥିଲା ୧୯୨୯ ମସିହାରେ ଭାରତର ପ୍ରତ୍ନତତ୍ତ୍ୱ ବିଭାଗ ସେହି ସ୍ଥାନକୁ ଖୋଜି ବାହାର କରିଥିଲା । ସେଠାରେ ସ୍ମାରକ ରୂପରେ ଗୋଟିଏ କ୍ଷୁଦ୍ର ମଣ୍ଡପ ନିର୍ମାଣ କରାଯାଇଅଛି । ଝାନ୍‌ସୀବାସୀଙ୍କ ମନରେ ସେହି ସ୍ଥାନରେ ରାଣୀଙ୍କର ଏକ ବିଶାଳ ସ୍ମାରକୀ ନିର୍ମାଣ କରିବାର ଇଚ୍ଛା ଥିଲା । ସେଥିପାଇଁ ଯଥାସମ୍ଭବ ଧନ ବ୍ୟୟ କରିବାକୁ ମଧ ସେମାନେ ପ୍ରସ୍ତୁତ ଥିଲେ । କିନ୍ତୁ ଗୋଆଲିଅର୍‌ବାସୀମାନେ ସେମାନଙ୍କୁ

ସେଥିପାଇଁ ଅନୁମତି ଦେଲେ ନାହିଁ, କାରଣ ସେମାନଙ୍କୁ ଇଂରେଜମାନଙ୍କର ରୋଷ ନିମନ୍ତେ ଭୟ ଲାଗୁଥିଲା । ୧୯୪୭ରେ ସ୍ୱାଧୀନତା ଲାଭ ପରେ ବି ସେହି ସ୍ଥାନରେ ସ୍ମାରକୀ ନିର୍ମାଣ କରିବାକୁ ବହୁତ ଦିନ ଲାଗିଗଲା । ସେହି ମଣ୍ଡପଟି ଭଙ୍ଗାରୁଜା ଅବସ୍ଥାରେ ବହୁତ ଦିନଯାଏ ଉପେକ୍ଷିତ ହୋଇ ପଡ଼ିରହିଲା । ୧୯୬୨ରେ ସଦାଶିବ ସାଠେ ଝାନ୍‌ସୀରାଣୀଙ୍କର ଭବ୍ୟ ଅଶ୍ୱାରୋହୀ ମୂର୍ତ୍ତି ନିର୍ମାଣ କରି ସେହି ସ୍ଥଳରେ ସ୍ଥାପନ କଲେ । ସମାଧିର ମୂଳ ମଣ୍ଡପଟିକୁ ନୂଆ ଶୈଳୀରେ ନିର୍ମାଣ କରାଗଲା । ସ୍ମାରକର ପ୍ରସ୍ତର ଫଳକରେ କବି ଭା.ରା.ତାମ୍ବେଙ୍କ କବିତାର ଚାରିଟି ପଙ୍‌କ୍ତି ମଧ୍ୟ ଖୋଦେଇ କରାଗଲା ।

"ରେ ହିନ୍ଦବାଂଧବା, ଧାଂବ ୟା ସ୍ଥଳୀ, ଅଶ୍ରୁ ଦୋନ ଢାଳୀ
ତୀ ପରାକ୍ରମାଚୀ ଜ୍ୟୋତ ମାବଳେ, ଇଥେ ଝାନ୍‌ସୀବାଲୀ ।"

କବିବର ତାମ୍ବେଜୀଙ୍କ ଏହି କବିତା ଲେଖା ହେବାର ୫୦–୬୦ ବର୍ଷ ହୋଇଗଲାଣି । ତଥାପି ଲୋକେ ଏହି କବିତାକୁ ସ୍ମରଣ ରଖିଛନ୍ତି । ରାଣୀଙ୍କ ସମାଧିସ୍ଥଳ ପରିଦର୍ଶନ କଲା ପରେ ତାଙ୍କ ମନରେ କବିତାର ଏହି ଶବ୍ଦସବୁ ସ୍ଫୁରିତ ହୋଇଥିଲା । ସେହି କବିତାର କିଛି ଅଂଶ ଏହିପରି–

"କଡ଼କଡ଼ା କଡ଼ାଡ଼େ ବିଜଲି
ଶତ୍ରୁଚୀ ଲସ୍କରେ ଥିଜଲି
ମଗ କୀର୍ତ୍ତିରୂପେ ଉରଲୀ
ତୀ ପରାକ୍ରମଟୀ ଜ୍ୟୋତ ମାଲବେ ଇଥେ ଝାନ୍‌ସୀବାଲୀ" ।

ଏହାର ତାତ୍ପର୍ଯ୍ୟ ହେଉଛି– "ହେ ମୋର ହିନ୍ଦୁସ୍ଥାନୀ ବନ୍ଧୁ, ଏଠାରେ କିଛି ସମୟ ବିଶ୍ରାମ କର । ଦୁଇବୁନ୍ଦା ଅଶ୍ରୁ ଝରାଅ । ଏଇଠାରେ ସେହି ପରାକ୍ରମୀ ବୀରାଙ୍ଗନାଙ୍କର ପ୍ରାଣପ୍ରଦୀପ ଲିଭିଯାଇଥିଲା । ସେ ଥିଲେ ଝାନ୍‌ସୀବାଲୀ ରାଣୀ । ସେ ବିଦ୍ୟୁତ୍ ପରି ଝଲସି ଉଠିଥିଲେ । ତାଙ୍କୁ ଦେଖି ଶତ୍ରୁସେନା କଂପି ଉଠିଥିଲା । ଆଜି କେବଳ ତାଙ୍କର କୀର୍ତ୍ତି ହିଁ ରହିଯାଇଛି । ସେହି ପରାକ୍ରମୀ ଜ୍ୟୋତି ଏଇଠି ଲିଭିଯାଇଥିଲା । ସେ ଥିଲେ ଝାନ୍‌ସୀବାଲୀ ରାଣୀ ।

ଏହି ମୂର୍ତ୍ତିରେ ରାଣୀଙ୍କ ପୃଷ୍ଠଦେଶରେ ତାଙ୍କ ପୋଷ୍ୟପୁତ୍ରଙ୍କୁ ଦର୍ଶାଯାଇ ନ ଥିଲା । ଝାନ୍‌ସୀର ଲୋକେ କହନ୍ତି ଯେ ଗୋଆଲିଅର୍‌ର ଲୋକମାନେ ଜାଣିଶୁଣି ମୂର୍ତ୍ତିରୁ ସେହି ଅଂଶଟିକୁ ହଟାଇ ଦେଇଥିଲେ । ସେତେବେଳେ ଲୋକଙ୍କ ମନରେ ଏହା ବିରୋଧରେ ଏପରି ଭାବନା ପ୍ରଜ୍ୱଳିତ ହୋଇଥିଲା ଯେ ତତ୍କାଳୀନ ଲୋକସଭାରେ ଏହାକୁ ନେଇ ପ୍ରଶ୍ନ ମଧ୍ୟ କରାଯାଇଥିଲା । ଶ୍ରୀଯୁକ୍ତ ସାଠେଙ୍କୁ ମୁଁ ଯେତେବେଳେ ଏ ସଂପର୍କରେ ପ୍ରଶ୍ନ କରିଥିଲି ତ ତାଙ୍କର ଉତ୍ତର ଥିଲା, ଯେଉଁ ସ୍ଥାନରେ ରାଣୀ ଯୁଦ୍ଧ କରୁ କରୁ ବୀରଗତି ପ୍ରାପ୍ତ ହୋଇଥିଲେ ମୁଁ ସେହି ସ୍ମରଣୀୟ ମୁହୂର୍ତ୍ତକୁ ଦେଖାଇବାକୁ ଚାହୁଁଥିଲି । ରାଣୀ ଯେତେବେଳେ ଯୁଦ୍ଧ କରୁଥିଲେ ସେତେବେଳେ ସେ ନିଜ ଶିଶୁପୁତ୍ରକୁ କାହିଁକି ବା ପିଠିରେ ବାନ୍ଧି ରଖିଥିବେ ? ସେଥିପାଇଁ

ମୁଁ ତାଙ୍କର ଏକାକୀ ମୂର୍ତ୍ତି ନିର୍ମାଣ କଲି । ତାଙ୍କର ଏହି ଭାବନା ଯଥାର୍ଥ ଲାଗେ । ଶ୍ରୀ ସାଠେ ତାଙ୍କର 'ଆକାର' ନାମକ ପୁସ୍ତକରେ ଏ ସଂପର୍କରେ ଉଲ୍ଲେଖ ମଧ୍ୟ କରିଛନ୍ତି । ଝାନ୍‌ସୀ ଏବଂ ଗୋଆଲିଅର ମଧ୍ୟରେ ଆଜି ମଧ୍ୟ ମନୋମାଳିନ୍ୟ ଲାଗିରହିଛି । ଯେପରିକି ଗୋଆଲିଅରର ପ୍ରସିଦ୍ଧ ଇତିହାସକାର ହରିହର ନିବାସ ଦ୍ୱିବେଦୀଙ୍କର ସାନଭାଇ ଶ୍ରୀ ଶାନ୍ତିଚନ୍ଦ୍ର ଦ୍ୱିବେଦୀ ମତେ ବତାଇଲେ ଯେ ଗୋଆଲିଅର୍‌ର ସିନ୍ଧିଆ ଯେବେଠୁଁ ରାଜନୀତିକୁ ଆସିଲେଣି ସେବେଠାରୁ ସିନ୍ଧିଆ ଏହାହିଁ ଚାହାନ୍ତି ଯେ "ରାଣୀ ଲକ୍ଷ୍ମୀବାଈ ଓ ବିଦ୍ରୋହୀମାନଙ୍କୁ ତାଙ୍କର ସମର୍ଥନ ଥିଲା, ଏହି ତଥ୍ୟଟି ସହିତ ତାଙ୍କର ନାମ ଗୁପ୍ତରୂପରେ ଯୋଡ଼ା ହେଉ ।" ଏଥିପାଇଁ କୌଣସି ନା କୌଣସି ପ୍ରସଙ୍ଗ ଖୋଜି ବାହାର କରିବାପାଇଁ ସେ ଇତିହାସକାରମାନଙ୍କ ଉପରେ ଚାପ ପ୍ରୟୋଗ କରୁଥିଲେ ।

ଲେଖକ, କବି, ଚିତ୍ରକର, ଶିଳ୍ପୀ ଏବଂ ଗବେଷକମାନେ ସଂପୂର୍ଣ୍ଣ ରୂପରେ ନ ହେଲେ ମଧ୍ୟ ବେଶ୍ ଏକ ସୀମାପର୍ଯ୍ୟନ୍ତ ରାଣୀ ଲକ୍ଷ୍ମୀବାଈଙ୍କୁ 'ଜୋଆନ୍ ଅଫ୍-ଆର୍କ'ଙ୍କ ସମକକ୍ଷ ପ୍ରେରଣାର ଦେବୀ ବୋଲି ମାନୁଥିଲେ । ରାଣୀଙ୍କ ମୃତ୍ୟୁର ପରେ ପରେ ୧୮୫୯ରେ କଲ୍ୟାଣ ସିଂହ କୁଡ଼େରା ରାଣୀଙ୍କୁ ସମ୍ବୋଧନ କରି ପ୍ରଥମ ବୀରଗାଥା-ଗୀତ ରଚନା କରିଥିଲେ । ତାହାର ନାମ ରଖିଥିଲେ 'ଲକ୍ଷ୍ମୀବାଈ ରାସୋ' ଯାହା ଆଜି ମଧ୍ୟ ଅତ୍ୟନ୍ତ ପ୍ରସିଦ୍ଧ । ଝାନ୍‌ସୀ ଦରବାରର ଚିତ୍ରକାର ସୁଖଦେବ ରାଣୀଙ୍କୁ ପ୍ରତ୍ୟକ୍ଷ ରୂପରେ ଦେଖିଥିଲେ । ସୁଖଦେବ ଗଙ୍ଗାଧର ରାଓ ଏବଂ ଲକ୍ଷ୍ମୀବାଈଙ୍କର ଅନେକ ଚିତ୍ର ବୁନ୍ଦେଲଖଣ୍ଡ ଶୈଳୀରେ ଅଙ୍କନ କରିଥିଲେ । ଏହି ପରମ୍ପରା ଆଜି ମଧ୍ୟ ଜାରି ରହିଛି ।

ରାଣୀଙ୍କ ଜୀବନ ଉପରେ ଆଧାରିତ ବହୁ ଉପନ୍ୟାସ ମଧ୍ୟ ଲେଖାଯାଇଅଛି, ଯାହାର ଉଲ୍ଲେଖ କରିବା ଏଠାରେ ଜରୁରି ଅଟେ । ସେଥିମଧ୍ୟରୁ ଗୋଟିଏ ହେଲା ବୃନ୍ଦାବନଲାଲ ବର୍ମାଙ୍କ ଦ୍ୱାରା ହିନ୍ଦୀରେ ରଚିତ ଉପନ୍ୟାସ- 'ଝାନ୍‌ସୀ କି ରାନୀ ଲକ୍ଷ୍ମୀବାଈ' । ବ୍ରିଟିଶ୍ ଶାସନ ସମୟରେ ଏହି ଉପନ୍ୟାସ ଉପରେ ନିଷେଧାଜ୍ଞା ଜାରି ହୋଇଥିଲା । ଏହି ଉପନ୍ୟାସ ୧୯୪୬ ମସିହାରେ ପ୍ରକାଶିତ ହୋଇପାରିଲା । ଯୁଦ୍ଧବେଳେ ବର୍ମାଜୀଙ୍କର ଦାଦା ରାଣୀଙ୍କ ସୈନ୍ୟବାହିନୀରେ ଥିଲେ । ତାଙ୍କ ବର୍ଣ୍ଣିତ ବିବରଣୀକୁ ଆଧାର କରି ବର୍ମାଜୀ ନିଜର ଏହି ଉପନ୍ୟାସ ରଚନା କରିଥିଲେ । ଉପନ୍ୟାସର କାହାଣୀର ଗତିଶୀଳତା ନିମନ୍ତେ କଳ୍ପନା-ସୃଷ୍ଟିର ସମାବେଶକୁ ଆବଶ୍ୟକ ଓ ମହତ୍ତ୍ୱପୂର୍ଣ୍ଣ ମନେ କରାଯାଏ । କାହାଣୀବିନ୍ୟାସ ଦୃଷ୍ଟିରୁ ମନୋରଞ୍ଜନକାରୀ କରିବାପାଇଁ କାଳ୍ପନିକ ଚରିତ୍ର ମଧ୍ୟ ଗଢ଼ାଯାଇପାରେ । ଯୁଦ୍ଧରେ ପ୍ରାୟ ୩୬ ଜାତିର ଲୋକେ ରାଣୀଙ୍କୁ ସର୍ବଦା ସହଯୋଗ କରୁଥିଲେ । ଦଳିତ ଜାତିର ଲୋକମାନେ ଏମାନଙ୍କ ମଧ୍ୟରେ ସବୁଠାରୁ ଅଗ୍ରଣୀ ଥିଲେ । ଝାନ୍‌ସୀର ମହିଳାମାନେ ମଧ୍ୟ ଏହି ଯୁଦ୍ଧରେ ଅଂଶ ଗ୍ରହଣ କରିଥିଲେ । ଏହା ମଧ୍ୟ ନିଜେ ନିଜର ଏକ ବାସ୍ତବିକତା ଥିଲା । ଏହି କାରଣରୁ ବର୍ମାଜୀ ନିଜ ଉପନ୍ୟାସର ନାୟିକା ଲକ୍ଷ୍ମୀବାଈଙ୍କର ସହଯୋଗୀ ଭାବରେ ଜଣେ ଦଳିତ ନାରୀଚରିତ୍ର 'ଝିଲ୍‌କାରୀ'କୁ ସୃଷ୍ଟି କରିଥିଲେ । ନିଜ ଉପନ୍ୟାସରେ ବର୍ମାଜୀ 'ଝିଲ୍‌କାରୀ'କୁ

ସ୍ୱୟଂ ରାଣୀଙ୍କର ପରିଧାନ କେବଳ ପିନ୍ଧାଇ ନ ଥିଲେ, ବରଂ ତାକୁ ସାହସ ସହକାରେ ନିର୍ଭୟ ହୋଇ ଇଂରେଜମାନଙ୍କ ସହିତ ଯୁଦ୍ଧ କରିବାର ବର୍ଣ୍ଣନା ମଧ୍ୟ କରିଥିଲେ । ରାଣୀ ଲକ୍ଷ୍ମୀବାଈଙ୍କର ଅନ୍ୟ ସାହସିକ ଘଟଣାବଳୀକୁ ତାହାରି ମାଧ୍ୟମରେ ସେ ଲୋକମାନଙ୍କ ସମ୍ମୁଖରେ ପ୍ରସ୍ତୁତ କରିଥିଲେ । ଉପନ୍ୟାସର ପ୍ରଥମ ସଂସ୍କରଣରେ ସେ 'ଝିଲ୍‌କାରୀ'କୁ ନିଜର ମାନସକନ୍ୟା ବୋଲି ମଧ୍ୟ କହିଥିଲେ । କିନ୍ତୁ ଝାନ୍‌ସୀର ବରିଷ୍ଠ ଲୋକମାନେ ମୋତେ କହିଛନ୍ତି ଯେ ପରବର୍ତ୍ତୀ ସଂସ୍କରଣମାନଙ୍କରୁ ଏହି କଥାକୁ କାଢ଼ି ଦିଆଯାଇଥିଲା । ପରବର୍ତ୍ତୀ ଦିନମାନଙ୍କରେ ଜାତିଗତ ରାଜନୀତିର ମହତ୍ତ୍ୱ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଲା । ଝାନ୍‌ସୀରେ 'ଝିଲ୍‌କାରୀ ସମିତି'ର ଗଠନ କରାଗଲା । ବହୁଜନ ସମାଜ ପାର୍ଟିର କାଂଶୀରାମ, ମାୟାବତୀଙ୍କ ପରି ନେତାମାନେ 'ଝିଲ୍‌କାରୀ'କୁ ମୁଣ୍ଡ ଉପରେ ବସାଇଲେ । ଝାନ୍‌ସୀ ସହରର ଏକ ମୁଖ୍ୟ ଛକରେ ମାୟାବତୀଙ୍କ ହାତରେ 'ଝିଲ୍‌କାରୀ'ର ଅଶ୍ୱାରୋହୀ ମୂର୍ତ୍ତିର ଅନାବରଣ କରାଗଲା । ଭବ୍ୟ ସମାରୋହ ହେଲା, ଭାଷଣବାଜି ମଧ୍ୟ ହେଲା । 'ଝିଲ୍‌କାରୀ' ପରି କାଳ୍ପନିକ ପାତ୍ରକୁ ରାଣୀ ଲକ୍ଷ୍ମୀବାଈଙ୍କ ସମ୍ମୁଖରେ ଉପସ୍ଥିତ କରି ଦିଆଗଲା । ବାସ୍ତବ ଜୀବନରେ 'ଝିଲ୍‌କାରୀ' ନାମକ କୌଣସି ନାରୀ ଥିଲେ କି ନାହିଁ ଏ କଥା କେହି ଜାଣିବାକୁ ଚାହିଁଲେ ନାହିଁ । ଯଦି ଏପରି ନାରୀ ବାସ୍ତବରେ ଥିଲେ ତେବେ ନିଶ୍ଚିତଭାବେ ତାଙ୍କୁ ତାଙ୍କର ଯୋଗ୍ୟ ଆସନ ମିଳିବା ଉଚିତ । କିନ୍ତୁ ଏହି ନାମଟି କ'ଣ ଏକ ଉପନ୍ୟାସର କାଳ୍ପନିକ ଚରିତ୍ରର ନ ଥିଲା ? କିନ୍ତୁ ରାଜନୀତିକ ଲୋକମାନେ ନିଜର ରାଜନୀତି ପାଇଁ କାଳ୍ପନିକ ଚରିତ୍ରକୁ କିପରି ସଜୀବ କରିପାରନ୍ତି ଏବଂ ନିଜର ଲାଭ ପାଇଁ କିପରି ସେମାନଙ୍କର ବ୍ୟବହାର କରିପାରନ୍ତି ଏହି ସମାରୋହ ତା'ର ଏକ ପ୍ରତ୍ୟକ୍ଷ ପ୍ରମାଣ ପ୍ରସ୍ତୁତ କରେ । ଏତେବେଳେ ଏହି ବିଚାର ମନରେ ଆସେ ଯେ ଉପନ୍ୟାସକାର 'ଝିଲ୍‌କାରୀ' ନାମକ କାଳ୍ପନିକ ପାତ୍ରକୁ ସୃଷ୍ଟି କରିଥିବେ । କାରଣ କାଶୀ, ସୁନ୍ଦର, ମୁନ୍ଦରଙ୍କ ପରି ରାଣୀଙ୍କର ଅତ୍ୟନ୍ତ ବିଶ୍ୱାସୀ, ତାଙ୍କ ପାଇଁ ଜୀବନ ଦେଇଦେବା ପରି ଦାସୀ ଓ ସଖୀମାନେ ତ ଥିଲେ, ଯାହାକି ବାସ୍ତବିକତା ଥିଲା । ତତ୍କାଳୀନ ପ୍ରତ୍ୟକ୍ଷଦର୍ଶୀମାନେ ସେମାନଙ୍କର ନାମ ମଧ୍ୟ ଉଲ୍ଲେଖ କରିଛନ୍ତି । ଜୀବନକୁ ବାଜି ଲଗେଇ ସେମାନେ ରାଣୀଙ୍କର ରକ୍ଷା ମଧ୍ୟ କରୁଥିଲେ । ରାଣୀଙ୍କ ପାଇଁ ପ୍ରାଣବଳି ବି ଦେଇଥିଲେ । ଶିଶୁ ଦାମୋଦରଙ୍କୁ ଧରି କାଶୀ କେତେ ବର୍ଷଯାଏଁ ଦ୍ୱାର ଦ୍ୱାର ଘୂରି ବୁଲିଥିଲା । ସାରାଜୀବନ ସେ ତାଙ୍କର ଦେଖାଶୁଣା କରିଥିଲା । ଏପରି ସମର୍ପିତ ଜୀବନସବୁକୁ ଆମେ କିପରି ପାସୋରିଗଲେ ? ମତେ ଲାଗେ ହୁଏତ 'ଝିଲ୍‌କାରୀ' ଜ୍ଞାତ–ଅଜ୍ଞାତ ସମସ୍ତ ବୀରାଙ୍ଗନାମାନଙ୍କର ପ୍ରତିନିଧିତ୍ୱ କରିଛି । କିନ୍ତୁ ଏହାଦ୍ୱାରା ରାଣୀଙ୍କର ପ୍ରତିଷ୍ଠା ଊଣା ହୋଇଯାଇ ନାହିଁ । 'ଝିଲ୍‌କାରୀ' ମାଧ୍ୟମରେ ସମସ୍ତ ଅଜ୍ଞାତ ବୀରାଙ୍ଗନାମାନଙ୍କ ପ୍ରତି ଶ୍ରଦ୍ଧାସୁମନ ଅର୍ପଣ କରାଯାଇଛି ।

ମରାଠୀ ଭାଷାର କେତେକ ଔପନ୍ୟାସିକ ତ ନିଜ କଳ୍ପନାଶକ୍ତିର ଏକ ଭିନ୍ନ ଜାଲ ନିର୍ମାଣ କରିଥିଲେ । ଜଣେ ଔପନ୍ୟାସିକ ଗୋଟିଏ କ୍ଷୁଦ୍ର ଲଢ଼େଇରେ ବିଜୟୀ ହେବା କାରଣରୁ,

ଦରବାରୀ ଲୋକଙ୍କ ଆଗ୍ରହ ଯୋଗୁଁ ରାଣୀ ସ୍ୱୟଂ ନିଜ ହାତରେ ଲଡୁ ତିଆରି କରି ଦରବାରୀମାନଙ୍କୁ ଖୁଆଇବାର ବର୍ଣ୍ଣନା କରିଛନ୍ତି । ଅନ୍ୟ ଜଣେ ଉପନ୍ୟାସକାର ବାର/ ତେର ବର୍ଷର ଲକ୍ଷ୍ମୀବାଈ ଏବଂ ବୟାଳିଶ/ଚୌରାଳିଶ ବର୍ଷର ଗଙ୍ଗାଧର ରାଓଙ୍କ ମଧ୍ୟରେ ପ୍ରଣୟଲୀଳାର ବର୍ଣ୍ଣନା କରିଛନ୍ତି । ଉପନ୍ୟାସରେ ରେଖାଙ୍କିତ ବ୍ୟକ୍ତିର ମହତ୍ତ୍ୱ, ପଦବୀ, ତା'ର ପାରିପାର୍ଶ୍ୱିକ ବାତାବରଣ, ବାସ୍ତବିକତା, କାଳ ପ୍ରସଙ୍ଗରେ ସେହି ବ୍ୟକ୍ତିଙ୍କର ସାମାଜିକ ସ୍ଥିତି, ବ୍ୟକ୍ତିଗତ ସମ୍ବନ୍ଧ ଇତ୍ୟାଦିକୁ ବୁଝି ନ ପାରିବା ଫଳରେ ଔପନ୍ୟାସିକମାନେ ଝାନ୍‌ସୀର ରାଣୀଙ୍କ ଚରିତ୍ର ସହିତ ଅନ୍ୟାୟ କରିବାର ଦୁଃସାହସ କରିଛନ୍ତି । ଅନ୍ୟ ଜଣେ ଲେଖକ ଲକ୍ଷ୍ମୀବାଈଙ୍କର ପିଲାଦିନର ଗୋଟିଏ ଘଟଣାର ବର୍ଣ୍ଣନା ଏହିପରି କରିଛନ୍ତି– ମୋରୋପନ୍ତ ନିଜର ଛୋଟଝିଅ ମନୁକୁ କହନ୍ତି– "ଏହି ତରବାରିକୁ ତଳେ ରଖିଦିଅ" ଏହା ଶୁଣି ଚଞ୍ଚଳ ଓ ଡିଆଁକୁଦା କରୁଥିବା ମନୁ ତା'ର ବାପାଙ୍କୁ କହେ "ଏହି ତରବାରିରେ ଇଂରେଜଙ୍କୁ ପରାଜିତ ନ କରିବା ଯାଏଁ ମୁଁ ଏହାକୁ ତଳେ ରଖିବି ନାହିଁ ।" ଏଇଠି ପ୍ରଶ୍ନ ଉଠେ ଯେ ଡିଆଁକୁଦା କରୁଥିବା ଏହି ବାଳିକା ନିଜ ହାତରେ ସବୁବେଳେ ତରବାରି ଧରି ବୁଲୁଥିଲା । ଧରି ନିଆଯାଉ ଛୋଟ ଖେଳଣା ତରବାରିଟିଏ ତାହା ହାତରେ ଥିବ, ତଥାପି କ'ଣ ତା'ର ବୟସକୁ ଦେଖିଲେ କହିହେବ ଯେ ତା'ର କୋମଳ ହୃଦୟରେ ସେ ଇଂରେଜଙ୍କୁ ପରାଜିତ କରିବାର ସ୍ୱପ୍ନ ଦେଖିପାରିଥିବ ? ଲକ୍ଷ୍ମୀବାଈଙ୍କ ବ୍ୟକ୍ତିତ୍ୱର ବିକାଶ ଓ ଗଠନର ପୂରାପୂରି ଜ୍ଞାନପ୍ରାପ୍ତ କରିବା ବିନା ଯଦି ଲେଖାଯିବ ତା'ହେଲେ ଔପନ୍ୟାସିକ ଏହି ପ୍ରକାର ତ୍ରୁଟି ନିଶ୍ଚୟ କରିବ ।

ଯାହାକୁ ଯେପରି ଲାଗିଲା ସେ ସେହିପରି କାଳ୍ପନିକ କଥାର ନିର୍ମାଣ କଲା । ସେଥିରେ ମଧ୍ୟ ପୂରାପୂରି ଅତିଶୟୋକ୍ତି ତ ଥାଏ, ତଥାପି ଏହି ଅତିଶୟୋକ୍ତି ଅସଙ୍ଗତ ଲାଗେ ନାହିଁ, ଯଦି ଏହା ପଛରେ ଏକପ୍ରକାର ତର୍କ ଲୁଚିଥାଏ । ଜଣେ ବ୍ୟକ୍ତିଙ୍କ ସଂପର୍କରେ ମିଥ୍ ନିର୍ମାଣ କରାଯାଏ କାରଣ ତାହା ସମାଜର ଏକ ମାନସିକ ଆବଶ୍ୟକତା, ସେଇଥିପାଇଁ ତାହା ପ୍ରସ୍ତୁତ କରାଯାଏ । ଏହି ମାନସିକ ଆବଶ୍ୟକତା ନିର୍ମାଣ କରାଯାଏ, କାରଣ ସେହି ବ୍ୟକ୍ତିର ସଦ୍‌ଗୁଣ ସମାଜକୁ ଆକର୍ଷିତ କରେ । ସେହିପରି ଉକ୍ତ ବ୍ୟକ୍ତିର ବ୍ୟକ୍ତିତ୍ୱର ଗୂଢ଼ ରହସ୍ୟକୁ ଜାଣିବାର ଉତ୍ସୁକତା ମଧ୍ୟ ସୃଷ୍ଟି ହୋଇଯାଏ । ସେହି ଗୂଢ଼ତାର ସନ୍ଧାନ କଲାବେଳେ ମିଥ୍ ନିର୍ମାଣ କରାଯାଏ । ସେହି ବ୍ୟକ୍ତିଙ୍କର ବାସ୍ତବତାକୁ ସ୍ୱୀକାର କଲାବେଳେ ତାଙ୍କର ଆଖପାଖରେ ଏକ ଅଦ୍‌ଭୁତ ଅଲୌକିକତାର ବଳୟ ନିର୍ମାଣ କରାଯାଏ ଓ ସେହି ବ୍ୟକ୍ତିଙ୍କୁ ଅମର କରି ଦିଆଯାଏ, ଭଗବାନ୍‌ଙ୍କ ସ୍ୱରୂପ ପ୍ରଦାନ କରାଯାଏ ଏବଂ ସେହି ବ୍ୟକ୍ତି ଜନମାନସରେ, ଲୋକଙ୍କ ହୃଦୟରେ ସବୁଦିନ ପାଇଁ ନିଜର ସ୍ଥାନ କରିନିଅନ୍ତି । ଅନେକ ବର୍ଷଯାଏ ସେ ଜନମାନସର ପ୍ରେରଣାର ଉତ୍ସ ହୋଇ ରହିଥାନ୍ତି ।

ସିକନ୍ଦର, ସୋରାବ–ରୁସ୍ତମ ପରି ସୁନ୍ଦର ଐତିହାସିକ ସିନେମା ନିର୍ମାଣ କରିଥିବା ସୋରାବ ମୋଦି 'ଝାନ୍‌ସୀର ରାଣୀ' ନାମରେ ଗୋଟିଏ ସିନେମା ନିର୍ମାଣ କରିଥିଲେ ।

ମରାଠୀ କବି ବି.ବା. ଶିରବାଡ଼କର-କୁସୁମାଗ୍ରଜଙ୍କୁ ରାଣୀ ଲକ୍ଷ୍ମୀବାଈଙ୍କ ଜୀବନ ଉପରେ 'ବୀଜ ମଣହାଲି ଧରତୀଲା' ନାମକ ନାଟକ ଲେଖିବାକୁ ପ୍ରେରଣା ମିଳିଥିଲା । ରାଣୀଙ୍କର ଅତୁଳନୀୟ ଶୌର୍ଯ୍ୟ, ଧୈର୍ଯ୍ୟ, ତାଙ୍କର ଦୟାଶୀଳତା, ଉଦାରତା ଏବଂ ଶେଷରେ ମୃତ୍ୟୁ, ଯୁଦ୍ଧରେ ପରାଜିତ ହେବା ପର୍ଯ୍ୟନ୍ତ ବିଦେଶୀ, ବିଧର୍ମୀ, ଅତ୍ୟାଚାରୀ ଇଂରେଜଙ୍କ ବିରୋଧରେ ଦୃଢ଼ତା ସହକାରେ ସଂଘର୍ଷ କରିବା କାରଣରୁ ତାଙ୍କୁ ଦୁଷ୍ଟ ପ୍ରବୃତ୍ତିର ସଂହାରକ, ରାକ୍ଷସଙ୍କୁ ବିନାଶ କରିବାବାଲୀ ଦୁର୍ଗା, କାଳୀମାତା କୁହାଯିବାରେ ଲାଗିଲା । ଏହିସବୁ ରୂପରେ, ବିବିଧ ଶୈଳୀରେ ତାଙ୍କର ଅନେକ ଚିତ୍ର ଅଙ୍କା ହେଲା, କବିତାମାନ ବି ଲେଖାହେଲା । ମରାଠୀ କବି ଭା.ରା. ତାମ୍ବେଙ୍କ ପରି ହିନ୍ଦୀ କବୟିତ୍ରୀ ସୁଭଦ୍ରା କୁମାରୀ ଚୌହାନ ମଧ୍ୟ 'ଗୌରବଶାଳୀ ଝାନ୍ସୀ' ଶୀର୍ଷକ କବିତା ଲେଖିଲେ, ଯାହା ଆଜି ମଧ୍ୟ ଅତ୍ୟନ୍ତ ଲୋକପ୍ରିୟ । ନିଜ କବିତାର ଆରମ୍ଭରେ ସୁଭଦ୍ରା କୁମାରୀ ଲେଖିଛନ୍ତି-

''ସିଂହାସନ ହିଲ ଉଠେ, ରାଜବଂଶୋନେ ଭୃକୁଟି ତାନୀ ଥି ବୁଢ଼େ ଭାରତମେ ଭି ଆଇ ଫିର୍ ସେ ନୟି ଜବାନୀ ଥି''

କବିତାର ଶେଷରେ ସେ କହନ୍ତି-

''ଦିଖା ଗୟି ପଥ, ସିଖା ଗୟି ହମକୋ ଜୋ ସୀଖ ସିଖାନୀ ଥି, ବୁନ୍ଦେଲେ ହରବୋଲେ କେ ମୁଖ ହମନେ ସୁନୀ କହାନୀ ଥି, ଖୁବ୍ ଲଢ଼ୀ ମର୍ଦାନୀ ୱହ ତୋ ଝାନ୍ସୀବାଲୀ ରାନୀ ଥି ।''

ଏଥି ସହିତ କେତେ ଯେ ଅନାମ କବିମାନେ ଲୋକଗୀତ, ଶୌର୍ଯ୍ୟଗୀତ, ବୀରଗୀତ ରଚନା କରିଛନ୍ତି ।

ବୁନ୍ଦେଲଖଣ୍ଡର ଆଜିର ଉତ୍ତର-ମଧ୍ୟପ୍ରଦେଶରେ ଏହି ଗୀତ ଆଜି ମଧ୍ୟ ଗାଁ ଗାଁରେ ଲୋକମାନେ ଗାଇବାର ଶୁଣାଯାଏ । 'ବାଂଲାଦେଶ' ନିର୍ମାଣ ହେଲା ପରେ ସୁପ୍ରସିଦ୍ଧ ଚିତ୍ରକର ମକବୁଲ-ଫିଦା ହୁସେନ ଏଥିପାଇଁ ଦାୟୀ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କର ଏକ ଚିତ୍ର ଅଙ୍କନ କରିଥିଲେ ଯେଉଁଥିରେ ଶ୍ରୀମତୀ ଗାନ୍ଧିଙ୍କୁ ସେ ରାଣୀ ଲକ୍ଷ୍ମୀବାଈଙ୍କ ପରି ଅଶ୍ୱାରୂଢ଼ା ରୂପରେ ଦର୍ଶାଇଥିଲେ ।

୧୯୪୧ରେ ନେତାଜୀ ସୁଭାଷଚନ୍ଦ୍ର ବୋଷ ହିନ୍ଦୁସ୍ଥାନର ସ୍ୱାଧୀନତା ନିମନ୍ତେ ଆଜାଦ୍‌ହିନ୍ଦ୍ ଫୌଜ ଗଠନ କଲେ । ଭାରତର ସୀମା ବାହାରେ ରହି ଇଂରେଜମାନଙ୍କୁ ଆକ୍ରମଣ କରି ସ୍ୱାଧୀନତା ଫେରି ପାଇବା ପାଇଁ ସୁଭାଷ ବୋଷ ଏହି ପ୍ରଯତ୍ନ ଆରମ୍ଭ କରିଥିଲେ । ଏଥିରେ ନାରୀଙ୍କର ସହଯୋଗ ଉପରେ ନେତାଜୀ ଗୁରୁତ୍ୱ ପ୍ରଦାନ କରିଥିଲେ । ସେହି ଅନୁସାରେ ୧୯୪୩ ମସିହା ଅକ୍ଟୋବର ମାସରେ ସେ ଆଜାଦ୍‌ହିନ୍ଦ୍ ସେନାର ଏକ ନାରୀ-ଶାଖା ଗଠନ କଲେ ଓ ତାହାର ନାମ ଦେଲେ- 'ରାଣୀ ଝାନ୍ସୀ ରେଜିମେଣ୍ଟ' । ସେହି ଅବସରରେ ନେତାଜୀ ନିଜର ଭାଷଣରେ ବୈଦିକ ଯୁଗର ଭାରତୀୟ ନାରୀଙ୍କର ତଥା ଝାନ୍ସୀରାଣୀ ଲକ୍ଷ୍ମୀବାଈଙ୍କର ବୀରତ୍ୱର ଗୌରବପୂର୍ଣ୍ଣ ଅବତାରଣା କରି କହିଥିଲେ

ଯେ ''ଗୋଟିଏ ଝାନ୍‌ସୀକୁ ମୁକ୍ତ କରିବାପାଇଁ ଏବଂ ସ୍ୱାଧୀନତା ପାଇଁ ଜଣେ ରାଣୀ ଲକ୍ଷ୍ମୀବାଈ ଆଗେଇ ଆସିଥିଲେ । ଆଜି ଏତେ ବଡ଼ ହିନ୍ଦୁସ୍ଥାନରୁ ରାଷ୍ଟ୍ର ନିମନ୍ତେ ହଜାର ହଜାର ଝାନ୍‌ସୀରାଣୀ ଆମକୁ ତିଆର କରିବାକୁ ହେବ । ଦୁର୍ଭାଗ୍ୟରୁ ଝାନ୍‌ସୀ ରାଣୀ ପରାଜିତ ହୋଇଥିଲେ । ଏହା ତାଙ୍କର ପରାଜୟ ନୁହେଁ, ସାରା ହିନ୍ଦୁସ୍ଥାନର ପରାଜୟ ଥିଲା । ରାଣୀ ଚାଲିଗଲେ । କିନ୍ତୁ ତାଙ୍କର ଆତ୍ମା ଅଜର-ଅମର ଅଟେ । ହିନ୍ଦୁସ୍ଥାନ ପୁଣି ଥରେ ଏପରି ଅନେକ ଝାନ୍‌ସୀ ରାଣୀଙ୍କୁ ଜନ୍ମ ଦେଇ ବିଜୟ ଆଡ଼କୁ ଅଗ୍ରସର ହୋଇପାରିବ ।''

ନିଜର ସ୍ୱତନ୍ତ୍ରତା ପାଇଁ ଲଢ଼ିଲାବାଲୀ ଝାନ୍‌ସୀରାଣୀଙ୍କ ନାମ କାଳ କାଳ ପାଇଁ ସ୍ୱାଧୀନତା ଆନ୍ଦୋଳନ ସହିତ ଯୋଡ଼ି ଦିଆଗଲା, କିନ୍ତୁ ସୁଭାଷ ବୋଷଙ୍କ ପରି ନେତାମାନେ ତାଙ୍କ ସଂପର୍କରେ ଏପରି ଗୌରବମୟ ବକ୍ତବ୍ୟ ରଖି ଏକପ୍ରକାର ସେଥିରେ ସ୍ୱୀକୃତିର ମୋହର ଲଗାଇ ଦେଇଥିଲେ । ଆଜି ମଧ ନାରୀ ମୁକ୍ତି ପାଇଁ ହେଉଥିବା ଆନ୍ଦୋଳନ ପଛରେ ଥିବା ସ୍ତ୍ରୀଲୋକଙ୍କୁ ଝାନ୍‌ସୀ-ରାଣୀ ସ୍ତ୍ରୀ-ମୁକ୍ତିର ପ୍ରତୀକ ଭାବେ ପ୍ରତୀତ ହୁଅନ୍ତି । କୌଣସି ବାଳିକା ଯଦି କିଛି ସାହସିକ ତଥା ସ୍ୱତନ୍ତ୍ର ପ୍ରବୃତ୍ତି ପ୍ରଦର୍ଶନ କରେ ଲୋକେ ତାକୁ ଝାନ୍‌ସୀରାଣୀ କହି ତା'ର ସାହସର ପ୍ରଶଂସା କରିଥାନ୍ତି ।

ମୁଁ ଯେତେବେଳେ ଝାନ୍‌ସୀ ଯାଇଥିଲି ସେତେବେଳେ ମୁଁ ଅନେକ ଲୋକଙ୍କ ସହିତ ଆଲୋଚନା କରିଥିଲି । ଚର୍ଚ୍ଚା ସମୟରେ ଥରେ ଶ୍ରୀ ଜାନକୀଶରଣ ବର୍ମା ଉତ୍ସାହିତ ହୋଇ କହିଥିଲେ- ''ବାଈସାହେବାଙ୍କ ଦେହାନ୍ତ କେଉଁଠି ହୋଇଛି ? ସେ ତ ଆଜି ବି ଆମରି ଭିତରେ ଅଛନ୍ତି'' । ଝାନ୍‌ସୀର ବହୁ ଲୋକଙ୍କ ଭିତରେ ମୁଁ ଏହି ଭାବନା ଦେଖିବାକୁ ପାଇଥିଲି । ଝାନ୍‌ସୀର କିଲା ଦେଖିବାକୁ ଗଲି । ମୁଁ ଝାନ୍‌ସୀ ରାଣୀଙ୍କର ଜୀବନଚରିତ ଲେଖିବାକୁ ଯାଉଛି, ସେଇଥିପାଇଁ କିଲା ଦେଖିବାକୁ ଆସିଛି, ଏ କଥା ଜାଣିବାମାତ୍ରେ ଜଗୁଆଳି ଆମଠାରୁ ପ୍ରବେଶଶୁଳ୍କ ନେବାକୁ ମନା କରିଦେଲା । ''ଆପଣ ତ ଆମର ବାଈସାହେବାଙ୍କ ଚରିତ ରଚନା କରୁଛନ୍ତି, ଆମେ ଆପଣଙ୍କ ନିକଟରେ କୃତଜ୍ଞ, ଆପଣଙ୍କ ପାଖରୁ ପଇସା କିପରି ନେଇପାରିବୁ ?'' ଏହାହିଁ ଥିଲା ତାଙ୍କର ଆବେଗପୂର୍ଣ୍ଣ ଭାବନା । ଏହି ଭାବନା ସେଠାର ସଂଗ୍ରହାଳୟର ସଞ୍ଚାଳକ ଡାଃ. ରାମଚନ୍ଦ୍ର ତିଓ୍ୱାରୀ ଏବଂ ଝାନ୍‌ସୀର ମୁଖ୍ୟ ଗ୍ରନ୍ଥାଳୟର ଗ୍ରନ୍ଥପାଳ ଶ୍ରୀ ରାକେଶ ପାଠକଙ୍କ ଭିତରେ ମଧ ଦେଖିବାକୁ ମିଳିଥିଲା । ଡାଃ ତିଓ୍ୱାରୀ, ସୁଖଦେବ ଚିତ୍ରକରଙ୍କ ଦ୍ୱାରା ବୁନ୍ଦେଲଖଣ୍ଡ ଶୈଳୀରେ ଅଙ୍କନ କରାଯାଇଥିବା ରାଣୀ ଲକ୍ଷ୍ମୀବାଈଙ୍କର ଅସଲି ଚିତ୍ରର ଫଟୋକପି ପ୍ରସ୍ତୁତ କରି ମୋତେ ଖୁସିରେ ଉପହାର ଦେଇଥିଲେ । କୌଣସି ପ୍ରକାରର ମୂଲ୍ୟ ନ ନେଇ ଗ୍ରନ୍ଥପାଳ ଶ୍ରୀ ପାଠକ ମୋ ପାଇଁ ଅନେକ ପୁସ୍ତକ ସଂଗ୍ରହ କରି ଦେଇଥିଲେ । ବୁନ୍ଦେଲଖଣ୍ଡର, ଝାନ୍‌ସୀର ଇତିହାସ ଲେଖିଥିବା ମାନ୍ୟବର ଗବେଷକ, ଇତିହାସକାର ଡାଃ ଭଗବାନ୍ ଦାସଙ୍କ ପତ୍ନୀ ଡାଃ ସୁଧା ଗୁପ୍ତା ନିଜ ସ୍ୱାମୀଙ୍କ ରଚିତ ଏକ ଦୁର୍ଲଭ ପୁସ୍ତକର କପିଟିଏ ମୋତେ ଦେଇଥିଲେ । ମହାରାଷ୍ଟ୍ରରୁ ଜଣେ ମହିଳା ଝାନ୍‌ସୀ ଆସି ତାଙ୍କର ଅତି ଆଦରର 'ବାଈସାହେବା'ଙ୍କ ସଂପର୍କରେ ସୂଚନା

ସଂଗ୍ରହ କରୁଛି, ଏହା ପରେ ଜୀବନ-ଚରିତ ଲେଖିବାକୁ ଯାଉଛି-ସେଠିକାର ଲୋକମାନେ ଏହି କଥା ପାଇଁ ବହୁ କୌତୂହଳ ପ୍ରକାଶ କରୁଥିଲେ, ଏହା ମୋତେ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଥିଲା । ମହାରାଷ୍ଟ୍ରର ହୋଇଥିଲେହେଁ, ମହାରାଷ୍ଟ୍ର ରାଣୀ ଲକ୍ଷ୍ମୀବାଈଙ୍କ ଉପରେ ଅଧିକ ଧ୍ୟାନ ଦେଇ ନାହିଁ, ସେମାନେ ମୋ ଆଗରେ ଏହି ଦୁଃଖ ବ୍ୟକ୍ତ କରିଥିଲେ ।

ଇତିହାସ ଲେଖିଲାବେଳେ ଅନେକ ସମୟରେ ଅଚାନକ ଗୋଟିଏ ନା ଗୋଟିଏ ଐତିହାସିକ ସତ୍ୟ ଆଗକୁ ଆସିଯାଏ । ସେତେବେଳେ ବିଲକ୍ଷଣ ପରିସ୍ଥିତି ସୃଷ୍ଟି ହୋଇଯାଏ, ଝାନ୍ସୀରୁ ମତେ ଏହିପରି ଅନୁଭବ ମିଳିଥିଲା । ଗତ ଦେଢ଼ ଦୁଇ ଶହ ବର୍ଷ ଧରି ଝାନ୍ସୀରେ ରହୁଥିବା ଗୋଟିଏ ସଂଯୁକ୍ତ ପରିବାର ସହିତ ମୋର ପରିଚୟ ହୋଇଥିଲା । ପରିବାରର ଜଣେ ସଦସ୍ୟଙ୍କ ସହିତ କଥାବାର୍ତ୍ତା କରୁ କରୁ ସେ ମୋତେ ବତାଇଲେ ଯେ କୋଡ଼ିଏ-ପଚିଶ ବର୍ଷ ତଳେ ଅଗଣାର କୂଅ ପାଖରେ ନୂଆ ଘରଟିଏ ତୋଳିବା ପାଇଁ ମାଟି ଖୋଳିବା ସମୟରେ ମାଟି ତଳୁ ମଣିଷର ଅସ୍ଥି, କଙ୍କାଳ, ଖପୁରୀ ଏବଂ ତା' ପାଖରେ ଭଙ୍ଗା କାଚଚୁଡ଼ିର ଟୁକୁରା ଓ ପ୍ରସାଧନ ସାମଗ୍ରୀ ମିଳିଥିଲା । ଘରର ଅଗଣାରୁ ଏପରି ମଣିଷର ହାଡ଼କଙ୍କାଳ ବାହାରିବାକୁ ଅଶୁଭ ଓ ଭୟଙ୍କର କଥା ଭାବରେ ଧରାଯାଉଥିଲା । ସେଥିପାଇଁ ଏହିସବୁକୁ ଗୁପ୍ତଭାବରେ ସ୍ଥାନାନ୍ତରିତ କରିଦିଆଯାଇଥିଲା । ଏହି ଘଟଣା ଜାଣିବା ପରେ ମତେ ସେ ଦିନସବୁ ସ୍ମରଣକୁ ଆସିଲା । ଯେତେବେଳେ ଫିରିଙ୍ଗିସେନା ଝାନ୍ସୀ ସହରରେ ପ୍ରବେଶ କରିଥିଲେ; ବିଜୟ ପାଇବା ପାଇଁ ସେମାନେ ପ୍ରତ୍ୟେକ ବୟସର ଲୋକମାନଙ୍କୁ ସଂହାର କରିବା ଆରମ୍ଭ କରି ଦେଇଥିବେ । ସମୟର ଗମ୍ଭୀରତାକୁ ଦେଖି ସିପାହିଙ୍କ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ଝାନ୍ସୀର ବହୁ ସ୍ତ୍ରୀଲୋକ ଗୃହ ମଧ୍ୟରେ ଥିବା କୂଅ ଭିତରକୁ ଡେଇଁପଡ଼ି ପ୍ରାଣ ବିସର୍ଜନ କରିଥିଲେ । ଗଡ଼ସେ ଭଟ୍ଟ ତଥା ଅନେକ ଇଂରେଜ ଲେଖକ ମଧ୍ୟ ନିଜ ପୁସ୍ତକରେ ଏହି ଘଟଣାର ଉଲ୍ଲେଖ କରିଛନ୍ତି । ସେହି ବ୍ୟକ୍ତିଜଣକ ଯେତେବେଳେ ମତେ ଏକଥା ଶୁଣାଉଥିଲେ ସେତେବେଳେ ତ ତାଙ୍କ ଆଖିରେ ଲୁହ ଭରି ଯାଇଥିବାର ମୁଁ ଦେଖିଥିଲି । ହୋଇପାରେ ତାଙ୍କ ପୂର୍ବଜମାନଙ୍କ ଭିତରୁ କେହି ମହିଳା ସେହି ଦଙ୍ଗା-ଫସାଦର ଦିନମାନଙ୍କରେ ନିଜର ଇଜ୍ଜତ ବଞ୍ଚାଇବାକୁ ଯାଇ ଘରର କୂଅ ଭିତରକୁ ଡେଇଁପଡ଼ି ନିଜର ପ୍ରାଣ ହରାଇଦେଇଥିଲେ, ଏହି ଐତିହାସିକ ସତ୍ୟକୁ ସେ ନିଜ ଘର ଭିତରେ ଇ ଚୁପ୍‌ଚାପ୍ ଚାପି ଦେଇଛନ୍ତି । ତାଙ୍କର ଅବସ୍ଥା ଦେଖି ମୁଁ ବି ଭାବପ୍ରବଣ ହୋଇପଡ଼ିଥିଲି । ଝାନ୍ସୀରେ ଆଜି ଏମିତି ଅଗଣିତ କେତେ ଯେ ପୁରୁଣା ଘର ଥିବ ଯେଉଁଠାରେ ଏହିପରି ଐତିହାସିକ ସତ୍ୟ ପଡ଼ିରହିଥିବ ଓ ନିଜର କାହାଣୀ କହିବା ପାଇଁ ଉତ୍ସୁକ ହୋଇ ଉଠୁଥିବ ।

୧୮୫୭ ମସିହାରେ ଦିଲ୍ଲୀର ବାଦଶାହ ବାହାଦୁରଶାହ ଜାଫରଙ୍କ ଉପରେ ମୁଁ ୧୯୭୯ରେ 'ବଦନସୀବ' ଶୀର୍ଷକ ଏକ ଉପନ୍ୟାସ ରଚନା କରିଥିଲି । ଏହାର ସଂଶୋଧିତ ଦ୍ୱିତୀୟ ସଂସ୍କରଣ ୨୦୦୦ ମସିହାରେ 'ଅଖେରଟା ବାଦଶାହ' ଶୀର୍ଷକରେ ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସ ଲେଖିବା କାରଣରୁ ୧୮୫୭ର ଯୁଦ୍ଧ, ସେ ସମୟର

ମୋଟାମୋଟି ବାତାବରଣ, ଏ ସବୁ ମୋ ପାଇଁ ପୂରାପୂରି ପରିଚିତ ଥିଲା । ସେହି କାରଣରୁ ରାଣୀ ଲକ୍ଷ୍ମୀବାଈ, ଝାନ୍‌ସୀର ରାଜନୀତିକୁ ବୁଝିବା ମୋ ପାଇଁ ଅଧିକ ସୁଗମ ହୋଇଗଲା । ଗ୍ରନ୍ଥାଳୟ, ମୁମ୍ବଇର ପୁରାତତ୍ତ୍ୱ ବିଭାଗରୁ ଉପାଦାନ ଏକତ୍ରିତ କଲି । ଝାନ୍‌ସୀ ସହରର ଆଖପାଖର ପରିସର, କିଲ୍ଲା, ଗୋଆଲିଅର୍‌ର ପରିସରକୁ ଯାଇ ନିରୀକ୍ଷଣ କଲି । ସେଠିକାର ଲୋକଙ୍କ ସହିତ ଚର୍ଚ୍ଚା କଲି ଏବଂ ନିଜର ବିଷୟବସ୍ତୁର ଏକ ସଂପୂର୍ଣ୍ଣ ପ୍ରସ୍ତୁତି ଶେଷ କଲି । ଉପନ୍ୟାସ ସ୍ଥାନରେ ଜୀବନଚରିତ ଲେଖିବାକୁ ମୁଁ ସ୍ଥିର କଲି । ଚରିତ-ରଚନାରେ ସତ୍ୟ ପୂରାପୂରି ସୁନା ପରି ନିଆଁରେ ପୋଡ଼ି ପୋଡ଼ି ଖାଣ୍ଟି ହୋଇଥାଏ, ଯେତେବେଳେ କି ଉପନ୍ୟାସର କାହାଣୀ କଳ୍ପନାର ଆବରଣ ତଳେ ଲୁଚିଯାଏ ।

ଝାନ୍‌ସୀ, ଗୋଆଲିଅର୍‌କୁ ଯିବା ପୂର୍ବରୁ ମୁଁ ଗଡ଼ସେଙ୍କ ଦ୍ୱାରା ଲିଖିତ 'ମାଝାପ୍ରବାସ' ବହିଟିକୁ ବହୁବାର ପଢ଼ିଲି । ଏଥିରୁ ମତେ ଏହି ଯୁଦ୍ଧ ସହିତ ସମ୍ବନ୍ଧିତ ବ୍ୟକ୍ତି, ଘଟଣା, ପରିସର, ବସ୍ତୁ ଇତ୍ୟାଦି ବିଶଦ ସୂଚନା ମିଳିଗଲା । ଏହି କାରଣରୁ ମୁଁ ଯେତେବେଳେ ପ୍ରଥମଥର ପାଇଁ ଝାନ୍‌ସୀ ଏବଂ ଗୋଆଲିଅର୍ ଗଲି, ସେତେବେଳେ ମତେ ସେଠିକାର ପୂରା ପରିସର ନିର୍ମାଣକଳା ପୂର୍ବପରିଚିତ ଲାଗିଥିଲା । ସେଠିକାର ଘଟଣା ସତେକି ଗୋଟି ଗୋଟି କରି ମୋ ଆଖିଆଗରେ ଚଳଚ୍ଚିତ୍ର ପରି ନାଚିଉଠିଥିଲା । ଝାନ୍‌ସୀର ଦୁର୍ଗ ବେଶ୍ ବ୍ୟାପକ ଓ ଖୋଲାମେଲା ତ ଥିଲା, ଖୁବ୍ ମଜବୁତ୍ ମଧ୍ୟ ଥିଲା । କିନ୍ତୁ ମୂଳ ଦୁର୍ଗ ଓ ଏହାକୁ ଯୋଡ଼ିବା ପାଇଁ ପରେ ନିର୍ମାଣ କରାଯାଇଥିବା ଶଙ୍କର ଦୁର୍ଗ ଗଢ଼ା ହେବା ପରେ ଏବେ କିଲ୍ଲାର ଦୁଇଟି ଭାଗ ହୋଇଯାଇଛି । ସେଥିପାଇଁ ସୁଦୃଢ଼ତା ଏବଂ ବିଶାଳତା ସହିତ କିଲ୍ଲାକୁ ଭବ୍ୟ ରମଣୀୟତା ମଧ୍ୟ ପ୍ରାପ୍ତ ହୋଇଯାଇଛି । ଏହାର ଫଟୋ ଉଠାଇବାବେଳେ ଏପରି ଲାଗୁଥିଲା ଯେପରି ମୁଁ ଏହାର ଘଟଣାବଳୀକୁ ମଧ୍ୟ ମୋର କ୍ୟାମେରାରେ ଧରି ରଖୁଛି ।

ରାଣୀଙ୍କ ସଂପର୍କରେ ଲୋକଙ୍କ ମନରେ କେତେ ତୀବ୍ର ଭାବପ୍ରବଣତା ଥିଲା, କିଲ୍ଲା ଭିତରେ ବୁଲିବା ସମୟରେ ମୁଁ ସେକଥା ଅନୁଭବ କରିଥିଲି । ଯେଉଁ ସ୍ଥାନରେ ରାଣୀ ଘୋଡ଼ା ପିଠିରୁ ଡେଇଁପଡ଼ି କାଲ୍‌ପୀ ଅଭିମୁଖେ ପ୍ରସ୍ଥାନ କରିଥିଲେ (ଏହିପରି କୁହାଯାଏ) ଆମେ ସେହି ସ୍ଥାନରେ ଠିଆ ହୋଇଥିଲୁ । ସେତିକିବେଳେ ସେଠାରେ ଏକ ପଞ୍ଜାବୀ ପରିବାର ଆସି ପହଞ୍ଚିଲେ । ଜଣେ ଲୋକ ପିଲାମାନଙ୍କୁ ସେହି ସ୍ଥାନ ସଂପର୍କରେ ଅତ୍ୟନ୍ତ ଶ୍ରଦ୍ଧା ଓ ଆବେଗ ସହକାରେ ସବୁ କଥା ବୁଝାଉଥିଲେ । ସେତିକିବେଳେ ମୋ ଭିତରର ଲେଖକ ଜାଗ୍ରତ ହୋଇଉଠିଲା ଏବଂ ମୁଁ ରାଣୀଙ୍କର ସେଠାରୁ ପଳାୟନ କରିବାର ବାସ୍ତବିକତା ସଂପର୍କରେ ତାଙ୍କୁ କହିଲି ।

ସେକଥା ଶୁଣି ସେହି ବ୍ୟକ୍ତି ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ମୋ ସହିତ ଝଗଡ଼ା କରିବାକୁ ଲାଗିଗଲେ । ମୁଁ ତାଙ୍କୁ ବୁଝାଇବାକୁ ଯାଇ କହିଲି ଯେ ଏତେ ଉଚ୍ଚରୁ ଘୋଡ଼ା ଉପରକୁ ଭୂଇଁକୁ ଡେଇଁବା ଅସମ୍ଭବ ଅଟେ । ରାଣୀ ନିଶ୍ଚୟ ଶୂରବୀର ଥିଲେ କିନ୍ତୁ ହ୍ୟୁରୋଜଙ୍କ ସୈନ୍ୟଙ୍କ ଆଖିରେ ଧୂଳି ଦେଇ ସେ ଯେପରି ପଳାଇ ଯାଇପାରିଥିଲେ ସେଥିରୁ ତାଙ୍କର

ଚତୁରତା ଓ ଦୂରଦର୍ଶିତାର ପରିଚୟ ମିଳିଥାଏ । ସେହି ବ୍ୟକ୍ତିଙ୍କୁ ମୋ କଥା ଠିକ୍ ତ ଲାଗୁଥିଲା କିନ୍ତୁ ସେ ତାହା ମାନିବାକୁ ପ୍ରସ୍ତୁତ ନ ଥିଲେ । ଆପଣମାନେ "ମରାଠୀ ହୋଇ ମଧ୍ୟ ରାଣୀଙ୍କ ପ୍ରତି ଆପଣଙ୍କର ଅଭିମାନ କାହିଁକି ନାହିଁ ?" ଏଥିପାଇଁ ତାଙ୍କର ମୋ ଉପରେ ରାଗ ମଧ୍ୟ ହେଲା ।

ଏହି ପୁସ୍ତକ ଲେଖିବା ପାଇଁ ବହୁ ବ୍ୟକ୍ତି ମତେ ସର୍ବାନ୍ତଃକରଣରେ ସାହାଯ୍ୟ କରିଛନ୍ତି । ସର୍ବପ୍ରଥମେ ମୁଁ ଝାନ୍‌ସୀର ଶ୍ରୀ ଜାନକୀଶରଣ ବର୍ମା ଏବଂ ଶ୍ରୀରାମ ଗୁଁଠେଙ୍କୁ ମୋର କୃତଜ୍ଞତା ଜଣାଇବାକୁ ଚାହେଁ । ସଂପୂର୍ଣ୍ଣ ଝାନ୍‌ସୀ ସହର, ପରିସର, କିଲ୍ଲା ଦେଖିବାବେଳେ ଗୁଁଠେ ଏବଂ ବର୍ମା ମହାଶୟ ଝାନ୍‌ସୀର ଉଦୁଉଦିଆ ଖରାବେଳେ ମୋ ସହିତ ରହିଥିଲେ ଏବଂ ସମସ୍ତ ସୂଚନା ପ୍ରଦାନ କରୁଥିଲେ ।

ଅନେକ ନଥିପତ୍ର, ଖବରକାଗଜର ଲେଖା, ଗଙ୍ଗାଧର ରାଓଙ୍କର ବିବାହ ନିମନ୍ତ୍ରଣ ପତ୍ର, ବାଣପୁର ରାଜାଙ୍କୁ ରାଣୀ ଲେଖିଥିବା ସମସ୍ତ ମହତ୍ତ୍ୱପୂର୍ଣ୍ଣ ଚିଠିକୁ ବର୍ମାଜୀ ଅତି ଆନନ୍ଦର ସହିତ ମୋ ପାଇଁ ସଂଗ୍ରହ କରି ଦେଇଥିଲେ । ତାଙ୍କ ସହିତ ଚର୍ଚ୍ଚା କରିବା ସମୟରେ ମୋ ମନରେ ଥିବା ବିଚାର ଅଧିକ ସ୍ପଷ୍ଟ ଓ ବ୍ୟାପକ ହୋଇପାରିଥିଲା । ଏହି ପୁସ୍ତକକୁ ମୁଁ ସେ ଦୁହିଁଙ୍କୁ ସମର୍ପଣ କରୁଛି ।

ପନ୍ଦର-ଷୋହଳବର୍ଷ ପୂର୍ବେ 'Indian Express' ଇଂରେଜୀ ଖବରକାଗଜରେ ୧୦୦-୧୫୦ ବର୍ଷ ତଳର ଛାୟାଚିତ୍ର ପ୍ରକାଶିତ ହୋଇଥିଲା । ସେଥିରେ 'Rani of Jhansi 1850' ଲେଖାଯାଇଥିବା ଫଟୋ ରହିଥିଲା । ସେତେବେଳେ ସେହି ଫଟୋ ଦେଖି ଖୁବ୍ ଆଶ୍ଚର୍ଯ୍ୟ ତଥା ଆନନ୍ଦିତ ହୋଇଥିଲି । ମୋ ପୁଅ ଜୟଦେବ ସେହି ଫଟୋର ସ୍କାନିଂ କରି ଗୋଟିଏ କପି ମୋ ପାଇଁ ବାହାର କରି ଦେଇଥିଲା, ସେଥିପାଇଁ ମୁଁ ପ୍ରଥମଥର ପାଇଁ ରାଣୀ ଲକ୍ଷ୍ମୀବାଈଙ୍କ ଛାୟାଚିତ୍ର ପାଠକମାନଙ୍କ ସମ୍ମୁଖରେ ରଖିପାରିଲି । ସେଥିପାଇଁ ମୁଁ ଜୟଦେବ ପାଖରେ କୃତଜ୍ଞ । ସେହି ଫଟୋକୁ ପ୍ରଥମେ ଦେଖି ଆଖିରେ ଲୁହ ଭରି ଯାଇଥିଲା । ଲକ୍ଷ୍ମୀବାଈଙ୍କର ସୁନ୍ଦର ଉଗ୍ର ଚେହେରା, ବସିବାର ଏକ ନିଜସ୍ୱ ଅନୁପମ ଶୈଳୀ, ତାଙ୍କର ତୀବ୍ର, ତେଜସ୍ୱୀ ଆଖି ଏବଂ ହାତର ମଜବୁତ୍ ପନ୍‌ଝା... । ସେହି ଅଜ୍ଞାତ ଫଟୋଗ୍ରାଫର୍ ଯିଏ ହୁଅନ୍ତୁ ନା କାହିଁକି ସେ ରାଣୀଙ୍କ ବ୍ୟକ୍ତିତ୍ୱକୁ ସବୁଦିନ ପାଇଁ ଏକ ପ୍ରଭାବଶାଳୀ ସ୍ୱରୂପ ପ୍ରଦାନ କରିଛନ୍ତି । ତାଙ୍କର ଏହି କୁଶଳତାର ପ୍ରଶଂସା କରିବାକୁ ହିଁ ପଡ଼ିବ ।

ଶ୍ରୀ ଜାନକୀଶରଣ ବର୍ମା ତଥା ଶ୍ରୀରାମ ଗୁଁଠେଙ୍କ ଯୋଗୁଁ ଆଜିଯାଏଁ ମରାଠୀରେ ମିଳୁ ନ ଥିବା ରାଣୀ ଲକ୍ଷ୍ମୀବାଈଙ୍କ ସଂପର୍କରେ ଅଧିକରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ତଥ୍ୟ ଓ ଉପାଦାନକୁ ମୁଁ ମରାଠୀରେ ପ୍ରଥମଥର ପାଇଁ ପ୍ରସ୍ତୁତ କରିପାରିଲି । ବିଶେଷତଃ ରାଣୀ ଲକ୍ଷ୍ମୀବାଈ ବାଣପୁରର ରାଜା ମର୍ଦାନ ସିଂହଙ୍କୁ ୧୮୫୭ର ଯୁଦ୍ଧ ସଂପର୍କରେ ଲେଖିଥିବା ପତ୍ରଗୁଡ଼ିକରୁ ଯୁଦ୍ଧ ସମ୍ବନ୍ଧରେ ନିର୍ଣ୍ଣାୟକ ଏବଂ ମହତ୍ତ୍ୱପୂର୍ଣ୍ଣ ସୂଚନା ମିଳିଥାଏ । ମରାଠୀରେ

ଏହା ପ୍ରଥମଥର ପାଇଁ ପ୍ରକାଶିତ ହେଉଅଛି । ଏହି ବିଷୟରେ ଉକ୍ତ ତିନିଜଣଙ୍କୁ ଯେତେ କୃତଜ୍ଞତା ଜଣାଇଲେ ମଧ୍ୟ କମ୍ ହେବ । ମୁଁ ତ କେବଳ ଏକ ମାଧ୍ୟମ ମାତ୍ର । ପ୍ରାପ୍ତ ଉପାଦାନସବୁକୁ ଅନୁଶୀଳନ କଲାବେଳେ ଅଲଗା ଏକ ତନ୍ମୟତାରେ ନିମଜ୍ଜିତ ରହି ମୁଁ ଏହି ପୁସ୍ତକ ଲେଖିଅଛି ଏବଂ ଏଥିରେ ପୂର୍ଣ୍ଣ ସନ୍ତୋଷ ଲାଭ କରିଅଛି ।

ଡାଃ ଗୋବିନ୍ଦ ଗୁଁଠେ ବହୁ ପରିଶ୍ରମ କରି ଓ ଗଭୀର ଆଗ୍ରହର ସହିତ ଏହାକୁ ହିନ୍ଦୀରେ ଅନୁବାଦ କରିଛନ୍ତି । ମୁଁ ତାଙ୍କ ପ୍ରତି ଗଭୀର କୃତଜ୍ଞତା ଜ୍ଞାପନ କରୁଛି । ମୋର ବିଶ୍ୱାସ ହିନ୍ଦୀର ପାଠକମାନେ ଏହାକୁ ଆନନ୍ଦର ସହିତ ସ୍ୱୀକାର କରିବେ । ଏହା ସହିତ ଏହି ପୁସ୍ତକ ପାଇଁ ସହଯୋଗ କରିଥିବା ଶିବେନ୍ଦ୍ରନାଥ ଶର୍ମା (ମୋଇତ୍ରା) ସାଧୁବାଦର ପାତ୍ର ଅଟନ୍ତି ।

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ବିଭିନ୍ନ ଭାରତୀୟ ଭାଷାର ପୁସ୍ତକସବୁର ହିନ୍ଦୀ ଅନୁବାଦ ମଧ୍ୟ ପ୍ରକାଶ କରନ୍ତି ଜାଣି ମତେ ବହୁତ ଖୁସି ଲାଗିଛି । ମୋର ବହି 'ଝାନ୍ସୀର ରାଣୀ ଲକ୍ଷ୍ମୀବାଈ' ହିନ୍ଦୀଭାଷୀଙ୍କ ନିକଟରେ ପହଞ୍ଚିବାକୁ ଯାଉଛି ଏହା ମତେ ଅତ୍ୟନ୍ତ ସନ୍ତୋଷ ପ୍ରଦାନ କରିଛି । ନ୍ୟାସନାଲ ବୁକ୍ ଟ୍ରଷ୍ଟ ନିକଟରେ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି ।

# ଅଧ୍ୟାୟ-୧

## ଝାନ୍ସୀ : ପୂର୍ବ ଇତିହାସ

୧୮ ଶହ ଓ ୧୯ ଶହ ଶତାବ୍ଦୀରେ ଅଚାନକ ଖ୍ୟାତି ପ୍ରାପ୍ତ କରିଥିବା ବୁନ୍ଦେଲଖଣ୍ଡ ଇଲାକା ପ୍ରାଚୀନ କାଳରେ ଚେଦି ମହାଜନ ପଦ ନାମରେ ଜଣାଶୁଣା ଥିଲା । ଚେଦି ରାଜାମାନଙ୍କର ଉଲ୍ଲେଖ ମହାଭାରତରେ ମଧ୍ୟ ଦେଖାଯାଏ । ମହାଭାରତର ଚରିତ୍ର ଶିଶୁପାଳ ଚେଦିର ରାଜା ଥିଲେ, ଯମୁନା ନଦୀର ଦକ୍ଷିଣରେ ଦଶାର୍ଣ, ପୁଷ୍ପାବତୀ, କର୍ଣ୍ଣବତୀ ଓ ସିନ୍ଧୁନଦୀ ଏଇ ଚାରି ନଦୀର ଜଳକୁ ସ୍ପର୍ଶ କରୁଥିବା ବିନ୍ଧ୍ୟ ପର୍ବତମାଳାର ଗଡ଼ାଣିଆ ଛୋଟ ଛୋଟ ପାହାଡ଼ ପରିବେଷ୍ଟିତ ଏହି ପ୍ରଦେଶ ରାମାୟଣ କାଳରେ ଦଣ୍ଡକାରଣ୍ୟର ଏକ ଅଂଶ ଥିଲା ।

ଐତିହାସିକ କାଳରେ ଚେଦି ମହାଜନ ପଦର ରାଜାମାନଙ୍କୁ ବହୁତ ମହତ୍ତ୍ୱ ଦିଆଯାଉଥିଲା । କାଳକ୍ରମ ଅନୁସାରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ, ରାଜା ଅଶୋକ ଓ ଗୁପ୍ତକାଳୀନ ରାଜାମାନଙ୍କର ପ୍ରଦେଶରୂପେ ଏହା ବିଖ୍ୟାତ ଥିଲା । ଏହାକୁ ଦଶାର୍ଣ ରୂପେ ଉଲ୍ଲେଖ କରାଯାଏ । ତାହା ପରେ ଅର୍ଥାତ୍ ୧୫୩୧ରେ ରୁଦ୍ରପ୍ରତାପ ନାମକ ଜଣେ ବୁନ୍ଦେଲରାଜାଙ୍କର ଶାସନ ଆରମ୍ଭ ହେଲା । ବେତ୍ରବତୀ ନଦୀ କୂଳରେ ସେ ଓରଛା ନାମକ ନଗର ସ୍ଥାପନା କଲେ ଓ ତାକୁ ନିଜର ରାଜଧାନୀ ବନାଇଲେ । ପେଶୱାମାନଙ୍କର ପ୍ରାରମ୍ଭ କାଳରେ ସେହି ପ୍ରଦେଶ 'ଦଶାର୍ଣ' ରୂପେ ହିଁ ଉଲ୍ଲେଖ କରାଯାଉଥିଲା ।

ଝାନ୍ସୀ ବୁନ୍ଦେଲଖଣ୍ଡ ଏକ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ସହର ଅଟେ । ପୁଷ୍ପାବତୀ (ଲୋକଭାଷାରେ 'ପହୁଁଜ') ଓ ବେତ୍ରବତୀ (ବେତବା) ନଦୀ ଦ୍ୱାରା ବିଭାଜିତ ଏହି ସହର ଝାନ୍ସୀ ଯଦି ଆଜି ଶୌର୍ଯ୍ୟ ଓ ସ୍ୱାଭିମାନର ପ୍ରତୀକ ଭାବେ ପ୍ରତିଷ୍ଠିତ ତାହା କେବଳ ଝାନ୍ସୀର ରାଣୀ ଲକ୍ଷ୍ମୀବାଈଙ୍କ କାରଣରୁ । ଏହି ଝାନ୍ସୀ ସହର ପରିସରରୁ ଇତିହାସପୂର୍ବ କାଳର ମାନବୀୟ ସଂସ୍କୃତିର କଳା ସମୃଦ୍ଧିର ଅବଶେଷ ପୁରାତତ୍ତ୍ୱ ବିଭାଗକୁ ମିଳିଛି । ପ୍ରଥମେ ଝାନ୍ସୀର ମୂଳ ନାମ ଥିଲା ବଳବନ୍ତନଗର । ଏହି ବଳବନ୍ତନଗର ପ୍ରକୃତରେ ଗୋଟିଏ ଛୋଟ ଗାଁ ଥିଲା । ଏହାକୁ ବସ୍ତି ମଧ୍ୟ କୁହାଯାଇପାରେ ।

ଏହି ବଳବନ୍ତନଗର ଝାନ୍ସୀ ଭାବରେ କେମିତି ପରିବର୍ତ୍ତିତ ହେଲା ସେ କାହାଣୀ ବି ବହୁତ କୌତୂହଳପୂର୍ଣ୍ଣ । ଏହି ଛୋଟିଆ ଗାଁ ବଳବନ୍ତନଗର ଯେତେବେଳେ ଓରଛା

ରାଜା ବୀରସିଂହ ଜୁଦେବଙ୍କ ଅଧୀନରେ ଥିଲା ସେ ସମୟର ଘଟଣା । ୧୬୧୩ ମସିହା ପାଖାପାଖି ଏଇ ବୀରସିଂହ, 'ଛ' ମାଇଲ ଦୂରରେ (ଓରଛାରୁ ସେତେବେଳର ପୁରୁଣା ରାସ୍ତାରେ) ବଳବନ୍ତନଗରକୁ ଲାଗିଥିବା ବିଶାଳ ପଥର ଚଟାଣ ଥିବା ବଂଗାରା ନାମକ ଏକ ପାହାଡ଼ ଉପରେ ବିରାଟ ମହଲଟିଏ ବନାଇଲେ । କେବେ କେବେ ମୌଜ, ମସ୍ତି କରିବାପାଇଁ ସେଇ ମହଲଟିକୁ ବ୍ୟବହାର କରାଗଲା । ସେଥିପାଇଁ ସେଇ ମହଲକୁ 'ମୌଜମହଲ' ବୋଲି କୁହାଗଲା ।

ଦିନେ ବୀରସିଂହ ଜୁଦେବ, ନିଜର ବନ୍ଧୁ ଜୈତପୁରର ରାଜାଙ୍କ ସହ ଓରଛା ରାଜମହଲର ଛାତ ଉପରେ ବସି ଗପସପରେ ବ୍ୟସ୍ତ ଥିଲେ, ହଠାତ୍ ବୀରସିଂହ ନିଜର ନୂଆ ତିଆରି ହୋଇଥିବା, ଅନତିଦୂରରେ ଅବସ୍ଥିତ 'ମୌଜମହଲ' ଆଡ଼କୁ ସଂକେତ କରି ଜୈତପୁରର ରାଜାଙ୍କୁ ପଚାରିଲେ 'ଟିକେ ସିଆଡ଼େ ଦେଖ, କିଛି ଦେଖାଯାଉଛି କି ତମକୁ' ।

ସେପଟକୁ ନିରିଖେଇ ଦେଖି ଜୈତପୁରର ରାଜା କହିଲେ 'କିଛି ସ୍ପଷ୍ଟ ଦେଖାଯାଉ ନାହିଁ ଟିକେ ଛାଇ ଭଳି (ଝାଁ-ଇ-ସୀ) ଦେଖାଯାଉଛି । ବୀରସିଂହଙ୍କୁ ବନ୍ଧୁଙ୍କର ଏହି ଉତ୍ତର ବହୁତ ଭଲ ଲାଗିଲା ଓ ପସନ୍ଦ ବି ହେଲା । ଏହା ପରେ ବୀରସିଂହ ନିଜ ନୂଆ ଉଆସର ନାମ ଝାଇଁ-ସୀ ରଖିଦେଲେ । ଧୀରେ ଧୀରେ ସେଇ ନାଁଟିର ଅପଭ୍ରଂଶ ହୋଇ ଝାନ୍ସୀ ହୋଇଗଲା, ତା'ପରେ ମୌଜମହଲର ଚାରିପାଖରେ ପାଚେରି ତିଆରି କରାଗଲା । କିଛି ନୂଆ ନିର୍ମାଣ କାର୍ଯ୍ୟ ବି କରାଗଲା । ତା' ଆଖପାଖରେ ଥିବା ବସ୍ତିଗୁଡ଼ିକ ମଧ୍ୟ ବିକଶିତ ହେବାରେ ଲାଗିଲା ।

ସମୟ ବଦଳିବାରେ ଲାଗିଲା । କିନ୍ତୁ ଝାନ୍ସୀ ଆଜି ବି ତା' ପୁରୁଣା ରୂପରେ ବିରାଜମାନ । ଛୋଟ ଛୋଟ ପାହାଡ଼ଘେରା, ଶୂନ୍‌ଶାନ୍, ଗରମ ଜଳବାୟୁ, ଛୋଟବଡ଼ ରାଜମହଲବାଲା, କଣ୍ଟା ଝାଡ଼ ଜଙ୍ଗଲଘେରା ଆଉ ମୁକ୍ତ ରୂପରେ ବିକଶିତ ବବୁଲ ଗଛ ପରିବେଷ୍ଟିତ ।

ଝାନ୍ସୀର ଆଖପାଖ ଅଞ୍ଚଳରେ ପବନରେ ଉଡୁଥିବା ଧୂଳି ଝଡ଼ ଭିତରେ କୋଉଠି, କୋଉଠି ଛୋଟ ଛୋଟ ଟାପୁ ଦୃଷ୍ଟିକୁ ଆସେ । ଦୂରରୁ ଦେଖିଲେ ଜଣାଯାଏ ଯେମିତି ଗଡ଼ ବା କିଲ୍ଲାଟିଏ ଅଛି କିନ୍ତୁ ପାଖକୁ ଗଲେ ସତକଥା ଜଣା ପଡ଼ିଯାଏ, ସେଠି କିଛି ନ ଥାଏ, ପଥର ବାଲିର ଟାପୁ ଛଡ଼ା । କୋଉଠି ଠିକ୍ ଓଲଟା ହୁଏ ଦୂରରୁ ଜଣାପଡ଼େ ପାହାଡ଼, ପାଖକୁ ଗଲେ ସୁନ୍ଦର, ଆକର୍ଷକ ଗଡ଼ ବା କିଲ୍ଲାଟିଏ ଥାଏ ।

## ଝାନ୍ସୀ ସହର ଓ କିଲ୍ଲା

ଝାନ୍ସୀର ସବୁ ସୁବେଦାରମାନେ ଝାନ୍ସୀର କିଲ୍ଲା ଓ ସହରକୁ ହୃଦୟ ଦେଇ ଭଲପାଉଥିଲେ । ତା'ର ସୌନ୍ଦର୍ଯ୍ୟ ଓ ବୈଭବକୁ ଦ୍ୱିଗୁଣିତ କରିଥିଲେ । ନାରୋଶଙ୍କର ମୂଳ କିଲ୍ଲାକୁ ଲଗାଇ ତା' ପାଦଦେଶରେ ଆହୁରି ଏକ ବୃହତ୍, ମଜଭୁତ ଓ ସୁନ୍ଦର କିଲ୍ଲା ନିର୍ମାଣ କଲେ । ସେହି

କିଲ୍ଲା ଭିତରେ ଶିବଶଙ୍କରଙ୍କର ଛୋଟ କିନ୍ତୁ ସୁନ୍ଦର ମନ୍ଦିରଟିଏ ନିର୍ମାଣ କଲେ । କିଲ୍ଲାରେ ଯେମିତି କେବେ ପାଣିର ଅଭାବ ନ ହେବ ସେଥିପାଇଁ ବହୁତ ବଡ଼ ଓ ଗଭୀର କୂଅଟିଏ ବି ଖୋଳାଇଲେ । ଆଜି ବି ଏହି ସହରଟି ବଡ଼ ସୁନ୍ଦର ଓ ରମଣୀୟ । ଏହା ବହୁତ ପୁରୁଣା ହେଲେ ବି ଅତି ସୁଦୃଢ଼ । ଏକ ଛୋଟ ପାହାଡ଼ ଉପରେ ଏହି କିଲ୍ଲା ଅବସ୍ଥିତ ।

ନାରୋଶଙ୍କରଙ୍କ ପରେ ନେଓ୍ୱାଲକର ପରିବାରର ସବୁ ସୁବେଦାରମାନେ ଝାନ୍ସୀ-ସହର ଓ କିଲ୍ଲାର ସୌନ୍ଦର୍ଯ୍ୟ ଓ ତା'ର ବିକାଶ ପାଇଁ ଯଥାସମ୍ଭବ ଚେଷ୍ଟା କରିଛନ୍ତି । କିଲ୍ଲାର ଚାରିପାର୍ଶ୍ୱରେ ପକ୍କା ଓ ଚୌଡ଼ା ପାଚେରି ତିଆରି କଲେ । ପ୍ରହରୀମାନେ ବାହାରକୁ ଦେଖିବାପାଇଁ ପାଚେରିରେ ଝରକାମାନ ତିଆରି ହେଲା । ବନ୍ଧୁକ ରଖିବାପାଇଁ ଥାକମାନ ନିର୍ମାଣ କରାଗଲା । ପାଚେରି ଉପରେ ବଡ଼ ବଡ଼ ସୁରକ୍ଷା ସ୍ତମ୍ଭ ତିଆରି ହେଲା । ତା'ର ଚାରିପାଖରେ କାନ୍ଥ ଦିଆଯାଇ ବଡ଼ ବଡ଼ କବାଟ ଲଗାଇ ଦିଆଗଲା । ସୁରକ୍ଷା ଦୃଷ୍ଟିରୁ ମୁଖ୍ୟ କବାଟ ବାହାରେ ହନୁମାନ୍‌ଜୀଙ୍କର ମୂର୍ତ୍ତି ସ୍ଥାପିତ କରାଗଲା ।

ଝାନ୍ସୀରେ ବସବାସ କରିବାକୁ ମହାରାଷ୍ଟ୍ରର ଅନେକ ଲୋକଙ୍କୁ ପ୍ରୋତ୍ସାହିତ କରାଗଲା । ସେମାନଙ୍କୁ ଜାଗା, ଜମି ଏମିତିକି ଘର ତିଆରି କରି ଦିଆଗଲା । ମନ୍ଦିର ମଧ୍ୟ ନିର୍ମାଣ କରାଗଲା । ବନାରସ, ଲକ୍ଷ୍ନୌ ଓ ଓରଛାରୁ କଳାକାର ଓ କାରିଗରମାନଙ୍କୁ ଡକାଗଲା । କପଡ଼ା ବ୍ୟବସାୟ, ଧାତୁ ଜିନିଷ ତିଆରି ଓ ଚିତ୍ରକଳା, ଗାଲିଚା ତିଆରି ଆଦି କରୁଥିବା କାରିଗରଙ୍କୁ ସୁବିଧା ସୁଯୋଗ ଯୋଗାଇ ଦିଆଗଲା । ଝାନ୍ସୀରେ ତିଆରି ମୂର୍ତ୍ତି-କଳାର ପ୍ରଶଂସା ଦୂରଦୂରାନ୍ତଯାଏ ବ୍ୟାପିବାରେ ଲାଗିଲା । ମାଲଓ୍ୱା ଓ ଦିଲ୍ଲୀ ନଗରୀରେ ମୁଖ୍ୟ ରାସ୍ତାରେ ଥିବା ଏ ସହର ଦିନକୁ ଦିନ ଉତ୍ତରୋତ୍ତର ଉନ୍ନତି କରିବାରେ ଲାଗିଲା । ବେପାର-ବଣିଜର ମୁଖ୍ୟ କେନ୍ଦ୍ର ହୋଇଗଲା ଓ ସମୃଦ୍ଧି ଦିଗରେ ଆଗେଇ ଚାଲିଲା । ଧନୀକ ବ୍ୟକ୍ତି, ସେଠ, ସାହୁକାର ଓ ବ୍ୟବସାୟୀମାନେ ସୁନ୍ଦର ସୁନ୍ଦର କୋଠି, ବଙ୍ଗଳା ଓ ବହୁତଳ ପ୍ରାସାଦମାନ ନିର୍ମାଣ କରି ଏଠି ବସବାସ କରିବାରେ ଲାଗିଲେ । ସହରରେ ଅନେକ ଜଳାଶୟ, ସୁନ୍ଦର ରମଣୀୟ ବଗିଚା, ବିଭିନ୍ନ ଦେବୀ-ଦେବତାଙ୍କ ମନ୍ଦିର ବି ନିର୍ମାଣ କରାଗଲା । ନେଓ୍ୱାଲକର ବଂଶର କୁଳଦେବୀ, ମହାଲକ୍ଷ୍ମୀଙ୍କର ଏକ ଆକର୍ଷକ ଓ ପ୍ରକାଣ୍ଡ ମନ୍ଦିର ସହର ନିକଟରେ ଥିବା ଏକ ବିଶାଳ, ପ୍ରଶାନ୍ତ ଜଳାଶୟ ମଝିରେ ନିର୍ମାଣ କରାଗଲା । 'ମାଝାପ୍ରବାସ' ନାମକ ଏକ ପୁସ୍ତକରେ ଗୋଡ଼ସେ ଭଟ୍ଟ ଉଲ୍ଲେଖ କରିଛନ୍ତି "ଦକ୍ଷିଣରେ ପୁନେ ଓ ଉତ୍ତରରେ ଝାନ୍ସୀ ସହର ବୈଭବ, ସୌନ୍ଦର୍ଯ୍ୟ ଆଉ ପ୍ରଗତି ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା ।"

## ପୁରୁଣା ଇତିହାସ

ବାଜିରାଓ ପେଶଓ୍ୱା ପ୍ରଥମଙ୍କ ସମୟରେ ମରାଠାମାନେ ବୁନ୍ଦେଲଖଣ୍ଡରେ ପ୍ରବେଶ କଲେ । ତା'ର ସୁରକ୍ଷାକର୍ତ୍ତା ଭାବରେ ପନ୍ନାର ଛତ୍ରଶାଳ ବୁନ୍ଦେଲର ପ୍ରସିଦ୍ଧ ଓ ମହାନ୍ ପ୍ରତାପୀ

ରାଜା ଥିଲେ । ୧୭୨୯ରେ ଏହ୍ଲାବାଦର ମୋଗଲ ସୁବେଦାର ମହମ୍ମଦ ଖାନ୍ ବଂଗଷ, ନିଜର ବିଶାଳ ସେନା ସହିତ ଛତ୍ରଶାଳ ବୁନ୍ଦେଲା ଉପରେ ଆକ୍ରମଣ କରିଦେଲେ । ଛତ୍ରଶାଳଙ୍କର ଦୁଇ ଯୁବକ ପୁତ୍ରଙ୍କର ବଂଗଷଙ୍କୁ ମୁକାବିଲା କରିବାର ତାକତ ନ ଥିଲା । ନିଜେ ଛତ୍ରଶାଳ ବୁଢ଼ା ହୋଇ ଯାଇଥିଲେ । ନିରୁପାୟ ଛତ୍ରଶାଳ ବାଜିରାଓ ପ୍ରଥମଙ୍କଠାରୁ ସାହାଯ୍ୟ ମାଗିଲେ । ବାଜିରାଓଙ୍କୁ ପଠାଇଥିବା ପତ୍ରରେ ଛତ୍ରଶାଳ ଲେଖିଥିଲେ ‘‘ଯେମିତି ଭଗବାନ୍ ବିଷ୍ଣୁ ଗଜରାଜକୁ କୁମ୍ଭୀର କବଳରୁ ଉଦ୍ଧାରିଥିଲେ ସେହିପରି ଏହି ମୋଗଲ ସରଦାର କବଳରୁ ରକ୍ଷା ପାଇବାପାଇଁ ଆମକୁ ସାହାଯ୍ୟ କରନ୍ତୁ ।’’ ବାଜିରାଓ ବଂଗଷକୁ ହରାଇଦେଲେ ଓ ଛତ୍ରଶାଳର ସ୍ୱାଧୀନତା ଅକ୍ଷୁଣ୍ଣ ରଖିଲେ । ରାଜା ଛତ୍ରଶାଳ ଖୁସୀ ହୋଇ ନୃତ୍ୟ, ସଂଗୀତନିପୁଣା ନିଜର ଅବୈଧ ସନ୍ତାନ ମସ୍ତାନୀକୁ ବାଜିରାଓଙ୍କ ହାତରେ ସମର୍ପଣ କରିଦେଲେ । ହିରଦେଶାହ ଓ ଜଗତରାଏ ଛତ୍ରଶାଳଙ୍କର ଦୁଇପୁତ୍ରଙ୍କ ପରି ବାଜିରାଓଙ୍କୁ ସେ ନିଜ ପୁଅର ସମ୍ମାନ ଦେଲେ । କେବଳ ସେତିକି ନୁହେଁ ନିଜ ରାଜ୍ୟକୁ ସେ ତିନି ଭାଗରେ ବାଣ୍ଟିଦେଲେ ଓ ଏକକୋଟି ଟଙ୍କା ବାର୍ଷିକ ଆୟ ହେଉଥିବା ଏକ ସଂପତ୍ତିକୁ ସେ ବାଜିରାଓଙ୍କ ନାମରେ ଲେଖିଦେଲେ । ଛତ୍ରଶାଳଙ୍କଠାରୁ ପାଇଥିବା ସାରା ଇଲାକାକୁ ନିଜ ପାଖରେ ନ ରଖି ତାକୁ ମରାଠା ରାଜ୍ୟରେ ମିଶାଇ ଦେଲେ । ସେଥିରୁ ସେ ବାର୍ଷିକ ୪୦ ଲକ୍ଷ ଟଙ୍କା ଆୟ ହେଉଥିବା ଏକ ଅଞ୍ଚଳକୁ ଗୋବିନ୍ଦ ପନ୍ଥ ଖେର୍‌ଙ୍କ ଅଧୀନରେ ରଖିଲେ । ୪୦ ଲକ୍ଷ ଆୟ ହେଉଥିବା ଆଉ ଏକ ଇଲାକାକୁ ସେ ମସ୍ତାନୀର ପୁଅ ଶମସେର ବାହାଦୁର ନାମରେ ଲେଖିଦେଲେ । ଆଉ ୨୦ ଲକ୍ଷ ଆୟ ହେଉଥିବା ଇଲାକାକୁ ନିଜେ ନିଜ ପେଶୱା ଅଧିକାର ଅଧୀନରେ ରଖିଲେ । ସେ କାଲ୍ପୀ, ହାତା, ସାଗର, ସିରୋଜ, ଝାନ୍‌ସୀ, ଗରାହକୋଟା ଓ ହିରଦେନଗରକୁ ସିଧା ପେଶୱାଙ୍କ ଶାସନ ଅଧୀନରେ ରଖିଲେ । ଏହି ଅଞ୍ଚଳମାନଙ୍କରୁ ରାଜସ୍ୱ ଆଦାୟ ପାଇଁ ପେଶୱା ପ୍ରତି ବର୍ଷ ପୁନେରୁ ନିଜ ସରଦାରମାନଙ୍କୁ ପଠାଉଥିଲେ । ଥରେ ରାଜସ୍ୱ ଆଦାୟ ପାଇଁ ମହ୍ଲାରକୃଷ୍ଣ ସରଦାର ଆସିଥିଲେ, ସେଦିନ ଗୋବିନ୍ଦ ପନ୍ଥ ଖେର ତାଙ୍କ ଉପରେ ଆକ୍ରମଣ କଲେ ଓ ମହ୍ଲାରକୃଷ୍ଣକୁ ହତ୍ୟା କଲେ । ତା’ପରେ ପେଶୱାମାନେ ନାରୋଶଙ୍କର ରାଜବାହାଦୁରଙ୍କୁ ରାଜସ୍ୱ ଆଦାୟ ପାଇଁ ପଠାଇଲେ ।

୧୭୦୦ ମସିହାରେ ବଡ଼ବାଜିରାଓ ପେଶୱାଙ୍କର ଦେହାନ୍ତ ହେଲା । ଦୁଇବର୍ଷ ପରେ ୧୭୪୨ରେ ଓରଛାର ରାଜା ନାରୋଶଙ୍କରଙ୍କ ଉପରେ ଆକ୍ରମଣ କଲେ । ନାରୋଶଙ୍କର ଓରଛାର ରାଜା କେବଳ ପରାଜିତ ନୁହେଁ, ବନ୍ଦୀ ବି କଲେ । ସେ ନିବାସ କରୁଥିବା ରାଜମହଲ ଉପରେ ହଳ ଚଲାଇ ତାକୁ ଧ୍ୱଂସ କରିଦେଲେ ଓ ଝାନ୍‌ସୀ କିଲ୍ଲାକୁ ଅଧିକାର କଲେ । ପରେ ‘ଓରଛା’ ରାଜାଙ୍କ ସହ କଥାବାର୍ତ୍ତା କରି ଆଉ କେବେ ଝାନ୍‌ସୀ ଆଡ଼କୁ ଆଡ଼ଆଖିରେ ବି ଚାହିଁବେ ନାହିଁ ବୋଲି ଚେତାବନୀ ଦେଇ ତାଙ୍କଠାରୁ ଜୋରିମାନା ଆଦାୟ କରି ନାରୋଶଙ୍କର ତାଙ୍କୁ ଛାଡ଼ିଦେଲେ । ତା’ପରେ ଝାନ୍‌ସୀ ସଂପୂର୍ଣ୍ଣରୂପେ

ପେଶୱାମାନଙ୍କ ଅଧୀନକୁ ଆସିଗଲା । ପେଶୱାମାନେ ନାରୋଶଙ୍କରଙ୍କୁ ଝାନ୍ସୀ ସହର ତଥା ତା'ର ଆଖପାଖ ପ୍ରଦେଶ ପାଇଁ ସୁବେଦାର ରୂପେ ନିଯୁକ୍ତି ଦେଲେ । ଝାନ୍ସୀକୁ ହରାଇବା ଦୁଃଖକୁ ଓରଛାର ରାଜା ଭବିଷ୍ୟତ୍‌ରେ ଭୁଲିପାରିଲେ ନାହିଁ । କିଛି ଦିନ ପରେ ନାରୋଶଙ୍କର ପଡ଼ୋଶୀ 'ଦତିୟା' ରାଜାଙ୍କଠାରୁ 'ଦୁବୋହ' ଜିଲ୍ଲା ଛଡ଼ାଇ ଝାନ୍ସୀ ସହ ଯୋଡ଼ି ଦେଲେ । 'ଦତିୟା' ରାଜା ମଧ୍ୟ ଏହି ଘଟଣାକୁ ଭୁଲିପାରିଲେ ନାହିଁ । କିନ୍ତୁ ନାରୋଶଙ୍କର ଏହି ଦୁଇ ରାଜାଙ୍କୁ ପରାଜିତ କରି ପେଶୱାଙ୍କ ସ୍ଥିତିକୁ ଅଧିକ ମଜଭୁତ କରିଦେଲେ । ୧୫ ବର୍ଷ କାଳ ନାରୋଶଙ୍କର ଝାନ୍ସୀର ସୁବେଦାର ରହିଲେ । ଏହା ଭିତରେ ଅନେକ ବର୍ଷ ବିତିଗଲା । କିନ୍ତୁ ୧୮୫୭ ସିପାହି ବିଦ୍ରୋହ ସମୟରେ ଓରଛା ରାଜା ଓ ଦତିୟାର ରାଜା ନିଜ ଦେଶବାସୀଙ୍କୁ ସହାୟତା ନ କରି ଇଂରେଜମାନଙ୍କ ସହ ମିଶିଗଲେ ।

ଝାନ୍ସୀ ଆଖପାଖର କିଛି ଗାଁର ଅଧିକ ମହତ୍ତ୍ୱ ଥିଲା । ଝାନ୍ସୀଠାରୁ ୧୫୦ ମାଇଲ ଦୂରରେ ଥିବା ଏକ ଛୋଟ ରାଜ୍ୟ, ବାଣପୁରର ରାଜା ଅତ୍ୟନ୍ତ ସ୍ୱାଧୀନଚେତା ବ୍ୟକ୍ତି ଥିଲେ । ତାଙ୍କର ଓ ଝାନ୍ସୀବାସୀଙ୍କର ଅତୁଟ ମିତ୍ରତା ଜଗତ ପ୍ରସିଦ୍ଧ ଥିଲା । ଓରଛା ଶାସକମାନେ ପ୍ରଥମରୁ ଝାନ୍ସୀ ଶାସକମାନଙ୍କ ପ୍ରତି ଶତ୍ରୁତା ମନୋଭାବ ପୋଷଣ କରୁଥିଲେ । ଥରେ ବାଦଶାହ ଜାହାଙ୍ଗିରଙ୍କର ଓରଛା ଆସିବାର ଥିଲା, ସେଥିପାଇଁ ତାଙ୍କ ରହିବାପାଇଁ ଓରଛାର ରାଜା ଅତି ସୁନ୍ଦର ପ୍ରାସାଦ ନିର୍ମାଣ କରାଇଲେ । ଜାହାଙ୍ଗିର ଆସିଲେ ନାହିଁ । କିନ୍ତୁ ସେହି ରାଜପ୍ରାସାଦ ଆଜିବି ଅତି ଉତ୍ତମ ଅବସ୍ଥାରେ ବିଦ୍ୟମାନ । ପେଶୱାମାନଙ୍କ ଅଧୀନରେ କାଲ୍ପୀ ସହରର ନିଜର ଅଲଗା ମହତ୍ତ୍ୱ ଥିଲା । ଏଠାରେ ଗୋଟିଏ ବଡ଼ ବ୍ୟବସାୟ କେନ୍ଦ୍ର ଥିଲା । ଚିନି, ଘିଅ, ସବୁପ୍ରକାର ଖାଦ୍ୟଶସ୍ୟ, ଲୁଣ, ସୁନା, ଚାନ୍ଦି, ରେଶମୀ ଓ ସୂତା କପଡ଼ା ହୋଲସେଲ ଦରରେ ଶସ୍ତାରେ ବିକା ଯାଉଥିଲା । ବୁନ୍ଦେଲଖଣ୍ଡର ଏହା ସବୁଠାରୁ ବଡ଼ ବ୍ୟବସାୟିକ ସହର ଥିଲା । କାଲ୍ପୀ ସହର ଧନୀ ଲୋକଙ୍କର, ବ୍ୟବସାୟୀଙ୍କର ଓ ବିଶାଳ ପ୍ରାସାଦ ଓ ମହଲର ସହର ଥିଲା । ପନ୍ନା ସହର ପରିସର ଭିତରେ ତ ହୀରାଖଣି ଭର୍ତ୍ତି ହୋଇଥିଲା । ପନ୍ନା ସହର ସାରା ଦୁନିଆରେ ବିଖ୍ୟାତ ଥିଲା । ଛତ୍ରଶାଳ ବୁନ୍ଦେଲା ପନ୍ନାର ରାଜା ଥିଲେ । ଗ୍ୱାଲିୟରରେ ମହାଦଜୀ ସିନ୍ଦେ ରାଜୁତି କରୁଥିଲେ । ସେ ପେଶୱାମାନଙ୍କର ସରଦାର ଥିଲେ । ପେଶୱାମାନେ ହିଁ ସିନ୍ଦେଙ୍କୁ ଗ୍ୱାଲିୟରର ସୁବେଦାର ନିଯୁକ୍ତ କରିଥିଲେ । କିଛି ଦିନ ପରେ ପେଶୱା ଧୀରେ ଧୀରେ ଦୁର୍ବଳ ପଡ଼ିଗଲେ । ପରିଣାମସ୍ୱରୂପ ଗ୍ୱାଲିୟରବାସୀ ପେଶୱାମାନଙ୍କ ପାଇଁ ବିପତ୍ତିର କାରଣ ବନିଗଲେ । ସେମାନେ ନିଜର ସ୍ୱତନ୍ତ୍ର ପ୍ରଭୁତ୍ୱ ଜାହିର କଲେ । ୧୮୧୮ ମସିହାରେ ପେଶୱାମାନଙ୍କ ସହ ଥିବା ସମସ୍ତ ସଂପର୍କ ଛିନ୍ନ ହୋଇଗଲା । ଗ୍ୱାଲିୟରବାସୀ ଇଂରେଜମାନଙ୍କ ଆଶ୍ରିତ ହୋଇଗଲେ । ସେମାନଙ୍କ ସହ ବନ୍ଧୁତା ସ୍ଥାପନ କଲେ ଓ ନିଜର ସ୍ଥିତି ଦୃଢ଼ କରିନେଲେ । ଗ୍ୱାଲିୟରର ପ୍ରଗତିର ଉଦ୍ଦେଶ୍ୟ ବି ସଫଳ ହେଲା ।

ଝାନ୍‌ସୀର ଇତିହାସ ସବୁବେଳେ ଘଟଣା ଦୁର୍ଘଟଣାଭରା ଥିଲା । ଆବଶ୍ୟକତା ପଡ଼ିଲେ ନାରୋଶଙ୍କର ଝାନ୍‌ସୀରୁ ଆସି ଅନେକ ବର୍ଷ ପର୍ଯ୍ୟନ୍ତ ପେଶୱାମାନଙ୍କୁ ଯୁଦ୍ଧରେ ସାହାଯ୍ୟ କଲେ । ଏହା ପରେ ପୁଣି ପେଶୱାମାନେ ନାରୋଶଙ୍କରଙ୍କୁ ଝାନ୍‌ସୀର ସୁବେଦାର ଭାବେ ନିଯୁକ୍ତି ଦେଲେ । ନାରୋଶଙ୍କରଙ୍କ ପରେ ଅବଶ୍ୟ ନବାବ ବଜୀର ସୁଜାଉଦୌଲା ଝାନ୍‌ସୀ ଉପରେ ଆକ୍ରମଣ କରି ଅଧିକାର କରିନେଲେ । ଚାରିବର୍ଷ ପରେ ଇନ୍ଦୋରର ମହ୍ଲାର ରାଓ ହୋଲକର ସୁଜାଉଦୌଲାଙ୍କୁ ପରାଜିତ କରି ପୁଣିଥରେ ଝାନ୍‌ସୀକୁ ମରାଠାମାନଙ୍କ ଅଧୀନସ୍ଥ କରିଦେଲେ ଓ ନାରୋଶଙ୍କରଙ୍କ ଭଣଜା ବିଶ୍ୱାସ ରାଓ ଲକ୍ଷ୍ମଣ ୧୭୬୯ ପର୍ଯ୍ୟନ୍ତ ଝାନ୍‌ସୀର ସୁବେଦାର ପଦରେ ରହିଲେ ।

ତା'ପରେ ପେଶୱାମାନେ ରଘୁନାଥ ରାଓ ନେୱାଲକରଙ୍କୁ ଝାନ୍‌ସୀର ସୁବେଦାର ଭାବେ ମନୋନୀତ କଲେ । ସେତେବେଳେ ଆଉଥରେ ପୁଣି ଅବଧର ନବାବ ଝାନ୍‌ସୀ ଉପରେ ଆକ୍ରମଣ କରିଦେଲେ । ରଘୁନାଥ ରାଓ ନେୱାଲକର ତୁରନ୍ତ ସେନା ପଠାଇବାକୁ ପେଶୱାମାନଙ୍କୁ ନିବେଦନ କଲେ । କିନ୍ତୁ ସେତେବେଳେ ପେଶୱାମାନେ ମଧ୍ୟ ସଂକଟରେ ଥିଲେ । ମାଧବରାଓ ପେଶୱା ଗୁରୁତର ରୋଗଗ୍ରସ୍ତ ଥିଲେ, ଯୁଦ୍ଧ ବି ଚାଲିଥିଲା । ରାଘୋବା ବି ସେମାନଙ୍କ ପାଇଁ ମୁଣ୍ଡବିନ୍ଧାର କାରଣ ହୋଇଥିଲେ । ତେଣୁ ପେଶୱାମାନଙ୍କ ତରଫରୁ ଝାନ୍‌ସୀକୁ ସେନା ପଠାଯାଇପାରିଲା ନାହିଁ । ଏହା ମଧ୍ୟରେ ନବାବଙ୍କର ମୃତ୍ୟୁ ହୋଇଗଲା । ପରବର୍ତ୍ତୀ ସମୟରେ ଅବଧର ନବାବ କୌଣସି ଦିନ ବି ବିପଦର କାରଣ ହେଲେ ନାହିଁ ।

ରଘୁନାଥ ରାଓ ଧାର୍ମିକ ପ୍ରବୃତ୍ତିର ଅତି କୁଶଳ ପ୍ରଶାସକ ଥିଲେ । ସେ ଭୂ-ରାଜସ୍ୱ ଆଦାୟ ପାଇଁ ଏକ ନିୟମ ବନାଇଲେ । ଝାନ୍‌ସୀର ଦେୟ ବଢ଼ାଇଲେ । ୨୫ ବର୍ଷ ପର୍ଯ୍ୟନ୍ତ ସୁଚାରୁରୂପେ ଶାସନ କାର୍ଯ୍ୟ ଚଳାଇଲା ପରେ ୧୭୯୬ରେ ନିଜ ସାନଭାଇ ଶିବରାମ ରାଓଙ୍କ ହାତରେ ସୁବେଦାରୀ ସମର୍ପଣ କରି ରଘୁନାଥ ରାଓ କାଶୀ ଚାଲିଗଲେ । ସେଠି ରହି ଅନେକ ପ୍ରକାର ଧର୍ମକର୍ମ କାମ କଲେ ଓ ଶେଷରେ ନିଜକୁ ଗଙ୍ଗାମାତା କୋଳରେ ସମର୍ପଣ କରିଦେଲେ । ଉଦ୍ଦେଶ୍ୟପୂର୍ଣ୍ଣ ସାରା ଜୀବନ ବିତାଇଲା ପରେ, ନିଜର ସବୁ କର୍ତ୍ତବ୍ୟ ସମ୍ପାଦନ କରିସାରି ବାର୍ଦ୍ଧକ୍ୟ ଆସିଲାକ୍ଷଣି ନିଜକୁ ଗଙ୍ଗା କୋଳରେ ବିସର୍ଜିତ କରିବା ସେ ସମୟରେ ପରମଧର୍ମ କାର୍ଯ୍ୟ ତଥା ପରମ ଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ବିଶ୍ୱାସ କରାଯାଉଥିଲା ।

## କଂପାନୀ ସରକାରର ଅନୁପ୍ରବେଶ

ରଘୁନାଥ ରାଓଙ୍କ ପରି ତାଙ୍କ ଭାଇ ଶିବରାମ ରାଓ ମଧ୍ୟ ସୁଚାରୁରୂପେ ଶାସନ କାର୍ଯ୍ୟ ଚଳାଇଲେ । ୧୮୦୨ ମସିହାରେ ବାଜିରାଓ ପେଶୱା ଦ୍ୱିତୀୟ ଓ ଇଷ୍ଟଇଣ୍ଡିଆ କମ୍ପାନୀର ଗଭର୍ଣ୍ଣର ଜେନେରାଲ ଲର୍ଡ୍ ୱେଲସଲୀଙ୍କ ମଧ୍ୟରେ ଏକ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା, ଯାହାକୁ 'ବସଇଚା କରାର' କୁହାଗଲା । ମରାଠା ଶାସନର ଅଧୋଗତି ଏଇଠାରୁ ହିଁ

ଆରମ୍ଭ ହେଲା । ଏହି ସନ୍ଧି ଅନୁସାରେ ପେଶୱାମାନଙ୍କ ସୁରକ୍ଷା ପାଇଁ ଇଂରେଜ ସୈନିକ ରହିବେ ଓ ତାହା ବଦଳରେ ଇଂରେଜମାନଙ୍କୁ ଲକ୍ଷେ ପଚିଶ ହଜାର ରାଜସ୍ୱ ଆଦାୟ ହେଉଥିବା ଏକ ଅଂଚଳ ପ୍ରଦାନ କରାଯିବ ବୋଲି ସ୍ଥିର କରାଗଲା । ଆଉ ପେଶୱାମାନଙ୍କୁ ମିଳିଥିବା ବୁନ୍ଦେଲଖଣ୍ଡର କିଛି ଅଂଶ ଇଂରେଜମାନଙ୍କ ଅଧୀନରେ ରହିବ ବୋଲି ସ୍ଥିର କରାଗଲା ।

ପବନ କୋଉ ଦିଗକୁ ବୋହୁଛି ସେକଥା ଶିବରାମ ରାଓ ଧୀରେ ଧୀରେ ବୁଝିପାରିଲେ । ଇଂରେଜମାନଙ୍କ ସହ ନିଜ ତରଫରୁ ସିଧା ସମ୍ପର୍କ ସ୍ଥାପିତ କରିବା କ୍ଷେତ୍ରରେ ବୁନ୍ଦେଲଖଣ୍ଡର ଶିବରାମ ରାଓ ହିଁ ସର୍ବପ୍ରଥମ ସୁବେଦାର ଥିଲେ । ୧୮୦୩ ମସିହାରେ ସେ ସାତସୂତ୍ରୀୟ ଶାନ୍ତି ସନ୍ଧି ପ୍ରସ୍ତାବ କଂପାନୀ ସରକାରଙ୍କ ବିଚାର ପାଇଁ ପଠାଇଲେ । ଇଂରେଜମାନେ ତୁରନ୍ତ ସେହି ପ୍ରସ୍ତାବକୁ ସ୍ୱୀକାର କରିନେଲେ ଓ ତିନିହଜାର ଟଙ୍କାର ଭେଟି (ଉପହାର) ଶିବରାମ ରାଓଙ୍କ ପାଖକୁ ପଠାଇଲେ । ଶିବରାମଙ୍କର ସବୁ ସର୍ତ୍ତ ଇଂରେଜମାନେ ସ୍ୱୀକାର କରି ନ ଥିଲେ । ତେବେବି ୧୮୦୪ ମସିହାରେ ଇଂରେଜ ଓ ଶିବରାମ ରାଓଙ୍କ ମଧ୍ୟରେ ପରସ୍ପର ମିତ୍ରତା ଓ ଶାନ୍ତିର ସନ୍ଧି ସ୍ଥାପିତ ହେଲା । ଏହି ସନ୍ଧି ଅନୁସାରେ ପେଶୱାମାନଙ୍କ ଦ୍ୱାରା ପ୍ରଦତ୍ତ ସୁବେଦାରୀ ଅଧିକାର ଶିବରାମଙ୍କ ପାଖରେ ରହିବା କଥା ଓ ଯେତେବେଳଯାଏ ଶିବରାମ ରାଓ ପୁନେର ପେଶୱାମାନଙ୍କୁ ଆଦାୟ ହୋଇଥିବା ରାଜସ୍ୱ ନିୟମିତରୂପେ ପଠାଉଥିବେ ସେତେବେଳଯାଏ ଝାନ୍ସୀର ସୁରକ୍ଷା ଦାୟିତ୍ୱ ଇଂରେଜମାନଙ୍କର ରହିବା କଥା । ଏହା ବଦଳରେ ଶିବରାମ ରାଓ କେବେ ହେଲେ ଇଂରେଜମାନଙ୍କ ସହ ଯୁଦ୍ଧ କରୁଥିବା ରାଜାମାନଙ୍କୁ ସାହାଯ୍ୟ କରିବେ ନାହିଁ, ସେମାନଙ୍କୁ ସୁରକ୍ଷା ଦେବେ ନାହିଁ ଓ ଆଖପାଖର ରାଜାମହାରାଜାଙ୍କର ବା ସୁବେଦାରଙ୍କର ଇଂରେଜଙ୍କ ସହ ଯଦି ଯୁଦ୍ଧ ହୁଏ, ତା'ହେଲେ ସେ କେବଳ ଇଂରେଜଙ୍କୁ ହିଁ ସାହାଯ୍ୟ କରିବେ । ଏହିପରି ସର୍ତ୍ତ ରଖାଗଲା ।

ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କଥା ହେଲା ଝାନ୍ସୀ ରାଜ୍ୟ ବଂଶ ପରମ୍ପରା ଅନୁସାରେ ଶିବରାମ ରାଓଙ୍କ ବଂଶଧରଙ୍କ ପାଖରେ ହିଁ ରହିବ । ଏଭଳି ସର୍ତ୍ତରେ ଇଂରେଜମାନେ ନିଜର ସମ୍ମତି ପ୍ରଦାନ କଲେ । ଏହି ଚୁକ୍ତିପତ୍ରକୁ ଶିବରାମ ରାଓ ବା ତାଙ୍କ ବଂଶର କେହି ହେଲେ ଅମାନ୍ୟ କରି ନାହାନ୍ତି । ଯଦି କେହି ଏହି ଚୁକ୍ତିର ସର୍ତ୍ତକୁ ଉଲ୍ଲଙ୍ଘନ କରିଛି ସେମାନେ ହେଲେ ଇଂରେଜମାନେ ।

୧୮୧୪ ମସିହାରେ ଶିବରାମ ରାଓଙ୍କର ଦେହାନ୍ତ ହୋଇଗଲା । ତାଙ୍କ ପରେ ତାଙ୍କର ୮ ବର୍ଷର ନାତି ରାମଚନ୍ଦ୍ର ରାଓ ଝାନ୍ସୀର ସୁବେଦାର ହେଲେ । ଶିବରାମ ରାଓଙ୍କର ପୁଅ କୃଷ୍ଣ ରାଓଙ୍କର ମୃତ୍ୟୁ ହୋଇଯିବାରୁ କୃଷ୍ଣ ରାଓଙ୍କ ପୁଅ ରାମଚନ୍ଦ୍ର ରାଓଙ୍କୁ ସୁବେଦାର ପଦବୀ ଦେବାକୁ ପଡ଼ିଲା । ସେ ସାବାଳକ ହେବାଯାଏ ବିଶ୍ୱସ୍ତ ପ୍ରଶାସକ ଗୋପାଳ ରାଓ ରାଜ୍ୟ ସମ୍ଭାଳିବେ, ସେ ବ୍ୟବସ୍ଥା ଶିବରାମ ନିଜ ମୃତ୍ୟୁ ପୂର୍ବରୁ କରି ଯାଇଥିଲେ ।

୧୩ ଜୁନ୍ ୧୮୧୭ର ଚୁକ୍ତିପତ୍ର ଅନୁସାରେ ବାଜିରାଓ ପେଶ୍ୱା ଦ୍ୱିତୀୟ ସାଗର, ଝାନ୍ସୀ ଓ ତାସହ ବୁନ୍ଦେଲଖଣ୍ଡର ସମସ୍ତ ଅଧିକାର କମ୍ପାନୀ ସରକାର ହାତରେ ସମର୍ପଣ କରିଦେଲେ । ତାଙ୍କ କହିବା ଅନୁସାରେ ଝାନ୍ସୀ ଇଂରେଜମାନଙ୍କ ଅଧିକାରକୁ ଯିବା ହିଁ ଉଚିତ । କିନ୍ତୁ ୧୮୦୪ରେ ଶିବରାମ ରାଓ ଓ ଇଂରେଜଙ୍କ ମଧ୍ୟରେ ହୋଇଥିବା ଚୁକ୍ତି ଅନୁସାରେ ଦୁହିଁଙ୍କ ଭିତରେ ବନ୍ଧୁତା ପାଇଁ ମଧ୍ୟ ସନ୍ଧି ହୋଇଥିଲା । ଶିବରାମ ରାଓ ଆବଶ୍ୟକତା ସମୟରେ ଇଂରେଜମାନଙ୍କୁ ପଇସା ଓ ସୈନ୍ୟ ଯୋଗାଇଦେଇ ସାହାଯ୍ୟ ମଧ୍ୟ କରୁଥିଲେ ଏବଂ ମୂଳକଥା ଏହା ଥିଲା କି ଝାନ୍ସୀ ରାଜ୍ୟ ବଂଶ ପରମ୍ପରା ଅନୁସାରେ ସେହି ବଂଶର ଲୋକଙ୍କ ଅଧୀନରେ ହିଁ ରହୁ ତାହାହିଁ ଶିବରାମ ରାଓ ଚାହୁଁଥିଲେ । ଶିବରାମଙ୍କର ଇଚ୍ଛାକୁ ସମ୍ମାନ ଦିଆଯିବ ବୋଲି ଇଂରେଜମାନେ ଆଶ୍ୱାସନା ଦେଇଥିଲେ ଓ ସେଇ ଅନୁସାରେ ବୁଝାମଣା ମଧ୍ୟ ହୋଇଥିଲା ।

୧୭ ନଭେମ୍ବର ୧୮୧୭ରେ ଝାନ୍ସୀବାସୀ ଓ କଂପାନୀ ସରକାର ଭିତରେ ଏକ ନୂଆ ସନ୍ଧି ହେଲା ଓ ସେହି ଅନୁସାରେ ରାମଚନ୍ଦ୍ର ରାଓ ଓ ତାଙ୍କ ପରେ ଶିବରାମ ରାଓଙ୍କ ବଂଶଜଙ୍କୁ ହିଁ ତାଙ୍କ ଅଧୀନରେ ଥିବା ଇଲାକା ଉପରେ ଶାସନ କରିବାର ଅଧିକାର ତାଙ୍କୁ ମିଳିଗଲା । ଏହି ଚୁକ୍ତିପତ୍ରର ଭାଷା ଓ ପରିଚ୍ଛେଦ ଇଂରେଜମାନଙ୍କ ନୀତିର ମୂକ ସାକ୍ଷୀ ଦିଏ । ସେହି ପରିଚ୍ଛେଦ ଏହିପରି :

୧. ଏହି ଚୁକ୍ତି ରାମଚନ୍ଦ୍ର ରାଓ ଓ କଂପାନୀ ସରକାର ମଧ୍ୟରେ କରାଯାଇଛି ।

୨. ଝାନ୍ସୀର ସୁବେଦାର ଇଂରେଜଙ୍କ ସଂପୂର୍ଣ୍ଣ ବିଶ୍ୱାସଭାଜନ ହୋଇପାରିଥିବା କାରଣରୁ ରାମଚନ୍ଦ୍ର ରାଓ ଓ ତାଙ୍କର ପୁତ୍ର–ପୌତ୍ର ଆଦି ବଂଶଧରମାନଙ୍କ ପାଖରେ ଝାନ୍ସୀ ରାଜ୍ୟର ଅଧିକାର ବଂଶ ପରମ୍ପରାକ୍ରମେ ପ୍ରଦାନ କରାଗଲା । ତାହାର ରକ୍ଷଣାବେକ୍ଷଣ କଂପାନୀ ସରକାର କରିବେ ।

୩. ଝାନ୍ସୀ ରାଜ୍ୟକୁ ନେଇ କୌଣସି ବିବାଦ ଉପୁନ୍ନ ହେଲେ ବା କାହାଦ୍ୱାରା ଝାନ୍ସୀ ଉପରେ ଆକ୍ରମଣ ହେବାର ସମ୍ଭାବନା ଦେଖାଦେଲେ ଝାନ୍ସୀ ଶାସକ କେବଳ ଇଂରେଜମାନଙ୍କର ସାହାଯ୍ୟ ନେଇପାରିବେ ଓ ଇଂରେଜମାନଙ୍କ ଦ୍ୱାରା ନିର୍ଣ୍ଣୟକୁ ସ୍ୱୀକାର କରିବାକୁ ବାଧ୍ୟ ହେବେ ।

୪. ଇଂରେଜମାନଙ୍କର ଆବଶ୍ୟକତା ଅନୁସାରେ ଦରକାର ପଡ଼ିଲେ ଝାନ୍ସୀବାସୀ ନିଜର ସେନା ଓ ପଇସା ଦେଇ ଇଂରେଜଙ୍କୁ ସାହାଯ୍ୟ କରିବେ ଓ ସେନାବାହିନୀର ପୂରା ଖର୍ଚ୍ଚ ମଧ୍ୟ ଝାନ୍ସୀବାସୀ ବହନ କରିବେ ।

୫. ଝାନ୍ସୀ ରାଜ୍ୟ ସମ୍ବନ୍ଧରେ କୌଣସି ଝଗଡ଼ା ହେଲେ, ତା'ର ଫଇସଲା କମ୍ପାନୀ ସରକାର କରିବ ଓ ସେହି ଫଇସଲାକୁ ଝାନ୍ସୀବାସୀ ମାନିବାକୁ ବାଧ୍ୟ ହେବେ ।

୬. ଝାନ୍ସୀ ରାଜ୍ୟର ସୀମା ମଧ୍ୟ ଦେଇ କଂପାନୀ ସରକାରର ଶତ୍ରୁ ସୈନିକମାନଙ୍କୁ ଯିବାପାଇଁ ରାସ୍ତା ଦିଆଯିବ ନାହିଁ ।

୭. କଂପାନୀ ସରକାରଙ୍କ ସୈନିକ ଝାନ୍ସୀ ରାଜ୍ୟର ସୀମାଦେଇ ଗଲାବେଳେ କେହି ସେମାନଙ୍କ ଯାତାୟତରେ ବାଧା ଦେବେ ନାହିଁ । କଂପାନୀ ସରକାରଙ୍କ ସୈନିକ ଯେତେବେଳେ ବି ଝାନ୍ସୀ ରାଜ୍ୟରେ ରହିବେ ବା ସେମାନଙ୍କ ରହିବାପାଇଁ ଯେତେବେଳେ ବି ଜମିର ଆବଶ୍ୟକତା ପଡ଼ିବ ସେତେବେଳେ ଝାନ୍ସୀ ରାଜା ତାହା ଉପଲବ୍ଧ କରାଇବେ ଏବଂ ସୈନିକମାନଙ୍କର ସମସ୍ତ ଖର୍ଚ୍ଚ ରାଜ୍ୟ ବହନ କରିବ ।

୮. ଝାନ୍ସୀ ରାଜ୍ୟ କୌଣସି ବିଦେଶୀ ବ୍ୟକ୍ତି ବା ରାଷ୍ଟ୍ର ସହ କଂପାନୀ ସରକାରଙ୍କ ବିନା ଅନୁମତିରେ କୌଣସି ପ୍ରକାର ପତ୍ରାଳାପ କରିପାରିବ ନାହିଁ ।

୯. ଇଂରେଜମାନଙ୍କ ଶତ୍ରୁକୁ ଝାନ୍ସୀ ନିବାସୀ ଆଶ୍ରୟ ଦେବେ ନାହିଁ କିମ୍ବା କୌଣସି ପ୍ରକାର ସାହାଯ୍ୟ କରିବେ ନାହିଁ ।

ଝାନ୍ସୀର ସୁବେଦାରୀ ବଂଶପରମ୍ପରା ଅନୁସାରେ ନିଜ ବଂଶର ଉତ୍ତରାଧିକାରୀଙ୍କୁ ମିଳିବା ଆଶାରେ ୧୧ ବର୍ଷର ରାମଚନ୍ଦ୍ର ରାଓଙ୍କୁ ଏହି ଚୁକ୍ତିପତ୍ର ମାନିବାକୁ ବାଧ ହେବାକୁ ପଡ଼ିଲା । କଂପାନୀ ସରକାର ମଧ୍ୟ ଚୁକ୍ତିର ସଂପୂର୍ଣ୍ଣ ମୂଲ୍ୟ ହାସଲ କଲେ । ଏହି ଚୁକ୍ତି ମାଧ୍ୟମରେ କମ୍ପାନୀ ସରକାର ଝାନ୍ସୀବାସୀଙ୍କୁ ପୂରାପୂରି ନିଜ ସହ ଛନ୍ଦିଦେଲେ । ଝାନ୍ସୀର ସୁବେଦାରମାନଙ୍କର ଅନ୍ୟ କାହା ସହ କୌଣସି ପ୍ରକାରର ସମ୍ବନ୍ଧ ସ୍ଥାପିତ ନ ହୋଇପାରୁ ସେଥିପ୍ରତି କଂପାନୀ ସରକାର ସଂପୂର୍ଣ୍ଣ ସଚେତନ ଥିଲେ ।

ଝାନ୍ସୀବାସୀ ଏହି ଚୁକ୍ତିକୁ ଅକ୍ଷରେ ଅକ୍ଷରେ ପାଳନ କଲେ । ରାମଚନ୍ଦ୍ର ରାଓ ଅନେକ ସମୟରେ ଇଂରେଜମାନଙ୍କୁ ସାହାଯ୍ୟ ଯୋଗାଇ ଦେଲେ । ଏହି ରାମଚନ୍ଦ୍ର ରାଓଙ୍କ ସଂପର୍କରେ ଏକ ଘଟଣା ବିଷୟରେ ପାଠକଙ୍କୁ ଜଣାଇଦେବା ଆବଶ୍ୟକ । ଏହି ଝାନ୍ସୀର ଗାଦି ଯେତେବେଳେ ତାଙ୍କ ପାଖକୁ ଆସିଲା ସେତେବେଳେ ସେ ନାବାଳକ ଥିଲେ । ତେଣୁ ତାଙ୍କ ତରଫରୁ ତାଙ୍କର ବିଶ୍ୱସ୍ତ ସୁବେଦାର ଗୋପାଳ ରାଓ ରାଜ୍ୟ ଶାସନର ଗୋଟି ଚାଳନା କରୁଥିଲେ । ରାମଚନ୍ଦ୍ର ରାଓଙ୍କର ନିଜ ମା' ସଖୁବାଈ ଜଣେ ଉଚ୍ଚକୋଟୀର, ଉଚ୍ଚାଭିଳାଷୀ ମହିଳା ଥିଲେ । କପଟୀ ବି ଥିଲେ । ରାଜ୍ୟ ସଂଚାଳନରେ ସେ ସବୁବେଳେ ହସ୍ତକ୍ଷେପ କରୁଥିଲେ । ହେଲେ ସେଥିରେ ବି ସେ ସନ୍ତୁଷ୍ଟ ନ ଥିଲେ । ସେ ରାଜ୍ୟର ସଂପୂର୍ଣ୍ଣ କ୍ଷମତା ନିଜ ହାତକୁ ନେବାକୁ ଚାହୁଁଥିଲେ । ରାମଚନ୍ଦ୍ର ରାଓ ସାବାଳକ ହେଲାକ୍ଷଣି ସ୍ୱାଧୀନ ଭାବରେ ନିଜେ ରାଜକାର୍ଯ୍ୟ ଚଳାଇଲେ । ଏକଥା ତାଙ୍କ ମା' ସହିପାରିଲେ ନାହିଁ । ସେଥିପାଇଁ ସେ ନିଜର ଜନ୍ମିତ ପୁଅକୁ ମରାଇଦେବାର ଷଡ଼ଯନ୍ତ୍ର ରଚିଲେ ।

ରାମଚନ୍ଦ୍ର ରାଓଙ୍କର ପହଁରିବା ଏକ ବଡ଼ ସଉକ ଥିଲା । ସହରର ଲକ୍ଷ୍ମୀଫାଟକ ବାହାରେ ମହାଲକ୍ଷ୍ମୀ ମନ୍ଦିର ପାଖରେ ଥିବା ପୋଖରୀରେ ସେ ପ୍ରାୟ ପହଁରିବାକୁ ଯାଉଥିଲେ । ସଖୁବାଈ ଦିନେ ପୋଖରୀ ଭିତରେ ଧାରୁଆ ଭାଲାକୁ ଏପରି ଭାବରେ ପୋତାଇ ଦେଲେ ଯେପରି ତା'ର ଧାରୁଆ ଭାଗ ଉପର ଆଡ଼କୁ ଉଠି ରହିବ, ସେଇଭଳି ଓଲଟା ପୋତାଇଲେ ।

ରାମଚନ୍ଦ୍ର ରାଓ ପହଁରିବାକୁ ପାଣିରେ କୁଦିବା କ୍ଷଣି, କୌଣସି ନା କୌଣସି ଭାଲାର ଧାରୁଆ ଅଂଶ ତାଙ୍କ ମୁଣ୍ଡରେ ବାଜିବ ଓ କପାଳରେ ଆଘାତ ଲାଗି ନିଶ୍ଚିତ ମୃତ୍ୟୁ ହୋଇଯିବ । କିନ୍ତୁ ରାମଚନ୍ଦ୍ର ରାଓଙ୍କର ବିଶ୍ୱସ୍ତ ସ୍ୱାମୀଭକ୍ତ ମିତ୍ର ସେବକ ଲାଲ୍ କୋଦଲକର ଏହି ଘୃଣ୍ୟ ଷଡ୍‌ଯନ୍ତ୍ର ସଂପର୍କରେ ଜାଣିଗଲେ । ସେ ରାମଚନ୍ଦ୍ର ରାଓଙ୍କୁ ସବୁ କଥା ଜଣାଇଦେଲେ ଓ ପହଁରିବା କାର୍ଯ୍ୟକ୍ରମ ବନ୍ଦ କରାଇଦେଲେ । ଗୋଟାଏ ବହୁତ ବଡ଼ ସଂକଟ ଟଳିଗଲା ଓ ରାମଚନ୍ଦ୍ର ରାଓ ରକ୍ଷା ପାଇଗଲେ । ଏହା ବଦଳରେ ରାମଚନ୍ଦ୍ର ରାଓ ତାଙ୍କୁ ପ୍ରଚୁର ପୁରସ୍କାର ଦେଲେ । ନିଜେ ରଚିଥିବା ଷଡ୍‌ଯନ୍ତ୍ର ଅସଫଳ ହୋଇଯିବାରୁ ସଖୁବାଈ ରାଗରେ ଅନ୍ଧ ହୋଇଗଲେ । ନିଜ କ୍ରୋଧକୁ ସେ ସମ୍ଭାଳି ନ ପାରି ଲାଲ୍ କୋଦଲକରଙ୍କୁ ହତ୍ୟା କରାଇଦେଲେ । ରାମଚନ୍ଦ୍ର ରାଓ ନିଜର ଏଇ କ୍ରୂରକର୍ମା ମା’ ଉପରେ ପ୍ରତିଶୋଧ ନ ନେଇ ତାଙ୍କୁ ଝାନ୍ସୀ ନିକଟରେ ଥିବା କଠାରା ଗାଁର କିଲ୍ଲାରେ ନଜରବନ୍ଦୀ କରି ରଖିଲେ । ମାତ୍ର ସଂପୂର୍ଣ୍ଣ ସମ୍ମାନର ସହ ଯାହାବି ହେଲେ ସେ ତାଙ୍କର ଜନ୍ମଦାତ୍ରୀ ମା’ ତ । ସଂଯୋଗବଶତଃ ଏହି ଲାଲ୍ କୋଦଲକର ବଂଶର ସୁନ୍ଦର ଓ କାଶୀ ଏହି ଦୁଇ ଭଉଣୀ ରାଣୀ ଲକ୍ଷ୍ମୀବାଈଙ୍କର କେବଳ ବିଶ୍ୱସ୍ତ ସେବିକା ନ ଥିଲେ, ବରଂ ରାଣୀଙ୍କ ପାଇଁ ଜୀବନ ଦେଇଦେବା ଭଳି ପ୍ରିୟ ସଖୀ ମଧ୍ୟ ଥିଲେ । ଶେଷନିଃଶ୍ୱାସ ଥିବା ପର୍ଯ୍ୟନ୍ତ ସେମାନେ ରାଣୀଙ୍କ ସେବା କରିଥିଲେ ଓ ତାଙ୍କ ସାଥିରେ ଥିଲେ । ଏଇ ପ୍ରସଙ୍ଗରେ କର୍ଣ୍ଣେଲ ସ୍ଲୀମନ କହିଛନ୍ତି ଯେ “ଝାନ୍ସୀର ରାଜାମାନଙ୍କୁ ଏପର୍ଯ୍ୟନ୍ତ ଉତ୍ତମ ନାମୀ, ବୁଦ୍ଧିମାନ୍, ପ୍ରଶାସକ ସ୍ୱାମୀଭକ୍ତ ସେବକ ମିଳିଛନ୍ତି । ବୁନ୍ଦେଲଖଣ୍ଡର ଅନ୍ୟ ରାଜାମାନଙ୍କ ଭାଗ୍ୟରେ ଏହା ନ ଥିଲା । କେବଳ ଝାନ୍ସୀ ଦରବାରରେ ହିଁ ସ୍ୱାମୀଭକ୍ତ ସେବକ ଓ ଚତୁର ରାଜନୀତିଜ୍ଞ ମୋର ଦୃଷ୍ଟିଗୋଚର ହେଲେ ।”

ରାମଚନ୍ଦ୍ର ରାଓ ଏହା ପରେ ୨୫ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲେ । ଇଂରେଜମାନଙ୍କୁ ସମୟ-ସମୟରେ ସାହାଯ୍ୟ ବି ଯୋଗାଇଦେଲେ । ୧୮୨୪ ମସିହାରେ ଇଂରେଜମାନଙ୍କର ବ୍ରହ୍ମଦେଶ (ବର୍ମା) ସହ ଯୁଦ୍ଧ ହେଲା । ସେତେବେଳେ ରାମଚନ୍ଦ୍ର ରାଓ ୭୦ ହଜାର ଟଙ୍କାର ସାହାଯ୍ୟ ଯୋଗାଇଥିଲେ । ଯୁଦ୍ଧ ସରିଲା ପରେ କଂପାନୀ ସରକାର ଏହି ଟଙ୍କା ଫେରାଇଦେବା କଥା ବି ଉଠାଇଥିଲେ । କିନ୍ତୁ ରାମଚନ୍ଦ୍ର ରାଓ ଟଙ୍କା ଫେରସ୍ତ ନେବାକୁ ମନା କରିଦେଇଥିଲେ । ତତ୍‌କାଳୀନ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଅମହର୍ଷ୍ଟ୍ ରାମଚନ୍ଦ୍ର ରାଓଙ୍କୁ ‘ରାଜା’ ଉପାଧି ପ୍ରଦାନ କରିଥିଲେ । ଅଙ୍ଗବସ୍ତ୍ର ଦେଇ ତାଙ୍କୁ ସମ୍ମାନିତ କରିଥିଲେ ଓ ଧନ୍ୟବାଦ ପତ୍ର ବି ଲେଖିଥିଲେ ।

ଏହା ପରେ କଂପାନୀ ସରକାର ରାମଚନ୍ଦ୍ର ରାଓଙ୍କୁ ଏକ ‘ବିନତି’ କରିଥିଲେ, ତାହାକୁ ରାମଚନ୍ଦ୍ର ରାଓ ସ୍ୱୀକାର କରିଥିଲେ ।

ସେହି ଅନୁସାରେ ରାମଚନ୍ଦ୍ର ରାଓ କଂପାନୀ ସରକାରକୁ ବର୍ଷକୁ ୭୪ ହଜାର ଟଙ୍କା ପ୍ରଦାନ କଲେ ଓ ଇଂରେଜସେନା ରଖିଲେ । ଏହି ଇଂରେଜ ସୈନିକଙ୍କ ରହଣି ଓ

ଅନ୍ୟାନ୍ୟ ଖର୍ଚ୍ଚ ବାବଦରେ କିଛି ଇଲାକା ବି ଦେବାକୁ ପଡ଼ିଲା । ରାମଚନ୍ଦ୍ର ରାଓଙ୍କର ଇଂରେଜ ଓ ୟୁରୋପୀୟମାନଙ୍କ ଦ୍ୱାରା କରାଯାଇଥିବା ବିଭିନ୍ନ ଶାସ୍ତ୍ରୀୟ ଆବିଷ୍କାରଗୁଡ଼ିକ ପ୍ରତି ବିଶେଷ କୌତୂହଳ ଥିଲା । ୟୁରୋପର ବିଦ୍ୟୁତ୍ ଚୁମ୍ବକୀୟ ଆବିଷ୍କାର କଥା କାନରେ ପଡ଼ିଲାକ୍ଷଣି ସେ ଇଂରେଜ ଛାଉଣୀରୁ ଜଣେ ଜାଣିଥିବା ଲୋକକୁ ଡ଼କେଇ ନିଜ ରାଜପ୍ରାସାଦର ଗୁପ୍ତ କୋଠରିରେ ତାଙ୍କୁ ପରୀକ୍ଷା କରି ଦେଖିଲେ । ସେଥିରେ ରାମଚନ୍ଦ୍ର ରାଓ ଏତେ ପ୍ରଭାବିତ ହେଲେ ଯେ ସେ ଇଂରେଜମାନଙ୍କୁ ସେହି ଯନ୍ତ୍ରକୁ ତାଙ୍କ ପାଇଁ ଇଂଲଣ୍ଡରୁ ମଗାଇ ଦେବାକୁ କହିଲେ । ସେତେବେଳେ ସେ ଇଂରେଜଟି କହିଲା, "ଯନ୍ତ୍ର ମଗାଇବା ତ ଦୂରର କଥା, ଏକଥା ମନେ ରଖନ୍ତୁ ମୁଁ ଯେଉଁ ପରୀକ୍ଷଣଟି କରି ଆପଣଙ୍କୁ ଦେଖାଇଲି, ତା'ର ସୂଚନା ଯେମିତି ମୋ ବରିଷ୍ଠ ଅଫିସରଙ୍କ କାନକୁ ନ ଯାଏ ।"

୧୮୫୨ ମସିହାରେ ଲର୍ଡ଼ ଇଉଲିୟମ ୱେଟିଙ୍ଗ୍ ଝାନ୍ସୀ ଗସ୍ତ କରିଥିଲେ । ତାଙ୍କ ଆଗମନ ସମୟରେ ତାଙ୍କୁ ରାଜକୀୟ ସ୍ୱାଗତ କରାଯାଇଥିଲା । ଗଭର୍ଣ୍ଣର ଜେନେରାଲ ଲର୍ଡ଼ ୱେଟିଙ୍ଗ୍ ରାମଚନ୍ଦ୍ର ରାଓଙ୍କୁ ଖୁସୀରେ ଉପାଧି ପ୍ରଦାନ କଲେ । ଉପାଧିଟି ଏହିପରି 'ମହାରାଜାଧିରାଜ ଫିଦବୀ ବାଦଶାହ ଜାମଶାହ ଇଂଲିଶ୍‌ସ୍ଥାନ' ଅର୍ଥାତ୍ 'ଇଂଲଣ୍ଡର ଗୌରବଶାଳୀ ବାଦଶାହଙ୍କର ଏକନିଷ୍ଠ ସେବକ ମହାରାଜାଧିରାଜ ।' ଏକ ସମୟରେ ଗୋଟିଏ ତୀରରେ ଦୁଇଟି ଶିକାର ମାରିବା ଭଳି କଥାକୁ ସେ ଚରିତାର୍ଥ କଲେ । ରାମଚନ୍ଦ୍ର ରାଓଙ୍କୁ ମହାରାଜାଧିରାଜ ବି କହିଲେ ଓ ତା ସହ ତାଙ୍କୁ ଇଂଲଣ୍ଡର ଏକନିଷ୍ଠ ସେବକ ବି କହିଲେ । ଏହାଛଡ଼ା ଏହି ପଦବୀ ବଦଳରେ ରାଜା ବନ୍ଧୁତା ନାମରେ ଝାନ୍ସୀର ପତାକା ସହିତ ୟୁନିୟନ ଜ୍ୟାକ୍ ବି ଲଗାଇବାକୁ ମାନିନେଲେ, ଅର୍ଥାତ୍ ଅନୁମତି ବି ମିଳିଗଲା ଯେ ଝାନ୍ସୀ ଦୁର୍ଗ ଉପରେ ବିଶେଷ ଅବସରମାନଙ୍କରେ ଝାନ୍ସୀ ପତାକା ସହ ଇଂରେଜମାନଙ୍କ ପତାକା ବି ଉଡ଼ିବ । ଏହି ସମସ୍ତ ଆଦାନପ୍ରଦାନ ବନ୍ଧୁତା ଓ ବିଶ୍ୱାସର ପ୍ରତୀକର ସଂକେତ ଥିଲା ବୋଲି ଜଣା ପଡୁଥିଲେ ବି ପ୍ରକୃତରେ ତାହା ନ ଥିଲା । ଏହା ସମୟକ୍ରମେ ପ୍ରଘଟ ହୋଇଗଲା । ଇଂରେଜମାନେ ଚିନି ମିଶିଥିବା ଗୋଲାମରିଚର ଗୋଲି ଝାନ୍ସୀ ନିବାସୀଙ୍କୁ ଖାଇବାକୁ ଦେଇଥିଲେ । ଏସବୁର ଅସଲି ଅର୍ଥ କ'ଣ ଝାନ୍ସୀବାସୀ ବୁଝିପାରି ନ ଥିଲେ ? ବା ଜାଣିଶୁଣି ଅଜଣା ହୋଇଥିଲେ ଆଉ ସେଇ ମିଠାଗୋଲିକୁ 'ବନ୍ଧୁତା' ନାଁରେ ଗିଳି ପକାଇଥିଲେ ।

ରାମଚନ୍ଦ୍ର ରାଓ ଜଣେ କୁଶଳୀ ରାଜା ନ ଥିଲେ । ତାଙ୍କ ଶାସନ କାଳରେ ଝାନ୍ସୀରୁ ଆଦାୟ ହେଉଥିବା ୧୮ ଲକ୍ଷ ଟଙ୍କାର ରାଜସ୍ୱ କମି କମି ୧୨ ଲକ୍ଷରେ ପହଞ୍ଚିଗଲା । ଆଖପାଖ ପ୍ରଦେଶର ଠଗମାନେ ମଝି ମଝିରେ ଝାନ୍ସୀ ଉପରେ ଆକ୍ରମଣ କରି ଲୁଟପାଟ କରୁଥିଲେ । ୧୮୩୫ରେ ରାମଚନ୍ଦ୍ର ରାଓଙ୍କର ମୃତ୍ୟୁ ହୋଇଗଲା । ତାଙ୍କର କୌଣସି ସନ୍ତାନ ନ ଥିଲେ ।

ଝାନ୍‌ସୀ ଉପରେ ନିଜ ଅଧିକାର ଜମାଇବାକୁ ୪ ଜଣ ବ୍ୟକ୍ତି ଉପସ୍ଥିତ ହୋଇଗଲେ । ସେମାନଙ୍କ ମଧ୍ୟରେ ସ୍ୱୟଂ ରାମଚନ୍ଦ୍ର ରାଓଙ୍କ ପାଳିତ ପୁତ୍ର ବୋଲାଉଥିବା କୃଷ୍ଣ ରାଓ, ଜଣେ ଦୂରସଂପର୍କୀୟ ନାରାୟଣ ରାଓ ଓ ଶିବରାମ ରାଓଙ୍କର ଦୁଇପୁତ୍ର ରଘୁନାଥ ରାଓ ଓ ଗଙ୍ଗାଧର ରାଓ ବି ଥିଲେ । ପୂର୍ବ ସନ୍ଧି ଅନୁସାରେ ଏ ସବୁର ନିଷ୍ପତ୍ତି କଂପାନୀ ସରକାରଙ୍କର କରିବା କଥା । ସେହି ଅନୁସାରେ ଝାନ୍‌ସୀରେ ଥିବା କଂପାନୀ ସରକାରଙ୍କର ରେଜିମେଣ୍ଟ ଓ୍ୱେଲ୍‌ବୀ ରଘୁନାଥ ରାଓଙ୍କୁ ବାଛିଲେ । ଏହି ନିଷ୍ପତ୍ତିକୁ ଗଭର୍ଣ୍ଣର ଜେନେରାଲ ମଧ୍ୟ ସ୍ୱୀକୃତି ଦେଇଦେଲେ । ଏହା ପରେ ନିଜ ଅଧିକାର ସାବ୍ୟସ୍ତ କରି ଗଙ୍ଗାଧର ରାଓ କହିଲେ ମହାରୋଗୀ ହୋଇଥିବା କାରଣରୁ ହିନ୍ଦୁ ଧର୍ମଶାସ୍ତ୍ର ଓ ପରମ୍ପରା ଅନୁସାରେ ରଘୁନାଥ ରାଓ ରାଜା ହୋଇପାରିବେ ନାହିଁ । ତା'ପରେ ମଧ୍ୟ ରଘୁନାଥ ରାଓଙ୍କୁ ହିଁ ଏହି ଅଧିକାର ଅର୍ପଣ କରାଗଲା । ରଘୁନାଥ ରାଓ ତିନିବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲେ କିନ୍ତୁ ରାଜ୍ୟ ପ୍ରଶାସନ ଉପରେ ନିଜର ସ୍ଥିତି ମଜଭୁତ କରିପାରିଲେ ନାହିଁ । ରାଜସ୍ୱ ଆଦାୟ ହାର ପ୍ରତିବର୍ଷ ତିନିଲକ୍ଷ ଟଙ୍କା କମିବାର ଲାଗିଲା । ବଦ୍‌ଖର୍ଚ୍ଚ ଅଭ୍ୟାସ କାରଣରୁ କରଜ ନେବାପାଇଁ ତାଙ୍କୁ ଗ୍ୱାଲିୟରବାସୀ ଓ ଓରଛାବାସୀଙ୍କ ପାଖରେ ନିଜ ଜମି ବନ୍ଧା ରଖିବାକୁ ପଡ଼ିଲା । ଏହିପରି କରଜ ବୋଝ ସହି ସେ ୧୮୩୫ ମସିହାରେ ସ୍ୱର୍ଗବାସୀ ହୋଇଗଲେ ।

ରଘୁନାଥ ରାଓଙ୍କର ମଧ୍ୟ କୌଣସି ସନ୍ତାନ ନ ଥିବା କାରଣରୁ ଆଉ ଥରେ ପୁଣି କିଏ ରାଜା ହେବ–ଏହି ପ୍ରଶ୍ନ ଉଠିଲା । ଏଇଥର ମୃତ ରଘୁନାଥ ରାଓଙ୍କର ବିଧବାପତ୍ନୀ ଜାନକୀବାଈ, ରଘୁନାଥ ରାଓଙ୍କ କଥିତ ପୁତ୍ର ଅଲ୍ଲୀବାହାଦୁର, ରାମଚନ୍ଦ୍ର ରାଓଙ୍କର ପାଳିତ ପୁତ୍ର କୃଷ୍ଣ ରାଓ ଓ ଶିବରାମ ରାଓଙ୍କର ଏକମାତ୍ର ଜୀବିତ ପୁତ୍ର ଗଙ୍ଗାଧର ରାଓ ଏମାନେ ସମସ୍ତେ ଝାନ୍‌ସୀ ରାଜଗାଦି ଉପରେ ନିଜର ଅଧିକାର ଦାବି କଲେ । ଏ ସମସ୍ୟା ଉପରେ ନିଷ୍ପତ୍ତି ନେବାପାଇଁ ଗଭର୍ଣ୍ଣର ଜେନେରାଲ ଏକ କମିଶନ ନିଯୁକ୍ତ କଲେ । ଗ୍ୱାଲିୟର ରେଜିମେଣ୍ଟ ଲେଫ୍‌ଟନାଣ୍ଟ କର୍ଣ୍ଣେଲ ସ୍ପରୋ ଓ କ୍ୟାପ୍‌ଟେନ୍ ରାସ୍ ଏବଂ ସିର୍ମାନ ଫ୍ରେଜର ଆଦି ଅଧିକାରୀମାନେ ପରିସ୍ଥିତି ଉପରେ ବିଚାର ବିମର୍ଶ କରି ୧୮୩୫ରେ କଂପାନୀ ସରକାରର ନୀତି ଅନୁସାରେ ଗଙ୍ଗାଧର ରାଓଙ୍କୁ ଝାନ୍‌ସୀର ରାଜା ଭାବରେ ବାଛିଲେ । ସେ ସମୟରେ ଝାନ୍‌ସୀର ଆର୍ଥିକ ଅବସ୍ଥା ସଂପୂର୍ଣ୍ଣ ଭୁଶୁଡ଼ି ଯାଇଥିଲା । ଆଖପାଖରେ ଠଗମାନଙ୍କ ଉପଦ୍ରବ ବହୁତ ବଢ଼ି ଯାଇଥିଲା । ରାଜ୍ୟର ପ୍ରଶାସନ ଗଙ୍ଗାଧର ରାଓ ସମ୍ଭାଳିପାରିବା ସମ୍ଭବ ନୁହେଁ ଏହି କାରଣ ଦର୍ଶାଇ ସଂପୂର୍ଣ୍ଣ ପ୍ରଶାସନ କ୍ଷମତା ଗଙ୍ଗାଧର ରାଓଙ୍କୁ ଅର୍ପଣ ନ କରି କଂପାନୀ ସରକାର ନିଜ ଅକ୍ତିଆରରେ ରଖିଲା । ଗଙ୍ଗାଧର ରାଓଙ୍କ ପାଇଁ ଏହାକୁ ମାନିନେବା ଛଡ଼ା ଅନ୍ୟ କୌଣସି ବିକଳ୍ପ ନ ଥିଲା । ତେବେବି ନିଜ ରାଜ୍ୟର ପ୍ରତିଷ୍ଠା ଅନୁରୂପ ବ୍ୟବହାର କଂପାନୀ ସରକାର ତରଫରୁ ମିଳୁଥାଉ, ସମ୍ମାନ ମିଳୁଥାଉ ତାଙ୍କର ଏଇ ଇଚ୍ଛାକୁ କଂପାନୀ ସରକାର ସ୍ୱୀକାର କରି ନେଲେ । କିନ୍ତୁ ଝାନ୍‌ସୀ ଦୁର୍ଗରେ ରହିବାକୁ ଗଙ୍ଗାଧର ରାଓଙ୍କୁ ଅନୁମତି ମିଳିଲା ନାହିଁ ।

ରାମଚନ୍ଦ୍ର ରାଓଙ୍କ ନିଧନ ପରେ ତାଙ୍କ ମା ସଖୁବାଈ ପୁଣି ଥରେ ସକ୍ରିୟ ହୋଇ ଉଠିଲେ । ସେ ଗଙ୍ଗାଧର ରାଓଙ୍କର ଖୋଲାଖୋଲି ବିରୋଧ କଲେ । ନିଜ ସମର୍ଥକଙ୍କ ସହାୟତାରେ ସେ ଝାନ୍ସୀ ଦୁର୍ଗକୁ ନିଜ ଅକ୍ତିଆରକୁ ନେଇଗଲେ ଓ ସିଂହାସନ ଉପରେ ନିଜ ଅଧିକାର ସାବ୍ୟସ୍ତ କରିବାରେ ଲାଗିଲେ । ସେତେବେଳେ କଂପାନୀ ସରକାର ତାଙ୍କୁ ଆଜୀବନ ମାସିକ ୧୦୦୦/– ଟଙ୍କା ଦରମା ଦେବାର ପ୍ରତିଶ୍ରୁତି ଦେଇ ସଖୁବାଈଙ୍କୁ ଘରେ ଚୁପ୍‌ଚାପ୍ ବସାଇଦେଲେ । ଜାନକୀବାଈ ଓ ଅଲ୍ଲୀବାହାଦୁରଶାହାଙ୍କୁ ବି ମାସିକ ଦରମା ଦେଇ ତାଙ୍କ କ୍ରୋଧ ଶାନ୍ତ କଲେ । ଏହା ପରେ ଏହି ଲୋକମାନଙ୍କ ଭିତରୁ କେହି ଜଣେ ହେଲେ ବି ଆଉ ଗଙ୍ଗାଧର ରାଓଙ୍କ ରାସ୍ତାର କଣ୍ଟା ହେବାକୁ ଚେଷ୍ଟା କଲେ ନାହିଁ ।

ଗଙ୍ଗାଧର ରାଓ ପ୍ରତ୍ୟକ୍ଷ ରୂପରେ ଅଧିକାର ପାଇବାପାଇଁ ପ୍ରଥମରୁ ଚେଷ୍ଟା କରୁଥିଲେ । ସେତେବେଳକୁ ତାଙ୍କର ବୟସ ୪୦–୪୨ ବର୍ଷ ହେଲାଣି । ସେହି ଦୃଷ୍ଟିରୁ ୧୮୪୨ ମସିହା ଡିସେମ୍ବର ୨୭ ତାରିଖରେ ଇଂରେଜ ସରକାରଙ୍କ ସହ ଏକ ନୂଆ ଚୁକ୍ତିପତ୍ର ସ୍ୱାକ୍ଷରିତ ହେଲା । ସେହି ଅନୁସାରେ ସ୍ଥିର କରାଗଲା ଯେ ଇଂରେଜମାନଙ୍କୁ ପ୍ରଥମରୁ ଭାଗରେ ମିଳିଥିବା ରାଜସ୍ୱ ମିଳୁଥିବା ଇଲାକା ଓ ଝାନ୍ସୀର ଅଧା ଇଲାକାକୁ ଛାଡ଼ି ବାକି ଇଲାକା ଗଙ୍ଗାଧର ରାଓଙ୍କୁ ସ୍ୱାଧୀନ ଭାବରେ ଚଳାଇବାକୁ ଦିଆଯିବ ଓ ଝାନ୍ସୀର ସବୁ ଋଣ ଶୁଝାସରିବା ପରେ ପୂର୍ବଭଳି ଆର୍ଥିକ ସ୍ଥିତି ସୁଧୁରିଗଲା ପରେ ଅବଶିଷ୍ଟ ଇଲାକା ଗଙ୍ଗାଧର ରାଓଙ୍କ ଅଧୀନରେ ରହିବ । ଗଙ୍ଗାଧର ରାଓ ଝାନ୍ସୀର ଅଧା ଇଲାକାର ପ୍ରଶାସନ ନିଜେ ଦେଖିଲେ । ଇଂରେଜମାନେ ଜମିଦାରମାନଙ୍କ ସହ ରାଜସ୍ୱ ଆଦାୟ ପାଇଁ ଅଳ୍ପଦିନ ପାଇଁ ବୁଝାମଣା କଲେ । ତାହା ଗଙ୍ଗାଧର ରାଓ ମାନିଲେ ଓ ତା ସହ ସେ ରାଜସ୍ୱ ଆଦାୟ ପାଇଁ ଏକ ନୂଆ ଉପାୟ ମଧ୍ୟ ବାହାର କଲେ । ପ୍ରଶାସନ ଖର୍ଚ୍ଚ କମାଇଦେଲେ, ରାଜସ୍ୱ ଆଦାୟ ନୀତି ବି କୋହଳ କଲେ । ପୂର୍ବ ପରମ୍ପରା ତୁଳନାରେ ତାଙ୍କଦ୍ୱାରା କରାଯାଇଥିବା ଏହି ପରିବର୍ତ୍ତନ ଖୁବ୍ ବଡ଼ ଥିଲା । ଦୁର୍ଭିକ୍ଷ ସମୟରେ ସେ ଖଜଣା ଛାଡ଼ କରିଦେଲେ । ଜନକଲ୍ୟାଣ ପ୍ରତି, ଲୋକମାନଙ୍କ ସୁଖସୁବିଧା ପ୍ରତି ସେ ନିଜ ତରଫରୁ ଆଗ୍ରହ ପ୍ରକାଶ କଲେ । ରାଜସ୍ୱ ଆଦାୟ ବଢ଼ିଲା । ପ୍ରଜାମାନଙ୍କର ଗଙ୍ଗାଧର ରାଓଙ୍କ ପ୍ରତି ଆତ୍ମୀୟତା ବଢ଼ିଲା ଓ ଧୀରେ ଧୀରେ ଗଙ୍ଗାଧର ରାଓଙ୍କ ସ୍ଥିତି ମଜଭୁତ୍ ହେବାରେ ଲାଗିଲା ।

## ଗଙ୍ଗାଧର ରାଓଙ୍କ ଶାସନକାଳ

ଗଙ୍ଗାଧର ରାଓ ଝାନ୍ସୀର ପ୍ରଶାସନ ସମ୍ଭାଳିଲେ ଓ ସର୍ବପ୍ରଥମେ ସେ ସହରରେ ଥିବା ଗ୍ରନ୍ଥାଳୟର ବିକାଶ କଲେ । ସାହିତ୍ୟ ଓ ଅନ୍ୟାନ୍ୟ କଳା ପ୍ରତି ତାଙ୍କର ଅତ୍ୟନ୍ତ ଆଗ୍ରହ ଥିଲା । ସମକାଳୀନ କବି ପଜନେସ୍ ଓ ହୃଦେଶଙ୍କ ସହ ଗଙ୍ଗାଧର ରାଓଙ୍କର ଗଭୀର ମିତ୍ରତା ଥିଲା । ସେମାନେ ମିଶି ପ୍ରାୟ ଅନେକ ସମୟରେ କାବ୍ୟ ରଚନା ସଂପର୍କରେ

ଚର୍ଚ୍ଚା କରୁଥିଲେ । ସେ ଦୁଇକବିଙ୍କର କବିତା ଅନେକ ପ୍ରକାରର ଭାବ ଓ ବିଚାର, ସଂବେଦନଶୀଳତା ତଥା ସୌନ୍ଦର୍ଯ୍ୟ ପାଇଁ ବିଖ୍ୟାତ ଥିଲା ।

ଗଙ୍ଗାଧର ରାଓ ଗ୍ରନ୍ଥାଳୟର ପ୍ରଗତି ପାଇଁ ସୁନ୍ଦର ହସ୍ତାକ୍ଷର ଲେଖୁଥିବା ବ୍ୟକ୍ତିମାନଙ୍କୁ ବିଭିନ୍ନ ସ୍ଥାନରୁ ଡକାଇ ତାଙ୍କଦ୍ୱାରା ଧାର୍ମିକ ଗ୍ରନ୍ଥ, ପୋଥି-ପୁରାଣ, ସଂସ୍କୃତ ନାଟକ, କାବ୍ୟ, କଳା ବିଷୟକ ଗ୍ରନ୍ଥ ଆଦି ଗ୍ରନ୍ଥର ପ୍ରତିଲିପି ପ୍ରସ୍ତୁତ କରାଇଲେ । ଗ୍ରନ୍ଥର ପୃଷ୍ଠାମାନଙ୍କରେ ସୁନ୍ଦର ଚିତ୍ର କରାଇ ତାକୁ ସୁନ୍ଦର ଭାବରେ ବନ୍ଧାଇଲେ । ବିଶେଷ ଭାବରେ ତିଆରି କରାଯାଇଥିବା କାଠ ଆଲମାରିମାନଙ୍କରେ ସଂଗୃହୀତ କରି ରଖାଇଲେ । ବାହାରୁ ମଧ୍ୟ ସେ ଅନେକ ପୁସ୍ତକ ମଗାଇଲେ । ସେ ଏପରି ଧାର୍ମିକ ଗ୍ରନ୍ଥ ମଗାଇଲେ ଯାହା ଉପରେ ଛପା ହୋଇଥିଲା- "ଛାପା କାର୍ଯ୍ୟ ପାଇଁ ବ୍ୟବହୃତ କାଳିରେ ଚର୍ବି ବଦଳରେ ଶୁଦ୍ଧ ଘିଅ ବ୍ୟବହାର କରାଯାଇଅଛି । ଗ୍ରନ୍ଥର ପବିତ୍ରତା ପ୍ରତି ଉପଯୁକ୍ତ ଦୃଷ୍ଟି ଦିଆଯାଇଅଛି ।" କେବଳ ଏତିକି ନୁହେଁ ଦିଲ୍ଲୀରୁ ପ୍ରକାଶିତ ହେଉଥିବା ଉର୍ଦ୍ଦୁ, ଇଂରେଜୀ ସମାଚାର ପତ୍ର ମଧ୍ୟ ସେ ମଗାଇବା ଆରମ୍ଭ କରିଦେଲେ । ଝାନ୍‌ସୀର ରାଜକର୍ମଚାରୀମାନେ ସର୍ବଦା କବି, ଲେଖକ, କଳାକାରମାନଙ୍କୁ ଉତ୍ସାହିତ କଲେ । ବୁନ୍ଦେଲଖଣ୍ଡୀ ବୋଲିରେ ଲେଖାଯାଇଥିବା ସାହିତ୍ୟ ଯତ୍ନର ସହ ସାଇତା ହୋଇ ରହିଲା ।

୧୮୫୭ ମସିହାରେ ଝାନ୍‌ସୀରେ ରହୁଥିବା ଇଂରେଜ ଅଧିକାରୀମାନେ ଲେଖିଛନ୍ତି- "ଗ୍ରନ୍ଥାଳୟରେ ଯୁଦ୍ଧ ସମୟରେ ପାଖାପାଖି ୬୦ ହଜାର ଗ୍ରନ୍ଥ ଥିଲା । ଯୁଦ୍ଧ ପରେ ଯେଉଁ ଦଙ୍ଗା ବା ଗଣ୍ଡଗୋଳ ପରିସ୍ଥିତି ସୃଷ୍ଟି ହେଲା ସେଥିରେ ସହରର ରାଜମହଲର ସାମ୍ନାରେ ଅବସ୍ଥିତ ଏହି ଗ୍ରନ୍ଥାଳୟଟିକୁ ଇଂରେଜମାନେ ନଷ୍ଟଭ୍ରଷ୍ଟ କରିଦେଲେ । ସେଥିରେ ନିଆଁ ଲଗାଇଦେଲେ । ଅନେକ ଦିନ ଧରି ଏହି ବହିଗୁଡ଼ିକ ଜଳୁଥିବାର ଦେଖାଯାଇଥିଲା ।" ଏହି ଗ୍ରନ୍ଥାଳୟ ନଷ୍ଟ ହେବାର ଦୁଃଖ କେତେକ ଇଂରେଜ ଅଫିସରମାନେ ବିଶେଷଭାବେ ନିଜ ନିଜର ସଂସ୍କରଣରେ ଉଲ୍ଲେଖ କରିଛନ୍ତି ।

ଗଙ୍ଗାଧର ରାଓ ନୃତ୍ୟ, ନାଟକ, ସଂଗୀତର ସୌଖୀନ ଥିଲେ । ସେ ନିଜ ଦରବାରରେ ଅନେକ କଳାକାରଙ୍କୁ ଆଶ୍ରୟ ଦେଇଥିଲେ । ନାଚ, ଗୀତ, ନାଟକର ରାଜକୀୟ ଆୟୋଜନ ପ୍ରାୟତଃ କରାଯାଉଥିଲା । କଳାକାରମାନଙ୍କୁ ଯଥେଷ୍ଟ ମନମୁତାବକ ଆର୍ଥିକ ସହାୟତା ବି ଦିଆଯାଉଥିଲା । ୧୬ ହଜାର ବାର୍ଷିକ ଆୟ ହେଉଥିବା ୧୬ ଖଣ୍ଡ ଗାଁ ଗଙ୍ଗାଧର ରାଓ ନୌରତନବାଈ ଆଉ ପନ୍ନାବାଈ ନାମକ ଦୁଇ ମହିଳା ଗାୟକ କଳାକାରଙ୍କୁ ଉପହାରସ୍ୱରୂପ ପ୍ରଦାନ କରିଥିଲେ । ନିଜେ ଗଙ୍ଗାଧର ରାଓ ମଧ୍ୟ ମଝି ମଝିରେ ନାଟକରେ ଅଭିନୟ କରୁଥିଲେ । ସେ ସମୟରେ ଏକ ଜନଶ୍ରୁତି ପ୍ରଚଳିତ ଥିଲା କି ଗଙ୍ଗାଧର ରାଓ ଅନେକଥର ସ୍ତ୍ରୀ ଭୂମିକାରେ ଅଭିନୟ କରୁଥିଲେ । ଦାମିକା ଜରି ଫୁଲପକା ଶାଢ଼ୀ, ରାଜାଘର ସ୍ତ୍ରୀଲୋକଙ୍କ ପରି ଗହଣା ପିନ୍ଧୁଥିଲେ । ନିଜ ବାଳରେ ଜୁଡ଼ା ବନାଇ ତାକୁ ଫୁଲ ଗଜରାରେ ସଜାଇଥିଲେ । କେବଳ ଏତିକି ନୁହେଁ ତାଙ୍କର ହାବଭାବ, କାର୍ଯ୍ୟକଳାପ ସବୁ

ସ୍ତ୍ରୀସୁଲଭ ଥିଲା । ମାସିକ ଧର୍ମ ଆରମ୍ଭ ହେବାର ତିନିଦିନ ବିତିଗଲେ ଚତୁର୍ଥଦିନର ସ୍ନାନ କାର୍ଯ୍ୟକ୍ରମ ମଧ୍ୟ ସେ ବଡ଼ ଧୁମ୍‌ଧାମ୍ ସହକାରେ ପାଳନ କରୁଥିଲେ ।

ରାଜାଙ୍କର ଏହି ଖ୍ୟାତି ଇଂରେଜମାନଙ୍କ ପାଖରେ ମଧ୍ୟ ପହଞ୍ଚି ସାରିଥିଲା । ଗୋଡ଼ସେ ଭଟ୍ଟ ମହାଶୟ 'ମାଝାପ୍ରବାସ'ରେ ଏହି ବିଷୟରେ ଏକ ଘଟଣା ଉଲ୍ଲେଖ କରିଅଛନ୍ତି, ଝାନ୍‌ସୀର ରେଜିମେଣ୍ଟ ସାହେବ ଅତ୍ୟନ୍ତ ସତର୍କତାର ସହ ବନ୍ଧୁ ଭାବରେ ରାଜାଙ୍କୁ ଥରେ ପଚାରିଲେ, ''ଆପଣ ସ୍ତ୍ରୀଲୋକଙ୍କ ପରି ହାତରେ ଚୁଡ଼ି ପିନ୍ଧୁଛନ୍ତି ବୋଲି ଶୁଣୁଛି, ଏକଥା କ'ଣ ସତ ?'' ଏହି ପ୍ରଶ୍ନର ଉତ୍ତରରେ ଗଙ୍ଗାଧର ରାଓ କହିଲେ, ''ମୁଁ ଗୋଟିଏ ଛୋଟ ଭୂଖଣ୍ଡର ରାଜା, ଇଂରେଜ ବାହାଦୁର ଏତେ ବଳବାନ୍ ହୋଇଗଲେଣି ଯେ ହିନ୍ଦୁସ୍ଥାନର ସବୁ ରାଜା-ମହାରାଜାମାନେ ଆପଣଙ୍କ ସମକ୍ଷରେ ମୁଣ୍ଡ ନୁଆଁଇ ଆପଣଙ୍କ ଶରଣାଗତ ହୋଇସାରିଲେଣି । ସମସ୍ତେ ହାତରେ ଚୁଡ଼ି ପିନ୍ଧି ସାରିଲେଣି, ସେମିତି ମୁଁ ବି ଏଥିରେ ଯେଉଁ ଅର୍ଥ ବୁଝାଉଛି ଆପଣ ସେମିତି ବୁଝିନିଅନ୍ତୁ । ଏମିତି ଉତ୍ତର ଶୁଣି ରେଜିମେଣ୍ଟ ସାହେବ ନିରୁତ୍ତର ହୋଇ ଚୁପ୍ ହୋଇଗଲେ । (ମାଝାପ୍ରବାସ ପୃ. ୩୫)

ଗଙ୍ଗାଧର ରାଓଙ୍କୁ ବୁନ୍ଦେଲଖଣ୍ଡର ଅନ୍ୟ ରାଜ୍ୟମାନେ ବି ସମ୍ମାନ କରୁଥିଲେ । ଓରଛା, ଦତିୟା, ସିଂମଥର, ଚରଖାରୀ, ପନ୍ନା, ଛତ୍ରପୁର, ବାଣପୁର ଆଦି ରାଜ୍ୟର ରାଜାମାନେ ତାଙ୍କୁ  ଚାଚା କହୁଥିଲେ ଓ ସେହିପରି ସମ୍ମାନ ବି କରୁଥିଲେ । ଗଙ୍ଗାଧର ରାଓଙ୍କର ଆଉ ଏକ ବିଶେଷତା ଥିଲା । ସେ ନିଜ ପୂର୍ବବର୍ତ୍ତୀ ରାଜାମାନଙ୍କର ସବୁ କରଜ ଯେ ଶୁଝିଦେଇଥିଲେ କେବଳ ତାହା ନୁହେଁ, ଝାନ୍‌ସୀର ବୈଭବ ବଢ଼ାଇଥିଲେ, ଭଣ୍ଡାର ପୂର୍ଣ୍ଣ କରି ଦେଇଥିଲେ । ସଂପତ୍ତି ଓ ସୌନ୍ଦର୍ଯ୍ୟର ଏହି ଅପୂର୍ବ ମିଳନ କାରଣରୁ ଗଙ୍ଗାଧର ରାଓ ଅନେକ କଳାପୂର୍ଣ୍ଣ, ସୁନ୍ଦର, ମୂଲ୍ୟବାନ୍ ବସ୍ତୁ ସଂଗ୍ରହ କରିଥିଲେ । କାଶୀ ଯାତ୍ରାରୁ ଫେରିବା ସମୟରେ ଏକ କୁଶଳୀ କାରିଗର ଦ୍ୱାରା ତିଆରି ହୋଇଥିବା ଏକ ସୁନ୍ଦର ପାଲିଙ୍କି ବି ସାଙ୍ଗରେ ଆଣିଥିଲେ । ସେଥିରେ ବ୍ୟବହୃତ ହୋଇଥିବା କାଠ ଓ ସୁନା, ଚାନ୍ଦିର ସୂକ୍ଷ୍ମ କାରୁକାର୍ଯ୍ୟ ଅତ୍ୟନ୍ତ ସୁନ୍ଦର ଥିଲା । ସୁନା ପାତିଆରେ ଆଚ୍ଛାଦିତ ଏହି ପାଲିଙ୍କି ଉପରେ ମୋତି, ମାଣିକ୍ୟ ଆଦି ମଣ୍ଡିତ ହୋଇଥିଲା । ବହୁତ ମୂଲ୍ୟବାନ୍ ରେଶମର ଗଦି, ରଙ୍ଗବେରଙ୍ଗ ରେଶମର ଝାଲିରି ପରଦା ଦ୍ୱାରା ସଜାଯାଇଥିଲା, ଏହି ପାଲିଙ୍କିକୁ 'ତାମ୍‌ଝାମ' କୁହାଯାଉଥିଲା । ଏପରି ସୁନ୍ଦର ପାଲିଙ୍କି ଅନ୍ୟ କାହା ପାଖରେ ନ ଥିଲା । ଏହା ତାଙ୍କ ଗୌରବର ପ୍ରତୀକ ଥିଲା । ରାଣୀ ଲକ୍ଷ୍ମୀବାଈ ଏହି ପାଲିଙ୍କିରେ ବସି ମହାଲକ୍ଷ୍ମୀ ମନ୍ଦିରକୁ ଦର୍ଶନ ପାଇଁ ଯାଉଥିଲେ ।

ଗଙ୍ଗାଧର ରାଓ କଳାକାରମାନଙ୍କର ସମ୍ମାନ କରିବା ଜାଣିଥିଲେ । ତାଙ୍କ ଦରବାରରେ ଲଲ୍ଲା ଓସ୍ତାଦ୍  ନାମରେ ଜଣେ କୁଶଳୀ ବଢ଼େଇ ଥିଲା । ତା'ର ପୂର୍ବପୁରୁଷମାନେ ୧୮୧୬ ମସିହାରୁ ଝାନ୍‌ସୀରେ ସ୍ଥାୟୀ ଭାବରେ ବସବାସ କରୁଥିଲେ । ରାଜମହଲ, କିଲ୍ଲା, ରାଣୀମହଲର ସବୁ ସୂକ୍ଷ୍ମ କାଠକାମ ବଢ଼େଇ ଲଲ୍ଲା ଓସ୍ତାଦ୍ କରୁଥିଲେ । ତା' ସହ

ପ୍ରତିବର୍ଷ ମହରମ୍ ସମୟରେ ମସ୍‌ଜିଦ୍‌ର ଏକ କାଠ ପ୍ରତିକୃତି 'ତାଜିଆ' ତିଆରିର ପରମ୍ପରା ତାଙ୍କ ପରିବାରର ଥିଲା । ସେହି ଅନୁସାରେ ଲଲ୍ଲା ଓସ୍ତାଦ୍ ପ୍ରତିବର୍ଷ ସୁନ୍ଦର ତାଜିଆ ତିଆରି କରୁଥିଲେ । କିନ୍ତୁ ମହରମ୍ ଦିନ ବାହାରୁଥିବା ଶୋଭାଯାତ୍ରାରେ ଏହି ତାଜିଆକୁ ସମ୍ମିଳିତ କରାଯାଉ ନ ଥିଲା । ପରେ ୧୮୫୧ ମସିହାରେ ମହାରାଣୀ ଲକ୍ଷ୍ମୀବାଈଙ୍କର ଏକ ପୁତ୍ର ରତ୍ନ ଲାଭ ହେଲା । ସେତେବେଳେ ଲଲ୍ଲା ଓସ୍ତାଦ୍ ଏକ ବହୁତ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ କାଠର ଦୋଳି ତିଆରି କରି ରାଜା ରାଣୀଙ୍କୁ ଭେଟି ଦେଇଥିଲେ । ସେହି ଦୋଳିର କାରୁକାର୍ଯ୍ୟ, ଆକାର ଓ ସାଜସଜ୍ଜା ଦେଖି ଗଙ୍ଗାଧର ରାଓ ବହୁତ ଖୁସୀ ହୋଇ ଯାଇଥିଲେ । ସେ ଦୋଳିର ବହୁତ ପ୍ରଶଂସା କରୁଥିଲେ ଓ ଲଲ୍ଲାଙ୍କୁ କହିଥିଲେ କ'ଣ ପୁରସ୍କାର ଚାହୁଁଛ ମାଗିନିଅ । ଲଲ୍ଲା କହିଲେ "ପ୍ରତିବର୍ଷ ମସ୍‌ଜିଦ୍‌ର ପ୍ରତିକୃତିରୂପରେ ଆମେ 'ତାଜିଆ' ତିଆରି କରୁଛେ କିନ୍ତୁ ଆମ 'ତାଜିଆ'କୁ ମହରମ ଶୋଭାଯାତ୍ରାରେ ସ୍ଥାନ ଦିଆଯାଉ ନାହିଁ, ମୋର ଇଚ୍ଛା ମୋ ହାତତିଆରି ତାଜିଆକୁ ମଧ୍ୟ ଶୋଭାଯାତ୍ରାରେ ସ୍ଥାନ ମିଳୁ ।" ରାଜା ତାଙ୍କ କଥାକୁ ସ୍ୱୀକାର କଲେ ଓ ଗାଁର ପ୍ରମୁଖ ମୁସଲମାନମାନଙ୍କୁ ପଚାରିଲେ । ବର୍ଷବର୍ଷର ପ୍ରତୀକ୍ଷା ପରେ ପ୍ରଥମଥର ପାଇଁ ରାଜପୁତ୍ରର ଜନ୍ମ ହେବା ଖୁସିରେ ପ୍ରତିଷ୍ଠିତ ମୁସଲମାନମାନେ ବି ତାହା ସ୍ୱୀକାର କରିନେଲେ । ସେବେଠାରୁ ଲଲ୍ଲା ଓସ୍ତାଦ୍ ଦ୍ୱାରା ତିଆରି କରାଯାଇଥିବା କାଠ 'ତାଜିଆ' ପ୍ରତିବର୍ଷ ମହରମ୍ ଶୋଭାଯାତ୍ରାର ଅଗ୍ରଭାଗରେ ସ୍ଥାନ ପାଇଲା । ଆଜି ବି ଲଲ୍ଲା ଓସ୍ତାଦ୍‌ଙ୍କ ବଂଶଧରମାନେ ତାଜିଆ ତିଆରି କରୁଛନ୍ତି ଆଉ ଆଜି ବି ତାଙ୍କ ତାଜିଆ ଶୋଭାଯାତ୍ରାରେ ସବା ଆଗରେ ରହୁଛି ।

ଦୁର୍ଭାଗ୍ୟର କଥା ଯେ ଲଲ୍ଲା ଓସ୍ତାଦ୍‌ଙ୍କ ହାତତିଆରି କାଠ ଦୋଳିଟି ୧୮୫୭ ଯୁଦ୍ଧ ପରେ ଲୁଟପାଟ ସମୟରେ ଇଂରେଜମାନଙ୍କ ହସ୍ତଗତ ହେଲା ଓ ପରେ ଅନ୍ୟ ଜିନିଷଗୁଡ଼ିକ ସହ ତାକୁ ବି ନିଲାମ କରି ଦିଆଗଲା । ଗୋଆଲିୟରର ସିନ୍ଦେ ଲୋକମାନେ ଅନ୍ୟ ଜିନିଷ ସହ ସେହି ଦୋଳିଟିକୁ ମଧ୍ୟ ନିଲାମ ସମୟରେ କିଣିନେଲେ ।

ଲଲ୍ଲା ଓସ୍ତାଦ୍‌ଙ୍କର ହାତୀ, ଘୋଡ଼ା ପାଳିବା ସଉକ ବି ଥିଲା, ତାଙ୍କ ପାଖରେ ସମୁଦାୟ ୨୨ଟି ହାତୀ ଥିଲେ । ବିବାହ ପରେ ସେ ସେଥିରୁ ୧୦ଟି ହାତୀ ଲକ୍ଷ୍ମୀବାଈଙ୍କୁ ଉପହାରସ୍ୱରୂପ ଦେଇ ଦେଇଥିଲେ । 'ସିଦ୍ଧବକ୍ଷ' ନାମକ ଏକ ବିଶାଳ ଆକର୍ଷକ ସୁଲକ୍ଷଣୀ ହାତୀ ବହୁତ ପ୍ରସିଦ୍ଧ ଥିଲା । ତା'ର ଅଳଙ୍କାର, ତା ଉପରେ ରଖାଯାଇଥିବା ହାଉଦା ସୁନା, ରୁପା ଓ ରତ୍ନ ମଣ୍ଡିତ ଥିଲା । ଅନ୍ୟ ହାତୀ, ଘୋଡ଼ାମାନଙ୍କୁ ମଧ୍ୟ ସୁନା, ରୁପା ଓ ହୀରା, ମୋତି ଅଳଙ୍କାରରେ ସଜା ଯାଉଥିଲା । ରାଜ୍ୟରେ ସାତ–ଆଠହଜାର ପଦାତିକ ସୈନ୍ୟ ଥିଲେ । ହଜାରେ–ବାରଶହ ଉଚ୍ଚକୋଟୀର ଅଶ୍ୱାରୋହୀ ସୈନିକ ବି ଥିଲେ । (ଚମ୍ପା ନାମକ ଘୋଡ଼ୀ ରାଣୀ ଲକ୍ଷ୍ମୀବାଈଙ୍କର ସବୁଠାରୁ ପ୍ରିୟ ଥିଲା ।) ସୁସଜ୍ଜିତ ତୋପଖାନା ବି ଥିଲା 'ଘନଗର୍ଜ୍ଜ', 'କଡ଼କ', 'ବିଜଲୀ', 'ମହାକାଳୀ', 'ଭବାନୀଶଙ୍କର' ଏହି ନାମରେ ଚାରିଟି ଶକ୍ତିଶାଳୀ ତୋପ ମଧ୍ୟ ଥିଲା । ଆଜି ବି ଝାନ୍ସୀ ଦୁର୍ଗ ଭିତରେ 'କଡ଼କବିଜଲୀ'

ଓ 'ଭବାନୀଶଙ୍କର' ତୋପ ଏବେ ଦେଖିବାକୁ ମିଳେ । 'କଡ଼କବିଜଲୀ' ତୋପରୁ ଛଡ଼ାଯାଇଥିବା ଗୋଳା ଆକାଶରେ ବିଜୁଳି ପରି ଚମକିଉଠି ତୀବ୍ର ଗତିରେ ଶତ୍ରୁ ଉପରେ ଆଘାତ କରେ । ସେଇଥିପାଇଁ ଏହି ତୋପର ନାମ 'କଡ଼କବିଜଲୀ' ରଖାଯାଇଥିଲା । ଏହି ତୋପର ଲମ୍ବ ପାଞ୍ଚ ମିଟର ଓ ଚୌଡ଼ାରେ ୧.୭୫ ମିଟର ଥିଲା । ତୋପର ମଝିଆମଝି ଫୁଲ ଝଡ଼ିର ସୁନ୍ଦର ଛବି ବି ଅଙ୍କାଯାଇଛି । ତୋପର ମୁହଁ ସିଂହର ମୁହଁ ପରି ଥିଲା । ଝାନ୍‌ସୀର ସର୍ବଶ୍ରେଷ୍ଠ ତୋପ ଚଳାଇଲାବାଲା ଗୁଲାମ ଘୋସ ଖାଁ ଏହି ତୋପକୁ ଚଳାଉଥିଲେ । ଭବାନୀଶଙ୍କର ତୋପ ପାଞ୍ଚମିଟର ଲମ୍ବା ଥିଲା ଓ ୩ ପାଆ ମିଟର ଗୋଲାଇ ଥିଲା । ଏହି ତୋପ ଉପରେ ସୁନା, ଚାନ୍ଦିର ଲତା ପତ୍ର ବନାଯାଇଛି । ଫୁଲ, ପତ୍ରରେ ସୂକ୍ଷ୍ମ କାରୁକାର୍ଯ୍ୟ ମଧ୍ୟ କରାଯାଇଛି । ଇଂରେଜମାନଙ୍କ ସହିତ ଯୁଦ୍ଧ ଚାଲିଥିଲାବେଳେ ରାଣୀ ଲକ୍ଷ୍ମୀବାଈ ଏହି ତୋପଗୁଡ଼ିକ ପାଇଁ ବିଶେଷଭାବରେ ତୋପଗୋଳା ତିଆରି କରାଇଥିଲେ । କେତେଗୁଡ଼ିଏ ଗୋଳାର ଓଜନ ୪୦ କିଲୋ ଥିଲା । ଘୋସ ଖାଁ ସହିତ ଅନ୍ୟ ଜଣେ ତୋପ ଚଳାଇଲାବାଲା ମୋତିବାଈଙ୍କ ଦ୍ୱାରା ଚଳାଯାଇଥିବା ତୋପ ଇଂରେଜ ସେନାଙ୍କୁ ବ୍ୟତିବ୍ୟସ୍ତ କରିଦେଇଥିଲା । (ଝାନ୍‌ସୀ : ଇତିବୃତ୍ତ ପୃଷ୍ଠା ୭୩-୭୪)

ଗଙ୍ଗାଧର ରାଓ ଇଂରେଜ ସରକାର ସହ, ଇଂରେଜ ଅଧିକାରୀମାନଙ୍କ ସହ ମିତ୍ରତା ସଂବନ୍ଧ ରଖିଥିଲେ, ତା' ସହ ସେ ନିଜର ସ୍ୱାଭିମାନ ବି ବଜାୟ ରଖିଥିଲେ । ସେ ସଂପର୍କୀୟ ଘଟଣାମାନ ଗୋଟିଏ ଗୋଟିଏ ଦୃଷ୍ଟାନ୍ତରୂପେ ପରିଗଣିତ ହୁଏ । ଥରେ ରେଜିମେଣ୍ଟ ଗାର୍ଡ଼ନ ଗଙ୍ଗାଧର ରାଓଙ୍କ ନିକଟକୁ ଆସିଥିଲେ । ଦୁଇଜଣଯାକ ପାଲିଙ୍କିରେ ବସି ରାଜପ୍ରାସାଦରୁ କିଲ୍ଲା ଆଡ଼କୁ ବାହାରିଲେ । ହାତୀଶାଳ ନିକଟରେ ପହଞ୍ଚିଛନ୍ତି କି ହାତୀଶାଳରୁ ଗୋଟିଏ ପାଗଳହାତୀ ବାହାରକୁ ବାହାରିଲା ଓ ରାସ୍ତାରେ ଇଆଡ଼େ-ସିଆଡ଼େ ଦଉଡ଼ାଦଉଡ଼ି କରି ଉତ୍ପାତ ଆରମ୍ଭ କରିଦେଲା । ଲୋକମାନେ ଭୟଭୀତ ହୋଇଗଲେ । କିଛି ଲୋକ ଖଣ୍ଡିଆଖାବରା ବି ହୋଇଗଲେ । ପାଲିଙ୍କି ବାହକମାନେ ପାଲିଙ୍କି ତଳେ ରଖିଦେଇ ନିଜ ଜୀବନ ବଞ୍ଚାଇ କିଏ କୁଆଡ଼େ ପଳାଇଗଲେ । ରାଜା ଓ ଗାର୍ଡ଼ନ ମଧ୍ୟ ନିଜ ଜୀବନ ପ୍ରତି ବିପଦ ଦେଖି ଦଉଡ଼ିବାରେ ଲାଗିଲେ । ଏତିକିବେଳେ ଇମାମଅଲ୍ଲୀ ନାମକ ଏକ ସିପାହି ହାତୀକୁ କାବୁ କରିବା ଚେଷ୍ଟାରେ ଲାଗିଗଲା ଓ ଧୈର୍ଯ୍ୟ ଓ ସାହସ ସହକାରେ ନିଜର ଚତୁରତା ଯୋଗୁଁ ପାଗଳ ହାତୀକୁ ହାତୀଶାଳ ଭିତରକୁ ନେଇଗଲା । ତାହାର ଏହି ସାହସିକ କାର୍ଯ୍ୟ ପାଇଁ ଗଙ୍ଗାଧର ରାଓ ଇମାମଅଲ୍ଲୀକୁ ସେହି ଘଟଣାସ୍ଥଳରେ କିଛି ଜମି ଦାନ କରିଦେଲେ । ରାଜା ଓ ଗାର୍ଡ଼ନ ପୁଣି ଦୁର୍ଗ ଆଡ଼କୁ ପ୍ରସ୍ଥାନ କଲେ । ସେତେବେଳେ ଗାର୍ଡ଼ନ ରାଜାଙ୍କୁ କହିଲେ, ''ଏଭଳି ସମୟରେ ପୁରସ୍କାର ଦେବା ଯଥାର୍ଥ, କିନ୍ତୁ ଆପଣ ତାକୁ ଅର୍ଥ ଦାନ କରିବା ଉଚିତ ଥିଲା । ଯଦି ଆପଣ ଏମିତି ଜମି ଦାନସ୍ୱରୂପ ବାଣ୍ଟିବାରେ ଲାଗିବେ ତ ଆପଣଙ୍କର ସବୁ ସମ୍ପତ୍ତି ଶେଷ ହୋଇଯିବ ।''

ଏହି କଥାର ଉତ୍ତରରେ ଗଙ୍ଗାଧର ରାଓ ତତ୍‌କ୍ଷଣାତ୍ କହିଲେ, ‘‘ଆପଣ ସେ ଚିନ୍ତା କରନ୍ତୁ ନାହିଁ, କ’ଣ କରିବା ଉଚିତ ମତେ ଭଲଭାବରେ ଜଣା ଅଛି ।’’ ଗାର୍ଡ଼ନ କହିଲେ, ‘‘ଏପରି ଜମି ଦାନ କରିବା ସହ କମ୍ପାନୀ ସରକାରଙ୍କର ମଧ୍ୟ ସଂପର୍କ ଅଛି ।’’ ଗଙ୍ଗାଧର ରାଓ କ୍ରୋଧିତ ହୋଇ କହିଲେ ‘‘ମୋର ଜମି ଦାନ କରିବା ନ କରିବା ସହ କମ୍ପାନୀର କ’ଣ ସଂପର୍କ । ଆପଣଙ୍କ ସୈନିକମାନଙ୍କ ଖର୍ଚ୍ଚ ଉଠେଇବା ପାଇଁ ମୁଁ ମୋ ପ୍ରଦେଶର ଅଂଶ ଦାନ କରିଛି ନା ? ତା’ ବ୍ୟବସ୍ଥା ଆପଣ ତଦାରଖ କରନ୍ତୁ, ଫାଲ୍‌ତୁ ବିଷୟରେ ମୁଣ୍ଡ ପୂରାଇ ଖୋଳତାଡ଼ କରନ୍ତୁ ନାହିଁ । ମୋ ନିଜସ୍ୱ ରାଜକାର୍ଯ୍ୟରେ କମ୍ପାନୀ ସରକାର କୌଣସି ହସ୍ତକ୍ଷେପ ନ କରିବା ହିଁ ଠିକ୍ ହେବ’’ । ଏକଥା ଶୁଣି ଗାର୍ଡ଼ନ ଚୁପ୍ ହୋଇଗଲା ।

ଗଙ୍ଗାଧର ରାଓଙ୍କର ସ୍ୱଭାବ ବହୁତ କଠୋର ଥିଲା । ସେ ଅନୁଶାସନପ୍ରିୟ ଥିଲେ । ଅନୁଶାସନହୀନ ଲୋକଙ୍କୁ, କାମଚୋରଙ୍କୁ ବା ଦୋଷୀଙ୍କୁ ସେ କଠୋର ଦଣ୍ଡ ଦେଉଥିଲେ । ଦରକାର ପଡ଼ିଲେ ହାତରେ ଚାବୁକ୍ ଧରି ସେ ସେମାନଙ୍କୁ ପିଟୁଥିଲେ । ଇଂରେଜଙ୍କ ଅଧୀନରେ ଥାଇ ମଧ୍ୟ ରାଜା ଭାବରେ ତାଙ୍କ ଶାସନରେ ହସ୍ତକ୍ଷେପ ବା ଇଂରେଜମାନଙ୍କ ଦ୍ୱାରା ଅପମାନ ତାଙ୍କୁ ପସନ୍ଦ ନ ଥିଲା । ଇଂରେଜମାନେ ବି ତାଙ୍କୁ ସମ୍ମାନ କରୁଥିଲେ ।

ଗଙ୍ଗାଧର ରାଓ ମନୁବାଈଙ୍କୁ ବିବାହ କଲା ପରେ ଦୁହେଁ ମିଶି ୧୮୫୦ ମସିହାରେ କାଶୀ ଯାତ୍ରାରେ ଗଲେ । ନିଜ ଯାତ୍ରାର ପୂରା ବିବରଣୀ ଗଙ୍ଗାଧର ରାଓ ଗଭର୍ଣ୍ଣର ଜେନେରାଲଙ୍କୁ ସୂଚିତ କରିଦେଲେ । ସେଥିପାଇଁ ଗଭର୍ଣ୍ଣର ଜେନେରାଲ ଆଦେଶ ଜାରି କଲେ କି ‘‘ରାଜାସାହେବ ଯେଉଁ ଯେଉଁ ଜାଗାକୁ ଯିବେ ସେଠାକାର ବ୍ରିଟିଶ୍ ଅଧିକାରୀମାନେ ରାଜାସାହେବଙ୍କର ସମ୍ମାନ ପ୍ରତି ଧ୍ୟାନ ଦେବେ । ତାଙ୍କ ରହଣି ଆଦିର ବନ୍ଦୋବସ୍ତ ସଂପୂର୍ଣ୍ଣ ରାଜକୀୟ ଢଙ୍ଗରେ ହେବ ।’’

ଗୋଟିଏ ସ୍ଥାନରେ ଗଙ୍ଗାଧର ରାଓଙ୍କର ପଲଟଣ ପହଞ୍ଚିଲା ପରେ କଂପାନୀ ସରକାରଙ୍କର ଜଣେ ଅଧିକାରୀ ଉଠି ଠିଆ ହେଲା ନାହିଁ । ସେତେବେଳେ ଗଙ୍ଗାଧର ରାଓ ତାଙ୍କ ଦୁଇ ବାହୁକୁ ଧରି ତାକୁ ଜବରଦସ୍ତି ଠିଆ କରାଇଲେ । କାଶୀରେ କଂପାନୀ ସରକାରଙ୍କ ଅଧିକାରୀ ଗଙ୍ଗାଧର ରାଓଙ୍କୁ ଦେଖା କରିବାକୁ ଆସିଲେ ନାହିଁ । ସେ ସଂପର୍କରେ ଗଭର୍ଣ୍ଣର ଜେନେରାଲଙ୍କୁ ଗଙ୍ଗାଧର ରାଓ ଅଭିଯୋଗ କଲେ । ଗଭର୍ଣ୍ଣର ଜେନେରାଲ ସେହି ଅଧିକାରୀଙ୍କୁ କାରଣ ଦର୍ଶାଅ ନୋଟିସ୍ ଦେଲେ । ସେତେବେଳେ ସେହି ଅଧିକାରୀ ନିଜ ଜବାବରେ ଜଣାଇଲେ ‘‘ମୁଁ କଂପାନୀ ସରକାରଙ୍କ ପାଖରେ ଚାକିରି କରିଛି, କୌଣସି ଇଂରେଜ ଅଧୀନସ୍ଥ ରାଜାଙ୍କୁ କାହିଁକି ସମ୍ମାନ ଜଣାଇବି ।’’ ଗଭର୍ଣ୍ଣର ଏହି ପତ୍ରର ଉତ୍ତରରେ କହିଲେ ‘‘ତୁମେ କମ୍ପାନୀ ସରକାର ଅଧୀନରେ କାମ କରୁଛ ଅଥଚ କମ୍ପାନୀ ସରକାରର ଆଦେଶ ମାନିଲ ନାହିଁ । ଏଥିପାଇଁ ଚୁପ୍‌ଚାପ୍ ରାଜାଙ୍କୁ କ୍ଷମା ମାଗ ।’’ ଗଙ୍ଗାଧର ରାଓଙ୍କୁ କ୍ଷମା ମାଗିଲା ପରେ ଗଭର୍ଣ୍ଣର ଜେନେରାଲ ତାଙ୍କୁ ଚାକିରିରୁ ବରଖାସ୍ତ କଲେ । ଏହିଭଳି ସମ୍ମାନ ଥିଲା ଗଙ୍ଗାଧର ରାଓଙ୍କର ।

ଗଙ୍ଗାଧର ରାଓଙ୍କର ନିର୍ଭୟତା, ସାହସର ଅନ୍ୟ ଏକ ଉଦାହରଣ ଏହି ଘଟଣାରୁ ପ୍ରକଟ ହୁଏ । ଥରେ ଦଶହରା ରବିବାର ଦିନ ପଡ଼ିଥିଲା । ପ୍ରତିବର୍ଷ ପରି ଦଶହରା ଦିନ ରାଜାଙ୍କ ଶୋଭାଯାତ୍ରା ରାଜକୀୟ ଢଙ୍ଗରେ ବାହାରୁଥିଲା । ଏ ବର୍ଷ ମଧ ପ୍ରସ୍ତୁତି ଚାଲିଲା । କିନ୍ତୁ ପରମ୍ପରା ଅନୁସାରେ ଇଂରେଜ ସୈନିକ ମଧ ଶୋଭାଯାତ୍ରାରେ ସାମିଲ ହେବା କଥା, କିନ୍ତୁ ଇଂରେଜ ସେନା ପହଞ୍ଚିଲେ ନାହିଁ । ରାଜା ଜଣେ ଲୋକ ପଠାଇଲେ ଘଟଣା କ'ଣ ଜାଣିବା ପାଇଁ । ସେଠାରୁ ଜବାବ ଆସିଲା, ''ଆଜି ରବିବାର, ଆମର ଛୁଟିଦିନ, ଏଥିପାଇଁ ଶୋଭାଯାତ୍ରାରେ ଆମେ ଯୋଗ ଦେଇପାରିବୁ ନାହିଁ ।'' ଏକଥା ଶୁଣି ଗଙ୍ଗାଧର ରାଓ ନିର୍ଦ୍ଦେଶ ଦେଲେ, ''ଆପଣମାନେ ଆମର ଚାକର, ଆପଣମାନଙ୍କୁ ଦରମା ଦେବାପାଇଁ ମୋ ପ୍ରଦେଶ ବିଭାଜିତ କରି ମୁଁ ଆପଣଙ୍କୁ ଦେଇଛି । ଏଣୁ ନିୟମ ଅନୁସାରେ ବିଜୟାଦଶମୀର ରାଜକୀୟ ଶୋଭାଯାତ୍ରାରେ ସେନା ଉପସ୍ଥିତ ରହିବାକୁ ବାଧ । ନ ହେଲେ ଦରମା ଦେବାପାଇଁ ଯେଉଁ ଜମି ମୁଁ ପ୍ରଦାନ କରିଛି ତାହା ଫେରାଇନେବି ।'' ଏହା ପରେ 'ସିଦ୍ଧବକ୍ଷ' ହାତୀରେ ଚଢ଼ି ଯେତେବେଳେ ଶୋଭାଯାତ୍ରା ଆରମ୍ଭ ହେବାକୁ ଯାଉଥିଲା ଠିକ୍ ସେତିକିବେଳେ ଇଂରେଜ ସେନା ପ୍ରସ୍ତୁତ ହୋଇ ଶୋଭାଯାତ୍ରା ବାହାରିଲା ବେଳକୁ ପହଞ୍ଚିଗଲେ ।

୧୮୫୭ରେ ଇଂରେଜଙ୍କ ସହ ଝାନ୍ସୀ ଦ୍ୱାରା ହୋଇଥିବା ଚୁକ୍ତିନାମା ଅନୁସାରେ ଝାନ୍ସୀବାସୀଙ୍କୁ ପୂରାପୂରି ଇଂରେଜଙ୍କ ଅଙ୍ଗୁଳି ଇସାରାରେ ଚଳାଇଲା ପରି ଥିଲା । ଏତେ ସବୁ ପରେ ବି ଝାନ୍ସୀର କଂପାନୀ ସରକାରଙ୍କ ପ୍ରତିନିଧି ଇଂରେଜ ଅଧିକାରୀ ତଥା ସ୍ୱୟଂ ଗଭର୍ଣ୍ଣର ଜେନେରାଲ ମଧ ଗଙ୍ଗାଧର ରାଓଙ୍କର ମର୍ଜି ଓ ଆଧିପତ୍ୟ କାହିଁକି ସ୍ୱୀକାର କରୁଥିଲେ ଏ ପ୍ରଶ୍ନ ମନକୁ ଆସେ । ଇଂରେଜ ଗୋଟିଏ କଥା ବୁଝିସାରିଥିଲେ ଯେ ବୁନ୍ଦେଲଖଣ୍ଡର ଛୋଟ-ବଡ଼ ସବୁ ରାଜାମାନେ ଗଙ୍ଗାଧର ରାଓଙ୍କୁ ସମ୍ମାନ କରୁଥିଲେ ଓ ତାଙ୍କୁ ଡରୁଥିଲେ ମଧ । ତାଙ୍କୁ 'ଚାଚା' କହି ମୁରବିର ସମ୍ମାନ ଦେଉଥିଲେ । ଗଙ୍ଗାଧର ରାଓ ଆଖପାଖର ରାଜା-ରାଜୁଡ଼ାଙ୍କ ସହିତ ସଂପର୍କ ରଖି ସମସ୍ତଙ୍କୁ ଏକାଠି କରି ନେତୃତ୍ୱ ନେଇ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରି କାଳେ ଇଂରେଜମାନଙ୍କୁ ବୁନ୍ଦେଲଖଣ୍ଡରୁ ବାହାର କରିଦେବେ ବୋଧହୁଏ ଏହି ଭୟ ଇଂରେଜମାନଙ୍କ ମନରେ ରହି ଯାଇଥିଲା । କାରଣ କରିଥିବା କାମକୁ କାର୍ଯ୍ୟରେ ଲଗାଇବା ନ ଲଗାଇବାର ସବୁ ଦାୟିତ୍ୱ ସଂବନ୍ଧିତ ବ୍ୟକ୍ତିର ସ୍ୱଭାବ ଚରିତ୍ର ଉପରେ ନିର୍ଭର କରେ । ଗଙ୍ଗାଧର ରାଓଙ୍କ ମନରେ ଇଂରେଜମାନଙ୍କ ବିରୋଧରେ କୌଣସି ପ୍ରକାରର ଭାବନା ନ ଆସୁ କି କୌଣସି ପ୍ରକାରେ ସେ ଇଂରେଜମାନଙ୍କ ପ୍ରତି ଅସନ୍ତୁଷ୍ଟ ନ ହୁଅନ୍ତୁ ସେଥିପାଇଁ ପୂରା ସତର୍କତାର ସହ ଗଙ୍ଗାଧର ରାଓଙ୍କ ମର୍ଜି ଜଗି ଇଂରେଜମାନେ ବ୍ୟବହାର କରୁଥିଲେ ବୋଲି ମଧ କୁହାଯାଇପାରେ ।

ଝାନ୍ସୀର ପ୍ରଜାଙ୍କ ମନରେ ନିଜ ରାଜାଙ୍କ ପ୍ରତି ଭୟଯୁକ୍ତ ଆଦର ଥିଲା । ରାଜାଙ୍କ କ୍ରୋଧିତ କଠୋର ସ୍ୱଭାବର ଅନୁଭୂତି ପ୍ରଜାମାନଙ୍କର ଥିଲା । ରାଜାଙ୍କଦ୍ୱାରା ଦିଆଯାଉଥିବା

ଦଣ୍ଡ ମଧ୍ୟ ଅତ୍ୟନ୍ତ କଠୋର ଥିଲା । ସେ ସମୟରେ ଗୋଟିଏ ଲୋକୋକ୍ତି ପ୍ରସିଦ୍ଧ ଥିଲା ।

ଝାନ୍ସୀ ଗଳାର ଫାଶୀ
ଦତିଆ ଗଳାର ହାର
ଲଳିତପୁର କେବେ ଛାଡ଼େନା ଭାଇ
ଯାହାଠାରୁ ମିଳେ ଉଧାର ।

ଏହି କଥାର ଅର୍ଥ ହେଲା ଝାନ୍ସୀ ଗଳାର ଫାଶୀ ପରି, ଦତିଆ ଗଳାର ହାର, ଲଳିତପୁର କେବେ ଛାଡ଼ନା ଯେଉଁଠି ମିଳେ ଉଧାର ।

କିନ୍ତୁ ଜାନକୀଶରଣ ଶର୍ମାଙ୍କ କହିବା ଅନୁସାରେ ଏହି ପଦ ଦତିଆନିବାସୀ ଲେଖିଛନ୍ତି, ତାଙ୍କର ଝାନ୍ସୀ ଉପରେ ରାଗ ଅଛି । ପଦର ମୂଳ ପଂକ୍ତି ଏହି ପ୍ରକାରର–

ଝାନ୍ସୀ ଲାଗେନା ଫାଶୀ
ଦତିଆ ଦିଏନା ହାର
ଲଳିତପୁର ଯାଅନା ଭାଇ
ଏବେ ମିଳେନା ଉଧାର

ଝାନ୍ସୀରେ ଦିଆଯାଉଥିବା ଫାଶୀ ଦଣ୍ଡ କେମିତି ବନ୍ଦ ହେଲା ସେ ବିଷୟରେ ମଧ୍ୟ ଗୋଟିଏ ଚିତ୍ତାକର୍ଷକ କାହାଣୀ ଅଛି । ଏ କଥା ସେତେବେଳର ବୋଲି କୁହାଯାଏ ଯେତେବେଳେ ରାଣୀ ଲକ୍ଷ୍ମୀବାଈ ବିବାହ ପରେ କିଲ୍ଲାରେ ରହିବାକୁ ଆସିଲେ । କାହାଣୀଟି ଏମିତି–ଥରେ ରାଣୀ ଲକ୍ଷ୍ମୀବାଈ ପତି ଗଙ୍ଗାଧର ରାଓଙ୍କ ସହ ଦୁର୍ଗ ଭିତରେ ବୁଲାବୁଲି କରୁ କରୁ ଶଙ୍କର କିଲ୍ଲାର ଶଙ୍କର ମହାଦେବଙ୍କୁ ଦର୍ଶନ କରିବାକୁ ବାହାରି ପଡ଼ିଲେ । ଯାଉ ଯାଉ ରାସ୍ତାର ବାମ କଡ଼ରେ ତିଆରି ହୋଇଥିବା କାରାଗୃହରେ କଇଦିମାନଙ୍କ କାନ୍ଦ ଓ ଚିତ୍କାର ଶୁଣାଗଲା । ସେଠାରେ ଫାଶୀ ଦଣ୍ଡ ପାଇଥିବା କଇଦୀମାନେ ରହୁଥିଲେ । ସେଠାରୁ ଟିକେ ଦୂରରେ ଫାଶୀ ଦବା ଜାଗା ଥିଲା । ଫାଶୀ ଦେବା ଦଉଡ଼ି, ଜଂଜିର ସେଠି ପଡ଼ିଥିଲା । ସେ ଜାଗାକୁ ଦେଖି, ବନ୍ଦୀମାନଙ୍କ କାନ୍ଦଣା ଶୁଣି ଲକ୍ଷ୍ମୀବାଈଙ୍କ ଆଖିରେ ଲୁହ ଆସିଗଲା । ସେ ଗଙ୍ଗାଧର ରାଓଙ୍କୁ କହିଲେ ଭଗବାନ୍‌ଙ୍କ ଦର୍ଶନକୁ ଯିବାବେଳେ ଏହି ଅଭାଗାମାନଙ୍କର କାନ୍ଦ ଶୁଣିବାକୁ ପଡୁଛି । ଏହି ରାସ୍ତା ଭଗବାନ୍‌ଙ୍କ ଦର୍ଶନକୁ ଯିବାକୁ ଉଦ୍ଦିଷ୍ଟ, ଏହି ରାସ୍ତାରେ ଫାଶୀ ପାଇବା ଲୋକର ଫାଶୀସ୍ଥଳକୁ ଯିବାର ରାସ୍ତା କେମିତି ହୋଇପାରେ, ଏସବୁ ଦେଖିଲେ ମନକଷ୍ଟ ହେଉଛି ।

ଏହା ଶୁଣିଲା ପରେ ଗଙ୍ଗାଧର ରାଓ ନିଜର ନବବିବାହିତା ରାଣୀଙ୍କୁ କଥା ଦେଲେ କି ଆଜି ପରେ ଏଠାରେ କାହାକୁ ବି ଫାଶୀ ଦିଆଯିବ ନାହିଁ । ସେବେଠାରୁ ଝାନ୍ସୀର ଲୋକେ ନିଜ ରାଣୀଙ୍କୁ ଅଧିକ ଭଲ ପାଇବାକୁ ଲାଗିଲେ । କାରଣ କେବଳ ଲକ୍ଷ୍ମୀବାଈଙ୍କ କାରଣରୁ ଫାଶୀ ଦଣ୍ଡ ବନ୍ଦ କରି ଦିଆଗଲା । ସେ ନିଜର ମଧୁର ସ୍ୱଭାବ ଦ୍ୱାରା ପଥରହୃଦୟୀ ଗଙ୍ଗାଧର ରାଓଙ୍କ ଭିତରେ ଏତେ ବଡ଼ ପରିବର୍ତ୍ତନ କରାଇ ପାରିଥିଲେ ।

ଗଙ୍ଗାଧର ରାଓ କଳାର ଉପାସକ ଥିଲେ । ଝାନ୍‌ସୀ ରାଜମହଲରେ ଆଉ ସହରରେ ନିରନ୍ତର ନୃତ୍ୟ, ସଂଗୀତ, ନାଟକ ସମାରୋହ, ଆନନ୍ଦ ଉତ୍ସାହର ସହ ପାଳନ କରାଯାଉଥିବା ପର୍ବପର୍ବାଣି, ଧାର୍ମିକ ଅନୁଷ୍ଠାନ ଓ ଦାନ-ଧର୍ମ ଆଦି କାରଣରୁ ଝାନ୍‌ସୀରେ ବସବାସ କରୁଥିବା ଲୋକମାନେ ନିଜକୁ ଅଧିକ ସୁଖୀ ବୋଲି ଅନୁଭବ କରୁଥିଲେ । ସେମାନେ ଭୋଗ-ବିଳାସରେ ମଗ୍ନ ହେବାରେ ଲାଗିଲେ । ସଂପନ୍ନତା ଆଉ ବେକାରୀ କାରଣରୁ ସମାଜ ଗୋଟେ ପଟେ ବିଳାସିତା ଆଉ ଗୋଟେ ପଟେ ତର୍କହୀନ, ହାସ୍ୟାସ୍ପଦ, ଧର୍ମଭ୍ରଷ୍ଟ ବି ହେବାରେ ଲାଗିଲା । ଏହାର ପ୍ରତିବିମ୍ବ ତତ୍କାଳୀନ ସମାଜରେ ଆମକୁ ଦେଖିବାକୁ ମିଳେ । ତତ୍କାଳୀନ ସମାଜର ଚିତ୍ତାକର୍ଷକ ବର୍ଣ୍ଣନା 'ମାଝାପ୍ରବାସ' ପୁସ୍ତକରେ ଗୋଡ଼ସେ ଅତି ମାର୍ମିକ ଢଙ୍ଗରେ କରିଛନ୍ତି । ସେ ସମୟରେ ଝାନ୍‌ସୀର ବାତାବରଣ ଅୟାସୀ, ଦାୟିତ୍ୱହୀନ ଧାର୍ମିକତା ଓ ଅନ୍ଧବିଶ୍ୱାସଭରା ଥିଲା । ସେ ସମୟର ବୁନ୍ଦେଲଖଣ୍ଡର ପୁରୁଷମାନେ ଭୀରୁ ଥିଲେ ଓ ସ୍ତ୍ରୀମାନଙ୍କ ସ୍ୱଭାବ ଉଗ୍ର ଥିଲା । ପରିଣାମସ୍ୱରୂପ ସମାଜର ସ୍ୱେଚ୍ଛାଚାର ଖୋଲାଖୋଲି ହେଉଥିଲା । ଏହା ଗୋଡ଼ସେ ଭଟ୍ଟ ମହାଶୟ କହିଛନ୍ତି । ଶୈବ, ବୈଷ୍ଣବ, ଶାକ୍ତ ପନ୍ଥା ଅନୁସାରେ ପୂଜା, ପାଠ, ଜପ-ତପ, ମନ୍ତ୍ର-ତନ୍ତ୍ରରେ ଲୋକମାନେ ଅଧିକ ବୁଡ଼ି ରହିଥିଲେ । ନିଜ ନିଜ ଭିତରେ ଲଢ଼ିବା, ଜଣେ ଆଉ ଜଣଙ୍କ ଦୋଷ ଦେବା, କିଏ ଶୂଦ୍ର, କିଏ ଅଛୁଆଁ, କାହା ହାତରୁ ପାଣି ପିଇବ, କାହା ହାତରୁ ପିଇବନି ଏହିସବୁ ନିରର୍ଥକ କଥାକୁ ନେଇ ଯୁକ୍ତିତର୍କ କରିବା, ଏହିସବୁ ସେହି ସମୟରେ ସମାଜର ଦିନଚର୍ଯ୍ୟା ଥିଲା । ଦରକାର ପଡ଼ିଲେ ଏହିସବୁ ନିରର୍ଥକ ଝଗଡ଼ାର ଫଇସଲା ରାଜାଙ୍କ ଦରବାରରେ ମଧ୍ୟ କରାଯାଉଥିଲା ।

ରାଜପ୍ରାସାଦର ସବୁ ଦାସଦାସୀଙ୍କୁ କୁଣବୀ କୁହାଯାଉଥିଲା । ପୁରୁଷ ପୁରୁଷ ଧରି ଏମାନେ ରାଜପ୍ରାସାଦରେ ସେବାକାର୍ଯ୍ୟ କରୁଥିଲେ । ଦାସୀମାନଙ୍କର ରୂପ ସୌନ୍ଦର୍ଯ୍ୟ ଦେଖି ହିଁ ସେମାନଙ୍କୁ ବଛା ଯାଉଥିଲା । ଯୁବତୀ, ସୁନ୍ଦରୀ, ନିଖୁଣ ଶାରୀରିକ ଗଠନ ଥିବା ଦାସୀକୁ ଅବିବାହିତ ଥିବା ପର୍ଯ୍ୟନ୍ତ ଚାକିରିରେ ରଖାଯାଉଥିଲା । ଦାସୀଙ୍କୁ ସବୁବେଳେ ରାଣୀଙ୍କ ସହ ରହିବାକୁ ପଡୁଥିଲା । ଯିଏ ବିବାହ କରିବାକୁ ଚାହୁଁଥିଲା ତା'ର ବିବାହ କରି ଦିଆଯାଉଥିଲା ଓ ତା'ପରେ ତାକୁ ଚାକିରି ଛାଡ଼ିବାକୁ ପଡୁଥିଲା । ବିବାହ ପରେ ସେ ନିଜ ଘର ଗୃହସ୍ଥିରେ ବ୍ୟସ୍ତ ରହୁଥିଲା । ବିଳାସବ୍ୟସନ ଓ ଧର୍ମ ଆଡ଼ମ୍ବରରେ ବୁଡ଼ି ରହୁଥିବା ଏହି ଲୋକମାନେ ଝାନ୍‌ସୀ ରାଜାଙ୍କ ସ୍ୱାମିତ୍ୱରେ ଶହେ, ଦେଢ଼ଶହ ବର୍ଷ ପର୍ଯ୍ୟନ୍ତ ଛୋଟମୋଟ ଲଢ଼ାଇରେ ନିଜ ଶୌର୍ଯ୍ୟର ପରିଚୟ ଦେଇଥିଲେ । ୧୮୫୭ ମସିହା ଯୁଦ୍ଧରେ ଝାନ୍‌ସୀର ପ୍ରତ୍ୟେକ ଘରୁ ସାଧାରଣ ସ୍ତ୍ରୀ-ପୁରୁଷ ହାତରେ ଯାହା ପଡ଼ିଲା ସେ ବା ଠେଙ୍ଗାବାଡ଼ି ଧରି ଗୋରା ସୈନିକମାନଙ୍କ ଉପରେ ଆକ୍ରମଣ କରିଦେଲେ । ଏ ଘଟଣାର ବର୍ଣ୍ଣନା ଇଂରେଜ ଅଧିକାରୀମାନଙ୍କ ଲେଖାରେ ମଧ୍ୟ ଦେଖିବାକୁ ମିଳେ ।

ଗଙ୍ଗାଧର ରାଓଙ୍କର ପ୍ରଥମ ସ୍ତ୍ରୀ ରମାବାଈଙ୍କର ମୃତ୍ୟୁ ହୋଇଯାଇଥିଲା । ତାଙ୍କ ଗର୍ଭରୁ ଏକ ପୁତ୍ରସନ୍ତାନ ମଧ୍ୟ ଥିଲା । ତା'ର ମଧ୍ୟ ମୃତ୍ୟୁ ହୋଇଗଲା । ତେଣୁ ଗଙ୍ଗାଧର ରାଓଙ୍କ ଦ୍ୱିତୀୟ ବିବାହ ବିଷୟରେ ଚର୍ଚ୍ଚା ଆରମ୍ଭ ହୋଇଗଲା । କିନ୍ତୁ ଗଙ୍ଗାଧର ରାଓଙ୍କ ଆଚରଣକୁ ନେଇ ଅନେକ କଥା ଶୁଣାଯାଉଥିଲା । ତାଙ୍କ ସହ ବିବାହ କରିବାପାଇଁ କେହି ନିଜ ଝିଅ ଦେବାକୁ ରାଜି ନ ଥିଲେ । ସ୍ୱୟଂ ଗଙ୍ଗାଧର ରାଓ ମଧ୍ୟ ଦ୍ୱିତୀୟ ବିବାହ କରିବାକୁ ରାଜି ନ ଥିଲେ । କିନ୍ତୁ ରାଜବଂଶ ପାଇଁ ଉତ୍ତରାଧିକାରୀ ଆବଶ୍ୟକ ଥିଲା । ତେଣୁ ଦ୍ୱିତୀୟ ବିବାହ କରିବା ଆବଶ୍ୟକ ଥିଲା ।

ସଂଯୋଗର କଥା, ଆଖପାଖର ବ୍ରହ୍ମାବର୍ତ୍ତ ଗାଁରେ ରହୁଥିବା ପଦଚ୍ୟୁତ ପେଶୱା ଦ୍ୱିତୀୟଙ୍କ ଆଶ୍ରିତ ମୋରୋପଂତ ତାଂବେ ମଧ୍ୟ ନିଜ ଝିଅର ବିବାହ କରାଇବାକୁ ଚାହୁଁଥିଲେ । ତାହା ବି କୌଣସି ଏକ ରାଜା ସହ ।

୧୮୪୨ରେ ଗଙ୍ଗାଧର ରାଓ ଓ ମୋରୋପଂତ ତାଂବେଙ୍କର ବାରବର୍ଷର ମଣିକର୍ଣ୍ଣିକା ମନୁର ବିବାହ ହୋଇଗଲା । ଗଙ୍ଗାଧର ରାଓଙ୍କୁ ସେତେବେଳେ ୪୨ ବର୍ଷ ବୟସ ହୋଇଥିଲା । ଗଙ୍ଗାଧର ରାଓ ନିଜ ବିବାହର ନିମନ୍ତ୍ରଣପତ୍ର ଆଖପାଖର ରାଜା-ମହାରାଜାଙ୍କୁ ସ୍ୱୟଂ ପଠାଇଥିଲେ । ଏହି ନିମନ୍ତ୍ରଣପତ୍ର ବୁନ୍ଦେଲଖଣ୍ଡ ଭାଷାରେ ଲେଖାଯାଇଥିଲା । ଦତିଆ ରାଜାଙ୍କୁ ପଠାଯାଇଥିବା ନିମନ୍ତ୍ରଣପତ୍ର ଏହି ପ୍ରକାରର ଥିଲା-

ଶ୍ରୀ ମହାରାଜ କୋମାର ଶ୍ରୀକୁଓଁର ରଣଧୀର ସିଂହ ଜୁଦେବ ଏସେ ଶ୍ରୀ ଶ୍ରୀ ମହାରାଜାଧିରାଜ ଶ୍ରୀ ପଣ୍ଡିତ ଶ୍ରୀ ରାଓଗଙ୍ଗାଧର ରାଓ ବାହାଦୁର ଜୁ କେ ବାଂଚେ ଆପର ଉହାଂ କେ ସମାଚାର ଭଲେ ଚାହିଜେ । ଇହାଂ କେ ସମାଚାର ଭଲେ ହୈ । ଆପର ଇହାଁ ଖାସ ବିବାହ ହୈ । ବୈଶାଖୀ ସୁଦି ୬ ସୌମେ କୋ ସୀମାନ୍ତ ପୂଜନ । ସୁଦି ୯ ବୁଦ୍ଧେ କେ ଦୈବ ଅସ୍ଥାପନା । ସୁଦି ୧୦ ଗୁରୌଉ କୋ ଗୋଧୂଳ ସମୟ ଲଗ୍ନ ପରିକ୍ରମା ହୈ । ସୁ ନେବତେ ଆସ୍ୱୀ ପାତୀ ସମାଚାର ଲିଖତ ରହିବୀ ଚୈତ ସୁଦି ୭, ୧୮୯୯, ତମୋର କେ ରୂପୈୟ ପଠୱାଏ ହୈ ।''

ଏହି ନିମନ୍ତ୍ରଣପତ୍ର ମଇ ୧୮୪୨ରେ ପଠାଯାଇଥିଲା । ନିମନ୍ତ୍ରଣ ସହ ପ୍ରତୀକସ୍ୱରୂପ କିଛି ଟଙ୍କା ଅଥବା କିଛି ଉପହାର ପଠାଇବାର ପରମ୍ପରା ଏହି ପତ୍ର ପଠାଇବାବେଳେ ଅନୁସରଣ କରାଯାଇଥିଲା ।

## ଅଧ୍ୟାୟ-୨

# ମନୁରୁ ରାଣୀ ଲକ୍ଷ୍ମୀବାଈ

ରାଣୀ ଲକ୍ଷ୍ମୀବାଈଙ୍କ ପରି ପରମଶ୍ରେଷ୍ଠ ବ୍ୟକ୍ତିତ୍ୱଙ୍କର ଜୀବନ ଚରିତ୍ର ଅଧ୍ୟୟନ କଲାବେଳେ ସବୁବେଳେ ଅସୁବିଧା ଦେଖାଦିଏ । ଅସୁବିଧାଟି ଏହିଭଳି ଯେ ଲକ୍ଷ୍ମୀବାଈଙ୍କ ପରି ଲୋକଙ୍କ ମହତ୍ତ୍ୱ ଓ ବହୁମୁଖୀ ପ୍ରତିଭାର ପରିଚୟ ତାଙ୍କ ଜୀବନର ଉତ୍ତରାର୍ଦ୍ଧରେ ମିଳେ । ସେହି ସମୟ ହିଁ ତାଙ୍କ ଜୀବନର ଉପରକୁ ଉଠିବାର ବେଳ । ସେହି କାରଣରୁ ତାଙ୍କ ବିଷୟରେ ଯାହା ତଥ୍ୟ ମିଳୁଛି ତାହା ତାଙ୍କ ପ୍ରୌଢ଼ାବସ୍ଥାର । ତାଙ୍କର ପିଲାଦିନ ସଂପର୍କରେ ଜନଶ୍ରୁତି ଉପରେ ହିଁ ଭରସା କରିବାକୁ ପଡୁଛି । ବେଳେବେଳେ ଏହି ଜନଶ୍ରୁତି ଅତିରଞ୍ଜିତ ମଧ୍ୟ ହୋଇଥାଏ । କାରଣ ନାୟକ ନାୟିକାଙ୍କ ସ୍ତୁତିଗାନ କରି ହିଁ ଜନଶ୍ରୁତି ଲେଖାଯାଏ, କୁହାଯାଏ । ଏଥିପାଇଁ ଜୀବନୀ ଲେଖିଲାବେଳେ ଏହି ଜନଶ୍ରୁତିକୁ ହିଁ ଆଧାରରୂପେ ଗ୍ରହଣ କରାଯାଇଥାଏ । କିନ୍ତୁ ସାବଧାନ ବି ରହିବାକୁ ପଡ଼େ ।

ଠିକ୍ ଏହି ଅସୁବିଧା ଲକ୍ଷ୍ମୀବାଈଙ୍କ କ୍ଷେତ୍ରରେ ବି ହୋଇଥିଲା । ଏ ପ୍ରକାର ଅସୁବିଧାକୁ 'ମାଝାପ୍ରବାସ' ନାମକ ଏକ ପୁସ୍ତକ ଦୂର କରିବାକୁ ସହାୟକ ହୋଇଥିଲା । ଏହି ପୁସ୍ତକର ଲେଖକ ଗୋଡ଼ସେ ଭଟ୍ଟ ସ୍ୱୟଂ ଲକ୍ଷ୍ମୀବାଈଙ୍କୁ ପ୍ରତ୍ୟକ୍ଷରୂପେ ଦେଖିଥିଲେ । ମହାରାଣୀଙ୍କର ଆଶ୍ରିତ ଭାବେ ସେ କିଛି ଦିନ ଝାନ୍ସୀରେ ବିତାଇଥିଲେ । ସେତେବେଳେ ସ୍ୱାଧୀନତା ସଂଗ୍ରାମର ସମୟ ଥିଲା ।

ଅଲୀବାଗ ଜିଲ୍ଲାର ବରସଇ ନାମକ ଏକ ଗାଁରେ ଭିକ୍ଷାବୃତ୍ତି କରୁଥିବା ଏହି ଗୋଡ଼ସେ ଅତ୍ୟନ୍ତ ଗରିବ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଏହି ଯୁବକଟିର ନାମ ଥିଲା ବିଷ୍ଣୁଭଟ୍ଟ, ତାଙ୍କ ଉପରେ କରଜର ବୋଝ ବି ଥିଲା । ତାଙ୍କୁ କୌଣସି ସୂତ୍ରରୁ ଖବର ମିଳିଲା ଯେ ଗ୍ୱାଲିୟରସ୍ଥିତ ରାଜମାତା ବାୟଜାବାଈ ସିନ୍ଧେ ଏକ ମହାଯଜ୍ଞର ଆୟୋଜନ କରୁଛନ୍ତି । ଏକା ସାଙ୍ଗରେ ସାତ-ଆଠ ଲକ୍ଷ ଟଙ୍କା ଧର୍ମକାର୍ଯ୍ୟରେ ଖର୍ଚ୍ଚ କରିବାର ଯୋଜନା କରିଛନ୍ତି । ଏହି ଖବର ଜାଣିବା ପରେ ସେଠାରେ ଯାଇ ଯଜ୍ଞ କାର୍ଯ୍ୟରେ ଭାଗ ନେଲେ କିଛି ଦାନ ଦକ୍ଷିଣା ମିଳିଯିବା ଆଶାରେ ସେ ସେଠାକୁ ଯିବାକୁ ସ୍ଥିର କଲେ । ତା' ସହ କାଶୀ ଯାଇ ପୁଣ୍ୟ ଅର୍ଜନ କରିବା ବିଚାର ମଧ୍ୟ ତାଙ୍କ ମନକୁ ଆସିଲା । ୩୦ ମାର୍ଚ୍ଚ ୧୮୫୭ ଦିନ ଯୋଜନା ଅନୁସାରେ ବିଷ୍ଣୁଭଟ୍ଟ ନିଜ କକାଙ୍କ ସହ ନିଜ ଘରୁ ବାହାରି

କାଶୀ ଅଭିମୁଖେ ଯାତ୍ରା କଲେ । ମହ୍ଵ ପହଞ୍ଚିବା ପରେ କିଛି ପ୍ରବାସୀ ତାଙ୍କୁ କହିଲେ ଯେ 'ଆଜିଠାରୁ ତିନିଦିନ ପରେ ପୃଥିବୀରେ ରାଜ୍ୟ କ୍ରାନ୍ତି ହେବାର ଅଛି । ମରାମରି, ଲୁଟପାଟ୍ ବି ହେବ, ଏଥିରେ ସନ୍ଦେହ ନାହିଁ । ତାହା ଛଡ଼ା ତାଙ୍କୁ ଖବର ମିଳିଲା ଯେ ବନ୍ଧୁକର କାରତୁସ୍‌ରେ ଗାଈ, ଘୁଷୁରିର ଚର୍ବି ଲଗାଇଥିବା କାରଣରୁ ହିନ୍ଦୁ-ମୁସ୍‌ଲିମ୍ ସିପାହିମାନେ ରାଗିକରି ରହିଛନ୍ତି ଓ ସେଇମାନେ ରାଜ୍ୟ କ୍ରାନ୍ତି କରିବାକୁ ସ୍ଥିର କରିଛନ୍ତି । କିନ୍ତୁ କକା-ପୁତୁରା ଭାବିଲେ ଆମେ ତ ଗରିବ ବ୍ରାହ୍ମଣ, ପୁରୋହିତଗିରି କଲାବାଲା । ଧର୍ମ ରକ୍ଷା କରିବାକୁ ସବୁ କଳା ଲୋକ ଏକାଠି ହୋଇ ଲଢ଼ିବାକୁ ଯାଉଛନ୍ତି । ତା'ହେଲେ ଆମେ କାହିଁକି ଡରିବା ? ଏହି କଥା ଭାବି ସେମାନେ ଫେରିବା ବଦଳରେ ଯାତ୍ରା ଜାରି ରଖିବାକୁ ନିଷ୍ପତ୍ତି ନେଲେ । ମହ୍ଵରେ ଥିଲାବେଳେ ହିଁ ୧୦ ଜୁନ ୧୮୫୭ ଦିନ ସେଠିକାର ସୈନ୍ୟ ଛାଉଣୀରେ ବିଦ୍ରୋହ ହୋଇଗଲା । ସେଠାରେ ରହୁଥିବା ଗୋରା ଲୋକମାନଙ୍କର ନରସଂହାର ସେ ନିଜ ଆଖିରେ ଦେଖିଲେ । ସେଠୁ ବାହାରି ଉଜ୍ଜୟିନୀ, ଧାର, ପୁଣି ଉଜ୍ଜୟିନୀ, ଗ୍ୱାଲିୟର ହେଇ ନଭେମ୍ବରରେ ଗୋଡ଼ସେ ଭଟ୍ଟ ଝାନ୍ସୀ ପହଞ୍ଚିଗଲେ । ନଭେମ୍ବରଠାରୁ ମାର୍ଚ୍ଚ ଶେଷପର୍ଯ୍ୟନ୍ତ ତାଙ୍କର ନିବାସସ୍ଥାନ ଝାନ୍ସୀ ହିଁ ଥିଲା । ସେହି ସମୟରେ ରାଣୀ ଲକ୍ଷ୍ମୀବାଈ ତାଙ୍କୁ ନିଜର ବ୍ୟକ୍ତିଗତ ପୁରୋହିତରୂପେ ନିଯୁକ୍ତି ଦେଇଥିଲେ । ଝାନ୍ସୀରେ ଯୁଦ୍ଧ ଚାଲିଥିବା ସମୟରେ ଗୋଡ଼ସେ ଭଟ୍ଟ ଝାନ୍ସୀରେ ହିଁ ଥିଲେ । ସେହି ଗଣ୍ଡଗୋଳରେ ସେ ନିଜେ ମଧ୍ୟ ଫସି ଯାଇଥିଲେ । ଶୁଦ୍ଧ ଭାବରେ ଧାର୍ମିକ ଅନୁଷ୍ଠାନ କରୁଥିବା ଗୋଡ଼ସେ ଭଟ୍ଟଙ୍କୁ ନା କୌଣସି ପ୍ରକାରର ଲୋଭ ଥିଲା ନା ତାଙ୍କର କୌଣସି ବିଶେଷ ସଉକ ଥିଲା । ନା ସେ ଏହି ଯୁଦ୍ଧର ବିଶେଷତ୍ୱ ଜାଣିପାରିଲେ ନା ଏ ଯୁଦ୍ଧର ମହତ୍ତ୍ୱ ବୁଝିପାରିଲେ । ନିଜ ଗାଁରେ ଘଟୁଥିବା ଘଟଣାମାନଙ୍କଠାରୁ ଏ ଘଟଣାର ସ୍ୱରୂପ ଅଲଗା ଥିଲା, ଏତିକି କଥା ମାତ୍ର ସେ ବୁଝି ପାରୁଥିଲେ । ସେହି କାରଣରୁ ସେ ସବୁ ଘଟଣା ସମ୍ପର୍କରେ ସେ ଯାହା ଦେଖିଲେ, ଯେମିତି ବୁଝିଲେ ସେମିତି ହିଁ ଲେଖିଥିବେ । ତେଣୁ ତାଙ୍କ କଥାରେ ବିଶ୍ୱାସ କରାଯାଇପାରେ ।

ବିଷ୍ଣୁଭଟ୍ଟଙ୍କର ଆଉଜଣେ କକା ବ୍ରହ୍ମାବର୍ତ୍ତରେ ବାଜିରାଓ ଦ୍ୱିତୀୟଙ୍କର ଯଜ୍ଞଶାଳାରେ ପୁରୋହିତ କାମ କରୁଥିଲେ । ଲକ୍ଷ୍ମୀବାଈଙ୍କର ପିତା ମୋରୋପଂତ ତାଂବେ ତାଙ୍କ ଅଧୀନରେ ଚାକିରି କରୁଥିଲେ । ସେ ସମୟରେ ରାମଭଟ୍ଟ କକା ଛୋଟଝିଅ ମନୁକୁ ବହୁତ ନିକଟରୁ ଦେଖିଥିଲେ । ସେ ଗୋଡ଼ସେ ଭଟ୍ଟଙ୍କୁ ନିଜ ସଂସ୍କରଣ ଶୁଣାଇଥିଲେ । ସେ ଚର୍ଚ୍ଚା ବି 'ମାଝାପ୍ରବାସ' ପୁସ୍ତକରେ କରାଯାଇଅଛି । ଏ ସବୁର ବର୍ଣ୍ଣନ ପ୍ରତ୍ୟକ୍ଷଦର୍ଶୀ ଜଣେ କରିଥିବାରୁ ବିଶ୍ୱାସଯୋଗ୍ୟ ବୋଲି କୁହାଯାଇପାରେ ।

ରାଣୀ ଲକ୍ଷ୍ମୀବାଈଙ୍କ ଜନ୍ମତିଥି ବିଷୟରେ ପ୍ରାମାଣିକତା ପ୍ରତିପାଦନ କରିବା ଅସମ୍ଭବ । କାରଣ ଏମିତି ପ୍ରମାଣ କିଛି ନାହିଁ । ଗୋଡ଼ସେ ଭଟ୍ଟ ଲକ୍ଷ୍ମୀବାଈଙ୍କ ଜନ୍ମତାରିଖ ବିଷୟରେ କିଛି ଉଲ୍ଲେଖ କରି ନାହାନ୍ତି । ୧୮୯୮ରେ ସେ ଦତ୍ତାତ୍ରୟ ପାରସନିସ 'ଝାନସୀ



ରାଣୀ ଲକ୍ଷ୍ମୀବାଈଙ୍କ ଚିତ୍ର



ଝାନ୍ସୀର ରାଣୀ ମହଲ



ତିନୋଟି ସମାଧି
ଗୁଲାମ ଗୌସ ଖାଁ, ମୋତିବାଈ, ସର୍ଦ୍ଦାର ଖୁଦାବକ୍ସ



ଲଣ୍ଡନର ଆଲବର୍ଟ ମ୍ୟୁଜିୟମ୍‌ରେ ରଖାଯାଇଥିବା ଲକ୍ଷ୍ମୀବାଈଙ୍କ ଚିତ୍ର



ମହଲ ଭିତରର ଚିତ୍ର



ନଗରସ୍ଥିତ ରାଣୀ ମହଲ



ଇଂରେଜ ଓ ରାଣୀଙ୍କ ମଧ୍ୟରେ ଯୁଦ୍ଧ



ଦୁର୍ଗର ପଶ୍ଚିମ ଗମ୍ବୁଜ



ଦୁର୍ଗ ଭିତରେ ଗଣେଶ ମନ୍ଦିର



ଭବାନୀ ଶଙ୍କର ତୋପ



ନଗର ମଧ୍ୟସ୍ଥ ଶ୍ରୀ ଗଣପତି ମନ୍ଦିର



ଝାନ୍‌ସୀ ଦୁର୍ଗର ମୁଖ୍ୟ ଦ୍ୱାର



ମହାଲକ୍ଷ୍ମୀ ମନ୍ଦିର



ଦୁର୍ଗ ଭିତରେ ଶଙ୍କର ମନ୍ଦିର



ବିଜୁଳି ତୋପ



ଝାନ୍‌ସୀ ରାଣୀଙ୍କ ମିନିଏଚର ପେଣ୍ଟିଂ



ଗୋଆଲିୟରସ୍ଥିତ ଲକ୍ଷ୍ମୀବାଈଙ୍କ ମୂର୍ତ୍ତି

ରାଣୀ' ନାମକ ଏକ ଜୀବନୀ ପୁସ୍ତକ ଲେଖିଥିଲେ । ସେଥିରେ ସେ ଲେଖିଛନ୍ତି ଯେ ମନୁଙ୍କର ଜନ୍ମ ୧୯ ନଭେମ୍ବର ୧୮୩୫ରେ ହୋଇଥିଲା । ହେଲେ ସେ ସଂପର୍କରେ ସେ କୌଣସି ପ୍ରାମାଣିକ ତଥ୍ୟ ପ୍ରଦାନ କରି ନାହାନ୍ତି । ଲକ୍ଷ୍ମୀବାଈଙ୍କ ଜନ୍ମ ତାରିଖ ସଂପର୍କରେ କେବଳ ସମ୍ଭାବନା ହିଁ ବ୍ୟକ୍ତ କରାଯାଇପାରେ । ତାଙ୍କର ବିବାହ ୧୮୪୨ ମସିହାରେ ହୋଇଥିଲା । ଏକଥା ନିମନ୍ତ୍ରଣପତ୍ର ଆଧାରରେ ନିଶ୍ଚିତ କରାଯାଇପାରେ । ଗୋଡ଼ସେ ଭଟ୍ଟଙ୍କୁ ରାମଭଟ୍ଟ କକା କହିଥିଲେ ଯେ ମୋରୋପଂତ ଆଜିକାଲି ବଡ଼ ଚିନ୍ତାରେ ରହୁଛନ୍ତି କାରଣ ତାଙ୍କ ଝିଅ ବଡ଼ ହୋଇଗଲାଣି ଓ ତା'ର ବିବାହ କୋଉଠି ସ୍ଥିର ହୋଇପାରୁ ନାହିଁ । ଏହାର ଅର୍ଥ ହେଲା ସେ ସମୟରେ ଝିଅର ବିବାହ ୮/୯ ବର୍ଷ ବୟସରେ କରି ଦିଆଯାଉଥିଲା । ସେହି ଅନୁସାରେ ୧୮୪୨ ମସିହା ବେଳକୁ ମନୁର ବୟସ ନିଶ୍ଚିତରୂପେ ୧୨/୧୩ ବର୍ଷ ହୋଇଥିବ । ତେଣୁ ମନୁର ଜନ୍ମ ୧୮୨୯ ବା ୧୮୩୦ରେ ହୋଇଥାଇପାରେ ।

ମୋରୋପଂତ ତାଂବେ ମୂଳରୂପରେ ପାରୋଳା ନିବାସୀ ଥିଲେ । ବାଜିରାଓ ଦ୍ୱିତୀୟଙ୍କ କାର୍ଯ୍ୟକାଳ ସମୟରେ ସେ ପୁନେ ଆସିଯାଇଥିଲେ । ପେଶୱାଙ୍କ ପାଖରେ ଚାକିରି କରିବାକୁ ଲାଗିଲେ । ୧୮୧୮ରେ ପେଶୱା ପ୍ରଥାର ଅନ୍ତ ହୋଇଯିବା ପରେ ବାଜିରାଓ ଦ୍ୱିତୀୟ ବ୍ରହ୍ମାବର୍ତ୍ତ ଯାଇ ବସବାସ କରିବାକୁ ଲାଗିଲେ । ସେହି ସମୟରେ ବାଜିରାଓଙ୍କ ଛୋଟ ଭାଇ ଚିମାଜୀଅପ୍ପାଙ୍କୁ ପୁନେ ସହର ଓ ଆଖପାଖର ୨୦ ଲକ୍ଷ ଟଙ୍କାର ଇଲାକା ଦେବାକୁ କଂପାନୀ ସରକାର ପ୍ରସ୍ତୁତ ଥିଲେ । କିନ୍ତୁ ଛୋଟା-ଲେଙ୍ଗଡ଼ା ପେଶୱାପଣିଆ ସ୍ୱୀକାର କରିବା ଅପେକ୍ଷା କାଶୀ ଆସି ସେଠାରେ ବସବାସ କରିବାକୁ ସେ ଅଧିକ ପସନ୍ଦ କଲେ । ଚିମାଜୀଅପ୍ପା ରାଓଙ୍କ ସହ ମୋରୋପଂତ ମଧ୍ୟ କାଶୀ ଚାଲି ଆସିଲେ । ତାଙ୍କ ଧର୍ମପତ୍ନୀ ଭାଗୀରଥୀବାଈ ମଧ୍ୟ ତାଙ୍କ ସହ କାଶୀ ଚାଲିଆସିଲେ । କାଶୀରେ ସନ୍ଥ କବି ତୁଳସୀ ଦାସଙ୍କର ଯେଉଁଠି ନିର୍ବାଣ ହୋଇଥିଲା, ସେହି ଅସ୍ସୀ ଘାଟ ପାଖରେ ଏକ ଛୋଟ ଉଆସରେ ମୋରୋପଂତ ରହୁଥିଲେ । ସେହି ଘରେ ହିଁ ତାଙ୍କର କନ୍ୟାରତ୍ନ ଜନ୍ମ ନେଇଥିଲା । କନ୍ୟାର ଜନ୍ମ କାଶୀରେ, ଗଙ୍ଗାକୂଳରେ ହେଇଥିବାରୁ ତା'ର ନାମ ଗଙ୍ଗାର ନାମ ଅନୁସାରେ ମଣିକର୍ଣ୍ଣିକା ରଖାଗଲା । ପରେ ୩୦ ମଇ ୧୮୩୨ ମସିହାରେ ଚିମାଜୀ ଅପ୍ପାଙ୍କର ଦେହାନ୍ତ ହୋଇଯିବାରୁ ମୋରୋପନ୍ତଙ୍କ ଆଶ୍ରମ ଭାଙ୍ଗିଗଲା । ସେ ପତ୍ନୀ ଓ ଛୋଟଝିଅକୁ ନେଇ ବାଜିରାଓଙ୍କ ପାଖକୁ ବ୍ରହ୍ମାବର୍ତ୍ତ ପଳାଇ ଆସିଲେ । ନିଜ ଭାଇ ପାଖରୁ ଆସିଥିବାରୁ ମୋରୋପନ୍ତଙ୍କୁ ବାଜିରାଓ ନିଜ ପାଖରେ ରଖିନେଲେ । ମୋରୋପନ୍ତ ଯଜ୍ଞଶାଳାରେ ନିଯୁକ୍ତି ପାଇଲେ । ତା'ପରେ ଭାଗିରଥୀବାଈ ଅଧିକ ଦିନ ଜୀବିତ ରହିଲେ ନାହିଁ । ମନୁ ମାତ୍ର ୩/୪ ବର୍ଷର ଥିଲେ ସେତେବେଳେ ଭାଗୀରଥୀବାଈ ମୃତ୍ୟୁବରଣ କଲେ । ମା' ଛେଉଣ୍ଡ ଝିଅକୁ ମୋରୋପନ୍ତ ନିଜ ପ୍ରାଣରୁ ବି ଅଧିକ ଭଲ

ପାଉଥିଲେ ଓ ଅତି ସ୍ନେହରେ ତାକୁ ବଡ଼ କଲେ । ଅନ୍ୟ ଲୋକମାନଙ୍କର ମଧ ଏହି ମାତୃହୀନ ବାଳିକାଟି ପ୍ରତି ଅଗାଧ ସ୍ନେହ ଥିଲା । ମନୁ ତୀକ୍ଷ୍ଣ ବୁଦ୍ଧି, ଚତୁର ଓ ଦେଖିବାକୁ ବଡ଼ ସୁନ୍ଦର ଥିଲା । ସେ ସବୁଆଡ଼େ ବୁଲୁଥିଲା । ସମସ୍ତଙ୍କର ପ୍ରିୟ ଥିଲା । ତାକୁ ଦେଖିଲେ ଲୋକେ ତା' ପ୍ରତି ଆକର୍ଷିତ ହୋଇ ପଡୁଥିଲେ । ସ୍ୱୟଂ ବାଜିରାଓଙ୍କର ମଧ ସେ ଅତି ଗେହ୍ଲା ଝିଅ ଥିଲା, ଲୋକଙ୍କ ମୁହଁରୁ ଶୁଣାଯାଏ ବାଜିରାଓ ତାକୁ ପୋଷ୍ୟକନ୍ୟା କରି ନେଇଥିଲେ । ହେଲେ ଏହି ଜନଶ୍ରୁତିର କୌଣସି ପ୍ରତ୍ୟକ୍ଷ ପ୍ରମାଣ ନାହିଁ । ଏହି ଜନଶ୍ରୁତିରୁ ଏତିକି ଜଣାଯାଏ ଯେ ବାଜିରାଓ ଦ୍ୱିତୀୟଙ୍କର ସେ ସବୁଠାରୁ ପ୍ରିୟ ଝିଅ ଥିଲା । ଏହି କାରଣରୁ ବାଜିରାଓଙ୍କର ପୋଷ୍ୟ ସନ୍ତାନ ନାନାସାହେବ, ରାଓସାହେବଙ୍କ ସଙ୍ଗେ ତାକୁ ପାଠ ପଢ଼ିବାର ସୁଯୋଗ ମିଳିଲା । ସେ ଖୁବ୍ ଶୀଘ୍ର ଅକ୍ଷର ଓ ଲିପି ଶିଖିଗଲା । ସେ ମୋଡ଼ୀ ଲିପି (ମରାଠୀ ଭାଷାର ଏକ କ୍ଷିପ୍ର ଲିପି) ପଢ଼ିବା ଲେଖିବା ଶିଖିଗଲା । ପୁଅପିଲାଙ୍କ ପରି ତରବାରି ଚାଳନା ଓ ଅଶ୍ୱାରୋହଣ ବି ଶିଖିଗଲା । ସେ ପ୍ରତିଦିନ ବ୍ୟାୟାମ ବି କରୁଥିଲା । ଆଉ ଏକ ଜନଶ୍ରୁତି ପ୍ରଚଳିତ ଥିଲା, ଯାହା ଏହି ପ୍ରକାରର । ଦିନେ ନାନାସାହେବ ହାତୀ ଚଢ଼ି କୋଉଠିକୁ ଯାଉଥିଲେ, ମନୁ ତାଙ୍କ ସହ ହାତୀ ଉପରେ ବସିବାକୁ ଜିଦ୍ କଲା । କିନ୍ତୁ ନାନାସାହେବ ତାଙ୍କୁ ସାଙ୍ଗରେ ନେବାପାଇଁ ପ୍ରସ୍ତୁତ ନ ଥିଲେ । ମନୁ ନିଜ ଜିଦ୍‌ରେ ଅଟଳ ସେ ଯିବ ହିଁ ଯିବ । ଦୁହେଁ ନିଜ ନିଜ ଜିଦ୍‌ରେ ଅଟଳ । ଏଥିରେ ମୋରୋପନ୍ତ ବ୍ୟସ୍ତ ହୋଇଗଲେ । ନାନାସାହେବ ବୟସରେ ବଡ଼ ଥିଲେ ବି ସେ ପେଶୱାଙ୍କର ପୁଅ, ତାଙ୍କୁ କିଛି କହିବାର ଅଧିକାର ମୋରୋପନ୍ତଙ୍କର ନ ଥିଲା । ଏଥିପାଇଁ ସେ ନିଜ ଝିଅ ଉପରେ ରାଗିଗଲେ, କହିଲେ, 'ଅଯଥା ଜିଦ୍ ଛାଡ଼ିଦେ । ତୋ ଭାଗ୍ୟରେ ହାତୀରେ ବସିବା ଲେଖା ନାହିଁ ।' ଏକଥା ଶୁଣି ମନୁ ତୁରନ୍ତ ଉତ୍ତର ଦେଲା 'ଗୋଟାଏ କାହିଁକି ? ଦଶଟା ହାତୀ ମୋ ଭାଗ୍ୟରେ ଅଛି ।' ଏହି ଜନଶ୍ରୁତିର ଉଲ୍ଲେଖ ପାରସନିସ୍ ନିଜ ପୁସ୍ତକ 'ଝାନ୍ସୀର ରାଣୀ'ରେ କହିଛନ୍ତି । ମଜାର କଥା ହେଲା । ଗଙ୍ଗାଧର ରାଓଙ୍କ ସହ ବିବାହ କଲା ପରେ ଉପହାରଭାବେ ସେ ନିଜ ନବବଧୂଙ୍କୁ ଯେଉଁ ସମ୍ପତ୍ତି ଭେଟି ଦେଇଥିଲେ, ସେଥିରେ ଦେଇଥିବା ହାତୀ ସଂଖ୍ୟା ୧୦ ହିଁ ଥିଲା ।

ଏମିତି ଚତୁର, ବୁଦ୍ଧିମତୀ ମନୁ ଦେଖିବାକୁ କେମିତି ଥିଲେ, ଗୋଡ଼ସେ ଭଟ୍ଟ ନିଜ କକା ରାମଭଟ୍ଟଙ୍କ ମାଧମରେ ବର୍ଣ୍ଣନା କରିଛନ୍ତି "ମନୁ ଅତ୍ୟନ୍ତ ବୁଦ୍ଧିମାନ୍ ଓ ନିର୍ମଳ ସ୍ୱଭାବର ଥିଲା ଓ ଗୋରୀ ଥିଲା । ଶରୀର ପତଳା ମାତ୍ର ହୃଷ୍ଟପୁଷ୍ଟ ଥିଲା । ନାକ ସିଧା, କପାଳ ଉଁଚା ଥିଲା ଓ ଆଖି ବଡ଼ ବଡ଼, କମଳ ପତ୍ର ପରି ଗୋଲ ଥିଲା । ତା'ର କାନ ତା ଚେହେରାର ଶୋଭା ବଢ଼ାଉଥିଲା । ଉଚ୍ଚତା ସାମାନ୍ୟ ଅଧିକ ଥିଲା । ଅଣ୍ଟା ଶରୀର ରଚନାର ଅନୁକୂଳ ଥିଲା । ଏହି ବର୍ଣ୍ଣନା ସେ ବିବାହ ପୂର୍ବରୁ ମନୁର କରିଛନ୍ତି (ମାଝାପ୍ରବାସ : ଗୋଡ଼ସେ ଭଟ୍ଟ, ପୃଷ୍ଠା ୩୨) ।

## ବିବାହ ଓ ବୈଧବ୍ୟ

ମନୁର ବୟସ ବଢ଼ିଚାଲିଲା । ଏହା ସେହି ସମୟର କଥା ଯେଉଁ ସମୟରେ ଝିଅ ଆଠ/ ଦଶ ବର୍ଷର ହୋଇଗଲେ ତା'ର ବିବାହ କରି ଦିଆଯାଉଥିଲା । ଏହି ପରମ୍ପରା ଥିଲା, ଏହି ରୀତି ଥିଲା କାରଣ ଘରଯୋଗ୍ୟା ହେବା ପୂର୍ବରୁ ଯଦି ଝିଅର ବିବାହ ହୋଇ ନ ପାରିଲା, ତା'ହେଲେ ବାପ ବୟାଳିଶ ପିଢ଼ି ନର୍କକୁ ଚାଲି ଯାଉଥିଲା । ଏମିତି ବିଶ୍ବାସ କରାଯାଉଥିଲା । କିନ୍ତୁ ମନୁର ବିବାହ କୋଉଠି ବି ସ୍ଥିର ହେଇ ପାରୁ ନ ଥିଲା । ତାଂବେ କରାହଡ଼େ ବ୍ରାହ୍ମଣ ଥିଲେ (ମହାରାଷ୍ଟ୍ର ବ୍ରାହ୍ମଣଙ୍କର ଏକ ଉପଜାତି) । ତେଣୁ ବର ବି ଜାତିର ଅର୍ଥାତ୍ କରାହଡ଼ା ହେବା ଦରକାର । ଅନ୍ୟ ଜାତି ଯେମିତିକି ଦେଶସ୍ଥ (ମହାରାଷ୍ଟ୍ର ବ୍ରାହ୍ମଣଙ୍କର ଆଉ ଏକ ଉପଜାତି) ବା କୋଙ୍କଣସ୍ଥ (ମହାରାଷ୍ଟ୍ରର କୋଙ୍କଣବାସୀ ବ୍ରାହ୍ମଣଙ୍କର ଆଉ ଏକ ବର୍ଗ) ଯୁବକଙ୍କ ସହ ବିବାହ ସମ୍ଭବ ନ ଥିଲା । ପେଶୱା ନିଜେ କୋଙ୍କଣସ୍ଥ ହୋଇଥିବାରୁ ବ୍ରହ୍ମାବର୍ତ୍ତରେ ବେଶି କୋଙ୍କଣସ୍ଥ ହିଁ ଥିଲେ । ସେଥିପାଇଁ ମୋରୋପନ୍ତ ଆଖପାଖ ଜାଲୋନ, ଗୁଲସରାୟ ଆଦି ସ୍ଥାନରେ ନିଜ ଝିଅ ପାଇଁ ବର ଖୋଜିବା ଆରମ୍ଭ କରିଦେଲେ । କାରଣ ସେଠାରେ ଗୋବିନ୍ଦପନ୍ତ ଖେରଙ୍କ ବଂଶଜମାନେ ରାଜତ୍ୱ କରୁଥିଲେ । ଖେର କରାହଡ଼େ ଥିଲେ । ସେଥିପାଇଁ ସେଠାରେ କରାହଡ଼େ ବ୍ରାହ୍ମଣଙ୍କ ସଂଖ୍ୟା ଅଧିକ ଥିଲା । ଏହା ସତ୍ତ୍ୱେ ସେଠି ଆଉ ଏକ ସମସ୍ୟା ଦେଖାଦେଲା । ଝିଅର ଜାତକ କାହା ସାଙ୍ଗରେ ମେଳ ଖାଉ ନ ଥିଲା । ମନୁର ବୟସ ବି ୧୨/୧୩ ବର୍ଷ ହେଇଯାଇଥିବାରୁ ତା' ପାଇଁ ଉପଯୁକ୍ତ ବରପାତ୍ର ବି ମିଳୁ ନ ଥିଲେ । ଜଣେ ଜ୍ୟୋତିଷ ତା'ର ଜାତକ ଦେଖି କହିଲେ ତା'ର ରାଜଯୋଗ ଅଛି । ଏକଥା ଶୁଣି ମୋରୋପନ୍ତ ରାଜପରିବାରରେ ବର ଖୋଜିବାରେ ଲାଗିପଡ଼ିଲେ । ଦିନକୁ ଦିନ ଝିଅର ବାହାଘର ଚିନ୍ତା ବଢ଼ିଚାଲିଲା । ଏସବୁ ଘଟଣା ଗୋଡ଼ସେ ଭଟ୍ଟ ରାମଚନ୍ଦ୍ର କକାଙ୍କଠାରୁ ଶୁଣିଥିଲେ ବୋଲି ନିଜ ପୁସ୍ତକରେ ବର୍ଣ୍ଣନା କରିଛନ୍ତି ।

ସଂଯୋଗବଶତଃ ଝାନ୍‌ସୀର ରାଜା ଗଙ୍ଗାଧର ରାଓଙ୍କ ପାଇଁ ବି କନ୍ୟା ଖୋଜା ଚାଲିଥାଏ । ଗଙ୍ଗାଧର ରାଓ ନେବାଲକର କରାହଡ଼େ ବ୍ରାହ୍ମଣ ଥିଲେ । ତାଙ୍କୁ ମଧ୍ୟ ନିଜ ଜାତିର ଏକ ଝିଅ ଦରକାର ଥିଲା । ମଧ୍ୟସ୍ଥତା କରୁଥିବା ଜଣେ ବ୍ୟକ୍ତି ଏହି ଦୁଇ ପରିବାର ମଧ୍ୟରେ ସମ୍ବନ୍ଧ ସ୍ଥାପିତ କରିବାକୁ ଚେଷ୍ଟା କଲେ । ଦୁଇ ପରିବାର ସହ ସଂପର୍କ ସ୍ଥାପନ କରି ସେ ପଚରାପଚରି ଆରମ୍ଭ କରିଦେଲେ । ମୋରୋପନ୍ତଙ୍କ ପରି ଜଣେ ଆଶ୍ରିତ ବ୍ୟକ୍ତି ପାଇଁ ଏକ ରାଜ୍ୟର ରାଜାକୁ ନିଜ ଜ୍ୱାଇଁ କରିବାକୁ ଭାବିବା ବା ସେଥିପାଇଁ ଚେଷ୍ଟା କରିବା ବଡ଼ ସାହସିକ କାର୍ଯ୍ୟ ଥିଲା । ବାଜିରାଓ ଦ୍ୱିତୀୟ ଏହି ମାମଲାର ସମାଧାନ ସ୍ୱୟଂ କଲେ । ଜ୍ୟୋତିଷ କହିବା ଅନୁସାରେ ମନୁର ରାଜଯୋଗ ଆଗରେ ଆସି ଛିଡ଼ା ହୋଇଗଲା । ବର-କନ୍ୟାଙ୍କର ବୟସରେ ବହୁତ ତାରତମ୍ୟ ଥିଲା । ମନୁ ୧୦-୧୩ ବର୍ଷର ତ ଗଙ୍ଗାଧର ୪୦-୪୨ ବର୍ଷର ଥିଲେ । ଜଣେ ବଢ଼ନ୍ତା ବୟସର ତ ଅନ୍ୟ ଜଣଙ୍କର ବୟସ ଗଡ଼ି ଯାଇଥିଲା । ଦୁହିଁଙ୍କ ଜାତି ସମାନ ହୋଇଥିଲେ ମଧ୍ୟ ସାମାଜିକ ସ୍ତରରେ ଆକାଶପାତାଳ

ପ୍ରଭେଦ ଥିଲା । କିନ୍ତୁ ଦୁହିଁଙ୍କର ଆବଶ୍ୟକତା ଥିଲା । ବାଜିରାଓ ଦ୍ୱିତୀୟ ନିଜେ ଏହି ପ୍ରସ୍ତାବରେ ବହୁତ ଆଗ୍ରହ ଦେଖାଇଲେ ଓ ଗଙ୍ଗାଧରଙ୍କ ବିବାହ ମନୁ ସହ କରାଇ ରାଜପରିବାର ପ୍ରତିଷ୍ଠା ଅନୁସାରେ ତାଙ୍କୁ ବିଦା ବି କଲେ ।

ମୋରୋପନ୍ତ ମନୁକୁ ନେଇ ଝାନ୍ସୀ ଚାଲିଆସିଲେ । ତାଙ୍କ ରହିବା ବ୍ୟବସ୍ଥା ଏକ ବିଶାଳ ରାଜମହଲରେ କରାଗଲା । ସେହି ମହଲ ପାଖରେ ତିଆରି ହୋଇଥିବା ଗଣେଶ ମନ୍ଦିରରେ ଦୁହିଁଙ୍କ ବିବାହ ହେଲା । ସହର ଭିତରେ ଥିବା ଏହି ଗଣେଶ ମନ୍ଦିର ବିସ୍ତୃତ ଓ ବିଶାଳ ଥିଲା । ଦି ମହଲା ଲମ୍ବା ଚୌଡ଼ା ସଭାଗୃହ ଆଉ ଶହେ ଦେଢ଼ଶହ ଲୋକ ବସିବା ଭଳି ବିସ୍ତୃତ ଜାଗା । ରାଜକୀୟ ପ୍ରତିଷ୍ଠା ଅନୁସାରେ ବିବାହ କାର୍ଯ୍ୟ ସଂପନ୍ନ ହେଲା । ଗୃହ ପ୍ରବେଶ ଓ ଲକ୍ଷ୍ମୀ ପୂଜନ ସମାରୋହ ସମାପ୍ତ ହେଲା ପରେ ମନୁର ନାମ ଲକ୍ଷ୍ମୀବାଈ ରଖାଗଲା ବୋଲି ଘୋଷଣା କରାଗଲା । ଏଇଭଳି ମନୁ ରାଣୀ ଲକ୍ଷ୍ମୀବାଈରେ ପରିଣତ ହୋଇଗଲେ । ସେ ଝାନ୍ସୀ ରାଜମହଲରେ ବସବାସ କରିବାକୁ ଲାଗିଲେ । ନିଜ ନବବିବାହିତା ବଧୂକୁ ଗଙ୍ଗାଧର ରାଓ ହୀରାମୋତି ଓ ମଣିମାଣିକ୍ୟରେ ସୁସଜ୍ଜିତ ହାତୀ ଉପହାରସ୍ୱରୂପ ପ୍ରଦାନ କଲେ; ଯିଏ ରାଣୀଙ୍କ ମହଲର ଶୋଭା ବଢ଼ାଇଲେ । ତାଙ୍କ ନିଜ ଖର୍ଚ୍ଚ ପାଇଁ ଦଶଟି ଗାଁ ମଧ ରାଣୀଙ୍କୁ ପୁରସ୍କାରସ୍ୱରୂପ ଦିଆଗଲା ।

ଝିଅର ବିବାହ ପରେ ୩୫ ବର୍ଷୀୟ ମୋରୋପନ୍ତ ଦ୍ୱିତୀୟ ବିବାହ କଲେ । ସେ ଯୁଗର ପରମ୍ପରା ଅନୁସାରେ ମୋରୋପନ୍ତଙ୍କ ଦ୍ୱିତୀୟ ସ୍ତ୍ରୀର ବୟସ ମାତ୍ର ୮/୧୦ ବର୍ଷ ଥିଲା । ସେମାନଙ୍କ ରହିବା ପାଇଁ ବଡ଼ ମହଲଟିଏ ପ୍ରଦାନ କରାଗଲା । ସେବକ ନିଯୁକ୍ତ କରାଗଲା । ଝାନ୍ସୀ ଦରବାରରେ ପ୍ରତି ମାସ ୩୦୦ ଟଙ୍କା ତାଙ୍କୁ ଦରମା ଦିଆଗଲା ।

ଏହି ଆଦାନ-ପ୍ରଦାନ ବୋଧହୁଏ ମନୁର ବିବାହ ସମୟରେ ସ୍ଥିର କରାଯାଇଥିଲା । ଏମିତି ବି ହୋଇପାରେ ହୁଏତ ମନୁର ବିବାହର ଏହା ଏକ ସର୍ତ୍ତ ଥିଲା ।

ପିଲାଦିନର ଚଞ୍ଚଳ, ଚୁଲବୁଲି, ତତ୍‌କ୍ଷଣାତ୍ ଉତ୍ତର ଦେଲାବାଲୀ, ଚତୁର ନିପୁଣ ମନୁ ଏବେ ଏକ ରାଜ୍ୟର ରାଣୀ ହୋଇଗଲା । ତା' ଉପରେ ଅନେକ ଦାୟିତ୍ୱ ପଡ଼ିଗଲା । ଅନୁଭବହୀନ କମ୍ ବୟସର ଝିଅ ହୋଇଥିଲେ ମଧ ନିଜ ଦାୟିତ୍ୱ ସେ ସୁଚାରୁରୂପେ ସମ୍ଭାଳିଥିଲା ବୋଲି ଉଦାହରଣ ମିଳେ । ବିବାହ ସଂପନ୍ନ ହୋଇଗଲା ପରେ ତୁରନ୍ତ ଝାନ୍ସୀରେ ଫାଶୀ ଦେବା ଗଙ୍ଗାଧର ରାଓ ବନ୍ଦ କରାଇ ଦେଇଥିଲେ । ଏହା ପଛରେ ମଧ ରାଣୀଙ୍କ ହାତ ଥିଲା । ଝାନ୍ସୀ ରାଜ୍ୟର ଯେଉଁ ଅଂଶ କରଜ କାରଣରୁ କମ୍ପାନୀ ସରକାରର କବ୍‌ଜାରେ ରହିଥିଲା, ସେହି ଅଂଚଳଗୁଡ଼ିକୁ କରଜ ଶୁଝିଦେଇ ଗଙ୍ଗାଧର ରାଓ କମ୍ପାନୀ ସରକାରଠାରୁ ନିଜ ଅଧୀନକୁ ନେଇ ଆସିଥିଲେ । ଝାନ୍ସୀର ପ୍ରଜାମାନଙ୍କୁ ଲାଗିଲା ନୂଆ ରାଣୀଙ୍କ ଶୁଭ ଆଗମନ ଯୋଗୁଁ ଏସବୁ ଘଟିଲା । ଝାନ୍ସୀର ଲୋକମାନେ ନିଜ ନିଜ ଭିତରେ ଏହି ବିଷୟରେ ଚର୍ଚ୍ଚା କରିବାରେ ଲାଗିଲେ । ଲୋକମାନେ ନିଜର ନୂଆ ରାଣୀଙ୍କ ପ୍ରତି ଆଦର ଓ ଆତ୍ମୀୟତା ପ୍ରଦର୍ଶିତ କରିବାରେ ଲାଗିଲେ । ପରମ୍ପରା

ଅନୁସାରେ ଲକ୍ଷ୍ମୀବାଈ ମକର-ସଂକ୍ରାନ୍ତି ପର୍ବ, ଚୈତ୍ରଗୌରୀ ବା ନବରାତ୍ର ଧୁମ୍‌ଧାମ୍‌ରେ ଆୟୋଜନ କଲେ । ଗାଁର ସବୁ ସ୍ତ୍ରୀଲୋକ ଓ ଅବିବାହିତ ଝିଅମାନଙ୍କୁ ଏମିତି ସମାରୋହମାନଙ୍କରେ ଆମନ୍ତ୍ରିତ କରାଗଲା । ସ୍ତ୍ରୀମାନଙ୍କର ଅନେକ ପର୍ବ ବଡ଼ ଉତ୍ସାହର ସହ ପାଳନ କରାଗଲା । ପ୍ରତି ମଙ୍ଗଳବାର ଓ ଶୁକ୍ରବାର ଦିନ ନିଜ ଦାସୀ ପରିବାରୀଙ୍କ ସହ ରାଜକୀୟ ଢଙ୍ଗରେ ଲକ୍ଷ୍ମୀବାଈ ମନ୍ଦିରକୁ ଦର୍ଶନ କରିବାକୁ ଯାଉଥିଲେ । ନୂଆ ରାଣୀଙ୍କ ପ୍ରଭାବ ଜନତାଙ୍କ ମନରେ ଗଭୀରରୁ ଗଭୀରତର ହେଲା ଓ ପ୍ରଜା ଏହା ଅନୁଭବ କରିପାରିଲେ । ଏହି ଅନୁଭବ ପ୍ରଜାଙ୍କୁ ବଡ଼ ଆନନ୍ଦଦାୟକ ଲାଗିଲା । ଯେମିତି ନାରୀ ଘରର ଶୋଭା ବଢ଼ାଏ, ସେମିତି ରାଣୀ ରାଜ୍ୟର ଶୋଭା ବଢ଼ାଇଲେ । ରାଜ୍ୟ ନୂଆ ଆଲୋକରେ ଆଲୋକିତ ହେଲା । ଗଙ୍ଗାଧର ରାଓଙ୍କୁ ସମସ୍ତେ ବାବାସାହେବ କହି ସମ୍ମାନ ଦେଉଥିଲେ ତ ରାଣୀ ଲକ୍ଷ୍ମୀବାଈଙ୍କୁ ବାଈସାହେବା କହି ଆଦର ପ୍ରକଟ କରୁଥିଲେ ।

ଶାଶୂଘରକୁ ଆସିଲା ପରେ ବି ଲକ୍ଷ୍ମୀବାଈ ନିଜ ପିଲାଦିନର ସଂସ୍କାର ଅନୁସାରେ ଘୋଡ଼ାଚଢ଼ା, ତରବାରି ଚାଳନା, ବ୍ୟାୟାମ କରିବା ସଉକ ଛାଡ଼ିଲେ ନାହିଁ । ଦୁର୍ଗ ଭିତରେ, ଆମୋଦ ବଗିଚା ଭିତରେ, ଖୋଲାସ୍ଥାନରେ ନିୟମିତ ଭାବରେ ନିଜର ଅଭ୍ୟାସ ଜାରି ରଖିଲେ । ଖାଲି ଏତିକି ନୁହେଁ, ନିଜ ସୈନିକ ଭାବେ ଦାସୀମାନଙ୍କୁ, ଗାଁର ସ୍ତ୍ରୀଲୋକମାନଙ୍କୁ ଘୋଡ଼ାଚଢ଼ା, ତରବାରି ଚାଳନା ଆଦି ପାଠ ଶିଖାଇବାରେ ଲାଗିଲେ । ଗଙ୍ଗାଧର ରାଓ ଲକ୍ଷ୍ମୀବାଈଙ୍କ ସହ କାଶୀ ଓ ପ୍ରୟାଗ ଯାତ୍ରା କରିଥିଲେ । ଏହି କଥାର ଉଲ୍ଲେଖ ଆମେ ପୂର୍ବ ଅଧ୍ୟାୟରେ କରିସାରିଛୁ । ପାରସନିସ୍‌ଙ୍କ ପୁସ୍ତକରେ ଏକଥା ବି ଉଲ୍ଲେଖ ରହିଛି ଯେ ଲକ୍ଷ୍ମୀବାଈ ରାଜଦରବାରରେ, ପରଦା ଆଢୁଆଳରେ ବସି ଦରବାରର କାର୍ଯ୍ୟ ପ୍ରତ୍ୟକ୍ଷ ଭାବରେ ତଦାରଖ କରୁଥିଲେ । କିନ୍ତୁ ଗଙ୍ଗାଧର ରାଓଙ୍କୁ ଏକଥା ଭଲ ଲାଗିଲା ନାହିଁ । ସେବେଠାରୁ ଲକ୍ଷ୍ମୀବାଈ ପତିଙ୍କ ଅବଜ୍ଞା କରିବେ ନାହିଁ ବୋଲି ଦରବାରକୁ ଆସିବା ଛାଡ଼ିଦେଲେ ।

ଯଥାସମୟରେ ଲକ୍ଷ୍ମୀବାଈ ଏକ ପୁତ୍ରସନ୍ତାନକୁ ଜନ୍ମ ଦେଲେ । ଏହା ୧୮୫୧ ମସିହାର କଥା । ଏ ଘଟଣା ସମସ୍ତଙ୍କୁ ପ୍ରଫୁଲ୍ଲିତ କରିବା କଥା । ଝାନ୍ସୀର ଭାବୀରାଜା ଧରାପୃଷ୍ଠକୁ ଆସିଲେ । ସମସ୍ତେ ଆନନ୍ଦିତ ଥିଲେ । ଗଙ୍ଗାଧର ରାଓଙ୍କୁ ଝାନ୍ସୀର ଉତ୍ତରାଧିକାରୀ ମିଳିଗଲା । ବଡ଼ ଉତ୍ସାହର ସହ ଆନନ୍ଦପୂର୍ବକ ପୁତ୍ରଜନ୍ମ ସମାରୋହ ରାଜମହଲରେ ଓ ରାଜ୍ୟସାରା ପାଳନ କରାଗଲା । ପ୍ରଜାମାନେ ମଧ୍ୟ ବହୁତ ଧୁମ୍-ଧାମ୍‌ରେ ରାଜକୁମାର ଜନ୍ମ ଉପଲକ୍ଷେ ବିଭିନ୍ନ କାର୍ଯ୍ୟକ୍ରମ ପାଳନ କରି ନିଜର ଖୁସୀ ପ୍ରକଟ କଲେ । ଅଲ୍ଲା ଉସ୍ତାଦ୍ ଯେଉଁ ସୁନ୍ଦର ଦୋଳି ତିଆରି କରି ଦେଇଥିଲେ ସେ ବିଷୟରେ ପୂର୍ବରୁ ବର୍ଣ୍ଣନା କରାଯାଇଛି । ଝାନ୍ସୀକୁ ଉତ୍ତରାଧିକାରୀ ମିଳିଲା । ସେଥିପାଇଁ ଜନତା ଲକ୍ଷ୍ମୀବାଈଙ୍କୁ ଅଧିକ ସମ୍ମାନ ଓ ସ୍ନେହ କରିବାକୁ ଲାଗିଲେ ।

କିନ୍ତୁ ଭାଗ୍ୟ ଅଲଗା ଖେଳ ଖେଳୁଥିଲା । ତିନି ମାସର ହେଉ ହେଉ ବାଳୁତ ରାଜକୁମାର କାଳକବଳିତ ହୋଇଗଲା. । କମ୍ ବୟସର ମା'କୁ ଦାରୁଣ ଆଘାତ ଲାଗିଲା । ଏହି ଆଘାତ ବୟସ୍କ ଗଙ୍ଗାଧର ରାଓ ମଧ୍ୟ ସହିପାରିଲେ ନାହିଁ । ନିଜ ପୁଅର ମୃତ୍ୟୁର ଦୁଃଖ ତ ଥିଲା, କିନ୍ତୁ ଭବିଷ୍ୟତ୍‌ରେ ପୁତ୍ର ଜନ୍ମହେବାର ଅସଂଭାବନା, ନିଜ ରକ୍ତର ଉତ୍ତରାଧିକାରୀ ଝାନ୍‌ସୀକୁ ପୁଣି ଦେଇ ନ ପାରିବାର ଦୁଃଖ ନିଶ୍ଚୟ ତାଙ୍କ ମନକୁ ଅନେକ କଷ୍ଟ ଦେଇଥିବ । ତାଙ୍କର ସ୍ୱାସ୍ଥ୍ୟ ଦିନକୁ ଦିନ ଖରାପ ହେବାକୁ ଲାଗିଲା । ଚିକିତ୍ସା କରାଗଲା କିନ୍ତୁ ସ୍ୱାସ୍ଥ୍ୟ ଅବସ୍ଥା ଅପରିବର୍ତ୍ତିତ ରହିଲା । ପ୍ରତି ବର୍ଷ ପରି ୧୮୫୩ରେ ମଧ୍ୟ କୁଳସ୍ୱାମିନୀ ମହାଲକ୍ଷ୍ମୀଙ୍କର ନବରାତ୍ର ଉତ୍ସବ ଧୁମ୍‌ଧାମରେ ଆୟୋଜନ କରାଗଲା । ଗଙ୍ଗାଧର ରାଓ ବି ବଡ଼ ଉତ୍ସାହର ସହ ଉତ୍ସବରେ ଭାଗ ନେଲେ । କିନ୍ତୁ ତାଙ୍କ ଦୁର୍ବଳ ଶରୀର ଯୋଗୁଁ ସେ ଥକିଗଲେ । ତା'ପରେ ତୁରନ୍ତ ବିଜୟାଦଶମୀ ଶୋଭାଯାତ୍ରା ବି ବାହାରିଲା । ଦରବାର ବି ଲାଗିଲା । ଗଙ୍ଗାଧର ରାଓ ଏହିସବୁ କାର୍ଯ୍ୟକ୍ରମର ମୁଖ୍ୟ ଥିଲେ । କିନ୍ତୁ ତାଙ୍କର ସ୍ୱାସ୍ଥ୍ୟ ବାଧକ ହେଲା । ଏହିସବୁ କାର୍ଯ୍ୟକ୍ରମରେ ଭାଗ ନେଇ ତାଙ୍କୁ ଯେଉଁ ପରିଶ୍ରମ କରିବାକୁ ପଡ଼ିଲା ସେହି କାରଣରୁ ତାଙ୍କ ସ୍ୱାସ୍ଥ୍ୟ ଅଧିକ ବିଗିଡ଼ିଗଲା । ରାଜବୈଦ୍ୟ ପରୀକ୍ଷା କରି ସଂଗ୍ରହଣୀ ହୋଇଛି ବୋଲି କହିଲେ । ଦିନକୁ ଦିନ ସ୍ୱାସ୍ଥ୍ୟ ଅବସ୍ଥାର ଅବନତି ଘଟିଲା । ଶରୀର ଦୁର୍ବଳ ହେବାରେ ଲାଗିଲା । ଗଙ୍ଗାଧର ରାଓଙ୍କ ଆରୋଗ୍ୟ କାମନା କରି ଲକ୍ଷ୍ମୀବାଈ ବ୍ରତ, ଜପ–ତପ ଆରମ୍ଭ କରିଦେଲେ । ସେ ନିଜେ ପତିଙ୍କ ସେବା କରିବାକୁ ଲାଗିଲେ । ଝାନ୍‌ସୀର ସବୁ ମନ୍ଦିରରେ ପୂଜା–ପାଠ, ଅଭିଷେକ ଆଦି ହେବାରେ ଲାଗିଲା । ବିଭିନ୍ନ ଯଜ୍ଞ–ଅନୁଷ୍ଠାନ କରାଗଲା, କିନ୍ତୁ ସ୍ୱାସ୍ଥ୍ୟ ଅବସ୍ଥା ସୁଧୁରିବ କ'ଣ, ଅଧିକ ବିଗିଡ଼ିବାରେ ଲାଗିଲା, ଶରୀର ଥକିଗଲା ।

ଏମିତି ଅବସ୍ଥାରେ ଭବିଷ୍ୟତ୍ ଚିନ୍ତା ମନକୁ ଆସିବା ସ୍ୱାଭାବିକ କଥା । ଏବେ ଉତ୍ତରାଧିକାରୀକୁ ନେଇ ତାଙ୍କ ମନ ଭୟଭୀତ ହୋଇଗଲା । ଶେଷରେ ପୋଷ୍ୟପୁତ୍ର ଗ୍ରହଣ କରିବାର ନିର୍ଣ୍ଣୟ ଗଙ୍ଗାଧର ରାଓ ନିଜ ଦରବାରୀମାନଙ୍କୁ ବତାଇଲେ । ଯଦି ପୋଷ୍ୟପୁତ୍ର ଗ୍ରହଣ କରିବା କଥା ତେବେ ଉତ୍ତରାଧିକାରୀ ଶିବରାମ ରାଓଙ୍କ ବଂଶର ହେବା କଥା, ଏକଥା ସ୍ଥିର କରାଗଲା । ଶିବରାମ ରାଓଙ୍କ ଭାଇ ରଘୁନାଥ ରାଓଙ୍କ ବଂଶରୁ ବାସୁଦେବ ରାଓ ନେବାଲକରଙ୍କ ପାଞ୍ଚବର୍ଷୀୟ ପୁତ୍ର ଆନନ୍ଦକୁ ପୋଷ୍ୟ ସନ୍ତାନରୂପେ ଗ୍ରହଣ କରାଯିବ ବୋଲି ନିଶ୍ଚିତ କରାଗଲା । ଗଙ୍ଗାଧର ରାଓଙ୍କର ସେ ଦାଦାପୁଅର ନାତି ଥିଲା । ତୁରନ୍ତ ପୋଷ୍ୟପୁତ୍ର ଗ୍ରହଣର ସମସ୍ତ ପ୍ରସ୍ତୁତି ଆରମ୍ଭ ହୋଇଗଲା । ପୁରୋହିତମାନଙ୍କୁ ଡକାଗଲା । ଝାନ୍‌ସୀ ସହର ଅନେକ ପ୍ରମୁଖ ମହତ୍ତ୍ୱପୂର୍ଣ୍ଣ ପ୍ରତିଷ୍ଠିତ ଲୋକଙ୍କୁ ଆମନ୍ତ୍ରିତ କରାଗଲା । ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କଥା ଥିଲା ଏମାନଙ୍କୁ ଡକାଯିବା ସହ ଝାନ୍‌ସୀର ରାଜନୀତିକ ଅଭିକର୍ତ୍ତା (ପଲିଟିକାଲ ଏଜେଣ୍ଟ) ସେନା ଭାଗର ଅଧିକାରୀ ଏଲିସ୍ ଓ ଝାନ୍‌ସୀର ଅଧିକାରୀ କ୍ୟାପଟେନ୍ ମାର୍ଟିନ୍‌ଙ୍କୁ ବି ଏହି ଅବସର ଉପଲକ୍ଷେ ବିଶେଷରୂପେ

ନିମନ୍ତ୍ରଣ ଦିଆଗଲା । ତାଙ୍କ ଆଗରେ ପୋଷ୍ୟ ଗ୍ରହଣ ସଂସ୍କାର କଲାବେଳେ ଯଦି କେତେବେଳେ କୌଣସି ବିବାଦ ବା ଝଗଡ଼ା ହେବ ତେଣୁ କଂପାନୀ ସରକାରଙ୍କ ଅଧିକାରୀମାନଙ୍କ ଆଖି ସାମ୍ନାରେ ହିଁ ପୋଷ୍ୟପୁତ୍ର ଗ୍ରହଣ ବିଧି କରାଯାଇଛି, ଏହା ପ୍ରମାଣିତ କରାଯାଇପାରିବ । ଏହି ଭାବନା ହିଁ ମହତ୍ତ୍ୱପୂର୍ଣ୍ଣ ଥିଲା । କାରଣ ସାଧାରଣ ଜନତା ପାଇଁ ପୋଷ୍ୟପୁତ୍ର ଗ୍ରହଣ କରିବା ବ୍ୟକ୍ତିଗତ ବା ସାଧାରଣ କଥା ହୋଇଥାଇପାରେ, କିନ୍ତୁ ରାଜପରିବାର ପାଇଁ ଏହା ବ୍ୟକ୍ତିଗତ ବ୍ୟାପାର ନ ଥିଲା । ଏହାର ରାଜନୀତିକ ମହତ୍ତ୍ୱ ଥିଲା । ଏକଥା ଗଙ୍ଗାଧର ରାଓ ଜାଣିଥିଲେ । କାରଣ ଦତ୍ତକ ସଂସ୍କାରର ବାହାନା କରି କଂପାନୀ ସରକାର ରାଜ୍ୟଗୁଡ଼ିକୁ ହଡ଼ପ କରୁଥିଲେ । ଏକଥା ମଧ୍ୟ ଗଙ୍ଗାଧର ରାଓ ଜାଣିଥିଲେ । ସେଥିପାଇଁ ସେ ଚିନ୍ତିତ ମଧ୍ୟ ଥିଲେ ।

ସବୁ ନିମନ୍ତ୍ରିତ ଅତିଥିଗଣଙ୍କ ସମ୍ମୁଖରେ ଶିଶୁ ଆନନ୍ଦକୁ ଗଙ୍ଗାଧର ରାଓ ଓ ଲକ୍ଷ୍ମୀବାଈ ପୋଷ୍ୟ ସନ୍ତାନ ଭାବେ ଗ୍ରହଣ କଲେ । ହୋମ ପୂଜା କରି ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ପୋଷ୍ୟ ସନ୍ତାନ ଗ୍ରହଣ କରିବାର ସବୁ ଧାର୍ମିକ ବିଧିବିଧାନ ପୂର୍ଣ୍ଣ କରାଗଲା । ଆନନ୍ଦ ଏବେ ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ଗଙ୍ଗାଧର ରାଓ ଓ ଲକ୍ଷ୍ମୀବାଈଙ୍କର ଆଇନତଃ ପୁତ୍ର ହେଲେ ଓ ଝାନ୍ସୀ ରାଜ୍ୟର ଉତ୍ତରାଧିକାରୀ ଘୋଷିତ ହେଲେ । ପିଲାର ନାମ ଦାମୋଦର ରାଓ ରଖାଗଲା । ପରମ୍ପରା ଅନୁସାରେ ଉପହାର ଆଦାନପ୍ରଦାନ କରାଗଲା । ଖାଇବା-ପିଇବାର ବ୍ୟବସ୍ଥା ମଧ୍ୟ କରାଗଲା । ଅତରଗୋଲାପ ଦେଇ ପୋଷ୍ୟଗ୍ରହଣ ବିଧି ସଂପୂର୍ଣ୍ଣ ହେଲା ବୋଲି ଝାନ୍ସୀ ପ୍ରଜାଙ୍କ ପାଇଁ ଘୋଷଣା କରାଗଲା ।

ସମାରୋହ ସରିଗଲା ପରେ ସବୁ ଅତିଥିମାନେ ଗଲା ପରେ, ଗଙ୍ଗାଧର ରାଓ ଝାନ୍ସୀର ଦିୱାନ ନରସିଂହ ରାଓ, ଲକ୍ଷ୍ମୀବାଈଙ୍କ ପିତା ମୋରୋପନ୍ତ ଓ ତାଙ୍କ ସହ ମେଜର ଏଲିସ୍ ଓ ମାର୍ଟିନ୍‌ଙ୍କୁ କିଛି ସମୟ ରହିବାକୁ କହିଲେ । ଏଲିସ୍ ଓ ମାର୍ଟିନ୍‌ଙ୍କ ଆଗରେ ଗଙ୍ଗାଧର ରାଓ ଏକ ପତ୍ର, ଗଭର୍ଣ୍ଣର ଜେନେରାଲଙ୍କର ନାମରେ ନିଜେ ଆବେଦନକାରୀ ଭାବରେ ନିଜ ମୁନ୍‌ସୀ ଦ୍ୱାରା ଲେଖାଇଲେ । ସେହି ପତ୍ରର ଆଉ ପ୍ରତିଲିପି, ଗ୍ୱାଲିୟରରେ ଥିବା ବୁନ୍ଦେଲଖଣ୍ଡର ରାଜନୀତିକ ଏଜେଣ୍ଟ ମେଜର ମାଲ୍‌କମ୍‌ଙ୍କ ନାମରେ ବି ଲେଖାଇନେଲେ । ଏହି ପତ୍ରରେ ଗଙ୍ଗାଧର ରାଓ ଲେଖିଥିଲେ-

"ମୁଁ ଆଜିକାଲି ଭୀଷଣ ରୋଗଗ୍ରସ୍ତ ହୋଇପଡ଼ିଛି । ମୋର ସଚ୍ଚୋଟପଣିଆ ଆଉ ଏତେ ଶକ୍ତିଶାଳୀ ସରକାର ମୋ ଉପରେ ସନ୍ତୁଷ୍ଟ ଥିବା ସତ୍ତ୍ୱେ ମୋର ମୃତ୍ୟୁ ପରେ ମୋ ପିତାଙ୍କ ନାମ ଜୀବିତ ରହିବ ନାହିଁ । ଏହାହିଁ ମୋର ସବୁଠାରୁ ବଡ଼ ଦୁଃଖ । ସେଥିପାଇଁ ବ୍ରିଟିଶ୍ ସରକାର ସହ କରାଯାଇଥିବା ଚୁକ୍ତିପତ୍ରରେ ଅନୁଚ୍ଛେଦ-୧୧ ଅନୁସାରେ ମୋ ଜେଜେବାପାଙ୍କ ବଂଶର ରକ୍ତ ସମ୍ପର୍କର ମୋର ନାତି, ଆନନ୍ଦ ନାମକ ପାଞ୍ଚବର୍ଷର ପୁଅକୁ ମୁଁ ପୋଷ୍ୟ ସନ୍ତାନରୂପେ ଗ୍ରହଣ କରିଛି । ଏବେ ଏହାର ନାମ ଦାମୋଦର ରାଓ ରଖାଗଲା ।"

ଅନୁଚ୍ଛେଦ-୧୧ରେ ଏମିତି ଲେଖା ହୋଇଛି "ଝାନ୍ସୀ ସରକାରର ସ୍ୱାମୀଭକ୍ତି ଓ ସ୍ନେହର ସମ୍ମାନର ଦୃଷ୍ଟିରୁ ବ୍ରିଟିଶ ସରକାର ଏହି ଅନୁଚ୍ଛେଦ ଅନୁସାରେ, ବୁନ୍ଦେଲଖଣ୍ଡରେ ବ୍ରିଟିଶ୍ ସରକାରର ଶାସନ ସ୍ଥାପିତ କରାଯାଇଥିଲା । ସେତେବେଳେ ସ୍ୱର୍ଗୀୟ ଶିବରାମ ରାଓଙ୍କ ଅଧୀନରେ ଯେତିକି ଇଲାକା ଥିଲା, ସେ ସମସ୍ତ ଇଲାକା ଓ ସେହି ସମୟରେ ଝାନ୍ସୀ ସରକାର ଅଧୀନରେ ଥିବା ସମସ୍ତ ଅଞ୍ଚଳ ଉପରେ ରାମଚନ୍ଦ୍ର ରାଓ ଓ ତାଙ୍କର ବଂଶଜ ତଥା ଉତ୍ତରାଧିକାରୀମାନଙ୍କୁ ସମସ୍ତ ଅଧିକାର ଦିଆଗଲା । ଏହିଭଳି ସନ୍ଧି କରାଯାଇଥିଲା ।

ମୋ ଇଚ୍ଛାକୁ ସମ୍ମାନ ଦେଇ ମେଜର ଏଲିସ୍ ଓ ମେଜର ମାର୍ଟିନ୍ ମୋ ପାଖରେ ଉପସ୍ଥିତ ଅଛନ୍ତି । ମୁଁ ସେମାନଙ୍କୁ ଏହି ପତ୍ରରେ ଲେଖାଯାଇଥିବା ବିଷୟକୁ ବୁଝାଇ ଦେଇଛି ଓ ଏହି ପତ୍ରରେ ଲେଖାଯାଇଥିବା ଅନୁସାରେ ମୁଁ ମୋ ନାତିକୁ, ମୋର ମୃତ୍ୟୁ ପରେ ମୋର ଉତ୍ତରାଧିକାରୀ ଭାବେ ଘୋଷଣା କରୁଛି । ଏ ଦୁହେଁ ମୋର ଏହି ପତ୍ରକୁ ଆପଣଙ୍କ ପାଖକୁ ପଠାଇବେ, ଏହା ମୋର ଦୃଢ଼ ବିଶ୍ୱାସ । ମୁଁ ଆଶା କରୁଛି ଈଶ୍ୱରଙ୍କ କୃପାରୁ ଓ ଆପଣଙ୍କ ସରକାରଙ୍କ କୃପାରୁ ମୋ ସ୍ୱାସ୍ଥ୍ୟ ଅବସ୍ଥାର ଉନ୍ନତି ହେବ । ଏମିତି ବି ମୋର ବୟସ ଅଧିକ ନ ହେଇଥିବାରୁ, ମୋର ସନ୍ତାନ ବି ହୋଇପାରେ ଏମିତି ସମ୍ଭାବନା ବି ଅଛି । ଯଦି ଏମିତି କିଛି ଘଟିଲା ତ ସେଇ ଅନୁସାରେ ଆବଶ୍ୟକତା ପଡ଼ିଲା ମୁଁ ନୂଆ କିଛି ଘୋଷଣା କରିପାରେ । କିନ୍ତୁ ଯଦି ମୋର ମୃତ୍ୟୁ ହୋଇଗଲା ତ ସରକାର ମୋ ନିଷ୍ଠାକୁ ଧ୍ୟାନ ରଖି ତା ବଦଳରେ ମୋର ଏହି ପୋଷ୍ୟସନ୍ତାନ ପ୍ରତି ଦୟାଳୁତା ବ୍ୟବହାର କରିବେ ବୋଲି ମୋର ଆଶା ଓ ବିଶ୍ୱାସ । ମୋ ପରେ ମୋର ବିଧବା ପତ୍ନୀ ଏହି ପୋଷ୍ୟପୁତ୍ରର ମା'କୁ ଝାନ୍ସୀ ସରକାରର ମହାରାଣୀ ରୂପେ ମାନ୍ୟତା ଦିଆଯିବ । ତା' ଉପରେ କୌଣସି ପ୍ରକାରର ଅନ୍ୟାୟ କରାଯିବ ନାହିଁ ବୋଲି ମୋର ଦୃଢ଼ ବିଶ୍ୱାସ ଅଛି । (ରାଣୀ ଲକ୍ଷ୍ମୀବାଈ ଅଫ୍ ଝାନ୍ସୀ, ଏ.ଏବ୍ ସିହ୍ନା, ୧୯୮୦, ପୃଷ୍ଠା ୧୧୧) ।

ଏହି ପତ୍ର ଗଙ୍ଗାଧର ରାଓ ମେଜର ଏଲିସ୍‌ଙ୍କ ହାତରେ ଦେଲେ ଓ ଏହି ପତ୍ରରେ ଲେଖା ଯାଇଥିବା ଅନୁସାରେ ମୋର ଇଚ୍ଛା ପୂରଣ କରାଯାଉ ଏହିଭଳି ଅନୁରୋଧ ବି କରିଥିଲେ ।

ମେଜର ଏଲିସ୍ ଜଣେ ଅନୁଭବୀ ରାଜନୀତିଜ୍ଞ ଥିଲେ । ସେ ଜବାବ୍ ଦେଲେ ଆପଣଙ୍କର ଏହି ପତ୍ର ମୁଁ ସରକାରଙ୍କୁ ପଠାଇଦେବି ଓ ମୋ ଦ୍ୱାରା ଯେତିକି ହେଇପାରିବ ମୁଁ ଚେଷ୍ଟା କରିବି । ସେ ନିଜ କଥା ରକ୍ଷା କରିଥିଲେ । ଝାନ୍ସୀର କମ୍ପାନୀ ସରକାରଦ୍ୱାରା ନିଯୁକ୍ତ ରାଜନୀତିକ ଏଜେଣ୍ଟ ଭାବରେ ସେ 'ଝାନ୍ସୀ ରାଜ୍ୟର ପୋଷ୍ୟପୁତ୍ରକୁ ମାନ୍ୟତା ଦେବାପାଇଁ କଂପାନୀ ସରକାରକୁ ସୁପାରିସ କରିଥିଲେ ।'

ପୋଷ୍ୟପୁତ୍ର ଗ୍ରହଣ ସଂସ୍କାରର ଦ୍ୱିତୀୟ ଦିନ ଅର୍ଥାତ୍ ୨୧ ନଭେମ୍ବର ୧୮୫୩ ଦିନ ଗଙ୍ଗାଧର ରାଓଙ୍କର ସ୍ୱର୍ଗବାସ ହୋଇଗଲା । ତାଙ୍କୁ ନିଜ ମୃତ୍ୟୁର ଆଭାସ ମିଳିଯାଇଥିଲା

କି ନାହିଁ ଜଣା ନାହିଁ କିନ୍ତୁ ମୃତ୍ୟୁ ହୋଇଯିବା ପରେ ରାଜ୍ୟର ଭବିଷ୍ୟତ୍‌ର ଚିତ୍ର ତା' ଆଖି ସାମ୍ନାରେ ନିଶ୍ଚିତରୂପେ ଉପସ୍ଥିତ ହୋଇ ଯାଇଥିଲା । କାରଣ ପୂର୍ବରୁ ସତାରା, ତଞ୍ଜାବର ଓ ନାଗପୁରର ମରାଠୀ ରାଜ୍ୟଗୁଡ଼ିକୁ କଂପାନୀ ସରକାର ଗୋଟିଏ ପରେ ଗୋଟିଏ ଜିତି ନିଜ ଅଧୀନ କରି ନେଇଥିଲେ । ଏହି ଭୟ ସବୁ ଛୋଟ ରାଜ୍ୟର ରାଜାମାନଙ୍କ ମନରେ ଦେଖା ଦେଇଥିଲା ।

ଗଙ୍ଗାଧର ରାଓଙ୍କ ମୃତ୍ୟୁ ପୂର୍ବରୁ ନାଗପୁର ରାଜ୍ୟକୁ ଅଧିକାର କରି ନିଆଯାଇଥିଲା । ନାଗପୁର ରାଜା 'ଅପାଳକ ରାଜାକୁ ପାଳବିଣ୍ଡା ମନ୍ତ୍ରୀ' ହିସାବରେ ନିଜ ରାଜ୍ୟର ଶାସନ ୨୦ ବର୍ଷ କାଳ ଚଳାଇଥିଲେ । ଏହି କାରଣରୁ ରାଜାଙ୍କ ଦ୍ୱାରା ପୋଷ୍ୟପୁତ୍ର ଗ୍ରହଣ ଅଧିକାରକୁ ନାମଞ୍ଜୁର କରି ନାଗପୁରକୁ ଇଂରେଜମାନେ ଅଧିକାର କରି ନେଇଥିଲେ । ରାଜାଙ୍କ ଭଣ୍ଡାର ବି ଦଖଲ କରି ନେଇଥିଲେ । ସତୁରୀ ବର୍ଷର ମହାରାଣୀ ବାଙ୍କାବାଈଙ୍କ ଉପରେ ଯେମିତି ଆକାଶ ଛିଡ଼ିପଡ଼ିଲା । ତାଙ୍କୁ ସବୁଠାରୁ ବେଶି ଦୁଃଖ ହୋଇଥିଲା । ନିଜର କ୍ରୋଧ ଓ ବିରକ୍ତି ପ୍ରକାଶ ସେ କଲେ । ଅନ୍ୟ ପକ୍ଷରେ ସେ କଂପାନୀ ସରକାର ସହ ସନ୍ଧି କରିବାପାଇଁ ମଧ୍ୟ କଥାବାର୍ତ୍ତା ଆରମ୍ଭ କଲେ । କିନ୍ତୁ ବୁଝାମଣା ପ୍ରସ୍ତାବର କୌଣସି ଲାଭ ହେଲା ନାହିଁ । କଂପାନୀ ସରକାର ନାଗପୁର ରାଜାଙ୍କର କାହିଁ କେତେ ପିଢ଼ିରୁ ଜମା କରାଯାଇଥିବା, ସୁନା-ରୁପା, ହୀରା-ମୋତି, ଧନ-ସମ୍ପତ୍ତିର ଏକ ତାଲିକା ପ୍ରସ୍ତୁତ କଲେ । ତାକୁ ସବୁ ନିଜ କବ୍‌ଜାକୁ ନେଇଗଲେ ଓ ନାଗପୁର ଓ କଲିକତାରେ ତାକୁ ନିଲାମ କରିଦେଲେ । କଲିକତାର 'ମର୍ନିଙ୍ଗ କ୍ରାନିକଲ' ଓ ଅନ୍ୟ ଅନେକ ସମାଚାର ପତ୍ରରେ ରାଜପରିବାର ଲୋକଙ୍କ ଅଳଙ୍କାର, ମୂଲ୍ୟବାନ୍ ପଥର, ରାଜପ୍ରାସାଦର ସୁନାରୁପା ବାସନ, ଅନ୍ୟ ମୂଲ୍ୟବାନ୍ ବସ୍ତୁ ବିଷୟରେ ବିଜ୍ଞାପନ ଦେଇଥିଲେ । ଏହି ନିଲାମିରେ ଇଂରେଜମାନେ, ହିନ୍ଦୁସ୍ଥାନର ରାଜା ମହାରାଜାମାନେ, ସୁବେଦାରମାନେ ଓ ଧନୀ ବେପାରୀମାନେ ଏହିସବୁ ଜିନିଷକୁ ଅତି ଶସ୍ତାରେ କିଣିନେଲେ । ଏହି ଘଟଣା ସାଧାରଣ ଜନତାଙ୍କ ପାଇଁ ଦୁଃଖଦ, ଅପମାନଜନକ ଓ ରାଗିଲାଭଳି ଥିଲା । ଇଂଲଣ୍ଡ ସଂସଦର ସଦସ୍ୟ W.M. Torrens ନିଜ ପୁସ୍ତକ 'Empire in Asia, How we came by it, Book of Confessions' ନାମକ ପୁସ୍ତକରେ ନାଗପୁର ସମ୍ପର୍କରେ ଲେଖିଛନ୍ତି, 'ନେପୋଲିୟନ ୟୁରୋପର ସମ୍ରାଟ୍‌ମାନଙ୍କୁ ପରାସ୍ତ କଲେ ମାତ୍ର ସେ ରାଣୀମାନଙ୍କର ମୁଦି ଓ ତାଙ୍କ ଗଳାର ହାର କାଢ଼ି ନିଲାମ କରି ନ ଥିଲେ । ଯେତେବେଳେ ଫରେନ ସେକ୍ରେଟାରୀ ପୀଟସ୍‌ବର୍ଗ ଦରବାରରେ ଠିଆ ହୋଇ, ସେଠାକାର ପୁଲିସ ଅଧିକାରୀ ଓ ସରଦାରମାନଙ୍କ ଆଚରଣ ବିଷୟରେ ସନ୍ଦେହ ପ୍ରକଟ କରୁଥିଲେ, ସେତେବେଳେ ମହାରାଣୀଙ୍କ ଅଧିକାରୀ ଏସିଆରେ ଲୁଟପାଟ କରୁଥିଲେ । ସେଠାକାର ରାଜମହଲର ସମ୍ପତ୍ତି ବେ-ଆଇନ୍ ଭାବରେ ଅଧିକାର କରି ନିଲାମ କରିବାରେ ବ୍ୟସ୍ତ ଥିଲେ । ନାଗପୁର ଉଦାହରଣ ଆଖି ଆଗରେ ଥିବାରୁ ଗଙ୍ଗାଧର ରାଓଙ୍କୁ ନିଜ ମୃତ୍ୟୁ ପରେ ଝାନ୍‌ସୀର ଭବିଷ୍ୟତ୍ ବିଷୟରେ ପ୍ରାଣଘାତକ

ଚିନ୍ତା ହୋଇଥିବ, ଡର ବି ଲାଗିଥିବ, ଏହା କଳ୍ପନା କରାଯାଇପାରେ । ତାଙ୍କ ମନରେ ଦେଖା ଦେଇଥିବା ଚିନ୍ତା ବା ଭୟ ନିରର୍ଥକ ନ ଥିଲା । କାରଣ ଗଙ୍ଗାଧର ରାଓଙ୍କ ବେମାରି କାରଣରୁ କଂପାନୀ ସରକାରଙ୍କ ଛାଉଣୀରେ ଯଦି ଗଙ୍ଗାଧର ରାଓଙ୍କ ମୃତ୍ୟୁ ହୋଇଯାଏ ତା' ହେଲେ ଝାନ୍ସୀ ଅଧିକାର କରି ନିଆଯିବ ବୋଲି କଥା ଉଠିବା ଆରମ୍ଭ ହୋଇ ଯାଇଥିଲା ।

ଗ୍ୱାଲିୟରରେ ଥିବା ବୁନ୍ଦେଲଖଣ୍ଡର ରାଜନୀତିକ ପ୍ରତିନିଧି ମେଜର ମାଲ୍‌କମ୍ ୨୯ ଅକ୍ଟୋବର ୧୮୫୩ ଦିନ ଅର୍ଥାତ୍ ଗଙ୍ଗାଧର ରାଓଙ୍କ ମୃତ୍ୟୁର ଠିକ୍ ତିନି ସପ୍ତାହ ପୂର୍ବରୁ ଝାନ୍ସୀର ରାଜନୀତିକ ପ୍ରତିନିଧି ମେଜର ଏଲିସ୍‌ଙ୍କୁ ଏକ ପତ୍ର ଲେଖିଥିଲେ । ସେହି ପତ୍ରରେ ମାଲ୍‌କମ୍ ଝାନ୍ସୀ ରାଜାଙ୍କ ସମ୍ଭାବିତ ମୃତ୍ୟୁ ପରେ କ'ଣ କାର୍ଯ୍ୟପନ୍ଥା ଗ୍ରହଣ କରାଯିବ ସେହି ସମ୍ବନ୍ଧରେ ନିଜର ମତାମତ ଲେଖି ପଠାଇଥିଲେ । ସେ ପତ୍ରରେ ଲେଖିଥିଲେ ରାଜାଙ୍କ ସ୍ୱାସ୍ଥ୍ୟ ଅବସ୍ଥା ଯେପରି, ଆଜି ନୁହେଁ ତ କାଲି ତାଙ୍କର ମୃତ୍ୟୁ ନିଶ୍ଚୟ ହେବ । ଏହା ପୂର୍ବରୁ ନିଜ ଉତ୍ତରାଧିକାରୀ ରୂପେ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ରାଜା ଇଚ୍ଛା ପ୍ରକଟ କରିପାରନ୍ତି ବା ଏବେପର୍ଯ୍ୟନ୍ତ ସେ ଉତ୍ତରାଧିକାରୀ ରୂପେ ପୋଷ୍ୟପୁତ୍ର ଗ୍ରହଣ କରିସାରିଥିବେ । କିନ୍ତୁ ହିନ୍ଦୁସ୍ଥାନ ସରକାରଦ୍ୱାରା ବିଶେଷ ଅଧିକାର ଏଥିପାଇଁ ନ ଦିଆ ହୋଇଥିଲେ ଆମେ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ଅନୁମତି ଦେବା ଠିକ୍ ହେବ ନାହିଁ । ଏଥି ସଂବଧିତ ମୋ ରିପୋର୍ଟ ମୁଁ ସରକାରଙ୍କ ନିକଟକୁ ପଠାଇଦେବି । କିନ୍ତୁ ଏଭଳି ସ୍ଥିତି ଉପୁନ ହେଲେ ଯେତେବେଳଯାଏ ବରିଷ୍ଠ ଅଧିକାରୀମାନଙ୍କଠାରୁ କୌଣସି ଆଦେଶ ନ ମିଳିଛି ସେପର୍ଯ୍ୟନ୍ତ ରାଜ୍ୟର ଶାସନଭାର ନିଜ ହାତକୁ ନେବା ଆପଣଙ୍କ କର୍ତ୍ତବ୍ୟ । ଆଜିର ପରିସ୍ଥିତିକୁ ଆଖିରେ ରଖି ସବୁ ନିଷ୍ପତ୍ତି ନେବା ଉଚିତ । ଝାନ୍ସୀରେ ଶାନ୍ତି ରକ୍ଷା କରି ଝାନ୍ସୀ ରାଜ୍ୟ, ସମ୍ପତ୍ତି ସବୁ କିଛି ଆପଣ ଅଧିକାର କରିନେବା ଉଚିତ । ପରିଣାମସ୍ୱରୂପ ଝାନ୍ସୀକୁ ଅଧିକାର କରିନେଲେ ସେଠି କୌଣସି ଗଣ୍ଡଗୋଳ ସୃଷ୍ଟି ହେବ, ସେମିତି ମୋର ମନେ ହେଉ ନାହିଁ ।

ଯଦି ରାଜାଙ୍କ ମୃତ୍ୟୁ ହୋଇଗଲା ତା'ହେଲେ ଧର୍ମଶାସ୍ତ୍ରର ପଣ୍ଡିତ ଓ ଅନ୍ୟ ଲୋକମାନେ ରାଜାଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ଉତ୍ତେଜିତ କରିବେ, ସେମିତି କରିବା ସ୍ୱାଭାବିକ ମଧ୍ୟ । କିନ୍ତୁ ଆମେ ତାଙ୍କୁ ଅନୁମତି ଦେବା ନାହିଁ, ଏହି କଥାରେ ଦୃଢ଼ ରହିବା ଉଚିତ । ସେହି ପରିବାରର ନିଜ ଧନସଂପତ୍ତି ଉପରେ କେବଳ ଅଧିକାର ରହିବ । ରାଣୀଙ୍କ ବ୍ୟକ୍ତିଗତ ଖର୍ଚ୍ଚ ପାଇଁ କେତେ ଟଙ୍କା ଦରମା ଭାବେ ଦିଆହେବ, ସେ ସଂପର୍କ ପରେ ବିଚାର ଆଲୋଚନା କରି ସ୍ଥିର କରାଯିବ । ଏ ସଂପର୍କରେ ମୁଁ ଆପଣଙ୍କ ମତାମତ ଜାଣିବାକୁ ଚାହେଁ, କାରଣ ବୁନ୍ଦେଲଖଣ୍ଡର ପରିସ୍ଥିତି, ସେଠାର ପରମ୍ପରା, ରୀତିନୀତି ବିଷୟରେ ଆପଣ ଭଲରୂପେ ଜାଣନ୍ତି (ଝାନ୍ସୀ କି ରାନୀ : ସୁମନ ତାମ୍ବେ ୧୯୫୭, ପୃଷ୍ଠା ୬୭)

ଏହାର ଉଦ୍ଦେଶ୍ୟ ସଫା ଜଣାପଡୁଛି ଯେ ଗଙ୍ଗାଧର ରାଓଙ୍କ ମୃତ୍ୟୁ ଓ ପୋଷ୍ୟପୁତ୍ର ଗ୍ରହଣ ସଂସ୍କାର ହେବା ପୂର୍ବରୁ ହିଁ କମ୍ପାନୀ ସରକାର ମାନସିକ ପ୍ରସ୍ତୁତି କରିସାରିଥିଲା ଯେ ପୋଷ୍ୟପୁତ୍ର ଗ୍ରହଣ ହେଉ ବା ନ ହେଉ, ରାଜାଙ୍କ ମୃତ୍ୟୁ ପରେ ଝାନ୍ସୀ ଅଧିକାର ହିଁ କରିବାର ଅଛି । ଆଉ କିଛି ଦରମା ଦେଇ ରାଣୀଙ୍କୁ ଚୁପ୍ କରାଇ ଦେବାର ଅଛି । ତତ୍କାଳୀନ ଗଭର୍ଣ୍ଣର ଜେନେରାଲ ଲର୍ଡ୍ ଡେଲହାଉସୀଙ୍କ ନୀତି ଅନୁସାରେ ଏମିତି ନିର୍ଣ୍ଣୟ ନିଆଯିବାର ଥିଲା । ଏହି ସମ୍ଭାବିତ ନିର୍ଣ୍ଣୟ ମାଲକମ୍‌ର ପତ୍ର କାରଣରୁ ଏଲିସ୍‌ଙ୍କୁ ଜଣା ପଡ଼ି ଯାଇଥିଲା । ମୃତ୍ୟୁଶଯ୍ୟାରେ ଥାଇ ଗଙ୍ଗାଧର ରାଓ ପୋଷ୍ୟପୁତ୍ରକୁ ଆଇନତଃ ଉତ୍ତରାଧିକାରୀ ସ୍ୱୀକାର କରି କମ୍ପାନୀ ସରକାର ମାନ୍ୟତା ପ୍ରଦାନ କରୁ, ଏମିତି ଏକ ପତ୍ର ଗଭର୍ଣ୍ଣର ଜେନେରାଲଙ୍କୁ ଏଲିସ୍ ମାର୍ଫତରେ ପଠାଇ ଦେଇଥିଲେ । ସ୍ୱୀକୃତି ପାଇବା ପାଇଁ ଟିକିଏ ଚେଷ୍ଟା କରିବାକୁ ଏଲିସ୍‌ଙ୍କୁ ଅନୁରୋଧ ମଧ୍ୟ କରିଥିଲେ । ମାଲ୍‌କମ୍‌ଙ୍କଠାରୁ ଆସିଥିବା ପତ୍ର ଓ ଗଙ୍ଗାଧର ରାଓଙ୍କ ଦ୍ୱାରା କରାଯାଇଥିବା ବିଶ୍ୱାସପୂର୍ଣ୍ଣ ଅନୁରୋଧ ଏବେ ସୁଅ ମଝିରେ ହିଁ ଫସି ଯାଇଥିଲା ।

## ଖାଲସା ପତ୍ରର ଆଦାନପ୍ରଦାନ

ଗଙ୍ଗାଧର ରାଓଙ୍କ ମୃତ୍ୟୁରେ ରାଣୀ ଲକ୍ଷ୍ମୀବାଈ ଓ ଝାନ୍ସୀର ସମସ୍ତ ପ୍ରଜା ଶୋକସାଗରରେ ବୁଡ଼ି ଯାଇଥିଲେ । ଚାରିଆଡ଼େ ଶୋକର ବାତାବରଣ ଥିଲା । ମେଜର ଏଲିସ୍ ଓ କ୍ୟାପ୍ଟେନ ମାର୍ଟିନ୍ ପରମ୍ପରା ଅନୁସାରେ ସେଠାରେ ପହଞ୍ଚି ରାଣୀ ଲକ୍ଷ୍ମୀବାଈଙ୍କୁ ସାନ୍ତ୍ୱନା ଦେଇଥିଲେ, ତାଙ୍କୁ ଧୈର୍ଯ୍ୟ ଧରିବାକୁ କହିଥିଲେ । ରାଣୀସାହେବାଙ୍କ ମନର ଭାବନାକୁ ସମ୍ମାନ ଦିଆଯିବ ଏଭଳି ଆଶ୍ୱାସନା ମଧ୍ୟ ସେ ସମୟରେ ଦେଇଥିଲେ । ରାଣୀଙ୍କ ସହ ଦେଖା କରିସାରିବା ପରେ ଦୁହେଁ ପ୍ରଥମେ ଦୁର୍ଗରେ ପହଞ୍ଚିଲେ ଆଉ ସେଠି ଯାହା ଧନରତ୍ନ ଥିଲା, ତାକୁ କଂପାନୀ ସରକାରର ମୋହର ଲଗାଇ ସିଲ୍ କରିଦେଲେ ଓ କିଲ୍ଲାର ସୁରକ୍ଷା ପାଇଁ ଗୋରା ସୈନିକ ଜଗାଇଦେଲେ । ରାଜାଙ୍କ ମୃତ୍ୟୁ ପରେ ଆଖପାଖର ଠାକୁର, ଡାକୁ, ଲୁଟେରା ବା ଅନ୍ୟ କେହି ଝାନ୍ସୀ ଉପରେ ଆକ୍ରମଣ କରିଦେବାର ଭୟ ମଧ୍ୟ ଥିଲା । କୌଣସି ପ୍ରକାର ଗଣ୍ଡଗୋଳ ନ ହେଉ ସେଥିପାଇଁ ସେତିକି ବ୍ୟବସ୍ଥା କରାଗଲା । ସେହି ସମୟରେ ଗଙ୍ଗାଧର ରାଓ ଲେଖିଥିବା ପତ୍ରକୁ ମେଜର ମାଲ୍‌କମ୍‌ଙ୍କ ପାଖକୁ ଗ୍ୱାଲିୟର ପହଁଚାଇ ଦିଆଗଲା । ମାଲ୍‌କମ୍ ତୁରନ୍ତ ୫ ନଭେମ୍ବର ୧୮୫୩ରେ ସେ ଚିଠିକୁ ଗଭର୍ଣ୍ଣର ଜେନେରାଲଙ୍କୁ ପଠାଇଦେଲେ । ଚିଠି ସହ ସେ ସାରା ବୃତ୍ତାନ୍ତ ମଧ୍ୟ ଲେଖିକରି ପଠାଇଲେ ତା' ସହ ନିଜର ରାୟ ମଧ୍ୟ ଲେଖି ଜଣାଇଲେ ।

ରାଜାଙ୍କ ପ୍ରତିଷ୍ଠା ଅନୁସାରେ ତାଙ୍କର ଅନ୍ତିମ ସଂସ୍କାର କରାଗଲା । ଝାନ୍ସୀ ସହର ବାହାରେ ଲକ୍ଷ୍ମୀପୋଖରୀ ପାଖରେ ମହାଲକ୍ଷ୍ମୀ ମନ୍ଦିରର ଖୋଲା ପଡ଼ିଆରେ ଗଙ୍ଗାଧର ରାଓଙ୍କ ଅନ୍ତ୍ୟେଷ୍ଟି ସଂପନ୍ନ ହେଲା । ସେହି ସ୍ଥାନରେ ଏକ ଛୋଟ ସୁନ୍ଦର ସମାଧି ମଧ୍ୟ ତିଆରି କରାଗଲା ।

ମାଲ୍‌କମ୍ ଗଭର୍ଣ୍ଣର ଜେନେରାଲଙ୍କୁ ଏକ ପତ୍ର ଲେଖିଲେ । ପତ୍ରରେ ରାଜାଙ୍କ ମୃତ୍ୟୁ ଓ ତା'ର ଗୋଟିଏ ଦିନ ପୂର୍ବରୁ ଏକ ପୋଷ୍ୟସନ୍ତାନ ଗ୍ରହଣ କରିଥିବା କଥା ବି ଜଣାଇଦେଲେ । ସେ ଏହା ମଧ୍ୟ ଲେଖିଲେ ପୋଷ୍ୟପୁତ୍ର ଗ୍ରହଣ କରିବା ନିଷ୍ପତ୍ତି ଅଚାନକ ନିଆ ଯାଇଥିଲା । ଏହି ନିଷ୍ପତ୍ତିରେ ଦରବାରର ଲୋକମାନେ ମଧ୍ୟ ଆଶ୍ଚର୍ଯ୍ୟ ଚକିତ ହୋଇଗଲେ ।

ପୁଣି ଅଧିକ ବିସ୍ତୃତ ଭାବରେ ପୋଷ୍ୟ ଗ୍ରହଣ ପ୍ରକ୍ରିୟା ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି ପୋଷ୍ୟସନ୍ତାନଟି ଶିବରାମ ରାଓଙ୍କର ବଂଶର ନ ଥିଲା । ସେ ଗଙ୍ଗାଧର ରାଓଙ୍କ କକାଙ୍କ ପରିବାରର ଥିଲା । ଝାନ୍ସୀ ରାଜ୍ୟ ଓ କଂପାନୀ ସରକାରଙ୍କର ସଂପର୍କ ବିଷୟରେ ସେହି ପତ୍ରରେ ଚର୍ଚ୍ଚା କରାଯାଇଥିଲା । ରାମଚନ୍ଦ୍ର ରାଓଙ୍କର ମୃତ୍ୟୁ ହେଲା ପରେ ତାଙ୍କ ପୋଷ୍ୟପୁତ୍ରକୁ ରାଜ୍ୟ-ଅଧିକାର ନ ଦେଇ ଶିବରାମ ରାଓଙ୍କ ସାନପୁଅ ଗଙ୍ଗାଧର ରାଓଙ୍କୁ ଅର୍ଥାତ୍ ଶିବରାମ ରାଓଙ୍କର ବଂଶର ବ୍ୟକ୍ତିକୁ ରାଜା ଭାବରେ କଂପାନୀ ସରକାର ମାନ୍ୟତା ଦେଇଥିଲା । ଏକଥା ବିସ୍ତୃତ ଭାବରେ ଲେଖିଥିଲେ ଯେ ଏବେ ଗଙ୍ଗାଧର ରାଓଙ୍କ ଔରସରୁ କୌଣସି ପୁତ୍ର ନାହିଁ । ତାଙ୍କ ଅବର୍ତ୍ତମାନରେ ଝାନ୍ସୀରାଜ୍ୟ ପୂର୍ଣ୍ଣରୂପେ ଇଂରେଜ ଶାସନର ଅଧୀନ ହେବା କାରଣରୁ ଗଙ୍ଗାଧର ରାଓ ସରକାରଙ୍କ ବିନା ଅନୁମତି ଝାନ୍ସୀର ଉତ୍ତରାଧିକାରୀ ଭାବରେ ପୋଷ୍ୟ ସନ୍ତାନ ଗ୍ରହଣ କରିପାରିବେ ନାହିଁ । ଏହା ବି ଜଣାଇଦେଲେ । ଗଙ୍ଗାଧର ରାଓଙ୍କ ଇଚ୍ଛା ଥିଲା କି ତାଙ୍କ ପରେ ଯେତେବେଳଯାଏ ତାଙ୍କ ପୁଅ ନାବାଳକ ଅଛି, ସେ ସାବାଳକ ହେବାପର୍ଯ୍ୟନ୍ତ ତାଙ୍କ ବିଧବା ପତ୍ନୀ, ରାଣୀ ଲକ୍ଷ୍ମୀବାଈଙ୍କୁ ରାଜ୍ୟ ଅଧିକାର ଦେବା ଉଚିତ । ଏହି ବିଷୟରେ ସୂଚନା ଦେଇ ମାଲ୍‌କମ୍ ପୁନର୍ବାର ଲେଖିଛନ୍ତି ରାଣୀ ଲକ୍ଷ୍ମୀବାଈ ଅତ୍ୟନ୍ତ ବୁଦ୍ଧିମାନ୍ ଓ ପ୍ରଜାମାନଙ୍କର ଅଧିକ ଲୋକପ୍ରିୟ ହୋଇଥିବା କାରଣରୁ ଏ ରାଜ୍ୟର ସଂଚାଳନ ଉତ୍ତମରୂପେ କରିପାରିବେ, କିନ୍ତୁ କମ୍ପାନୀ ସରକାରର ନୀତି ଅନୁସାରେ ରାଜ୍ୟ ଅଧିକୃତ ହେବା କଥା । ଏସବୁକୁ ଦୃଷ୍ଟି ରଖି ମୃତରାଜାଙ୍କ ବ୍ୟକ୍ତିଗତ ସମ୍ପତ୍ତି ଓ ଝାନ୍ସୀ ସହରର ରାଜମହଲ ଲକ୍ଷ୍ମୀବାଈଙ୍କୁ ଅର୍ପଣ କରାଯାଉ ଯାହା ଫଳରେ ରାଣୀ ନିଜର ପଦ ପ୍ରତିଷ୍ଠା ଅନୁରୂପ ଜୀବନ ବିତାଇ ପାରିବେ । ସେଥିପାଇଁ ଧନ ବ୍ୟବସ୍ଥା କରିବାକୁ ଅନୁମତି ମାଲ୍‌କମ୍ ମାଗିଥିଲେ ଓ ପ୍ରତିମାସ ପାଂଚହଜାର ପାଉଣ୍ଡ ଦେବାକୁ ସୁପାରିସ ବି କରିଥିଲେ ।

ଏହି ପତ୍ର ଦ୍ୱାରା ସ୍ପଷ୍ଟ ହୋଇଗଲା ଯେ ଝାନ୍ସୀ ରାଜ୍ୟ ଇଂରେଜଙ୍କ ଅଧୀନକୁ ଚାଲିଯିବାର ଅଛି । ଏହା ଏକପ୍ରକାର ନିଶ୍ଚିତ ହୋଇଗଲା ।

ରାଣୀ ଲକ୍ଷ୍ମୀବାଈଙ୍କର ଇଚ୍ଛା ଥିଲା କି କଂପାନୀ ସରକାରଙ୍କ ସହ ଝାନ୍ସୀ ପ୍ରଶାସକମାନଙ୍କର ଆଜିପର୍ଯ୍ୟନ୍ତ ଥିବା ବନ୍ଧୁତ୍ୱର ସଂପର୍କ, ବର୍ଷ ବର୍ଷ ଧରି ରାଜାମାନଙ୍କ ଦ୍ୱାରା କଂପାନୀ ସରକାରକୁ ଦିଆଯାଉଥିବା ଆବଶ୍ୟକ ସହାୟତା, ସମୟ-ସମୟରେ ପ୍ରଦର୍ଶିତ ନିଷ୍ଠା, ମୃତ୍ୟୁ ସମୟରେ ଗଙ୍ଗାଧର ରାଓ ସରକାରକୁ ପତ୍ର ଲେଖି ଜଣାଇଥିବା

ନିଜ ଇଚ୍ଛା, ଏ ସବୁକୁ ଦୃଷ୍ଟିରେ ରଖି ତାଙ୍କ ପୋଷ୍ୟପୁତ୍ରର ଅଧିକାରକୁ ସ୍ୱୀକୃତି ଦିଆଯାଉ । ମାଲ୍‌କମ୍‌ଙ୍କର ଏହି ପତ୍ର ଯେତେବେଳେ କଲିକତାରେ ପହଞ୍ଚିଲା ସେତେବେଳେ ଗଭର୍ଣ୍ଣର ଜେନେରାଲ ଡେଲହାଉସୀ ଅଯୋଧ୍ୟା ଗସ୍ତରେ ଥିଲେ । ତାଙ୍କ ଅନୁପସ୍ଥିତିରେ ଝାନ୍‌ସୀ ସଂପର୍କରେ କୌଣସି ନିର୍ଣ୍ଣୟ ନିଆଗଲା ନାହିଁ । କିନ୍ତୁ ରାଣୀ ଲକ୍ଷ୍ମୀବାଈ ପୂର୍ଣ୍ଣରୂପରେ ସଜାଗ ଥିଲେ । ପ୍ରତି ପଦକ୍ଷେପ ଭାବିଚିନ୍ତି ରଖିବାର ଚେଷ୍ଟା କରୁଥିଲେ । ତାଙ୍କ ଚତୁଃପାର୍ଶ୍ୱରେ ଘଟୁଥିବା ଘଟଣାମାନଙ୍କ ଉପରେ ସେ ସତର୍କ ନଜର ରଖିଥିଲେ । ମାଲ୍‌କମ୍‌ଙ୍କର ଏହି ପତ୍ର ପଠେଇ ଦେଲା ପରେ, ଏଥିରେ ଥିବା ସଂଦେଶ ଲକ୍ଷ୍ମୀବାଈଙ୍କୁ ଜଣା ନ ଥିଲା । ତେବେବି ତୁରନ୍ତ ଝାନ୍‌ସୀର କିଲ୍ଲା, ସହର ଓ ପଡ଼ୋଶୀ କରେରା କିଲ୍ଲାରେ ଇଂରେଜ ସୈନିକ ପହଞ୍ଚିବାରେ ଲାଗିଲେ । ସେହି କାରଣରୁ ଲକ୍ଷ୍ମୀବାଈ ଅଡୁଆରେ ପଡ଼ିଗଲେ ଓ ମନରେ ସନ୍ଦେହ ବି ହେଲା । ଅନେକ ଦିନ ବିତିଗଲା । ତେବେବି ସରକାରଙ୍କଠାରୁ କୌଣସି ଉତ୍ତର ଆସିଲା ନାହିଁ । ୨୪ ଡିସେମ୍ବର, ୧୮୫୩ରେ ଅର୍ଥାତ୍ ଗଙ୍ଗାଧର ରାଓଙ୍କ ମୃତ୍ୟୁର ଏକ ମାସ ପରେ ମେଜର ଏଲିସ୍ ମାଲ୍‌କମ୍‌ଙ୍କୁ ଏକ ପତ୍ର ଲେଖି ପଠାଇଲେ । ଗଭର୍ଣ୍ଣର ଜେନେରାଲଙ୍କୁ ଦେବାକୁ ସେହି ପତ୍ରରେ ଏଲିସ୍ ଯେଉଁ କଥା ଲେଖିଥିଲେ ତାହା ଏହିପରି–

ଓରଛା ରାଜ୍ୟ ସହ ଆମର ମିତ୍ରତାର ସମ୍ବନ୍ଧ ରହିଛି । ତା'ଠାରୁ ଅଧିକ ଘନିଷ୍ଠ ବନ୍ଧୁତ୍ୱ ସଂପର୍କ ଝାନ୍‌ସୀ ସହିଅଛି । ଏହିଭଳି ବୁଝାମଣା ଆମ ଦୁହିଁଙ୍କ ଭିତରେ ହୋଇଛି । ଯଦି ଆମେ ଓରଛାକୁ ପୋଷ୍ୟପୁତ୍ର ଗ୍ରହଣ ପାଇଁ ଅଧିକାର ଦେବା, ତା'ହେଲେ ଅନ୍ୟକୁ କାହିଁକି ନ ଦେବା, ଏମିତି ଭେଦଭାବ କରିବା ଉଚିତ ନୁହେଁ । ଏହା ଛଡ଼ା ୨୭ ମାର୍ଚ୍ଚ ୧୮୩୯ରେ ଇଷ୍ଟଇଣ୍ଡିଆ କଂପାନୀର ବୋର୍ଡ଼ ଅଫ୍ ଡାଇରେକ୍ଟର୍ସମାନେ ଏଭଳି ଦେଶୀୟ ରାଜ୍ୟମାନଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ପୂର୍ଣ୍ଣ ଅଧିକାର ଦେଇଛନ୍ତି । ଯେଉଁ ସୁବେଦାର ବଂଶମାନେ କଂପାନୀ ସରକାରକୁ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ସରକାର ଶାସନ ଅଧିକାର ମଧ୍ୟ ଦେଇଛନ୍ତି । କିନ୍ତୁ ଏବେ ସେହି ରାଜ୍ୟମାନଙ୍କୁ କୁହାଯିବ ଯେ ପ୍ରଥମେ ଏହା ରାଜ୍ୟ ନ ଥିଲା । ତେଣୁ ସେମାନଙ୍କର ପୋଷ୍ୟପୁତ୍ର ଗ୍ରହଣ ଅଧିକାରକୁ ନାମଞ୍ଜୁର କରାଯିବ । ଏହାର ଅର୍ଥ ହେବ ଯେ ଯେଉଁ ରାଜ୍ୟମାନେ ନିଷ୍ଠାର ସହ ଆମର ସହାୟତା କଲେ ଆମେ ତା'ର ଅନାଦର କରୁଛୁଁ, ମୁଁ ଏହା ଅନୁଭବ କରୁଛି ।

ଦୁର୍ଭାଗ୍ୟର କଥା ଏହି ଯେ ଏହି ପତ୍ର ଗଭର୍ଣ୍ଣର ଜେନେରାଲ ଡେଲହାଉସୀଙ୍କୁ ମିଳିଲା ହି ନାହିଁ । ମେଜର ଏଲିସ୍ ପରି ଛୋଟ ଅଧିକାରୀ ଏହି ତର୍କ ପ୍ରସ୍ତୁତ କଲେ ଯେ ଯଦି ଏହି ପତ୍ର ଡେଲ୍‌ହାଉସୀଙ୍କୁ ମିଳି ବି ଯାଇଥାନ୍ତା ତ କିଛି ବି ଫରକ ପଡ଼ି ନ ଥାନ୍ତା । କାରଣ ଡେଲ୍‌ହାଉସୀ ସବୁକଥା ସ୍ୱୀକାର କରି ନେଇଥାନ୍ତେ ସେମିତି କିଛି ଗ୍ୟାରେଣ୍ଟି ନ ଥିଲା । ଝାନ୍‌ସୀ ରାଜ୍ୟକୁ ହଡ଼ପ କରିବା ନିର୍ଣ୍ଣୟ ଗଙ୍ଗାଧର ରାଓଙ୍କ ମୃତ୍ୟୁ ପୂର୍ବରୁ ନିଆ

ସରିଥିଲା । ରାଜ୍ୟକୁ ନିଜ ଅଧୀନକୁ ନେଇ ଯିବା ନୀତି ପୂର୍ବରୁ ହିଁ ସ୍ଥିର ହୋଇ ସାରିଥିଲା । ରାଜ୍ୟ ଅଧିକାର ପ୍ରକ୍ରିୟା ସେହି ନୀତି ଅନୁସାରେ କରାଗଲା ।

ଅନେକ ଦିନ ବିତିଯିବା ପରେ ଯେତେବେଳେ ସରକାରଙ୍କ ତରଫରୁ ଗଙ୍ଗାଧର ରାଓଙ୍କ ପତ୍ରର କୌଣସି ଉତ୍ତର ମିଳିଲା ନାହିଁ, ସେତେବେଳେ ରାଣୀ ଲକ୍ଷ୍ମୀବାଈ ଗଭର୍ଣ୍ଣର ଜେନେରାଲଙ୍କୁ ପ୍ରଥମଥର ପାଇଁ ଏକ ଚିଠି ଲେଖିଲେ । ୩ ଡିସେମ୍ବର ୧୮୫୪ ଦିନ, ସେହି ପତ୍ରରେ ଲକ୍ଷ୍ମୀବାଈ ନିଜ ଦତ୍ତକ ପୁତ୍ର ଦାମୋଦର ରାଓର ଉତ୍ତରାଧିକାରୀ ଅଧିକାରକୁ ସ୍ୱୀକାର କରିବାକୁ ଅନୁରୋଧ କଲେ । ଝାନ୍ସୀ ରାଜ୍ୟ ଓ କଂପାନୀ ସରକାର ଭିତରେ ୧୮୧୭ ଓ ୧୮୪୨ରେ ହୋଇଥିବା ସନ୍ଧିର ପୁନରାବୃତ୍ତି କରି ଦୁଇ ସରକାରଙ୍କ ବନ୍ଧୁତ୍ୱ ସଂପର୍କରେ ସ୍ମରଣ କରାଇଲେ । ସେ ପତ୍ରରେ ଆହୁରି ଉଲ୍ଲେଖ କଲେ ଯେ ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ପୋଷ୍ୟପୁତ୍ର (ଧର୍ମପୁତ୍ର) ଔରସଜାତ ପୁତ୍ର ପରି ମାତା-ପିତାଙ୍କର ସମସ୍ତ ଉତ୍ତରାଧିକାର ପାଇପାରିବେ । ମୃତ ମାତା-ପିତାଙ୍କର ଅନ୍ତିମ ସଂସ୍କାର କରିବାର ଅଧିକାର ମଧ୍ୟ ପୋଷ୍ୟପୁତ୍ରକୁ ମିଳେ । ହିନ୍ଦୁସ୍ଥାନରେ ଏହି ପ୍ରଥା ପ୍ରଚଳିତ । ଦାମୋଦର ରାଓକୁ ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ବିଧିବଦ୍ଧ ଭାବରେ ପୋଷ୍ୟପୁତ୍ରଭାବେ ଗ୍ରହଣ କରାଯାଇଛି ଓ ନିଜ ପିତାଙ୍କର ଅନ୍ତିମ ସଂସ୍କାର ମଧ୍ୟ ପୁତ୍ର ହିସାବରେ, ଧାର୍ମିକ ପରମ୍ପରା ଅନୁସାରେ ସଂପନ୍ନ କରିଛି । ଏହିସବୁ କଥାର ବିବରଣୀ ପ୍ରସ୍ତୁତ କରି ରାଣୀ ଆହୁରି ଲେଖିଲେ ଯେ ପ୍ରସ୍ତୁତ ପ୍ରମାଣ ଆଧାରରେ ଦାମୋଦର ରାଓକୁ ଗଙ୍ଗାଧର ରାଓଙ୍କର ଆଇନତଃ ଉତ୍ତରାଧିକାରୀ ଘୋଷଣା କରାଯିବା ଉଚିତ । ଏହାହିଁ ନ୍ୟାୟସଂଗତ ହେବ । କମ୍ପାନୀ ସରକାର ଦତିଆ, ଓରଛା ଓ ଜାଲୀନ ରାଜ୍ୟ ସହ ଯେଉଁ ସନ୍ଧି କରିଥିଲେ ସେଥିରେ ତାଙ୍କ ବଂଶ ପରମ୍ପରାଗତ ଆଇନ୍ ଅନୁମୋଦିତ ଅଧିକାର ଉଲ୍ଲେଖ ନ ହୋଇଥିଲେ ମଧ୍ୟ ସେମାନଙ୍କୁ ପୋଷ୍ୟସନ୍ତାନ ଗ୍ରହଣ କରିବାର ଅଧିକାର ସରକାର ଦେଇଛନ୍ତି । ସେକଥା ମଧ୍ୟ ଲକ୍ଷ୍ମୀବାଈ ନିଜ ପତ୍ର ମାଧ୍ୟମରେ କଂପାନୀ ସରକାରକୁ ମନେ ପକାଇଦେଲେ ।

ପଠାଇଥିବା ପତ୍ରର ଉତ୍ତର ପାଇବାକୁ ରାଣୀସାହେବା ଅନେକ ଦିନ ଅପେକ୍ଷା କଲେ । ଶେଷରେ ନିରାଶ ହେଲେ । ପତ୍ରର କିଛି ହେଲେ ଜବାବ ଆସିଲା ନାହିଁ । ୧୬ ଫେବୃୟାରୀ ୧୮୫୪ରେ ଆଉ ଏକ ଚିଠି ପଠାଗଲା । ସେଥିରେ ରାଣୀ ଲେଖିଥିଲେ "ପତି ଶୋକ କାରଣରୁ ୩ ଡିସେମ୍ବରରେ ପଠାଇଥିବା ପତ୍ରରେ କିଛି କଥା ଲେଖିବାକୁ ଭୁଲି ଯାଇଥିଲି, ସେକଥାର ଉଲ୍ଲେଖ ଏହି ପତ୍ରରେ କରୁଛି ।"

୧୮୧୮ ମସିହାରେ ପେଶୱା 'ବୁନ୍ଦେଲଖଣ୍ଡ'କୁ କମ୍ପାନୀ ସରକାର ହାତରେ ସମର୍ପଣ କରି ଦେଇଥିଲେ । ସେଠାରେ କମ୍ପାନୀ ସରକାରର ସ୍ଥିତି ଅଧିକ ଶକ୍ତିଶାଳୀ କରିବାପାଇଁ ଶିବରାମ ରାଓ ଯେଉଁ କାର୍ଯ୍ୟ କୁଶଳତା ଦେଖାଇଲେ, ଯେଉଁ ସହଯୋଗ କଲେ, ତାହାର ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଝାନ୍ସୀ ରାଜ୍ୟ ଓ କଂପାନୀ ସରକାର ମଧ୍ୟରେ ସମୟ ସମୟରେ କରାଯାଇଥିବା ସନ୍ଧି ବିଷୟରେ ମଧ୍ୟ ଚର୍ଚ୍ଚା କରିଥିଲେ ଓ

କହିଲେ କି ଇଂରେଜ ସରକାରକୁ ଯେତେବେଳେ ବି ଆବଶ୍ୟକତା ପଡ଼ିଛି, ସେତେବେଳେ ଝାନ୍‌ସୀ ପ୍ରଶାସନ ସବୁପ୍ରକାର ଆର୍ଥିକ ସହାୟତା ଦେଇଛି । ଆବଶ୍ୟକସ୍ଥଳେ ସୈନିକ ବି ପଠେଇଛି । ଝାନ୍‌ସୀ ରାଜ୍ୟ ଦ୍ୱାରା କରାଯାଉଥିବା କାର୍ଯ୍ୟରେ ପ୍ରସନ୍ନ ହୋଇ ଇଂରେଜ ସରକାର କିଛି ନା କିଛି ପୁରସ୍କାର ଦେଇ ରାଜ୍ୟର ପ୍ରତିଷ୍ଠା ମଧ୍ୟ ବଢ଼ାଇଛନ୍ତି । ଏହିସବୁ କଥାର ବର୍ଣ୍ଣନା ଲକ୍ଷ୍ମୀବାଈ ବିସ୍ତୃତ ଭାବରେ ନିଜ ପତ୍ରରେ କରିଥିଲେ । ରାମଚନ୍ଦ୍ର ରାଓଙ୍କ ସହ ହୋଇଥିବା ଚୁକ୍ତିର ଉଦାହରଣ ଦେଇ କହିଥିଲେ ଚୁକ୍ତିର ଅନୁଚ୍ଛେଦ–୨ରେ ୨ଟି ଶବ୍ଦର ଉପଯୋଗ କରାଯାଇଛି । ଗୋଟିଏ 'ଉତ୍ତରାଧିକାରୀ (ୱାରିସ) ଆଉ ଦ୍ୱିତୀୟଟି ଜାନିସ୍', 'ୱାରିସ୍'ର ଅର୍ଥ ହେଲା– ଔରସ, ବଂଶ ପରମ୍ପରାଗତ ଉତ୍ତରାଧିକାରୀ । 'ଜାନିସ୍' ଅର୍ଥାତ୍ ଔରସ ଅଥବା ବଂଶ ପରମ୍ପରାଗତର ଅନୁପସ୍ଥିତିରେ ଦତ୍ତକପୁତ୍ର ବା ପୋଷ୍ୟପୁତ୍ରକୁ ଏହି ଅଧିକାର ଦେବା, ଚୁକ୍ତିପତ୍ରର ତର୍ଜମା କଲାବେଳେ ପ୍ରତ୍ୟେକ ଶବ୍ଦର ଅର୍ଥ ବାହାର କରାଗଲା । ଆଉ ତା'ପରେ ଯାଇ ଦୁଇ ପକ୍ଷଙ୍କର ହସ୍ତାକ୍ଷର କରାଗଲା । ଏହି ଚୁକ୍ତି ବା ରାଜିନାମା ଅନୁସାରେ 'ୱାରିସ' ସହ 'ଜାନିସା'କୁ ବି ମାନ୍ୟତା ମିଳି ଯାଇଥିଲା । ସେହି ଆଧାରରେ ଗଙ୍ଗାଧର ରାଓଙ୍କ ପୋଷ୍ୟପୁତ୍ରଙ୍କୁ ଆଇନ୍ ଅନୁସାରେ ତା'ର ଅଧିକାର ମିଳିବା କଥା । (ଏହିସବୁ ଚିଠି ଶ୍ରୀ ସିହ୍ନାଙ୍କ ଲିଖିତ 'Rani Laxmibai of Jhansi' ନାମକ ପୁସ୍ତକରୁ ପ୍ରସ୍ତୁତ କରାଯାଇଛି ।)

ରାଣୀ ଲକ୍ଷ୍ମୀବାଈଙ୍କ ଦ୍ୱାରା ବିସ୍ତୃତଭାବେ ଲିଖିତ ଏହି ପତ୍ର ଦ୍ୱାରା କୌଣସି ଲାଭ ହେଲା ନାହିଁ କି ଏହାଦ୍ୱାରା କିଛି ଲାଭ ହେବାର ନ ଥିଲା । ଗଙ୍ଗାଧର ରାଓଙ୍କର ପାଳିତ ପୁତ୍ର ଦାମୋଦର ରାଓଙ୍କୁ ରାଜ୍ୟର ଉତ୍ତରାଧିକାରୀ ସ୍ୱୀକାର କରିବା ସମ୍ବନ୍ଧିତ ଅଧିକାରକୁ ଜାଣିଶୁଣି ଉପେକ୍ଷା କରାଗଲା । ୨୭ ଫେବୃୟାରୀ ୧୮୫୪ ଦିନ ଗଭର୍ଣ୍ଣର ଜେନେରାଲ ଡେଲହାଉସୀ ଝାନ୍‌ସୀକୁ ନିଜ ଅଧୀନକୁ ନେବାକୁ ନିର୍ଣ୍ଣୟ ନେଲେ, ମୂଳ ତାତ୍ପର୍ଯ୍ୟ ଏହା ଯେ ୧୮୩୭ରେ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଚାର୍ଲସ ମେଟକାଫ୍‌ଙ୍କ ଦ୍ୱାରା ନିଯୋଜିତ ଓ ସରକାରଙ୍କ ମାନ୍ୟତା ପ୍ରାପ୍ତ ଆଚାର ସଂହିତା ୧୮୪୯ରେ କାର୍ଯ୍ୟକାରୀ କରାଯାଇ ସାରିଥିଲା । ସେହି ଅନୁସାରେ ସତାରା ଭଳି ରାଜ୍ୟ, ଯେଉଁଗୁଡ଼ିକ କି ମୂଳ ରୂପରେ କୌଣସି ରାଜାଙ୍କ ଶାସନାଧୀନ ନ ଥିଲା, ସେଗୁଡ଼ିକୁ ମଧ୍ୟ ଇଂରେଜମାନେ ସଂସ୍ଥାନର ରାଜ ଅଧିକାର ଦାନ ରୂପରେ ଦେଇଦେଲେ । ସେହି ଅଧିକାରକୁ ଔରସ ପୁତ୍ରର ଅନୁପସ୍ଥିତିରେ ବ୍ରିଟିଶ୍ ସରକାର ଫେରାଇ ନେବାର ଅଧିକାର ଥିଲା । ଲକ୍ଷ୍ମୀବାଈ, ଟେହରୀ, ଦତିଆ, ଜାଲୌନର ଉଲ୍ଲେଖ କରିଛନ୍ତି । ସେହି ସଂପର୍କରେ ଡେଲହାଉସୀଙ୍କର ବକ୍ତବ୍ୟ ଥିଲା ଯେ ଦତିଆ ଓ ଟେହରୀ ସ୍ୱତନ୍ତ୍ର ରାଜ୍ୟ ଥିଲେ । ତାଙ୍କର ସେଠାରେ ରାଜ ଉତ୍ତରାଧିକାରର କୌଣସି ପୂର୍ବ ପରମ୍ପରା ନ ଥିଲା । ସେହିପରି ଜାଲୌନକୁ ଯଦି ସରକାର ମିତ୍ରତା ଦୃଷ୍ଟିରୁ ପୋଷ୍ୟପୁତ୍ରର ଅଧିକାର ଦେଇଥିବେ, ତା'ହେଲେ ତା' ଅର୍ଥ ନୁହେଁ ଯେ ଅନ୍ୟମାନଙ୍କୁ ବି ସେହିପରି ଅଧିକାର ଦେବାକୁ କଂପାନୀ ସରକାର ବାଧ୍ୟ ।

୧୮୧୭ର ବୁଝାମଣାର ଉଦାହରଣ ଦେଇ ଡେଲହାଉସୀ କହିଥିଲେ କି ରାମଚନ୍ଦ୍ର ରାଓ ମଧ୍ୟ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । କିନ୍ତୁ କଂପାନୀ ସରକାର ତାହା ତତ୍କାଳ ନାମଞ୍ଜୁର କରିଦେଇଥିଲେ । ଏମିତି ବି ୧୮୧୭ର ବୁଝାମଣାର ଏବେ କିଛି ମୂଲ୍ୟ ନାହିଁ । ଏହାଛଡ଼ା ଗଙ୍ଗାଧର ରାଓ ମୃତ୍ୟୁଶଯ୍ୟାରେ ଥିଲାବେଳେ ଅଚାନକ କୌଣସି ଦୂର ସଂପର୍କୀୟର ପୁତ୍ରକୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କଲେ । ଏହା ବି ସହଜରେ ଗ୍ରହଣୀୟ ନୁହେଁ, ସନ୍ଦେହ ଉପୂନ୍ନ କଲାଭଳି କଥା । ଝାନ୍‌ସୀ କମ୍ପାନୀ ସରକାରଙ୍କ ଅଧୀନ ଏକ ସଂସ୍ଥାନ ହୋଇଥିବା କାରଣରୁ ଯଦି ରାଜାଙ୍କର କେହି ଔରସପୁତ୍ର ନାହାନ୍ତି ଅଥବା ତାଙ୍କ ରକ୍ତ ସଂପର୍କୀୟଙ୍କ ଔରସରୁ କୌଣସି ପୁତ୍ର ନାହିଁ, ତାହେଲେ ରାଜାଙ୍କ ପୋଷ୍ୟପୁତ୍ର ଅଧିକାରକୁ ଅସ୍ୱୀକାର କରି ଝାନ୍‌ସୀ ରାଜ୍ୟକୁ ଅଧିକୃତ କରିବାର ଆଇନତଃ ଅଧିକାର କଂପାନୀ ସରକାରର ଅଛି ।

ଏହି ନିର୍ଣ୍ଣୟ ହେଲା ପରେ ଗ୍ୱାଲିୟରସ୍ଥିତ ବୁନ୍ଦେଲଖଣ୍ଡର ରାଜନୀତିକ ଅଧିକାରୀ (ପଲିଟିକାଲ ଏଜେଣ୍ଟ) ମାଲ୍‌କମ୍‌ଙ୍କୁ ତୁରନ୍ତ ସୂଚନା ଦେଇ ଦିଆଗଲା । ସେହି ଅନୁସାରେ ରାଣୀଙ୍କ ପ୍ରତିଷ୍ଠା ଅନୁସାରେ ପେନ୍‌ସନ୍ ତଥା ଝାନ୍‌ସୀ ରାଜ୍ୟକୁ ଉତ୍ତରକ୍ଷେତ୍ର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ସହ ସଂଲଗ୍ନ କରିଦେବାର ଆଦେଶ ତୁରନ୍ତ ଜାରି କରିଦେଲେ । ପୋଷ୍ୟପୁତ୍ର ଅଧିକାରକୁ ଉପେକ୍ଷା କରି ଝାନ୍‌ସୀ ରାଜ୍ୟକୁ ଅଧିକୃତ କରିବାର ନିର୍ଣ୍ଣୟ ମେଜର ଏଲିସ୍‌କୁ ବି ସୂଚିତ କରି ଦିଆଗଲା । ତାଙ୍କୁ ଝାନ୍‌ସୀର ସଂପୂର୍ଣ୍ଣ ପ୍ରଶାସନ ସମ୍ଭାଳିବାକୁ କୁହାଗଲା । ସେ ସମୟରେ ଝାନ୍‌ସୀ ରାଜ୍ୟ ଅଧୀନରେ ୧୨୮୧ଟି ଗାଁ ଥିଲା, ତା' ଛଡ଼ା ଗୁଲସରାୟ ବି ଝାନ୍‌ସୀ ଅଧୀନରେ ଥିଲା । ତା'ର ୬୧ଟି ଗାଁ ମଧ୍ୟ ଝାନ୍‌ସୀ ଅଧିକାରରେ ଥିଲା । ସେନା ଅଧିକାରୀ ଷ୍ଟୀମନ କହିବା ଅନୁସାରେ ଝାନ୍‌ସୀ ବୁନ୍ଦେଲଖଣ୍ଡର ସବୁଠାରୁ ଧନୀ ରାଜ୍ୟ ଥିଲା । ସେଇଥିପାଇଁ କଂପାନୀ ସରକାର ପୋଷ୍ୟପୁତ୍ରର କାନୁନୀ ଅଧିକାରକୁ ଅସ୍ୱୀକାର କରି ଅବୈଧ ଭାବରେ ଝାନ୍‌ସୀକୁ ନିଜ ଅଧୀନକୁ ନେଇ ଯାଇଥିଲା । ତାଙ୍କୁ ତ ଝାନ୍‌ସୀ ଅଧିକାର କରିବାକୁ କୌଣସି ଏକ ବାହାନା ଦରକାର ଥିଲା । ଯାହା ପୋଷ୍ୟପୁତ୍ର ଅଧିକାର ଆଇନ୍ ବଳରେ ସହଜରେ ମିଳିଗଲା । କଂପାନୀ ସରକାର ଏହି କଥାର ପୂରା ଫାଇଦା ଉଠାଇଲେ ।

ଏହି ନିର୍ଣ୍ଣୟକୁ ପାଳନ କରି ୧୩ ମାର୍ଚ୍ଚ ୧୮୫୪ରେ ମେଜର ମାଲ୍‌କମ୍ ଝାନ୍‌ସୀର ଜନତାଙ୍କ ଗୋଚରାର୍ଥେ ଏକ ଘୋଷଣାପତ୍ର ଜାରି କଲେ । ଯାହା ଏହି ପ୍ରକାର ଥିଲା– ମେଜର ଡି.ଏ. ମାଲ୍‌କମ୍, ରାଜନୀତିକ ଅଭିକର୍ତ୍ତା (ପଲିଟିକାଲ ଏଜେଣ୍ଟ) ଗ୍ୱାଲିୟର, ବୁନ୍ଦେଲଖଣ୍ଡ ଓ ରୀୱା ତରଫରୁ ଆପଣମାନଙ୍କୁ ସୂଚିତ କରାଯାଇଅଛି ଯେ–

"ଝାନ୍‌ସୀ ମହାରାଜ ଗଙ୍ଗାଧର ରାଓ ୨୧ ନଭେମ୍ବର, ୧୮୫୩ ଦିନ ସ୍ୱର୍ଗାରୋହଣ କଲେ । ସେ ନିଜ ମୃତ୍ୟୁ ପୂର୍ବରୁ ଦାମୋଦର ରାଓଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ

କରିଥିଲେ । କିନ୍ତୁ ମାନନୀୟ ଗଭର୍ଣ୍ଣର ଜେନେରାଲ ଏହି ପୋଷ୍ୟପୁତ୍ର ଗ୍ରହଣକୁ ମାନ୍ୟତା ଦେବାକୁ ମନା କରିଦେଲେ ।''

ସେହି ଅନୁସାରେ ୭ ମାର୍ଚ୍ଚ ୧୮୫୪ ଦିନ ହିନ୍ଦୁସ୍ଥାନ ସରକାରଙ୍କ ସେକ୍ରେଟାରୀ ଏକ ଅଧ୍ୟାଦେଶ ଜାରି କରି ଝାନ୍ସୀ ରାଜ୍ୟକୁ ବ୍ରିଟିଶ୍ ସରକାରଙ୍କ ଅଧୀନସ୍ଥ କଲେ । ଏହି ଘୋଷଣାପତ୍ର ଦ୍ୱାରା ଝାନ୍ସୀ ରାଜ୍ୟର ସମସ୍ତ ନାଗରିକମାନଙ୍କୁ ଏହି ସୂଚନା ଦିଆଯାଉଅଛି ଯେ ଝାନ୍ସୀ ଏବେଠାରୁ ବୁନ୍ଦେଲଖଣ୍ଡର ଏଜେଣ୍ଟ ମେଜର ଏଲିସ୍‌ଙ୍କ ଅଧିକାରକୁ ଆସିଯାଇଛି । ଏଣୁ ସବୁ ନାଗରିକ ଏବେ ନିଜକୁ ବ୍ରିଟିଶ୍ ସରକାର ଅଧୀନସ୍ଥ ବୋଲି ମନେ କରନ୍ତୁ ଓ ନିଜର କର ମେଜର ଏଲିସ୍‌ଙ୍କ ନିକଟରେ ଜମା କରନ୍ତୁ । ସବୁ ନାଗରିକଙ୍କ ସ୍ୱାସ୍ଥ୍ୟ ଲାଭ ଓ ପ୍ରସନ୍ନତା କାମନା କରୁଛୁ ।

(ହସ୍ତାକ୍ଷର-ଡି.ଏ. ମାଲ୍‌କମ୍)

ରାଣୀ ଲକ୍ଷ୍ମୀବାଈଙ୍କୁ ହିଁ କାହିଁକି, ସମସ୍ତ ଝାନ୍ସୀବାସୀ ଆଶା କରିଥିଲେ ଯେହେତୁ ସବୁ ସମୟରେ ଝାନ୍ସୀ ଲୋକେ ଇଂରେଜ ସରକାରଙ୍କୁ ସାହାଯ୍ୟ କରିଛନ୍ତି, ତାହାର ସମ୍ମାନ ରକ୍ଷା କରି ଇଂରେଜ ସରକାର ଦାମୋଦର ରାଓଙ୍କୁ ଉତ୍ତରାଧିକାରୀ ଭାବରେ ସ୍ୱୀକାର କରିବ । କିନ୍ତୁ ଝାନ୍ସୀ ରାଜ୍ୟ ବ୍ରିଟିଶ୍ ଅଧୀନକୁ ଚାଲିଗଲା ବୋଲି ଜଣାପଡ଼ିବାରୁ ପ୍ରଜାଙ୍କୁ ଗଭୀର ଦୁଃଖ ହେଲା । କଂପାନୀ ସରକାର ପ୍ରଜାଙ୍କ ସହ ବିଶ୍ୱାସଘାତକତା କଲା, ଝାନ୍ସୀ ଜନତାଙ୍କୁ ଏମିତି ଲାଗିଲା ।

ଏହି ଘୋଷଣାପତ୍ରକୁ ରାଣୀ ଲକ୍ଷ୍ମୀବାଈଙ୍କୁ ଦେବାପାଇଁ ସ୍ୱୟଂ ମେଜର ଏଲିସ୍ ରାଜମହଲ ଆସି ରାଣୀଙ୍କୁ ସାକ୍ଷାତ୍ କଲେ । ଲକ୍ଷ୍ମୀବାଈ ଚିକ୍ ପର୍ଦ୍ଦା ଆଢୁଆଳରେ ବସିଥିଲେ । ମେଜର ଏଲିସ୍ ସାଙ୍ଗରେ ଆଣିଥିବା ଘୋଷଣାପତ୍ରର ନକଲ ଦିୱାନ ସାହେବଙ୍କ ହାତରେ ଅର୍ପଣ କଲେ । ଦିୱାନ ସେହି ଘୋଷଣାପତ୍ରକୁ ପଢ଼ି ଶୁଣାଇଲେ । ତା'ପରେ ଏଲିସ୍ ରାଣୀଙ୍କୁ ଆଶ୍ୱାସନା ଦେଲେ ଯେ ଯଦିଓ ଝାନ୍ସୀ ରାଜ୍ୟ ଅଧିକୃତ କରାଯାଉଛି, ତେବେବି ମହାରାଣୀଙ୍କର ପ୍ରତିଷ୍ଠା ପ୍ରତି ସଂପୂର୍ଣ୍ଣ ଧ୍ୟାନ ଦିଆଯିବ ଓ ସେଇ ଅନୁସାରେ ତାଙ୍କୁ ଯଥେଷ୍ଟ ଦରମା ମଧ୍ୟ ଦିଆଯିବ ।

ଘୋଷଣାପତ୍ରକୁ, ଏଲିସ୍ ଦ୍ୱାରା ଦିଆଯାଇଥିବା ଆଶ୍ୱାସନାକୁ ଶୁଣି ରାଣୀ ଲକ୍ଷ୍ମୀବାଈଙ୍କୁ କେଜାଣି କେମିତି ଲାଗିଥିବ ? ମନ ଭିତରେ କେତେ ଝଡ଼ ଉଠିଥିବ ? କିପରି ମୁଣ୍ଡ ଖରାପ ହୋଇଥିବ ?

ରାଣୀଙ୍କ ପ୍ରତିକ୍ରିୟା ସଂପର୍କରେ ଇଂରେଜମାନେ ବହୁତ କିଛି ଲେଖିଛନ୍ତି । ଘୋଷଣାପତ୍ର ପଢ଼ାଗଲା ପରେ, ଦରମା ବିଷୟରେ ରାଣୀଙ୍କୁ ଏଲିସ୍ ଆଶ୍ୱାସନା ଦେଲା ପରେ ଯେତେବେଳେ ଯିବାପାଇଁ ଉଠିଲେ, ସେତେବେଳଯାଏ ଶାନ୍ତ ଓ ନିଶ୍ଚଳ ଭାବରେ

ବସିଥିବା ରାଣୀ ଲକ୍ଷ୍ମୀବାଈ ଅଚାନକ ଚିଡ଼ିଉଠି, ରାଗରେ ଚିତ୍କାର କଲେ "ମୁଁ ମୋ ଝାନ୍ସୀ ଦେବି ନାହିଁ ।"

ସେହି ସମୟରେ ସେଠାରେ ଉପସ୍ଥିତ ଥିବା ଇଂରେଜମାନେ ସେଠାକାର ଘଟଣା ବିଷୟରେ ଅନ୍ୟ ଇଂରେଜମାନଙ୍କୁ ବତାଇଦେଲେ । ବୋଧହୁଏ ବତାଇବା ସମୟରେ ରାଣୀଙ୍କ ଦ୍ୱାରା ଉଚ୍ଚାରିତ ଶବ୍ଦକୁ ଭୁଲ୍ ଢଙ୍ଗରେ ଉଚ୍ଚାରଣ କରିଥିବେ । ପୁଣି ବି ରାଣୀ ଯେଉଁ ଶବ୍ଦ ସବୁ ଉଚ୍ଚାରଣ କରିଥିଲେ ତାହା ଆଜି ବି ଅମର । ସେହି ଶବ୍ଦରେ, ବେଦନା, ସ୍ୱାଭିମାନ ଓ ଚେତନା ଭରି ରହିଛି ।

କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ଏହି ଘୋଷଣାପତ୍ରକୁ ଏଲିସ୍ ଝାନ୍ସୀର ପ୍ରଜାମାନଙ୍କୁ ପଢ଼ି ଶୁଣାଇଲା ପରେ ବି ଝାନ୍ସୀରେ ଏହି ଅପ୍ରତ୍ୟାଶିତ ଅନ୍ୟାୟର ବିରୋଧ ବା ପ୍ରତିରୋଧ କରାଗଲା ନାହିଁ । ବାତାବରଣ ଶାନ୍ତ ରହିଲା । ସାଧାରଣ ପ୍ରଜା, ସରଦାର, ଦରବାରୀ, ଦିୱାନି, ସୈନ୍ୟବାହିନୀର ସିପାହି, ସେନାପତି କେହି ବି ଖୋଲାଖୋଲି ନିଜର ବିରୋଧ ବା ଅସନ୍ତୋଷ ବ୍ୟକ୍ତ କଲେ ନାହିଁ । ଯେମିତି ସମସ୍ତେ କିଂକର୍ତ୍ତବ୍ୟ ବିମୂଢ଼ ହୋଇଗଲେ । ସେମାନେ ଭାଗ୍ୟ ଆଗରେ ସମସ୍ତେ ମୁଣ୍ଡ ନୁଆଁଇଦେଲେ ।

ମେଜର ଇବାଂସ ବେଲ ନିଜ ପୁସ୍ତକ 'The Empire of India' ଓ W.M. Torrens ନିଜ ପୁସ୍ତକ 'Empire in Asia, How we came by it; Book of Confessions' ରେ ଏ ଦୁଇଜଣ କଂପାନୀ ସରକାର ଦ୍ୱାରା ଝାନ୍ସୀ ଅଧିକାର କରାଯିବାକୁ ନେଇ ଡେଲହାଉସୀଙ୍କର କଟୁ ସମାଲୋଚନା କରିଛନ୍ତି । ସେମାନେ ଏହି କାର୍ଯ୍ୟକୁ ଅନୈତିକ, ବେଆଇନ୍, ବିଶ୍ୱାସଘାତୀ ଓ ଝାନ୍ସୀ ରାଜ୍ୟ ସହ ହୋଇଥିବା ବୁଝାମଣାର ଉଲ୍ଲଙ୍ଘନ କରାଯାଇଛି ବୋଲି କହିଛନ୍ତି । 'The Hindu Patriot' ନାମକ ଖବରକାଗଜ ୧୮ ମେ ୧୮୫୪ର ସଂସ୍କରଣରେ ଲେଖିଥିଲା ଯେ 'ଡେଲହାଉସୀର ନିର୍ଣ୍ଣୟ ସଇତାନି ଭରା ଓ ଲଜ୍ଜିତ କଲାଭଳି । ନାଗପୁରର ଉଦାହରଣ ସବୁଠାରୁ ଲଜ୍ଜାଜନକ କଥା । କିନ୍ତୁ ଝାନ୍ସୀର ଉଦାହରଣ ଅଧିକ ବ୍ୟଥିତ କଲାଭଳି ଓ ହୃଦୟକୁ ଚୋଟ ପହୁଁଚାଇଲା ଭଳି । ଏ ଘଟଣା ଏମିତି ଲାଗୁଛି କି ଦିନେ ସକାଳୁ ଗଭର୍ଣ୍ଣର ଜେନେରାଲ ନିଦରୁ ଶୋଇକରି ଉଠିଲା ଓ ନାଗପୁର ବ୍ରିଟିଶ୍ ସରକାରର ଅଧୀନ ବୋଲି ଘୋଷଣା କରିଦେଲା । ଆଉ ଏମିତି କୌଣସି ରକ୍ତପାତ ବିନା, ବନ୍ଧୁକରୁ ଗୋଟିଏ ଗୁଳି ବି ବ୍ୟବହାର ନ କରି ନାଗପୁର ବ୍ରିଟିଶ୍ ଅଧୀନକୁ ଚାଲିଗଲା । ଦ୍ୱିତୀୟଦିନ ସେ ନିଜର ବକ୍ରଦୃଷ୍ଟିରେ ଝାନ୍ସୀକୁ ଦେଖିଲା ଓ ରାଣୀ ଓ ରାଜପୁତ୍ର ହାତରୁ ଝାନ୍ସୀ ଜବରଦସ୍ତି ଛଡ଼େଇ ନେଲା ।

କିନ୍ତୁ କିଏ କ'ଣ କହୁଛି, ନୈତିକ ବା ଅନୈତିକ କ'ଣ, ଆଇନ୍ ଓ ବେ-ଆଇନ୍ କ'ଣ, ଯା ସାଙ୍ଗରେ କମ୍ପାନୀ ସରକାରର କିଛି ଦିଆ-ନିଆ ନ ଥିଲା । ତାଙ୍କର ତ ଗୋଟିଏ ଉଦ୍ଦେଶ୍ୟ ଥିଲା କି ମୌକା ମିଳିଲା କ୍ଷଣି ଯେତେ ପାର ଯେମିତି ହେଉ ହିନ୍ଦୁସ୍ଥାନର ରାଜ୍ୟଗୁଡ଼ିକ ଉପରେ ନିଜର ଅଧିକାର ସାବ୍ୟସ୍ତ କର, ଲୁଟ-ପାଟ କରି ଲୋକଙ୍କ ଉପରେ ଅତ୍ୟାଚାର କର । ଡେଲହାଉସୀଙ୍କର ଏହି ନୀତି ଥିଲା ।

ଘୋଷଣାପତ୍ର ପଢ଼ି ରାଣୀଙ୍କୁ ଶୁଣାଇଲା ପରେ ଝାନ୍‌ସୀ ରାଜ୍ୟକୁ ଇଂରେଜ ସାମ୍ରାଜ୍ୟରେ ମିଶାଇବା ପ୍ରକ୍ରିୟା ଆରମ୍ଭ ହୋଇଗଲା । ଡେଲହାଉସୀଙ୍କର ଆଦେଶ ଅନୁସାରେ ମାଲ୍‌କମ୍ ଏକ ରିପୋର୍ଟ ପ୍ରସ୍ତୁତ କରି ବିଚାର ପାଇଁ କଂପାନୀ ସରକାର ପାଖକୁ ପଠାଇଦେଲେ । ଏହି ରିପୋର୍ଟ ସେ ଲେଖିଲେ "ଲକ୍ଷ୍ମୀବାଈଙ୍କୁ ଆଜୀବନ ପ୍ରତି ମାସରେ କଂପାନୀ ସରକାର ତରଫରୁ ପାଞ୍ଚହଜାର ଟଙ୍କା ଦରମା ବାବଦରେ ଦେବାପାଇଁ ବ୍ୟବସ୍ଥା କରାଯାଉ । ରାଣୀ ମଧ ଝାନ୍‌ସୀ ଦୁର୍ଗ ଇଂରେଜମାନଙ୍କୁ ସମର୍ପଣ କରି ଦିଅନ୍ତୁ । ସେ ସହରରେ ଥିବା ନିଜ ରାଜମହଲକୁ ରହିବା ପାଇଁ ବ୍ୟବହାର କରିବା ଉଚିତ । ଏବେ ସେହି ରାଜମହଲଟିକୁ ହିଁ ନିଜର ସମ୍ପତ୍ତି ବୋଲି ଜାଣିରଖିବା ଉଚିତ । ରାଣୀ ଓ ତାଙ୍କ ଦାସୀମାନଙ୍କ ଉପରେ କୌଣସି ମକଦ୍ଦମା ଚଳାଇବା ଉଚିତ ନୁହେଁ । ତାଙ୍କୁ ନଜରବନ୍ଦୀ ଭାବରେ ରଖିବା ବି ଉଚିତ ନୁହେଁ । ତାଙ୍କ ଉପରେ ବ୍ରିଟିଶ୍ ନ୍ୟାୟାଳୟର କାନୁନ୍ ଲାଗୁ କରିବା ଉଚିତ ନୁହେଁ । ରାଣୀ ଲକ୍ଷ୍ମୀବାଈ ଓ ତାଙ୍କ ଦାସୀମାନଙ୍କୁ ସ୍ୱତନ୍ତ୍ରଭାବେ ବୁଲାବୁଲି କରିବାର ଅଧିକାର ଦେବା ଉଚିତ । ତାଙ୍କୁ ଗୋଲାମ ବନାଇ ରଖାଯିବା ଉଚିତ ନୁହେ । ରାଜାଙ୍କ ଇଚ୍ଛାନୁସାରେ ରାଜ୍ୟର ସମସ୍ତ ଧନ-ଦୌଲତ, ଗହଣା, ସୁନା-ରୁପା, ହୀରାମୋତି, କଂପାନୀ ଓ ଝାନ୍‌ସୀ ରାଜ୍ୟର ଶାସନଭାର ଆଦାନ ପ୍ରଦାନ ପରେ ରାଜ୍ୟ ଉପରେ ଯେଉଁ ଋଣ ଭାର ଅଛି, ତାକୁ ଭରଣା କରିବାପାଇଁ ହିସାବ-କିତାବ ହେଲା ପରେ, ଭଣ୍ଡାରରେ ଯାହା ଅର୍ଥ ଆଦି ବଳିବ ତାକୁ ରାଣୀଙ୍କୁ ଦେଇଦେବା ଉଚିତ । ସେହି ଧନସମ୍ପତ୍ତି ରାଣୀଙ୍କର ନିଜ ସମ୍ପତ୍ତି ହୋଇ ରହିବ । ଏହା ଛଡ଼ା ରାଣୀଙ୍କ ଆଶ୍ରିତ, ତାଙ୍କ ବନ୍ଧୁବାନ୍ଧବ, ପରମ୍ପରା ଅନୁସାରେ କାମ କରୁଥିବା ପୁରୁଣା କର୍ମଚାରୀ, ଦରବାରୀମାନଙ୍କର ଏକ ତାଲିକା ପ୍ରସ୍ତୁତ କରି ସରକାରଙ୍କ ପାଖକୁ ପଠାଇବା ଉଚିତ । ତାଙ୍କର କାର୍ଯ୍ୟଦକ୍ଷତା ଓ ବରିଷ୍ଠତା ଅନୁସାରେ ସେମାନଙ୍କର ବେତନର ମାନ ସ୍ଥିର କରିବା ଉଚିତ ।"

ମାଲ୍‌କମ୍‌ଙ୍କର ଏହି ସମସ୍ତ ସୁପାରିସକୁ ଡେଲହାଉସୀ ମାନି ନେଲେ । କେବଳ ରାଣୀଙ୍କର ଧନ-ଦୌଲତ, ଆଭୂଷଣ, ଗହଣା, ହୀରାମୋତି ଆଦି ସଂପର୍କରେ ସୁପାରିସକୁ ମାନିଲେ ନାହିଁ । ଏ ସଂପର୍କରେ ଡେଲହାଉସୀ କହିଲେ, "ରାଜାଙ୍କ ଗହଣା, ଆଭୂଷଣ, ନିଜସ୍ୱ ସମ୍ପତ୍ତି, ହୀରାମୋତି, ଧନ-ଦୌଲତ ଉପରେ ରାଣୀର କୌଣସି ଅଧିକାର ନାହିଁ । ସେହି ଅଧିକାର କେବଳ ସେ ଗ୍ରହଣ କରିଥିବା ପୋଷ୍ୟପୁତ୍ରର ଅଛି । ପୋଷ୍ୟପୁତ୍ରର ରାଜ୍ୟ ଉପରେ ଉତ୍ତରାଧିକାରୀ ଭାବରେ କୌଣସି ଅଧିକାର ନାହିଁ । କେବଳ ପିତାର ବ୍ୟକ୍ତିଗତ ସମ୍ପତ୍ତି ଉପରେ ଆଇନତଃ ତା'ର ଅଧିକାର ରହିଛି । ଉତ୍ତରାଧିକାରୀ ଶବ୍ଦ ଡେଲହାଉସୀ ନିଜର ସୁବିଧା ଅନୁସାରେ ବ୍ୟବହାର କରିଛନ୍ତି । ଅର୍ଥାତ୍ ବ୍ୟକ୍ତିଗତ ସମ୍ପତ୍ତି ବା ପତିର ସମ୍ପତ୍ତି ଉପରେ ବିଧବା ରାଣୀର କୌଣସି ଅଧିକାର ନାହିଁ ।

ଏଠାରେ ଗୋଟିଏ କଥା ସ୍ପଷ୍ଟରୂପେ ଦୃଷ୍ଟିଗୋଚର ହୁଏ ଯେ ଡେଲହାଉସୀ ହିନ୍ଦୁ ଧର୍ମଶାସ୍ତ୍ରର ବ୍ୟାଖ୍ୟା ନିଜ ସୁବିଧା ଅନୁସାରେ କରିଛନ୍ତି । ଗୋଟିଏ ପଟେ ହିନ୍ଦୁଧର୍ମଶାସ୍ତ୍ରକୁ

ଆଳ କରି ବିଧବା ସ୍ତ୍ରୀକୁ ନିଜ ମୃତ ପତିର ବ୍ୟକ୍ତିଗତ ସମ୍ପତ୍ତି ଅଧିକାରକୁ ମାନିବାକୁ ମନା କରୁଥିବାବେଳେ ଅନ୍ୟ ପଟେ ସେହି ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ପୋଷ୍ୟ ରାଜପୁତ୍ର ନିଜ ପିତାର ରାଜଗାଦିରେ ଅଭିଷିକ୍ତ ହେବାର ଅଧିକାରୀ ଅଟେ, ତାହା ଡେଲହାଉସୀ ଅସ୍ୱୀକାର କରିଦେଲେ ।

ଲକ୍ଷ୍ମୀବାଈ ଖୋଲାଖୋଲି ଘୋଷଣାପତ୍ରର ବିରୋଧ କଲେ ନାହିଁ । କାରଣ ଏବେବି ତାଙ୍କର ଆଶା ଥିଲା ଯେ ଯଦି ଆଉ ଥରେ ଇଂରେଜ ସରକାରକୁ ଝାନ୍ସୀ ଓ କଂପାନୀ ସରକାର ଭିତରେ ଥିବା ପୁରୁଣା ସମ୍ବନ୍ଧ, ବୁଝାମଣା ଓ ଇତିହାସ ମନେପକାଇ ଦିଆଯିବ ହୁଏତ ବ୍ରିଟିଶ୍ ସରକାର ଝାନ୍ସୀ ଅଧିକୃତ କରିବା ନିର୍ଣ୍ଣୟକୁ ବଦଳାଇ ଦେଇପାରେ । ସେଥିପାଇଁ ସେ ୨୨ ଏପ୍ରିଲ ୧୮୫୪ରେ ଗଭର୍ଣ୍ଣର ଜେନେରାଲଙ୍କ ନାମରେ ଏକ ଦରଖାସ୍ତ ପଠାଇଲେ । ପତ୍ରରେ ଲେଖିଲେ, "ମାନନୀୟ ଗଭର୍ଣ୍ଣର ଜେନେରାଲ ଥରେ ରାଣୀଙ୍କ ପ୍ରତିନିଧିଙ୍କୁ ସାକ୍ଷାତ୍‌କାର ସୁଯୋଗ ଦିଅନ୍ତୁ । ରାଣୀଙ୍କ କଥା ଥରେ ଶୁଣନ୍ତୁ । ତାଙ୍କୁ ନିଜର ରାଜ୍ୟନିଷ୍ଠା ବ୍ୟକ୍ତ କରିବାକୁ କିଛି ସମୟ ଦିଆଯାଉ । ଏଣୁ ବିଲୟର ଏହି ନିଷ୍ପତ୍ତିକୁ ଏକମାସ ଘୁଞ୍ଚାଇ ଦିଆଯାଉ । ପୁରୁଣା ବୁଝାମଣାକୁ ସମ୍ମାନ ଦିଆଯାଇ, ଆଉ ଥରେ ଝାନ୍ସୀ ଅଧିକୃତ କରିବା ନିର୍ଣ୍ଣୟ ଉପରେ ବିଚାର କରାଯାଉ । ଏପରି ନ କଲେ ହୁଏତ ଇଂରେଜ ସରକାର ଅଡୁଆରେ ପଡ଼ିଯାଇପାରନ୍ତି ବା ଅପମାନିତ ହୋଇପାରନ୍ତି ।" ଶେଷରେ ରାଣୀ କହିଲେ, "ଝାନ୍ସୀ ବ୍ରିଟିଶ୍ ସରକାର ଉପରେ ଆଶ୍ରିତ ଏକ ଦୁର୍ବଳ ରାଜ୍ୟ, ଯଦି ଏହାକୁ ଅଧିକୃତ କରାଯାଏ ତ ରାଜ୍ୟର ଦୁର୍ବଳ ସୈନିକଙ୍କ ହାତରେ ଥିବା ଛଙ୍କଲଗା ପାଞ୍ଚହଜାର ତରବାରି ଓ ପଚାଶ ନିରର୍ଥକ ତୋପଗୁଡ଼ିକୁ ବହୁତ ଦୁଃଖର ସହିତ ଆପଣଙ୍କ ଏଜେଣ୍ଟକୁ ପ୍ରଦାନ କରିବୁ ।" (ରାଣୀ ଲକ୍ଷ୍ମୀବାଈ ଅଫ୍ ଝାନ୍ସୀ, ଏସ୍.ଏନ୍. ସିହ୍ନା, ପୃଷ୍ଠା-୨୮)

୨୮ ଏପ୍ରିଲ ୧୮୫୪ରେ ମେଜର ଏଲିସ୍ ଓ ମେଜର ମାଲ୍‌କମ୍‌ଙ୍କ ସୁପାରିସକୁ ରାଣୀଙ୍କ ବିଚାରାର୍ଥେ ପତ୍ର ମାଧ୍ୟମରେ ପଠାଇଲେ । ସୁପାରିସ ଏହି ପ୍ରକାର ଥିଲା –

୧. ପ୍ରତିମାସ ଛ' ହଜାର ପାଉଣ୍ଡ ରାଣୀଙ୍କୁ ଆଜୀବନ ଦିଆଯିବା ଉଚିତ ।

୨. ଝାନ୍ସୀ ସହରର ରାଜମହଲ ରାଣୀଙ୍କୁ ରହିବା ପାଇଁ ଦିଆଯିବା ଉଚିତ । ରାଜାଙ୍କ ବ୍ୟକ୍ତିଗତ ସମ୍ପତ୍ତି ରାଜକୁମାର ସାବାଳକ ହେବା ପର୍ଯ୍ୟନ୍ତ ରାଣୀଙ୍କ ଅଧିକାରରେ ରହିବ ।

୩. ରାଣୀ ଓ ତାଙ୍କ ଦାସୀମାନଙ୍କ ଉପରେ ବ୍ରିଟିଶ୍ କୋର୍ଟର କୌଣସି ଅଧିକାର ରହିବ ନାହିଁ ।

୪. ରାଜାଙ୍କ ସ୍ୱାମିତ୍ୱରେ ଥିବା ମଣିମାଣିକ୍ୟ, ଗହଣା, ଆଭୂଷଣ, ମୂଲ୍ୟବାନ୍ ବସ୍ତୁ, ଧନ-ସମ୍ପତ୍ତି, ପୁଅ ସାବାଳକ ହେବା ପରେ ତାକୁ ହସ୍ତାନ୍ତର କରିବାପାଇଁ ରାଣୀଙ୍କ ଅଧୀନରେ ରହିବ ।

୫. ରାଜ୍ୟର ସବୁ ଚାକିରିଆମାନଙ୍କୁ ୩୦ ଏପ୍ରିଲ ୧୮୫୪ ପର୍ଯ୍ୟନ୍ତ ଦରମା ଦିଆଯାଇ ତାଙ୍କୁ ପଦଚ୍ୟୁତ କରାଯିବ । ଛ' ମାସର ଦରମା ତାଙ୍କୁ କ୍ଷତିପୂରଣ ଭାବେ ଦିଆଯିବ । ଏହି ଟଙ୍କା ରାଣୀଙ୍କୁ ଦିଆଯିବାକୁ ଥିବା ଟଙ୍କାରୁ ହିଁ ଭରଣା କରାଯିବ ।

୬. ରାଜା ନେଇଥିବା ଋଣର ପରିଶୋଧ ରାଣୀ ନିଜ ବ୍ୟକ୍ତିଗତ ସମ୍ପତ୍ତିରୁ କରିବେ ।

୭. ଯାହାଙ୍କୁ ଦରମା ଦେବାପାଇଁ ପଡ଼ିବ, ତାଙ୍କର ଏକ ତାଲିକା ପ୍ରସ୍ତୁତ କରି କଂପାନୀ ସରକାରଙ୍କୁ ଦେବାକୁ ପଡ଼ିବ ।

ରାଣୀ ଲକ୍ଷ୍ମୀବାଈ ସମସ୍ତ ସୁପାରିସକୁ ତୁରନ୍ତ ନାମଞ୍ଜୁର କରିଦେଲେ । ଗଭର୍ଣ୍ଣର ଜେନେରାଲ ନେଇଥିବା ନିର୍ଣ୍ଣୟକୁ ବଦଳାଇବା ପାଇଁ କ'ଣ କରାଯିବ । ଏହି ଚିନ୍ତା ସବୁବେଳେ ତାଙ୍କ ମନକୁ ଘାରିଲା ।

ଜନ୍ ଲେଙ୍ଗ୍ ନାମକ ଏକ ବ୍ରିଟିଶ୍ ବାରିଷ୍ଟର ସେ ସମୟରେ ହିନ୍ଦୁସ୍ଥାନ ଆସିଥିଲେ । ଲକ୍ଷ୍ମୀବାଈ ତାଙ୍କୁ ଝାନ୍ସୀ ଆସିବାକୁ ନିମନ୍ତ୍ରଣ ଦେଲେ । ରାଣୀ ତାଙ୍କ ସହ ଆଇନ୍-କାନୁନ୍ ବିଷୟରେ ବିଚାର ବିମର୍ଶ କରିବାକୁ ଚାହୁଁଥିଲେ । ପରଦା ଆଢୁଆଳରେ ଥାଇ ଝାନ୍ସୀକୁ ଅଧିକୃତ କରିବା ସଂପର୍କରେ ଆଇନ୍‌ଗତ ଦିଗ ବିଷୟରେ ରାଣୀ ନିଜେ ଜନ୍ ଲେଙ୍ଗଙ୍କ ସହ କଥାବାର୍ତ୍ତା ହେଲେ । ତାଙ୍କୁ ଲେଙ୍ଗ୍ ପରାମର୍ଶ ଦେଲେ ଯେ ସେ ସିଧାସଳଖ ଲଣ୍ଡନରେ ଥିବା କମ୍ପାନୀର ବୋର୍ଡ଼ ଅଫ୍ ଡାଇରେକ୍ଟରଙ୍କୁ ଅପିଲ୍ କରନ୍ତୁ ଓ ଏପର୍ଯ୍ୟନ୍ତ ରାଣୀ ମାସିକ ଭତ୍ତା ସ୍ୱୀକାର କରି ନ ଥିଲେ ତାକୁ ତୁରନ୍ତ ନେବା ଆରମ୍ଭ କରନ୍ତୁ ।

ରାଣୀଙ୍କ ଓକିଲଭାବେ ସେ ଏକ ଆବେଦନପତ୍ର ପ୍ରସ୍ତୁତ କରି ରାଣୀଙ୍କୁ ଦେଲେ । ସେହି ପତ୍ରକୁ ରାଣୀ ୮ ଜୁନ ୧୮୫୪ରେ ଗଭର୍ଣ୍ଣର ଜେନେରାଲଙ୍କ ପାଖକୁ ପଠାଇଦେଲେ । ସେହି ପ୍ରାର୍ଥନାପତ୍ରରେ କାଶ୍ମୀରୀମଲ ନାମକ ଏକ ବ୍ୟକ୍ତି ରାଣୀଙ୍କ ପ୍ରତିନିଧି ହିସାବରେ ଦସ୍ତଖତ କଲେ । ତା ପରଦିନ ହିଁ ଅର୍ଥାତ୍ ୯ ଜୁନ୍ ୧୮୫୪ ଦିନ ଗଭର୍ଣ୍ଣର ଜେନେରାଲ ସେହି ପ୍ରାର୍ଥନାପତ୍ର ଉପରେ ନିଜର ନାସ୍ତିସୂଚକ ଉତ୍ତର ପଠାଇଦେଲେ । 'ପୂର୍ବ ନିର୍ଣ୍ଣୟକୁ ବଦଳାଇବା ପାଇଁ କିଛି ବଳିଷ୍ଠ ଯୁକ୍ତି ଏହି ପ୍ରାର୍ଥନାପତ୍ରରେ ଦିଆଯାଇ ନାହିଁ ।' ନାମଞ୍ଜୁର କରିବାର ଏହି କାରଣ ଜଣାଇ ଦିଆଗଲା ।

ରାଣୀ ଲକ୍ଷ୍ମୀବାଈ ଆଉ ଏକ ନିବେଦନ ପତ୍ର ଗଭର୍ଣ୍ଣର ଜେନେରାଲଙ୍କୁ ପ୍ରେରିତ କରିବାପାଇଁ କାଶ୍ମୀରୀମଲଙ୍କ ପାଖକୁ ପଠାଇଦେଲେ । କାଶ୍ମୀରୀମଲ ସେତେବେଳେ କଲିକତାରେ ହିଁ ଥିଲେ । ୧୯ ଜୁଲାଇ ୧୮୫୪ରେ ନିଜ ପ୍ରାର୍ଥନାପତ୍ରରେ ରାଣୀ ଏକ ନୂଆ ଦିଗ ଦର୍ଶାଇଲେ । ଯୁକ୍ତି ଏହି ପ୍ରକାର ଥିଲା କି ସରକାରୀ ନିୟମ ଅନୁସାରେ ଫାଲ୍ତୁ ଚର୍ଚ୍ଚା ପାଇଁ ମଧ୍ୟ ସମ୍ବନ୍ଧିତ ବ୍ୟକ୍ତିର ଉପସ୍ଥିତି ଜରୁରି ମାତ୍ର ମୋ କ୍ଷେତ୍ରରେ ଏହି ନିୟମରେ ବ୍ୟତିକ୍ରମ କରାଯାଇଛି । ମୋ ରାଜ୍ୟକୁ ଅଧିକୃତ କରିବା ସଂପର୍କରେ ଅତି ମହତ୍ତ୍ୱପୂର୍ଣ୍ଣ ବିଚାର ବିନିମୟ ସମୟରେ ରାଣୀଙ୍କର କୌଣସି 'ଏଜେଣ୍ଟ', 'ପ୍ରତିନିଧି', 'ଅଧିକାରୀ' ଉପସ୍ଥିତ ନ ଥିଲେ । ଆମ ପକ୍ଷକୁ କିଛି କହିବାକୁ ସୁଯୋଗ ନ ଦିଆଯାଇ

ଏକତରଫା ନିର୍ଣ୍ଣୟ କିପରି ନିଆଗଲା ? ଯେଉଁ ଆଧାରରେ ରାଜ୍ୟ ଅଧିକୃତ କରିବାର ନିର୍ଣ୍ଣୟ ନିଆଗଲା ସେ ସବୁର କାଗଜପତ୍ର ରାଣୀ ମାଗିଲେ ଓ କହିଲେ ଆମ ପକ୍ଷରୁ କହିବା ପାଇଁ ଆମର ପ୍ରତିନିଧିଙ୍କୁ ଥରେ ସୁଯୋଗ ଦିଆଯିବା ଉଚିତ । ଶେଷରେ ସେ ଲେଖିଲେ ଯେ ଗଙ୍ଗାଧର ରାଓଙ୍କୁ ବି ରାଜ୍ୟ ଉପରେ ଥିବା ତାଙ୍କ ଅଧିକାରକୁ ଥରେ ନାମଞ୍ଜୁର କରି ଦିଆଯାଇଥିଲା । କିନ୍ତୁ ପରେ କମିଶନର ପୁଣି ସେ ଅଧିକାର ଗଙ୍ଗାଧର ରାଓଙ୍କୁ ଫେରାଇ ଦେଇଥିଲେ । ସେହି ଆଧାରରେ ରାଣୀଙ୍କ ପ୍ରାର୍ଥନାପତ୍ର ଉପରେ ପୁନଃବିଚାର କରାଯାଉ । ତାଙ୍କୁ ମିଳିଥିବା ଅଧିକାର ଆଉ ଥରେ ଯାଞ୍ଚ କରାଯାଉ ଓ ଝାନ୍ସୀ ତାଙ୍କୁ ଫେରାଇ ଦିଆଯାଉ ତଥା ପୋଷ୍ୟପୁତ୍ର ଅଧିକାରକୁ ବି ସ୍ୱୀକାର କରାଯାଉ ।

କିନ୍ତୁ ଏ ସବୁ ପ୍ରାର୍ଥନାପତ୍ର ପାଇଲା ପରେ କୌଣସି ଫଳ ହେଲା ନାହିଁ । ଝାନ୍ସୀ ବ୍ରିଟିଶ୍ ଅଧୀନସ୍ଥ ହେବ ସେହି ନିର୍ଣ୍ଣୟ ଅପରିବର୍ତ୍ତନୀୟ ରହିଲା । ହିନ୍ଦୁସ୍ଥାନରେ ଥିବା କମ୍ପାନୀ ସରକାର କିଛି ବି ଶୁଣିବାକୁ ପ୍ରସ୍ତୁତ ନ ଥିଲା । ସେଥିପାଇଁ ରାଣୀ ଲକ୍ଷ୍ମୀବାଈ ସିଧା ଲଣ୍ଡନସ୍ଥିତ ଇଷ୍ଟଇଣ୍ଡିଆ କମ୍ପାନୀର ବୋର୍ଡ଼ ଅଫ୍ ଡାଇରେକ୍ଟର୍ସଙ୍କୁ ୨୧ ଡିସେମ୍ବର ୧୮୫୪ ଦିନ ଏକ ନୂଆ ଦରଖାସ୍ତ ପଠାଇଲେ । ସେଥିରେ ସେ ଝାନ୍ସୀ ରାଜ୍ୟ ଓ କଂପାନୀ ସରକାର ମଧ୍ୟରେ ଥିବା ପାଞ୍ଚବର୍ଷର ଗଭୀର ମିତ୍ରତା, ପରସ୍ପର ବିଶ୍ୱାସ ଉପରେ ଆଧାରିତ ମଧୁର ସଂବଧ, ପୋଷ୍ୟ ଗ୍ରହଣର ଧାର୍ମିକ ସଂସ୍କାର ସମୟରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ଉପସ୍ଥିତି, କଂପାନୀ ସରକାରଙ୍କର ଦୁଇ ପ୍ରତିନିଧିଙ୍କର ମଧ୍ୟ ଉପସ୍ଥିତି, ପ୍ରଜାମାନଙ୍କର ନିଜ ରାଜା ରାଣୀଙ୍କ ପ୍ରତି ଅପାର ପ୍ରେମ, ବିଶ୍ୱାସ ଓ ନିଷ୍ଠା ଆଦି ବିଷୟକୁ ସ୍ପଷ୍ଟ ଓ ବିସ୍ତୃତ ଭାବରେ ଲେଖିକରି ପଠାଇଲେ । ଝାନ୍ସୀ ରାଜ୍ୟ ଓ କଂପାନୀ ସରକାର ମଧ୍ୟରେ ଆର୍ଥିକ ବ୍ୟବହାର, ଋଣ, ଝାନ୍ସୀ ଦ୍ୱାରା କରାଯାଇଥିବା ଋଣ ପରିଶୋଧ, ଆର୍ଥିକ ସାହାଯ୍ୟ ଏ ସବୁର ବିସ୍ତୃତ ବିବରଣୀ ମଧ୍ୟ ଉପସ୍ଥାପନ କଲେ । କଂପାନୀ ସରକାର ସମୟ-ସମୟରେ ଅନ୍ୟ ରାଜ୍ୟକୁ ମଞ୍ଜୁର କରିଥିବା ପୋଷ୍ୟପୁତ୍ର ଅଧିକାର ବିଷୟରେ ମଧ୍ୟ ଉଲ୍ଲେଖ କଲେ ।

ଏହି ପ୍ରାର୍ଥନାପତ୍ରରେ ଲକ୍ଷ୍ମୀବାଈ ଯେଉଁ ମହତ୍ତ୍ୱପୂର୍ଣ୍ଣ ବିଷୟଗୁଡ଼ିକୁ ଅତି ଆଗ୍ରହରେ ଉଲ୍ଲେଖ କରିଥିଲେ, ତାହା ଏହିପରି-

୧. ଝାନ୍ସୀ ରାଜ୍ୟର ପ୍ରଶାସନ ପ୍ରଥମରୁ ଆଜିପର୍ଯ୍ୟନ୍ତ ସ୍ୱାୟତ୍ତ ଓ ସ୍ୱତନ୍ତ୍ର ରହିଆସିଛି, ଅଛି ବି । କମ୍ପାନୀ ସରକାରଙ୍କର ଝାନ୍ସୀ ରାଜ୍ୟ ଉପରେ, ସମ୍ପତ୍ତି ଉପରେ, ଜନପଦ ଉପରେ, କୌଣସି ପ୍ରକାରର ଆଧିପତ୍ୟ କେବେବି ନ ଥିଲା, ଆଜି ବି ନାହିଁ ।

୨. ଝାନ୍ସୀର ସ୍ୱାୟତ୍ତ, ସ୍ୱତନ୍ତ୍ରତା ଇଂରେଜ ସରକାରଙ୍କୁ ଭିକ୍ଷା ଅଥବା ସନ୍ଧି ଅନୁସାରେ ଝାନ୍ସୀକୁ ମିଳି ନାହିଁ । ଆମେ ଏହାକୁ କେବେ ନିଜ କର୍ତ୍ତବ୍ୟରେ ଅବହେଳା

କରି, ଯୁଦ୍ଧରେ ହାରି ତଥା ଅନ୍ୟ କାରଣରୁ ଏହାକୁ ହରାଇ ନାହୁଁ । ପୂର୍ବ ପରମ୍ପରା ଅନୁସାରେ ଝାନ୍ସୀ ଆମର ।

୩. ଗଙ୍ଗାଧର ରାଓଙ୍କ ମୃତ୍ୟୁ ହୋଇଯିବା କାରଣରୁ ଝାନ୍ସୀ ରାଜ୍ୟ କମ୍ପାନୀ ସରକାରଙ୍କର ହୋଇଗଲା । ଏମିତି କୋଉଠି ହୁଏ ନାହିଁ, କାରଣ ରାଜାଙ୍କ ପିତା ସୁବେଦାର ଶିବରାମ ରାଓଙ୍କ ଭାଇମାନଙ୍କ ବଂଶରୁ ହିଁ ଏକ ପୁଅ ରାଜ୍ୟର ଆଇନତଃ ଉତ୍ତରାଧିକାରୀ ।

୪. ଏହି ଉତ୍ତରାଧିକାରୀଟିର ପୋଷ୍ୟପୁତ୍ର ଗ୍ରହଣ ସଂସ୍କାର ସମୟରେ ହିନ୍ଦୁସ୍ଥାନ ସରକାର କୌଣସି ଆପତ୍ତି ଉଠାଇ ନାହାନ୍ତି । କିନ୍ତୁ ପୋଷ୍ୟପୁତ୍ର ବିଧାନର ପରିଣାମସ୍ୱରୂପ ଉତ୍ତରାଧିକାରୀ ଅଧିକାରକୁ ସ୍ୱୀକାର କରିବାପାଇଁ ସରକାର କାହିଁକି ପଛଘୁଞ୍ଚା ଦେଉଛନ୍ତି ।

ଲକ୍ଷ୍ମୀବାଈ ପ୍ରତ୍ୟେକ ବିଷୟ ସଂପର୍କରେ ବିସ୍ତାରପୂର୍ବକ ନିଜର ରାୟ ଓ ବିଚାର ସ୍ପଷ୍ଟ ଭାବରେ ଉପସ୍ଥାପନ କଲେ । କମ୍ପାନୀ ସରକାରଙ୍କ ନିର୍ଣ୍ଣୟ କିପରି ଭୁଲ୍, ବେ-ଆଇନ୍, ଅନୈତିକ ଓ ଅନ୍ୟାୟ ଏସବୁ ନିଜର ତର୍କବୁଦ୍ଧି ଆଧାରରେ ପ୍ରମାଣିତ କରିବାକୁ ସଂପୂର୍ଣ୍ଣ ଚେଷ୍ଟା କଲେ । କିନ୍ତୁ କମ୍ପାନୀ ସରକାର ବୁଝାମଣାର ଆଶ୍ୱାସନା ଦେବାର, ସହାୟତାର, ମିତ୍ରତାର, ନୈତିକତାର, ଆଇନ୍-କାନୁନ୍‌ର କୌଣସି କଥା ବିଚାରକୁ ନେଲେ ନାହିଁ ବା ଏସବୁ କଥାକୁ ଗୁରୁତ୍ୱ ଦେଲେ ନାହିଁ । ଝାନ୍ସୀ ରାଜ୍ୟକୁ ଅଧିକୃତ କରିବାର ନିର୍ଣ୍ଣୟକୁ ପୂରାପୂରି ପାଳନ କରାଗଲା । ରାଣୀଙ୍କୁ ଦୁର୍ଗର ନିଜ ରାଜକୀୟ ଥାଟ-ବାଟ ଛାଡ଼ି ସହରର ରାଜମହଲରେ ସବୁଦିନ ପାଇଁ ଆସି ରହିବାକୁ ପଡ଼ିଲା । ବିବଶତା କାରଣରୁ ରାଣୀ ଆସିଲେ, ମାତ୍ର ଏହି ଆଘାତକୁ ସେ ଆଦୌ ସହ୍ୟ କରିପାରିଲେ ନାହିଁ । କଂପାନୀ ସରକାର କଥାକୁ ଏଇଠି ଶେଷ କଲେ ନାହିଁ । ବରଂ ଏବେ ରାଣୀ ଲକ୍ଷ୍ମୀବାଈଙ୍କୁ ଅପମାନିତ କରିବାର ଏକ ନୂଆ ଶୃଙ୍ଖଳା ଆରମ୍ଭ କରିଦେଲେ ।

## ଅପମାନର ଶୃଙ୍ଖଳା

ରାଣୀ ଲକ୍ଷ୍ମୀବାଈ ଅଳ୍ପବୟସ୍କ ଦାମୋଦର ରାଓର ଆଇନତଃ ଅଭିଭାବକ ଥିଲେ । ତେବେବି ରାଜାଙ୍କ ନିଜ ସମ୍ପତ୍ତି ଉପରେ ଅଧିକାର ମିଳିବା ସତ୍ତ୍ୱେ ବି ତା'ର ଦେଖାରଖା କରିବା ବଦଳରେ କଂପାନୀ ସରକାର ରାଣୀଙ୍କୁ ଜାମିନ ଦେବାପାଇଁ କହିଲେ । ବ୍ୟକ୍ତିଗତ ଭାବରେ ଜାମିନପତ୍ର ଲେଖିଦେବା ପାଇଁ କହିଲେ । ଏଭଳି ସର୍ତ୍ତ ମାନିବା ରାଣୀଙ୍କ ପ୍ରତିଷ୍ଠାର ବିପରୀତ ଥିଲା । ତାଙ୍କ ଦୃଷ୍ଟିରେ ଏଭଳି ସର୍ତ୍ତ ଅପମାନଜନକ ଥିଲା ଓ ତାଙ୍କ ପ୍ରତି ଅବିଶ୍ୱାସ ବ୍ୟକ୍ତ କରୁଥିଲା । ଏଭଳି ସର୍ତ୍ତରେ ସମ୍ପତ୍ତିର ଦାୟିତ୍ୱ ସମ୍ଭାଳିବାକୁ ରାଣୀ ତୁରନ୍ତ ମନା କରିଦେଲେ । ଶେଷରେ ଦାମୋଦର ରାଓଙ୍କ ଅଭିଭାବକରୂପେ ରାଜ୍ୟ କରିଥିବା ଋଣ ଭାରର ଦାୟିତ୍ୱ ନେବାପାଇଁ ରାଣୀ କଥା ଦେବାରୁ ତାଙ୍କ ନିଜ ସମ୍ପତ୍ତିର ଅଧିକାର ତାଙ୍କୁ ହସ୍ତାନ୍ତର କରାଗଲା ।

ତା'ପରେ ତୁରନ୍ତ ଋଣ ବିଷୟ ଉଠାଗଲା । କଂପାନୀ ସରକାର ଝାନ୍ସୀ ରାଜ୍ୟ ଉପରେ ଛତିଶ ହଜାର ଟଙ୍କା ଋଣ ଅଛି ବୋଲି ଦାବି କଲେ । ଝାନ୍ସୀର ସୁପରିଣ୍ଟେଣ୍ଡେଣ୍ଟ କ୍ୟାପ୍ଟେନ ସ୍କୀନ୍ ରାଣୀଙ୍କ ଦରମାରୁ ଋଣ ପଇସା କଟାହୋଇ ଶୁଝାହେବାର ପ୍ରସ୍ତାବ ଦେଇ ଏକ ବାଟ ଦେଖାଇଲେ । ବିଭାଗୀୟ କମିଶନର ଇକ୍‌ସିନ ମଧ୍ୟ ଏହାହିଁ କହିଲେ, ଝାନ୍ସୀର ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ଗାର୍ଡ଼ନଙ୍କ ଅନୁସାରେ ଏହା ରାଜାଙ୍କର ବ୍ୟକ୍ତିଗତ ଋଣ ନୁହେଁ । ରାଜ୍ୟର ଶାସନ ବ୍ୟବସ୍ଥା ପାଇଁ କରାଯାଇଥିବା ଋଣ । ଏହା ବହୁତ ଦିନ ତଳର ପୁରୁଣା କଥା । ଏଥିପାଇଁ ଏହି ଋଣ ପରିଶୋଧ କରିବାର ଦାୟିତ୍ୱ କଂପାନୀ ସରକାରଙ୍କର । ଯେହେତୁ ଏବେ କଂପାନୀ ସରକାର ରାଜ୍ୟର ମାଲିକ ତେଣୁ ସେ ଚାହିଁଲେ ଏହି ଋଣ ମାଫ୍ ବି କରିଦେଇପାରିବେ । କିନ୍ତୁ ଆଦାୟ ସେକ୍ରେଟାରୀ ହେମଣ୍ଡଙ୍କ କହିବା ଅନୁସାରେ ଏହି ଋଣକୁ ରାଣୀ କରିଥିବା ବ୍ୟକ୍ତିଗତ ଋଣ ବୋଲି ମାନିବା କଥା । ନିଜର ଋଣ ପରିଶୋଧ କରିଲା ପରେ ବି ଲକ୍ଷ୍ମୀବାଈଙ୍କୁ ମିଳିଥିବା ସମ୍ପତ୍ତି ବହୁତ ବଳିବ ।

କମ୍ପାନୀ ସରକାର ହେମଣ୍ଡଙ୍କ କଥା ମାନିନେଲେ । ସବୁ ପଇସା ଏକାଥରକରେ ନ କାଟି ପ୍ରତି ମାସ ତାଙ୍କ ଦରମାରୁ କିଛି କିଛି କଟା ହେବ ବୋଲି ନିର୍ଣ୍ଣୟ ନେଇ ରାଣୀଙ୍କୁ ରିହାତି ଦିଆଗଲା । କର୍ଣ୍ଣଲ୍ ମେଲ୍ସନ ତାଙ୍କ ପୁସ୍ତକ 'History of the Indian Mutiny of 1857-58'ରେ ଲେଖିଛନ୍ତି ଯେ ସରକାର ଏଭଳି ଆଚରଣ କରି ଇଂରେଜ ସରକାର ରାଣୀଙ୍କୁ ଅପମାନ ତ କଲେ, ତା'ସହ ନିଜ ମନର କ୍ଷୁଦ୍ରତା, ହୀନଭାବ ବି ପ୍ରଦର୍ଶିତ କରିଦେଲେ ।

ଝାନ୍ସୀର ପ୍ରଶାସନ ସମ୍ଭାଳିବା ପରେ ହିଁ କଂପାନୀ ସରକାର ସେଠାରେ ପରମ୍ପରା ଅନୁସାରେ ଚଳିଆସୁଥିବା ଗୋ-ହତ୍ୟା ବିରୋଧୀ ଆଇନ୍ ହଟାଇଦେଲେ। ଏଥିରେ ଲକ୍ଷ୍ମୀବାଈ ଓ ଝାନ୍ସୀର ସବୁ ନାଗରିକମାନଙ୍କୁ ଗଭୀର ଆଘାତ ଲାଗିଲା । ୨୧ ଅଗଷ୍ଟ ୧୮୫୪ରେ ଲକ୍ଷ୍ମୀବାଈ ଏହି ସଂପର୍କରେ ସରକାରଙ୍କୁ ଏକ ପତ୍ର ଲେଖିଲେ ଯେ "ହିନ୍ଦୁ ଲୋକମାନଙ୍କର ଧାର୍ମିକ ଶ୍ରଦ୍ଧା ଓ ଗାଈ ପ୍ରତି ଥିବା ଭାବନାକୁ ସମ୍ମାନ ଦେବା ଉଚିତ । ରାଣୀଙ୍କର କୌଣସି ଦୋଷ ନ ଥାଇ ବି ସରକାର ଝାନ୍ସୀକୁ ଅଧିକାର କରିନେଲେ ଓ ଏବେ ତାଙ୍କର ଧାର୍ମିକ ଶ୍ରଦ୍ଧା ଓ ଧର୍ମଭାବନା ଉପରେ ପ୍ରହାର କରାଯାଉଛି । ଶେଷରେ ଯଦି ଗୋବଧ ବନ୍ଦ କରା ନ ଯାଏ ତା'ହେଲେ ତା'ର ପରିଣାମ ଭୟଙ୍କର ହେବ ।" ଏମିତି ଏକ ଚେତାବନୀ ଲକ୍ଷ୍ମୀବାଈ ଇଂରେଜମାନଙ୍କୁ ଦେଇଦେଲେ ।

ଏ ଭିତରେ ଝାନ୍ସୀ ସୈନିକ ଛାଉଣୀରେ ବିଭାଗୀୟ ଦୋକାନମାନଙ୍କରେ ଗୋ ମାଂସ ବିକ୍ରି ଆରମ୍ଭ ହୋଇଗଲା । ଏହାର ବିରୋଧରେ ବାର ରେଜିମେଣ୍ଟରେ କାର୍ଯ୍ୟରତ ହିନ୍ଦୁ ସିପାହିମାନେ ଆନ୍ଦୋଳନ ବି କଲେ । ସହରର ଦୋକାନମାନଙ୍କରେ ଗୋମାଂସ ବିକ୍ରି ହେଲା । ଏହା ବିରୋଧରେ ନାଗରିକମାନେ ଉଗ୍ର ଆନ୍ଦୋଳନ କଲେ । ସୁରୈୟା ଗୋପାଳଦାସ ଓ ଅନ୍ୟ ଧନୀ ପ୍ରତିଷ୍ଠିତ ବ୍ୟବସାୟୀ, ସାହୁକାର, ପ୍ରତିଷ୍ଠିତ ନାଗରିକମାନେ

୨୫ ସେପ୍ଟେମ୍ବରରେ ସରକାରଙ୍କୁ ପତ୍ର ଲେଖି ଏହି ଅପମାନଜନକ ଆଦେଶ ପ୍ରତ୍ୟାହାର କରିବାକୁ ଅନୁରୋଧ କଲେ । କିନ୍ତୁ କଂପାନୀ ସରକାରଙ୍କୁ ଏହି କଥା ପାଇଁ ଭୟ ହେଲା ଯେ ଯଦି ଆଦେଶ ପ୍ରତ୍ୟାହାର କରି ନିଆଯାଏ ତା' ହେଲେ ଲୋକମାନେ ଭାବିବେ ଯେ ସରକାର ଲୋକଙ୍କ କ୍ରୋଧ ଆଗରେ ନଇଁଗଲେ ଓ ରାଜ୍ୟ ପୁଣି ରାଣୀକୁ ଲେଉଟାଇ ଦେଇପାରନ୍ତି । ମେଜର ଇର୍ଭ୍ସନ ପ୍ରଥମେ କହିଲେ ଯେ ରାଜ୍ୟକୁ ଅଧିକାରକୁ ନେବାକ୍ଷଣି ଗୋବଧ କରିବାକୁ ଅନୁମତି ଦେବା ଆଦେଶ ଅନ୍ୟାୟକାରୀ । କିନ୍ତୁ କିଛିଦିନ ପରେ ସେ ନିଜର ବିଚାର ବଦଳେଇ ଦେଲେ । ଗୋହତ୍ୟା ବନ୍ଦ ଆଇନ୍ ଉଠି ସାରିଥିଲା ।

ଲୋକଙ୍କ ଧାର୍ମିକ ଭାବନା, ଶ୍ରଦ୍ଧା ଉପରେ ଆଘାତ କଲାପରି ଆଉ ଏକ ନିର୍ଣ୍ଣୟ ସରକାର ନେଲେ । ନେବାଳକର ବଂଶର କୁଳଦେବତା ମହାଲକ୍ଷ୍ମୀ । ତାଙ୍କ ମନ୍ଦିର ଏକ ବିରାଟ ପୋଖରୀ ମଝିଆମଝିରେ ତିଆରି ହୋଇଥିଲା । ରାଜା ଗଙ୍ଗାଧର ରାଓ ଏହି ମନ୍ଦିରର ସମସ୍ତ ଖର୍ଚ୍ଚ ପାଇଁ, ପୂଜାପାଠ ପାଇଁ, ପର୍ବପର୍ବାଣି ପାଇଁ, ଉତ୍ସବ ସମାରୋହ ପାଇଁ, ନବରାତ୍ର ଆଦି ପାଇଁ କୁଚାବ୍ଦୁର ଓ ଗ୍ୱଚା ମଛିୟା ନାମକ ଦୁଇଟି ଗାଁ ମନ୍ଦିରକୁ ଦାନ କରି ଦେଇଥିଲେ । ଏହି ଦୁଇଟି ଗାଁର ବାର୍ଷିକ ଆୟ ୪,୯୦୦ ଟଙ୍କା ଥିଲା । ଏଇ ଆୟକୁ ରାଜାଙ୍କ ଆଜ୍ଞା ଅନୁସାରେ କରମୁକ୍ତ କରି ଦିଆଯାଇଥିଲା । ମନ୍ଦିରର ସମସ୍ତ ବ୍ୟବସ୍ଥା ରାଜ୍ୟ ଅଧୀନରେ ଥିଲା । ରାଜାଙ୍କ ମୃତ୍ୟୁ ପରେ ରାଣୀ ଲକ୍ଷ୍ମୀବାଈ ମନ୍ଦିରର ଦେଖାରଖା ଭାର ନିଜେ ନେଲେ । ଗାର୍ଡ୍‌ନ ନିଜ ସୁପାରିସ କରିବା ସମୟରେ ଏ ବିଷୟରେ ମଧ୍ୟ ସୁପାରିସ କରିଥିଲେ କି ''ମନ୍ଦିରର ଦାୟିତ୍ୱ ପୂର୍ବ ଭଳି ରାଣୀଙ୍କ ପାଖରେ ରହିବାକୁ ଦିଆଯାଉ ଓ ଖର୍ଚ୍ଚ ପାଇଁ ଦାନ କରାଯାଇଥିବା ଗାଁର ବ୍ୟବସ୍ଥା ମଧ୍ୟ ପୂର୍ବଭଳି ରାଣୀଙ୍କ ପାଖରେ ରହିବାକୁ ଦିଆଯାଉ । ଏହି ଦୁଇଟି ଗାଁରୁ ହେଉଥିବା ସମସ୍ତ ଆୟ ମନ୍ଦିର ପାଇଁ ଖର୍ଚ୍ଚ କରାଯାଉ'' । କିନ୍ତୁ ଏ ସମ୍ବନ୍ଧରେ କର ଆଦାୟ ବିଭାଗ ନିଜ ସୁବିଧା ଅନୁସାରେ ତର୍କ ପ୍ରସ୍ତୁତ କଲା । ତାଙ୍କର କହିବା ଅନୁସାରେ ମହାଲକ୍ଷ୍ମୀ ମନ୍ଦିର ଏହି ଦୁଇ ଗାଁର ସୀମା ଭିତରେ ଆସୁ ନାହିଁ । ଏହି ମନ୍ଦିର ଝାନ୍‌ସୀ ସହର ସୀମା ଭିତରେ ଆସୁଥିବାର ରାଜାଙ୍କ ଦ୍ୱାରା ପ୍ରଦତ୍ତ ଦାନକୁ ଫେରାଇ ନେବାରେ କୌଣସି ଅସୁବିଧା ନାହିଁ । ଗାର୍ଡ୍‌ନଙ୍କୁ ଏହି ବିଚାର ଭଲ ଲାଗିଲା ନାହିଁ । ସେ ପୁଣି ସୁପାରିସ କଲେ । 'ଝାନ୍‌ସୀ ଓ ତା'ର ଆଖପାଖର ଛୋଟ ଛୋଟ ଗାଁରେ ଲୋକମାନେ, ରାଜବଂଶ ପାଇଁ ମଧ୍ୟ ସବୁବେଳେ ଏହି ମନ୍ଦିରକୁ ଦର୍ଶନ ପାଇଁ ଆସନ୍ତି । ମନ୍ଦିର ତରଫରୁ ଗରିବଙ୍କୁ ଓ ଭିକାରିଙ୍କୁ ଅନ୍ନଦାନ ବି ଦିଆଯାଏ । ଏହି ମନ୍ଦିର ଝାନ୍‌ସୀର ପ୍ରତିଷ୍ଠା ଓ ଗରିମା ବଢ଼ାଉଛି । ଏଥିପାଇଁ ମନ୍ଦିର ପାଇଁ ଦାନ ଦିଆଯାଇଥିବା ଏହି ଗାଁ ଦୁଇଟିକୁ ଅଧିକାର କରା ନ ଯାଉ । କିନ୍ତୁ ଏଥର ମଧ୍ୟ ପ୍ରଥମଥର ଭଳି ହେମଣ୍ଡଙ୍କ ବିଚାର ଭିନ୍ନ ଥିଲା । ତାଙ୍କ କହିବା ଅନୁସାରେ ଦାନ ସୂତ୍ରରେ ଦିଆଯାଇଥିବା ଏହି ଗାଁ ଦୁଇଟି ରାଜାଙ୍କ ବ୍ୟକ୍ତିଗତ ସମ୍ପତ୍ତି ନ ହୋଇଥିବା କାରଣରୁ ତାକୁ ଦାନ କରିଦେବା ପାଇଁ ରାଜାଙ୍କର କୌଣସି ଅଧିକାର ନ ଥିଲା । ଏଥିପାଇଁ ଏହି ଗାଁ ଦୁଇଟିକୁ ଇଂରେଜ

ଅଧିକାରକୁ ନେବାରେ କୌଣସି ଅସୁବିଧା ନାହିଁ । ହେମଣ୍ଡ ସେଇଭଳି ଆଦେଶ ମଧ୍ଯ ତୁରନ୍ତ ଦେଇଦେଲେ । ତା' ସହ ମନ୍ଦିରର ଖର୍ଚ୍ଚ ପାଇଁ ରାଣୀଙ୍କ ଦରମାରେ ବଞ୍ଚିଥିବାପର୍ଯ୍ୟନ୍ତ ବାର୍ଷିକ ସାତଶହ ଟଙ୍କା ବଢ଼ାଇଦେଲେ । ଇର୍କସନ ଏହି ଟଙ୍କା ବଢ଼ାଇଦେଇ ବାର୍ଷିକ ଏକ ହଜାର କରି ଦେବାପାଇଁ ନିଷ୍ପତ୍ତି ନେଲେ । ଶେଷରେ ଲେଫ୍ଟନାଣ୍ଟ ଗଭର୍ଣ୍ଣର କ୍ୱଚାବବୁର ଓ ଗୃଚା-ମଛିୟା ଏହି ଦୁଇଟି ଗାଁକୁ ଇଂରେଜ ଅଧୀନକୁ ନେଇ ନେଲେ । ତା' ବଦଳରେ ରାଣୀଙ୍କ ଆଜୀବନ, ମନ୍ଦିର ଖର୍ଚ୍ଚ ପାଇଁ ବାର୍ଷିକ ଏକହଜାର ଟଙ୍କା ଅଧିକ ଦେବାପାଇଁ ମଧ୍ଯ ନିର୍ଣ୍ଣୟ ନେଲେ । ଏହାର ଅର୍ଥ ହେଲା ସରକାର ଅପମାନ ତ କଲେ, ତା' ସହ ଦୁଇଟି ଗାଁର ଆୟ ୪,୯୦୦ ଟଙ୍କା ଯାହା ମନ୍ଦିର ପାଇଁ ଖର୍ଚ୍ଚ ହେଉଥିଲା, ତାକୁ କମାଇ ଏକହଜାର ଟଙ୍କା କରି ଦେଇଥିଲେ ।

ରାଜା ଗଙ୍ଗାଧର ରାଓଙ୍କ ଅନ୍ତିମ ସଂସ୍କାର ଯେଉଁ ପୁରୋହିତମାନେ କରିଥିଲେ, ସେମାନଙ୍କୁ ରାଣୀ ଦକ୍ଷିଣା ଭାବେ ଶହେ ବିଘା ଚାଷଜମି ଦାନ କରି ଦେଇଥିଲେ । ତା'ର ଆମଦାନୀକୁ ବି କରମୁକ୍ତ କରି ଦିଆଯାଇଥିଲା । ତା' ଛଡ଼ା ଅନ୍ୟ ଦୁଇଜଣ ପୁରୋହିତଙ୍କୁ ଜଣକା ୩ ବିଘା କରମୁକ୍ତ ଚାଷଜମି ଦାନ କରି ଦେଇଥିଲେ । ରାଣୀଙ୍କର ଇଚ୍ଛା ଥିଲା କି ଏହି ଭୂମିଦାନ ରାଜାଙ୍କ ଅନ୍ତିମ ସଂସ୍କାର ଧାର୍ମିକ କ୍ରିୟା କରିଥିବା ପୁରୋହିତଙ୍କୁ ଦିଆଯାଇଛି । ସେଥିପାଇଁ କମ୍ପାନୀ ସରକାର ତାକୁ ମାନ୍ୟତା ପ୍ରଦାନ କରୁ । ଗାର୍ଡ଼ନ ଏହି ଭୂମିଦାନକୁ ସ୍ୱୀକୃତି ଦେଇଥିଲେ । ସେ ସଂପର୍କରେ ସେ ନିଜର ବରିଷ୍ଠ ଅଧିକାରୀମାନଙ୍କୁ ମଧ୍ଯ ସୂଚିତ କରିଦେଇଥିଲେ । ଝାନ୍ସୀର ସୁପରିଣ୍ଟେଣ୍ଡେଣ୍ଟ ସ୍କୀନ କମିଶନରଙ୍କୁ ସୂଚିତ କରିଥିଲେ ଯେ ଯଦି ଏହି ଦାନସୂତ୍ରରେ ପାଇଥିବା ଜମିକୁ ସରକାର ପୁରୋହିତମାନଙ୍କଠାରୁ ଫେରାଇନେବେ ତ ତା' ବଦଳରେ ସେତିକି ମୂଲ୍ୟର ଅର୍ଥ ପୁରୋହିତମାନଙ୍କୁ ପ୍ରଦାନ କରିବା ଉଚିତ । କିନ୍ତୁ ଗାର୍ଡ଼ନ ଓ ସ୍କୀନ ଦୁଇଜଣଯାକଙ୍କର ରାୟ ଇର୍କସନଙ୍କର ପସନ୍ଦ ହେଲା ନାହିଁ । ରାଣୀଦ୍ୱାରା ଦାନ କରାଯାଇଥିବା ସମସ୍ତ ଚାଷଜମି ଓ ଗାଁକୁ ଅଧିକୃତ କରିବାକୁ ସେ ଆଦେଶ ଜାରି କରିଦେଲେ । ଏପରି ଆଦେଶ ସପକ୍ଷରେ ସେ କହିଲେ ଯେ, ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ରାଜାଙ୍କ ମୃତ୍ୟୁ ପରେ ତାଙ୍କ ବିଧବା ପତ୍ନୀର, ମୃତ ପତିର ସମ୍ପତ୍ତି ଉପରେ କୌଣସି ଅଧିକାର ରହେ ନାହିଁ । ସେଥିପାଇଁ ରାଣୀଙ୍କୁ ରାଜ୍ୟ ଅଧୀନରେ ଥିବା ଜମି ଦାନ କରିବାର କୌଣସି ଅଧିକାର ନାହିଁ ।

ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ପୋଷ୍ୟପୁତ୍ରର ଉତ୍ତରାଧିକାର ସୂତ୍ରରେ ରାଜ୍ୟ ଉପରେ ଅଧିକାର ରହେ । ତାହା ସରକାର ସ୍ୱୀକାର କଲେ ନାହିଁ । ସେଥିପାଇଁ କଂପାନୀ ସରକାର ବିଭିନ୍ନ କାରଣ ଦର୍ଶାଇଲେ । କାରଣ ସେଥିରେ ସରକାରଙ୍କର ଅସୁବିଧା ହେଉଥିଲା । କିନ୍ତୁ ଯେଉଁଠି ସରକାର ନିଜର ସୁବିଧା ଦେଖିଲେ, ସେଠାରେ ନିଶ୍ଚିତ ହିନ୍ଦୁ ଧର୍ମଶାସ୍ତ୍ରର ସାହାରା ନେଲେ ।

ସରକାରଙ୍କର ଏଭଳି ନିର୍ଣ୍ଣୟ ଫଳରେ ରାଣୀ ଲକ୍ଷ୍ମୀବାଈ ବିଚଳିତ ହୋଇଗଲେ । ସେ ନିଜ ପତିଙ୍କ ଅନ୍ତିମ ସଂସ୍କାର ସମୟରେ ଏହି ଭୂମି ଦାନ ଦେଇଥିଲେ । ଏହା ସହ ତାଙ୍କର ଭାବନାତ୍ମକ ସଂପର୍କ ଥିଲା । କେବଳ ସେତିକି ନୁହେଁ ତା' ସହ ତାଙ୍କ ରାଜ୍ୟର ପ୍ରତିଷ୍ଠା ଓ ମାନସମ୍ମାନ ମଧ୍ୟ ନିର୍ଭର କରୁଥିଲା ।

ବିବାହ ସମୟରେ ଗଙ୍ଗାଧର ରାଓ ରାଜବଂଶର ପରମ୍ପରା ଅନୁସାରେ ନିଜର ନବବିବାହିତା ପତ୍ନୀଙ୍କୁ ତାଙ୍କ ନିଜ ଖର୍ଚ୍ଚ ପାଇଁ ଉପହାରରୂପେ କିଛି ଚାଷଜମି ଓ ଫଳବଗିଚା ଭେଟି ଦେଇଥିଲେ । ଜମି ଓ ବଗିଚା କିଛି ସହର ଭିତରେ ଓ କିଛି ବାହାରେ ଥିଲା । ଏ ସମସ୍ତ ସମ୍ପତ୍ତି କରମୁକ୍ତ ଥିଲା । ପିଚୋର ଗାଁର ଏକ ଫଳବଗିଚାକୁ ଛାଡ଼ି, କଂପାନୀ ସରକାର ରାଣୀଙ୍କ ଅଧିକାରରେ ଥିବା ସମସ୍ତ ଚାଷଜମି, ଫଳବଗିଚା, ଫୁଲବଗିଚା ଜବତ କରିନେଲେ । ଲକ୍ଷ୍ମୀବାଈ ଏହା ଫଳରେ ବହୁତ ବିରକ୍ତ ହେଲେ । ସରକାର ତାଙ୍କର ସ୍ତ୍ରୀ ଧନ ବି ଛଡ଼ାଇ ନେଲା । ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ଏହି ଅଧିକାର ସ୍ତ୍ରୀର ପତିକୁ ବି ମିଳେ ନାହିଁ । କିନ୍ତୁ ଲକ୍ଷ୍ମୀବାଈ ସଂପୂର୍ଣ୍ଣ ନିରୁପାୟ ଥିଲେ । କିଛି କରିପାରିବାର ସ୍ଥିତିରେ ନ ଥିଲେ । କଂପାନୀ ସରକାର ରାଣୀଙ୍କ ସବୁ ଛୋଟ-ବଡ଼ ମାଲିକାନା ଥିବା ଅଧିକାର ଛଡ଼ାଇ ନେବାର, ତାଙ୍କ ସମ୍ମାନ ହାନି କରାଇବାର ଗୋଟିଏ ବି ମୌକା ହାତରୁ ଛାଡ଼ିଲେ ନାହିଁ ।

ରାଜ୍ୟକୁ ଯେତେବେଳେ ଅଧିକୃତ କରାଗଲା, ସେତେବେଳେ ରାଜାଙ୍କ ବ୍ୟକ୍ତିଗତ ଭଣ୍ଡାରରେ 'ଛ' ଲକ୍ଷ ନଗଦ ଟଙ୍କା ବଳିଥିଲା । ଏହି ଧନରାଶିକୁ ଦାମୋଦର ରାଓ ସାବାଳକ ହେବା ପର୍ଯ୍ୟନ୍ତ କଂପାନୀ ସରକାରଙ୍କ ମାର୍ଫତରେ ରଖା ଯାଇଥିଲା । ରାଣୀ ଦାମୋଦର ରାଓଙ୍କର ଉପନୟନ ସଂସ୍କାର କରିବାକୁ ସ୍ଥିର କଲେ । ଏହି ସଂସ୍କାର ରାଜକୀୟ ପ୍ରତିଷ୍ଠା ଅନୁସାରେ କରିବା ଅନିବାର୍ଯ୍ୟ ଥିଲା ସେଥିପାଇଁ ଲକ୍ଷ୍ମୀବାଈ ଖର୍ଚ୍ଚ ପାଇଁ ତାଙ୍କ ବ୍ୟକ୍ତିଗତ ଛଲକ୍ଷ ଟଙ୍କାରୁ ଏକଲକ୍ଷ ଟଙ୍କା ସରକାରଙ୍କୁ ମାଗିଲେ । ଲକ୍ଷ୍ମୀବାଈଙ୍କୁ ଅପମାନିତ କରିବାର ଆଉ ଏକ ମଉକା କମ୍ପାନୀ ସରକାର ହାତକୁ ଆସିଗଲା । ଦାମୋଦର ରାଓ ସାବାଳକ ହୋଇଗଲା ପରେ ଯଦି ପୂରା ଛ' ଲକ୍ଷ ଟଙ୍କା ମାଗେ ରାଣୀ ତାହା ଭରଣା କରିବେ । ଏମିତି ଏକ ଜାମିନପତ୍ର ଚାରିଜଣ ଲୋକ ସରକାରଙ୍କୁ ଲେଖି କରି ଦେଲେ ହିଁ ରାଣୀଙ୍କୁ ଏକ ଲକ୍ଷ ଟଙ୍କା ଦିଆଯିବ । ଏମିତି ଏକ ସର୍ତ୍ତ ସରକାର ରଖିଲେ । ନିଜ ପୁଅର ଉପନୟନ ପରି ଧାର୍ମିକ ସଂସ୍କାର କରିବାପାଇଁ ନିଜର ହିଁ ପଇସା ନେବାପାଇଁ ରାଣୀଙ୍କୁ ପରଲୋକ, ପରଧର୍ମୀ ସରକାର ପାଖରେ ହାତ ପତାଇବାକୁ ପଡୁଛି । ଏହା ଛଡ଼ା ଚାରିଜଣ ପ୍ରତିଷ୍ଠିତ ନାଗରିକଙ୍କ ହସ୍ତାକ୍ଷରଯୁକ୍ତ ଜାମିନପତ୍ର ବି ଦେବାକୁ ପଡୁଥିଲା । ଏ ସମସ୍ତ ଘଟଣା ବଡ଼ ଦୁଃଖଦ ଓ ଅପମାନଜନକ ଥିଲା । ପୁଣି ସ୍ୱୟଂ ମୋରୋପନ୍ତ ତାମ୍ବେ, ସେଠ ଲକ୍ଷ୍ମୀଚନ୍ଦ ଜୟପୁରବାଲା ଓ ଆଉ ଦୁଇଜଣ ପ୍ରତିଷ୍ଠିତ ବ୍ୟକ୍ତି ଜାମିନପତ୍ର ଲେଖି ସରକାରଙ୍କୁ

ଦେଲେ । ତେବେ ଯାଇ ଲକ୍ଷ୍ମୀବାଈଙ୍କୁ ସରକାରଙ୍କ ତରଫରୁ ଏକଲକ୍ଷ ଟଙ୍କା ମିଳିଲା ଓ ଦାମୋଦର ରାଓର ଉପନୟନ ସଂସ୍କାର କରାଗଲା ।

ଝାନ୍‌ସୀକୁ ଅଧିକୃତ କରିବାପାଇଁ ଡେଲହାଉସୀଙ୍କ ନିଷ୍ପତ୍ତିକୁ ଅନେକ ଇଂରେଜ ଅଧିକାରୀ, ଇତିହାସକାର ପସନ୍ଦ କରି ନ ଥିଲେ । ସେ ସଂପର୍କରେ ସେମାନେ ସ୍ପଷ୍ଟରୂପେ ନିଜର ବିଚାର ବ୍ୟକ୍ତ କରିଛନ୍ତି । ଝାନ୍‌ସୀକୁ ହଡ଼ପ କରିବାପାଇଁ, ପୋଷ୍ୟପୁତ୍ର ଅଧିକାର ଓ ଝାନ୍‌ସୀ ରାଜ୍ୟ ବ୍ରିଟିଶ୍ ସତ୍ତା ଅଧୀନରେ ହିଁ ରହିଛି । ଏହି ଭାବନା ଦୁଇଟି ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ ଥିଲା । ଇତିହାସକାର ଏଡ଼ୱିନ ଅନିଲ୍‌ଡ ପୋଷ୍ୟପୁତ୍ର ଗ୍ରହଣ ବିଷୟରେ କହିଛନ୍ତି ଯେ ''ହିନ୍ଦୁ ଧର୍ମରେ ପୋଷ୍ୟପୁତ୍ର ଗ୍ରହଣ କରିବା ନିଃସନ୍ତାନ ଲୋକମାନଙ୍କର କର୍ତ୍ତବ୍ୟ । ଏହାକୁ ପ୍ରତ୍ୟେକ ହିନ୍ଦୁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ ମାନନ୍ତି । ପୋଷ୍ୟଗ୍ରହଣର ଏକ ଧାର୍ମିକ ଉଦ୍ଦେଶ୍ୟ ରହିଛି ।''

ମେଜର ଇବାଂସ ବେଲ 'The Empire in India' ନାମକ ସ୍ୱରଚିତ ପୁସ୍ତକରେ ଲେଖିଛନ୍ତି ''ପିଲାକୁ ପୋଷ୍ୟ ଭାବରେ ଗ୍ରହଣ କରିବା ଅଧିକାର, ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ଉତ୍ତରାଧିକାର ଆଇନ୍‌ର ଏକ ମହତ୍ତ୍ୱପୂର୍ଣ୍ଣ ସିଦ୍ଧାନ୍ତ । ହିନ୍ଦୁ ସମାଜରେ ନିଃସନ୍ତାନ ବ୍ୟକ୍ତି ପୋଷ୍ୟସନ୍ତାନ ଗ୍ରହଣ କରିବା ଅଧିକାରକୁ ଅତ୍ୟନ୍ତ ପବିତ୍ର ଏକ ଧାର୍ମିକ କର୍ତ୍ତବ୍ୟର ଅଙ୍ଗ ବୋଲି ବିଶ୍ୱାସ କରାଯାଏ । ଏସବୁ ସତ୍ତ୍ୱେ ଡେଲହାଉସୀ ରାଣୀଙ୍କ ପୋଷ୍ୟସନ୍ତାନର ଉତ୍ତରାଧିକାରୀ ଅଧିକାରକୁ କେମିତି ଅବହେଳା କରିପାରିଲେ ।'' (ପୃ.୧୩୭)

ମେଜର ଇଂବାସ ବେଲ ଆହୁରି ବି କହିଛନ୍ତି ''ଝାନ୍‌ସୀ ଉପରେ କମ୍ପାନୀ ସରକାରର କୌଣସି ଅଧିକାର ନାହିଁ । କାରଣ ଝାନ୍‌ସୀ ଉପରେ ପେଶୱାମାନଙ୍କର ଅଧିକାର ଥିଲା । ପରେ ଝାନ୍‌ସୀ ଓ କମ୍ପାନୀ ସରକାରଙ୍କ ମଧ୍ୟରେ ଯେଉଁ ସଂପର୍କ ସ୍ଥାପିତ ହେଲା, ତାହା ସମାନ ସ୍ତରର, ପରସ୍ପର ମିତ୍ରତାପୂର୍ଣ୍ଣ ସଂପର୍କ କାରଣରୁ । ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ପୋଷ୍ୟପୁତ୍ର ହିଁ ଉତ୍ତରାଧିକାରୀ, ଏସବୁରେ କୌଣସି ପ୍ରକାରର ହସ୍ତକ୍ଷେପ କରିବାର ଅଧିକାର କଂପାନୀ ସରକାରଙ୍କର ନାହିଁ ।''

ବାରିଷ୍ଟର ଜନ ଲେଙ୍ଗ କହିଥିଲେ ''ଲର୍ଡ଼ ବେଣ୍ଟିଙ୍କ ଉଦାରତାପୂର୍ବକ 'ରାଜା' ଉପାଧି ଝାନ୍‌ସୀର ସୁବେଦାରଙ୍କୁ ପ୍ରଦାନ କରିଥିଲେ । ତା' ପୂର୍ବରୁ ଝାନ୍‌ସୀର ପ୍ରଶାସକ ପେଶୱାମାନଙ୍କର ଜାଗିରଦାର ଥିଲେ । ସେମାନେ 'ରାଜା' ପଦବୀ ସ୍ୱୀକାର କଲେ । ଏକ ରାଜ୍ୟର ମାନ୍ୟତା ଦେଲେ । କମ୍ପାନୀ ସରକାର ତାଙ୍କୁ ପେନ୍‌ସନ୍ ଦେଇ, ରାଜ୍ୟକୁ ନିଜେ ହଡ଼ପ କରିନେଲେ । ଜନ୍ ଲେଙ୍ଗ ଝାନ୍‌ସୀ ଅଧିକୃତ ହେବାର କୌଣସି ନା କୌଣସି କାରଣ ଖୋଜିଲେ । କିନ୍ତୁ ଇବାଂସ ବେଲ, ଏଡ଼ୱିନ୍ ଅରନୋଲ୍‌ଡଙ୍କ ପରି ଇଂରେଜମାନେ କମ୍ପାନୀ ସରକାରଙ୍କୁ ହିଁ ଦୋଷୀ ସାବ୍ୟସ୍ତ କଲେ ।

ରାଜ୍ୟ ଅଧିକୃତ କଲା ପରେ ଝାନ୍‌ସୀକୁ ଉତ୍ତର ସୀମାରେ ଥିବା ପ୍ରାନ୍ତ ସହ ଯୋଡ଼ି ଦିଆଗଲା । ରାଣୀ ଲକ୍ଷ୍ମୀବାଈଙ୍କୁ ଲାଗିଲା କି ଦୂରସ୍ଥ, ଉତ୍ତର ସୀମାର ଅଞ୍ଚଳ ସହ

ଯୋଡ଼ିବା ପରିବର୍ତ୍ତେ ଯଦି ମଧ୍ୟପ୍ରଦେଶ ସାଙ୍ଗରେ ଯୋଡ଼ି ଦିଆଯାଆନ୍ତା ତ ରାଣୀଙ୍କର ପ୍ରତିଷ୍ଠା, ମାନସମ୍ମାନ ସୁରକ୍ଷିତ ରହିପାରନ୍ତା । କାରଣ ଝାନ୍‌ସୀ ମଧ୍ୟ ପ୍ରଦେଶରେ ହିଁ ଥିଲା । ସେଥିପାଇଁ ଉତ୍ତର ଅଞ୍ଚଳ ବଦଳରେ ଝାନ୍‌ସୀ ମଧ୍ୟ ପ୍ରଦେଶ ସହ ଯୋଡ଼ାଯାଉ ବୋଲି ରାଣୀ ସରକାରଙ୍କୁ ନିବେଦନ କଲେ । ସରକାର ତାହା ମଧ୍ୟ ମାନିଲେ ନାହିଁ ।

ଏହି ପ୍ରକାର ଗୋଟିଏ ପରେ ଗୋଟିଏ ନକାରାତ୍ମକ ଉତ୍ତର ମିଳିବା କାରଣରୁ ରାଣୀ ବିଲ୍‌କୁଲ୍ ଅସହାୟ ଓ ଦୁଃଖୀ ହୋଇଗଲେ । ସେ ସେପ୍ଟେମ୍ବର ୧୮୫୫ରେ ସରକାରଙ୍କୁ ଆଉ ଏକ ପତ୍ର ଲେଖିଲେ, ସେଥିରେ ସେ ଲେଖିଥିଲେ ‘‘ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ତୀର୍ଥସ୍ଥାନ କାଶୀ ଯାଇ କିଛି ଧାର୍ମିକ ନୀତି ପାଳନ କରିବାକୁ ଭାବୁଛି ଓ ଶେଷ ଜୀବନ କାଶୀରେ ହିଁ ବିତାଇବାକୁ ଇଚ୍ଛା କରୁଛି । ଏଣୁ କାଶୀ ଯାଇ ସେଠାରେ ସ୍ଥାୟୀ ଭାବରେ ରହିବାକୁ ଅନୁମତି ପ୍ରଦାନ କରାଯାଉ ।’’

ଏକଥା ଶୁଣି ଇଂରେଜମାନେ ଏହି ପ୍ରତିକ୍ରିୟା ବ୍ୟକ୍ତ କଲେ ଯେ ଯଦି ରାଣୀ କାଶୀ ଯାଇ ସ୍ଥାୟୀ ଭାବରେ ରହିବାରେ ଲାଗିବେ ତା’ହେଲେ ସେ ତାଙ୍କର ଦରମାର ସବୁ ଟଙ୍କା ଯାହା ଝାନ୍‌ସୀରେ ଖର୍ଚ୍ଚ କରୁଛନ୍ତି, ଯାହାର ଲାଭ ଝାନ୍‌ସୀବାସୀଙ୍କୁ ମିଳୁଛି, ସେ ସବୁ ବନ୍ଦ ହୋଇଯିବ । ଲୋକମାନଙ୍କର କ୍ଷତି ହେବ । ସେତେବେଳର ସୁପରିଣ୍ଟେଣ୍ଡେଣ୍ଟ ସ୍କୀନ ଯେତେବେଳେ ତାଙ୍କୁ ଭେଟିବାକୁ ଯାଇଥିଲେ, ପର୍ଦ୍ଦା ଆଢୁଆଳରେ ବସିଥିବା ଲକ୍ଷ୍ମୀବାଈ ତାଙ୍କୁ କହିଲେ ‘‘ଯଦି କଂପାନୀ ସରକାର ରାଣୀଙ୍କର ପ୍ରତିଷ୍ଠା ଓ ସମ୍ମାନର ଧ୍ୟାନ ରଖିବ, ତାଙ୍କର ସବୁ ଅଧିକାର ସୁରକ୍ଷିତ ରଖିବ ତାହେଲେ ବର୍ତ୍ତମାନ ସ୍ଥିତିରେ ସେ ଏହି ସମାଧାନ କରିପାରିବେ ।’’ ତାଙ୍କର ଏମିତି କହିବାର ଅର୍ଥ ଥିଲା ଯେ, ରାଣୀ ବନାରସ ଯିବାପାଇଁ ଓ ସେଠାରେ ସ୍ଥାୟୀ ଭାବରେ ରହିବା ପାଇଁ ଇଚ୍ଛୁକ ନ ଥିଲେ । ସ୍କୀନ ଆହୁରି ବି କହିଛନ୍ତି ଯେ ଝାନ୍‌ସୀ ରାଜ୍ୟକୁ ଉତ୍ତର ସୀମା ସହ ଯୋଡ଼ିବା ବଦଳରେ ଯଦି ମଧ୍ୟ ପ୍ରଦେଶର ରାଜନୀତିକ ବିଭାଗ ସହ ଯୋଡ଼ାଯାଆନ୍ତା ସେମିତି ଇଚ୍ଛା ରାଣୀ ଲକ୍ଷ୍ମୀବାଈଙ୍କର ଥିଲା ।

ଝାନ୍‌ସୀକୁ ଯଦି ମଧ୍ୟ ପ୍ରଦେଶ ସହ ଯୋଡ଼ି ଦିଆଯିବ ତା’ ହେଲେ ଆଜି ନାହିଁ ତ କାଲି ଝାନ୍‌ସୀକୁ ପୁଣି ଥରେ ଫେରି ପାଇବାକୁ ସୁବିଧା ହେବ । ଏମିତି ଆଶା ତାଙ୍କର ଓ ତାଙ୍କ ପରାମର୍ଶଦାତାମାନଙ୍କର ଥିଲା । ଝାନ୍‌ସୀ ଫେରିପାଇବେ ଏମିତି ଏକ ଗୁଜବ ବହୁତବର୍ଷ ଯାଏ ପ୍ରଚାରିତ ହେଲା । (ସୁମନ ତାମ୍ବେ, ଝାନ୍‌ସୀ କୀ ରାନୀ ପୃଷ୍ଠା ୭୭-୭୯)

ସବୁପ୍ରକାର ଅପମାନ ଓ ନକାରାତ୍ମକତାକୁ ମନରେ ଆତ୍ମସାତ୍ କରି ରାଣୀ ଏକ ହିନ୍ଦୁ ବ୍ରାହ୍ମଣ ବିଧବା ପରି ଜୀବନ ବିତାଉଥିଲେ । ପୂଜା-ପାଠ ଜପ-ତପ ଓ ଦାମୋଦର ରାଓଙ୍କ ପାଳନ-ପୋଷଣରେ, ତାଙ୍କୁ ପଢ଼ାଇବାରେ ସେ ନିଜର ଦିନ ବିତାଇବାରେ ଲାଗିଲେ । ଗାଁଗହଳିରୁ ଆସୁଥିବା ଲୋକମାନଙ୍କୁ ରାଣୀ କେବେ ମହଲର ଦରବାରରେ, କେବେ ଚିକ ଆଢୁଆଳରେ ବସି ସାକ୍ଷାତ୍ କରୁଥିଲେ । ତରବାରି ଚାଳନା, କୁସ୍ତି, ଘୋଡ଼ାଚଢ଼ା

ଆଦିର ଅଭ୍ୟାସ ବନ୍ଦ ହୋଇ ଯାଇଥିଲା । କାରଣ ଏ ରାଜମହଲରେ ଏସବୁ କରିବାପାଇଁ ଏତେ ଜାଗା ନ ଥିଲା । ଏହି ରାଜମହଲକୁ ଲୋକେ ପରେ ରାଣୀମହଲ ବୋଲି କହିବାରେ ଲାଗିଲେ । ସେଠିକାର ଜୀବନ ଅନେକ କଷ୍ଟଦାୟକ ଥିଲା । ରାଜ୍ୟ ହଡ଼ପ କଲା ପରେ ଇଂରେଜମାନେ ସବୁ ସୈନିକ ଓ ଦରବାରୀ ଲୋକଙ୍କୁ ଚାକିରିରୁ ବାହାର କରି ଦେଇଥିଲେ । ରାଣୀମହଲରେ ପହରା ଦେବାକୁ କିଛି ସିପାହି ଆଉ କିଛି ଚାକର-ବାକର କେବଳ ରାଣୀଙ୍କ ପାଖରେ ଥିଲେ ।

ରାଣୀମହଲ ତିନିମହଲା ହୋଇଥିଲେ ମଧ୍ୟ ବହୁତ ବିସ୍ତୃତ ନ ଥିଲା । କିନ୍ତୁ ଦେଖିବାକୁ ବଡ଼ ସୁନ୍ଦର ଥିଲା । ପ୍ରବେଶ ଦ୍ୱାର ଦେଇ ଭିତରକୁ ଯିବାବେଳେ ସାମନାରେ ରାଣୀମହଲର ମଧ୍ୟ ଭାଗରେ ଦୁଇଟି ଛୋଟ ଛୋଟ ସୁନ୍ଦର ଫୁଆରା ଥିଲା । ତା ସହ ଦି ମହଲା ଛୋଟ ଛୋଟ ମହଲ ଓ ଅଗଣା ବି ଥିଲା । ରାଣୀମହଲର କାନ୍ଥ, ଖମ୍ବ ଆଉ ଛାତରେ ପଦ୍ମଫୁଲ, ଲତା, ରଙ୍ଗ-ବେରଙ୍ଗ ଫୁଲ, ପତ୍ର, ପକ୍ଷୀ, ମୟୂର ଆଦିର ସୁନ୍ଦର ଚିତ୍ର କରାଯାଇଥିଲା । ସବୁଠାରୁ ମଜାର କଥା ହେଲା ଯେ ଦରବାର ମହଲରୁ ଭିତରକୁ ଯାଉଥିବା ମୁଖ୍ୟ ଦୁଆରର ଦୁଇପଟ କାନ୍ଥରେ ଥିବା ଥାକ ଉପରେ ରୋମାନ୍ ଅଙ୍କ ଥିବା ଘଡ଼ିର ଚିତ୍ର ଧ୍ୟାନ ଆକର୍ଷିତ କରେ । ୟୁରୋପିୟାନଙ୍କ ପ୍ରତି ମନରେ ରାଗ ଥିଲେ ମଧ୍ୟ ରୋମାନ୍ ସଂଖ୍ୟା ଲେଖାଥିବା ଘଡ଼ି କୌତୂହଳ ବଢ଼ାଏ ।

ରାଣୀମହଲ ସାମନାରେ ଥିବା ଖୋଲା ଜାଗାରେ ଅଶ୍ୱଶାଳା ଥିଲା । ସେଠାରେ ପ୍ରାୟ ୫୦ ଘୋଡ଼ା ବନ୍ଧା ହୋଇଥାନ୍ତି । ବାକିଗୁଡ଼ିକ ଇଂରେଜମାନେ ନେଇ ଯାଇଥିଲେ । ଅଶ୍ୱଶାଳାକୁ ଲାଗି ଗୋଟିଏ ବହୁତ ବଡ଼ ଗ୍ରନ୍ଥାଳୟ ଥିଲା ଓ ରାଣୀମହଲର ପଛପଟେ ଛାତ ଉପରୁ ଦେଖିଲେ ସୁଉଚ୍ଚ କିଲ୍ଲାର ମଜଭୁତ୍ ପାଚିରି, ବୁର୍ଜ ଦେଖାଯାଏ । ମହଲର ଆଖପାଖରେ ଖାଲି ପଡ଼ିଥିବା ଅଶ୍ୱଶାଳା ଓ ପଛପଟ କିଲ୍ଲା ଉପରେ ରାଣୀଙ୍କର ନଜର ବରାବର ଚାଲିଯାଉଥିଲା । ସୂର୍ଯ୍ୟୋଦୟ, ମଧ୍ୟାହ୍ନ, ସୂର୍ଯ୍ୟାସ୍ତର ଛାଇ ଆଲୁଅରେ ଠିଆ ହେଇଥିବା କିଲ୍ଲା ଦେଖି ତାଙ୍କ ମନରେ କେତେ ଯନ୍ତ୍ରଣା ହୋଇଥିବ ? ସବୁବେଳେ ବିନା କାରଣରେ ରାଜ୍ୟ ହରାଇଥିବାର ଦୁଃଖ, ଅପମାନ ଓ ସେହି ସମୟରେ ଅନୁଭୂତ ହୋଇଥିବା ଅସହାୟତା କାରଣରୁ ରାଣୀ ଲକ୍ଷ୍ମୀବାଈ ନିଶ୍ଚିତଭାବରେ ଭାବପ୍ରବଣ ହୋଇ ଯାଇଥିବେ । ଇଂରେଜମାନଙ୍କ ପ୍ରତି କ୍ରୋଧ, ବିରକ୍ତି ଓ ସେହି ସମୟର ହୀନବଳର ଭାବ ନିଶ୍ଚିତ ଭାବରେ ତାଙ୍କ ମନକୁ ବ୍ୟଥିତ କରୁଥିବ । ଦିନଗୁଡ଼ିକ ଏହିଭଳି ଭାବରେ ବିତି ଯାଉଥିବ ।

# ଅଧ୍ୟାୟ–୩

## ଯୁଦ୍ଧର ଘଟଣାକ୍ରମ

ଆମେ ଯେତେବେଳେ ସ୍କୁଲରେ ପଢୁଥିଲୁ, ସେତେବେଳେ ଆମକୁ କୁହାଯାଇଥିଲା କି ୧୮୫୭ରେ ଯୁଦ୍ଧର ଯେଉଁ ଜ୍ୱାଳାମୁଖୀ ବିସ୍ଫୋରଣ ଜଳି ଉଠିଥିଲା, ତାହା ଅଗ୍ନିଶିଖା ପରି ଚାରିଆଡ଼େ ବ୍ୟାପି ଯାଇଥିଲା । ତା'ର ତତ୍କାଳୀନ ଏବଂ ମହତ୍ତ୍ୱପୂର୍ଣ୍ଣ କାରଣ ଧର୍ମୀୟ ଥିଲା । ଗାଈ ଏବଂ ଘୁଷୁରି ଚର୍ବି ବୋଳାହୋଇଥିବା କାରତୁସକୁ ହିନ୍ଦୁସ୍ଥାନୀ ସୈନ୍ୟମାନଙ୍କର ବ୍ୟବହାର ପାଇଁ ଦିଆଯାଇଥିଲା । ସେହିହେତୁ ହିନ୍ଦୁ ଏବଂ ମୁସଲମାନ ସିପାହିମାନେ ଅସନ୍ତୁଷ୍ଟ ହୋଇଥିଲେ । କାରଣ ଗାଈ ହିନ୍ଦୁମାନଙ୍କ ପାଇଁ ପବିତ୍ର ଏବଂ ଘୁଷୁରି ମୁସଲମାନମାନଙ୍କ ପାଇଁ ନିଷିଦ୍ଧ ଅଟେ । ଘୁଷୁରି ଚର୍ବି ଲାଗିଥିବା କାରତୁସକୁ ବ୍ୟବହାର କରିବା ପୂର୍ବରୁ ଦାନ୍ତରେ ଛିଡ଼େଇବାକୁ ପଡୁଥିଲା, ସେଥିଯୋଗୁଁ ଧର୍ମୀୟ ଭାବନାକୁ ଆଘାତ ଲାଗିଥିଲା । ଏହି କାରଣରୁ ଲୋକଙ୍କ ମନରେ ଇଂରେଜମାନଙ୍କ ବିରୋଧରେ ଥିବା କ୍ରୋଧ ନିଜର ଚରମ ସୀମାରେ ପହଞ୍ଚି ସାରିଥିଲା । ସିପାହିମାନେ ଇଂରେଜଙ୍କ ବିରୋଧରେ ଅସ୍ତ୍ର ଉଠାଇ ସାରିଥିଲେ । କିନ୍ତୁ ଏହା ଏକମାତ୍ର କାରଣ ନ ଥିଲା ।

ଏକ ମିଶନାରୀ ପତ୍ରିକାରେ ଏହି ଘଟଣାର ସର୍ବପ୍ରଥମ ଉଲ୍ଲେଖ ମୋତେ ପଢ଼ିବାକୁ ମିଳିଥିଲା । କଲିକତାର କଥବର୍ଟ ନାମକ ପ୍ରଚାରକ (ମିଶନାରୀ) "The Church Missionary Intelligencer" ନାମରେ ଲଣ୍ଡନରୁ ପ୍ରକାଶିତ ପତ୍ରିକା ନିମନ୍ତେ ନିୟମିତ ପତ୍ର ପ୍ରେରଣ କରୁଥିଲେ । ଏହି ପତ୍ରିକାର ୫ ଜୁନ୍ ୧୮୫୭ ସଂଖ୍ୟାରେ କଥବର୍ଟଙ୍କର ଏକ ଖବର ପ୍ରକାଶିତ ହେଲା । ସେଥିରେ ସେ ଲେଖିଥିଲେ "ଏହି ଆନ୍ଦୋଳନର ମୂଳ ବୀଜ ଇଂରେଜଙ୍କ ଦ୍ୱାରା କ୍ଷମତାଚ୍ୟୁତ ହୋଇଥିବା ମୁସଲମାନ ରାଜା ମହାରାଜାଙ୍କ ଇଂରେଜ ବିରୋଧୀ ଆନ୍ଦୋଳନ ଭିତରେ ଅଛି । ଏହି ବିଚାରଧାରାକୁ ଏବେ ସମର୍ଥନ ମିଳିବା ମଧ୍ୟ ଆରମ୍ଭ ହେଲାଣି । ଅତ୍ୟନ୍ତ ବୁଦ୍ଧିମାନ୍ ମୁସଲମାନ ରାଜା ମହାରାଜାମାନେ କାରତୁସକୁ କାରଣ ଦର୍ଶାଇ ସରଳ ହିନ୍ଦୁ ସିପାହିମାନଙ୍କୁ ଉତ୍ତେଜିତ କରୁଛନ୍ତି । ସେମାନଙ୍କୁ ମଧ୍ୟ ନିଜର ଧର୍ମ ଭ୍ରଷ୍ଟ ହୋଇଯିବାର ଚିନ୍ତା ବିବ୍ରତ କରୁଥିଲା । କିନ୍ତୁ ବାସ୍ତବିକତା ଏହି ଯେ ଏପର୍ଯ୍ୟନ୍ତ ନୂଆ୍ କାରତୁସ୍ ସିପାହିମାନଙ୍କର ବ୍ୟବହାର ପାଇଁ ଆଦୌ ଦିଆଯାଇ ନାହିଁ ।

କଥବର୍ଟ ପଠାଇଥିବା ଲେଖାର ଆଧାରରେ ଏହି ଖବର ପ୍ରକାଶିତ ହୋଇଥିଲା । ସେ ଏହି ପତ୍ର ମେ ୫ ତାରିଖରେ ପଠାଇଥିଲେ । ମେ ୧୧ ତାରିଖରେ ମିରଠରେ

ପ୍ରଥମ କ୍ରାନ୍ତି ଆରମ୍ଭ ହେଲା । ଅର୍ଥାତ୍ ଏହି ପତ୍ର ଘଟଣାର ଏକ ସପ୍ତାହ ପୂର୍ବରୁ ଲେଖାଯାଇଥିଲା । ସେ ସମୟରେ ସେ ଯେଉଁସବୁ କଥା ଶୁଣିଥିଲେ, ଯାହା ଦେଖୁଥିଲେ, ତାକୁ ହିଁ ଆଧାର କରି କଥବର୍ଟ ନିଜର ମତାମତ ପ୍ରକାଶ କରିଥିଲେ । ବଙ୍ଗଳା ସୀମାରେ ବହରାମପୁରର ସୈନିକ ଛାଉଣୀରେ ଦଳିତ ଓ ବ୍ରାହ୍ମଣଙ୍କ ମଧ୍ୟରେ ପିଇବା ପାଣିକୁ ନେଇ ଯେତେବେଳେ ବିବାଦ ହେଲା, ସେତେବେଳେ ଦଳିତ ସିପାହିମାନେ ବ୍ରାହ୍ମଣ ସିପାହିଙ୍କୁ କହିଲେ– ''ଏତେ ଦମ୍ଭ କାହିଁକି ଦେଖାଉଛନ୍ତି ଆପଣମାନଙ୍କୁ ଯେଉଁ ନୂଆ ବନ୍ଧୁକ ଦିଆଯିବାର ଅଛି, ତାହାର କାରତୁସ୍‌ରେ ଗାଈ ଓ ଘୁଷୁରିର ଚର୍ବି ଲାଗିଛି । ମୁଁ ଯେହେତୁ ସେହି କାରଖାନାରେ କାମ କରୁଛି ସେଥିପାଇଁ ମତେ ଏହି ସତ୍ୟ ଜଣାଅଛି । ସେହି କାରତୁସ୍‌କୁ ବ୍ୟବହାର କରିବାପାଇଁ ଆପଣଙ୍କୁ ତାହାକୁ ଦାନ୍ତରେ ଛିଣ୍ଡେଇବାକୁ ହେବ । ସେତେବେଳେ ଆପଣଙ୍କ ଧର୍ମର କ'ଣ ହେବ ?'' ୨୬ ଫେବୃୟାରୀ ୧୮୫୭ ଦିନ ବହରାମପୁରର ସିପାହିମାନଙ୍କୁ ନୂଆ ବନ୍ଧୁକ ସହିତ ନୂଆ କାରତୁସ୍ ଦିଆଯିବାରେ ଲାଗିଲା । ସେତେବେଳେ ସିପାହିମାନେ ଚର୍ବିଯୁକ୍ତ କାରତୁସ୍ ନେବାପାଇଁ ମନା କରିଦେଲେ । ପରିଣାମସ୍ୱରୂପ ସେମାନଙ୍କ ହାତରୁ ବନ୍ଧୁକ ଫେରାଇନେଇ ସେମାନଙ୍କୁ ବରଖାସ୍ତ କରି ଦିଆଗଲା । ଏହାରି ମଧ୍ୟରେ ୨୯ ମାର୍ଚ୍ଚ ଦିନ ବାରାକ୍‌ପୁରରେ ମଙ୍ଗଳପାଣ୍ଡେ ଇଂରେଜ ଅଫିସରଙ୍କ ଉପରେ ଗୁଳି ଚଳାଇ ବିଦ୍ରୋହ କରିଦେଲେ । ତାଙ୍କର ଏହି କାର୍ଯ୍ୟ ନିମନ୍ତେ ତୁରନ୍ତ ମକଦ୍ଦମା କରାଗଲା ଏବଂ ମଙ୍ଗଳପାଣ୍ଡେଙ୍କୁ ଫାଶୀଦଣ୍ଡ ଦିଆଗଲା । ଏହା ପରେ ମେ ୩ ତାରିଖରେ ଲକ୍ଷ୍ନୌର ପଦାତିକ ସୈନ୍ୟମାନେ ବିଦ୍ରୋହ ଘୋଷଣା କଲେ । ଏହି ସମସ୍ତ ଖବର ନିଶ୍ଚିତ ରୂପରେ କଥବର୍ଟଙ୍କ ପର୍ଯ୍ୟନ୍ତ ପହଞ୍ଚିଥିବ । ସେହିସବୁ ଖବରକୁ ସେ ଲଣ୍ଡନର "The Church Missionary Intelligencer" ଯାଏ ପହଞ୍ଚାଇଥିଲେ ।

ଏହା ପରେ ମେ ୧୦ ତାରିଖରେ ମିରଠ ଶିବିରର ପଦାତିକ ଏବଂ ଅଶ୍ୱାରୋହୀ ସୈନ୍ୟମାନେ ବିଦ୍ରୋହ ଘୋଷଣା କରିଦେଲେ । ସମସ୍ତ ଇଂରେଜଙ୍କୁ ଯଥାସ୍ଥାନରେ ହତ୍ୟାକରି ଦ୍ୱିତୀୟ ଦିନ ମେ ୧୧ ତାରିଖରେ ମିରଠର ସିପାହି ଦିଲ୍ଲୀରେ ପହଞ୍ଚିଗଲେ । ୧୨ ମଇ ୧୮୫୭ରେ ବାହାଦୁରଶାହ ଜାଫରଙ୍କୁ ପୁନରାୟ ହିନ୍ଦୁସ୍ଥାନରେ ବାଦଶାହ ଘୋଷଣା କରାଗଲା । ଏହି ଖବର ତା'ର ଜରିଆରେ ଲାହୋରର ସୈନ୍ୟ ଛାଉଣୀରେ ପହଞ୍ଚାଇ ଦିଆଗଲା । ଲାହୋରର ସିପାହି ବିଦ୍ରୋହ ନ କରିପାରନ୍ତୁ, ସେଥିପାଇଁ ଇଂରେଜ ଅଧିକାରୀମାନେ ମେ ୧୩ ତାରିଖରେ ସେଠିକାର ଅଶ୍ୱାରୋହୀ ଏବଂ ପଦାତିକ ସୈନ୍ୟମାନଙ୍କଠାରୁ ଅସ୍ତ୍ର କାଢ଼ିନେଇ ସେମାନଙ୍କୁ ନିରସ୍ତ୍ର କରିଦେଲେ । ଏହି ଖବର ବ୍ୟାପିଯିବାରେ ଡେରି ହୋଇ ନ ଥିଲା । ସେହିଦିନ ଫିରୋଜପୁରର ସୈନ୍ୟମାନେ ମଧ୍ୟ ବିଦ୍ରୋହ କରିଦେଲେ । ଦେଖୁ ଦେଖୁ ସଂପୂର୍ଣ୍ଣ ପଞ୍ଜାବର ସୀମାଯାଏ, ମଥୁରା, ଆଗ୍ରା, ଶାହଜହାଁପୁର, ବରେଲୀ ଓ ଲକ୍ଷ୍ନୌରେ ସର୍ବତ୍ର ବିଦ୍ରୋହର ନିଆଁ ବ୍ୟାପିଗଲା । ଗାଈ ଓ ଘୁଷୁରିର ଚର୍ବିବୋଳା କାରତୁସ୍ ଯୁଦ୍ଧର ମହତ୍ତ୍ୱପୂର୍ଣ୍ଣ ତଥା ତତ୍କାଳୀନ କାରଣ ତ ଥିଲା ।

କିନ୍ତୁ ଅନ୍ୟ କେତେକ କାରଣ ମଧ୍ୟ ରହିଥିଲା । ବହୁତ ଦିନରୁ ଲୋକଙ୍କ ମନରେ ଇଂରେଜମାନଙ୍କ ବିରୋଧରେ କ୍ରୋଧ ମଧ୍ୟ ଭରି ରହିଥିଲା । କେବଳ ବିସ୍ଫୋଟକ ମୁହୂର୍ତ୍ତର ପ୍ରତୀକ୍ଷା ଥିଲା ।

## ବିଦ୍ରୋହ ହେବାର କାରଣ

*ଖଜଣାର ଦର*–ଇଂରେଜମାନଙ୍କ ଦ୍ୱାରା ଖଜଣାର ଦର ବୃଦ୍ଧି କରିବା ଏବଂ ତା'ର ଆଦାୟ ନିମନ୍ତେ କୃଷକମାନଙ୍କ ଉପରେ ଅତ୍ୟାଚାର କରିବା ମଧ୍ୟ ଇଂରେଜଙ୍କ ବିରୋଧରେ କ୍ରୋଧ ପ୍ରଜ୍ୱଳିତ ହେବାର ଏକ ମହତ୍ତ୍ୱପୂର୍ଣ୍ଣ କାରଣ ଥିଲା । ହିନ୍ଦୁସ୍ଥାନ ଏକ କୃଷିପ୍ରଧାନ ଦେଶ ଅଟେ । ଭାରତୀୟ ସଂସ୍କୃତିରେ ଧରିତ୍ରୀ ସହିତ ଲୋକଙ୍କର ଘନିଷ୍ଠ ସମ୍ପର୍କ ରହିଛି । କେବଳ ଉପଜୀବିକା ପାଇଁ ନୁହେଁ, ବରଂ କୃଷି ପାଇଁ, କ୍ଷେତ–ବାଡ଼ି ପାଇଁ ଆମର ଧରିତ୍ରୀ ସହିତ ଭାବନାତ୍ମକ ସମ୍ବନ୍ଧ ରହିଛି । ଆମେ ଧରିତ୍ରୀକୁ ନିଜର ମାଆ ଭାବରେ ଗ୍ରହଣ କରୁ । ମରୁଡ଼ି କିମ୍ବା ଅନ୍ୟ କୌଣସି କାରଣରୁ କୌଣସି ବର୍ଷ ଯଦି କମ୍ ଉତ୍ପାଦନ ହୁଏ, ତା'ହେଲେ ଖଜଣାରେ ଛାଡ଼ ମିଳେ କିମ୍ବା ଆଦାୟ କରିବାର ସମୟସୀମା ବଢ଼ାଇ ଦିଆଯାଏ । ଶହ ଶହ ବର୍ଷ ଓ ପୁରୁଷ ପୁରୁଷ ଧରି ଏହି ପରମ୍ପରା ଚଳିଆସିଛି । କିନ୍ତୁ କେବେହେଲେ ଜମି ବିକ୍ରି କରିବାର ଅବସ୍ଥା ଆସି ନାହିଁ କିମ୍ବା ଏପରି ସ୍ଥିତିକୁ କେବେ ଆସିବାକୁ ଦିଆଯାଇ ନାହିଁ । କିନ୍ତୁ ଇଂରେଜମାନଙ୍କର ଖଜଣା ଅସୁଲ କରିବାର ଏହି ନୂଆ ଉପାୟ ଯୋଗୁଁ ଚାଷୀଙ୍କୁ ନିଜର ଚାଷଜମି ବିକ୍ରି କରିବା, ଅନ୍ୟ ନାମରେ କରିଦେବା, ଅଧିକାଂଶସ୍ଥଳେ ସାହୁକାରଙ୍କ ନାମରେ କରିଦେବା ପରି ପରିସ୍ଥିତି ଉପୁଜିଲା । କମ୍ପାନୀ ସରକାର ଚାଷଜମି ଉପରେ ବି କୋରଖ ଜାରି କଲେ । ସେଥିଯୋଗୁଁ ଲୋକଙ୍କ ମନରେ କ୍ରୋଧ କୁହୁଳିବାକୁ ଲାଗିଲା । ବିଦ୍ରୋହ ପରେ ଅନେକ ଗାଁରେ ଲୋକମାନେ ସାହୁକାର, ବଣିଆ ଓ ଧନୀଲୋକମାନଙ୍କର ହିସାବ–କିତାବର ଖାତାପତ୍ର ଜଳାଇ ଦେଇଥିଲେ । ଝାନ୍ସୀ, ଜାଲୋନ, ହମୀରପୁରରେ କଚେରିରେ ମଧ୍ୟ ଲୋକେ ହିସାବର ବହି–ଖାତା ଜାଳିପୋଡ଼ି ନଷ୍ଟ କରିଦେଇଥିଲେ ।

*ଭୂମିଦାନ*–ରାଜା ମହାରାଜା, ସୁବେଦାର, ଜମିଦାରମାନେ ଦାନରେ ଦେଇଥିବା ଭୂମି ଉପରେ କେତେଥର ଖଜଣା ଜାରି କରାଯାଉ ନ ଥିଲା । ସେହି ଜମି ଉପରେ ଛାଡ଼ ଦିଆଯାଉଥିଲା । କେତେଥର ତ ଦାନପତ୍ର ମଧ୍ୟ ପ୍ରସ୍ତୁତ କରାଯାଉ ନ ଥିଲା । ଦରବାରୀ କାର୍ଯ୍ୟାଳୟର ନଥି–ପତ୍ରରେ ତା'ର ଉଲ୍ଲେଖ ମଧ୍ୟ କରାଯାଉ ନ ଥିଲା । ତଥାପି ଦାନରେ ଦିଆଯାଉଥିବା ଜମିକୁ ପୁରୁଷ ପୁରୁଷ ଧରି ଲୋକମାନେ ଭୋଗଦଖଲ କରୁଥିଲେ । ସେ ବିଷୟରେ କାହାରି ମନରେ କିଛି ଆଶଙ୍କା ରହୁ ନ ଥିଲା କିମ୍ବା କୌଣସି ବିଦ୍ୱେଷ ବା ଈର୍ଷା ମଧ୍ୟ ଜାତ ହେଉ ନ ଥିଲା । ସେହି ଜମିକୁ କେନ୍ଦ୍ରକରି ପରସ୍ପର ମଧ୍ୟରେ କଳିତକରାଳ ମଧ୍ୟ ହେଉ ନ ଥିଲା । କାରଣ ଏହି ଜମିକୁ ରାଜା ଉପକାର ବଦଳରେ ଦାନରେ ଦେଇଛନ୍ତି

ବୋଲି ଧରି ନିଆଯାଉଥିଲା । ଇଂରେଜମାନେ ଏହି ଜମି ଉପରେ ବଢ଼ନ୍ତା ଦରରେ ଖଜଣା ଲାଗୁ କରିଦେଲେ । ସରକାରୀ କାର୍ଯ୍ୟାଳୟରେ ଯେଉଁସବୁ ଜମିର ଉଲ୍ଲେଖ ନ ଥିଲା, ସେହିସବୁ ଜମିକୁ କମ୍ପାନୀ ସରକାର ଫେରେଇ ନେଲେ । ରାଜ୍ୟକର୍ତ୍ତା ଓ ପ୍ରଜାଙ୍କ ମଧ୍ୟରେ ଭୂମିଦାନ ଏକପ୍ରକାରର ସ୍ୱତନ୍ତ୍ର ସଂପର୍କ ସ୍ଥାପନ କରୁଥିବା ଭାବନାତ୍ମକ ଉପାୟ ଥିଲା । ସେଥିରେ ଯେଉଁ ବିଶ୍ୱାସ ଓ ପବିତ୍ରତା ଥିଲା, ଇଂରେଜମାନେ ତାହା ସମାପ୍ତ କରିଦେଲେ । ଗଙ୍ଗାଧର ରାଓଙ୍କ ଅନ୍ତିମ ସଂସ୍କାର କରିଥିବା ପୁରୋହିତମାନଙ୍କୁ ରାଣୀ ଦାନ-ଦକ୍ଷିଣାରେ ଯେଉଁ ଜମି ଦେଇଥିଲେ କମ୍ପାନୀ ସରକାର ତାକୁ ମଧ୍ୟ ଜବତ୍ କରିନେଲେ । ହିନ୍ଦୁ ବିଧବାଙ୍କର ସ୍ୱାମୀଙ୍କର ଜମି ଓ ସଂପତ୍ତି ଉପରେ କୌଣସି ଅଧିକାର ନାହିଁ ବୋଲି ଧର୍ମଶାସ୍ତ୍ରରେ ଥିବା ଏହି କାରଣକୁ ଇଂରେଜମାନେ ଆଳ କରିଥିଲେ ।

***ଲୁଣ କର***–ଖାଲି ଖଜଣା ଦର ବଢ଼ାଇ ଇଂରେଜମାନେ ସନ୍ତୁଷ୍ଟ ରହି ନ ଥିଲେ । ସେମାନେ ଲୁଣ ପାଇଁ ମଧ୍ୟ କର ବସାଇଲେ । ୧୮୫୫ ମସିହା ମେ ୯ ତାରିଖରେ ଉପକୂଳବର୍ତ୍ତୀ ଇଲାକାରେ ସେମାନେ ଲୁଣ ଉପରେ କର ଲାଗୁ କରିଦେଲେ । କର ଆଦାୟ ନିମନ୍ତେ ସେମାନେ କଷ୍ଟମ କାର୍ଯ୍ୟାଳୟ ମଧ୍ୟ ଖୋଲିଦେଲେ ।

ଏହି ବିଭାଗ ଅନ୍ତର୍ଗତ ପ୍ରମୁଖ ରାଜ୍ୟଗୁଡ଼ିକ ଥିଲେ ଜାଲୌନ, ଝାନ୍ସୀ, ସାଗର ଏବଂ ନରସିଂହପୁର । ଏହି ଇଲାକାରେ ଲୁଣ ଆମଦାନୀ କଲେ, ଗୋଟିଏ ମହଣ ଲୁଣ ଉପରେ ଟଙ୍କାଏରୁ ଦୁଇଟଙ୍କା ଯାଏ କର ଲଗାଗଲା । କର ଆଦାୟ ନିମନ୍ତେ ଝାନ୍ସୀ, ସାଗର ଏବଂ ହୋସଙ୍ଗାବାଦ ସହରରେ ଜି. ରାଇଟ୍ ନାମକ କଷ୍ଟମ ଅଧିକାରୀଙ୍କୁ ନିଯୁକ୍ତ କରାଗଲା । ବୁନ୍ଦେଲଖଣ୍ଡରେ ଲୁଣ ଉତ୍ପାଦିତ ହୁଏ ନାହିଁ, କାରଣ ସେଠାରେ ଅଧିକ ପର୍ବତମାଳା ଥିବାରୁ ଲୁଣ ମିଳିବା କଷ୍ଟକର ଥିଲା । ସମସ୍ତ ଲୁଣ ବାହାରୁ ମଗାଇବାକୁ ପଡୁଥିଲା । ଏପର୍ଯ୍ୟନ୍ତ ତା' ଉପରେ କେବେବି କୌଣସି କର ଲଗାଯାଇ ନ ଥିଲା । ଲୁଣ ମନୁଷ୍ୟ ଜୀବନର ଏକ ମୁଖ୍ୟ ଆବଶ୍ୟକତା । ସ୍ଥାନୀୟ ଅଞ୍ଚଳରେ ଉତ୍ପାଦନ ହେଉ ନାହିଁ, ବରଂ ବାହାରୁ ଅଣାଯାଉଥିବା ଲୁଣ ଉପରେ ଏବଂ ତା'ର ବିକ୍ରି ଉପରେ ବିଦେଶୀ ଅଧିକାରୀଙ୍କ ଜଞ୍ଜାଳ ଯୋଗୁଁ ପ୍ରଜାମାନେ ପୂରାପୂରି ବିରକ୍ତ ହୋଇଯାଇଥିଲେ । କର ଆଦାୟ କରିବାକୁ ଇଂରେଜ ଅଧିକାରୀମାନେ ଯେଉଁଠି ଇଚ୍ଛା ସେଇଠି ଦୋକାନ କି ଘର ଭିତରେ ପଶିଯାଇ ଲୁଣ ବିଷୟରେ ତନଖି କରୁଥିଲେ । ଏହିସବୁ କାରଣରୁ ଜନତାଙ୍କ କ୍ରୋଧ ଦିନକୁ ଦିନ ବଢ଼ିବାରେ ଲାଗିଥିଲା ।

***ନୂଆ ନ୍ୟାୟ ବ୍ୟବସ୍ଥା***–ହିନ୍ଦୁସ୍ଥାନର ଧର୍ମନିଷ୍ଠ, ପରମ୍ପରାଗତ ନ୍ୟାୟବ୍ୟବସ୍ଥାକୁ ଭାଙ୍ଗିଦେଇ ଇଂରେଜମାନେ ଏକ ନୂଆ ନ୍ୟାୟପ୍ରଣାଳୀ ପ୍ରଚଳନ କଲେ । ସତୀପ୍ରଥାକୁ ବନ୍ଦ କରିବାପାଇଁ ଏକ ନୂଆ ଆଇନ୍ ପ୍ରଣୟନ କରାଗଲା । 'ଜଳ-ସମାଧି' ଉପରେ ନୂଆ ଆଇନ୍ ତିଆରି କରି ତା' ଉପରେ ମଧ୍ୟ କଟକଣା ଲଗାଇଦେଲେ । ଏସବୁ କାରଣରୁ ହିନ୍ଦୁ ସମାଜର ଲୋକମାନଙ୍କର ଧର୍ମୀୟ ଆସ୍ଥାକୁ ଗଭୀର ଆଘାତ ଲାଗିଲା । ଏହା ପରେ

ପ୍ରପର୍ଟି ଟ୍ରାନ୍‌ସଫର ଆକ୍ଟ (Property Transfer Act) ମଧ୍ୟ ଲାଗୁ କରି ଦିଆଗଲା । ଏହି ଆଇନ୍ ଫଳରେ ଯେକୌଣସି ହିନ୍ଦୁ କିମ୍ବା ମୁସଲମାନ ଯଦି ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରନ୍ତି ତେବେ ତା' ପରେ ମଧ୍ୟ ତାଙ୍କର ପୈତୃକ ସମ୍ପତ୍ତିର ସ୍ଥାବର ଅସ୍ଥାବର ଭାଗ ସେମାନଙ୍କୁ ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ହୋଇପାରିବ । ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବାକୁ ଇଚ୍ଛୁକ ଥିବା ବ୍ୟକ୍ତିମାନଙ୍କର ଫାଇଦା ପାଇଁ ଏହି ଆଇନ୍ ତିଆରି କରାଯାଇଥିଲା । ପରିବାରର କୌଣସି ସଦସ୍ୟ ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିଲା ତ ପରିବାରର ଲୋକେ ଦୁଃଖ ପାଉଥିଲେ । ଏବେ ପୁଣି ପରିବାରର ସମ୍ପତ୍ତିରୁ ଭାଗ ଦେବାର କଥା କୁହାଗଲା । ନୂଆ ଆଇନ୍ ଯୋଗୁଁ କୋର୍ଟ, କଚେରି, ସାକ୍ଷୀ, ପ୍ରମାଣ, ଓକିଲ, ଦସ୍ତାବିଜ, ଷ୍ଟାମ୍ପଡ୍ୟୁଟି, ନ୍ୟାୟାଳୟର ନୂଆ ପ୍ରଥା ଆରମ୍ଭ ହୋଇଗଲା । ଏହି ସମସ୍ତ କଥା ସାଧାରଣ ଲୋକଙ୍କର ବିବେକଶକ୍ତିର ବାହାରେ ଥିଲା, ଛୋଟ-ମୋଟ କଳିତକରାଳ ପାଇଁ ବି ସେମାନଙ୍କର ସମୟ, ପଇସା, ଶକ୍ତି ଅଧିକ ମାତ୍ରାରେ ବ୍ୟୟ ହେବାରେ ଲାଗିଲା । ଏହି ନ୍ୟାୟବ୍ୟବସ୍ଥା ଖର୍ଚ୍ଚବହୁଳ ଥିଲା । ସବୁବେଳେ ସରକାରୀ କୋର୍ଟକୁ ଯିବାକୁ ପଡୁଥିଲା । ସେଠିକାର ସମୟ କାର୍ଯ୍ୟଧାରା ପୂରା ହେଲା ପରେ, ଫଇସଲା ଶୁଣିବାବେଳେ ନ୍ୟାୟ ମିଳିବାର ଭରସା ମଧ୍ୟ ରହୁ ନ ଥିଲା । ପରମ୍ପରାକ୍ରମେ ଚଳିଆସୁଥିବା ନ୍ୟାୟବ୍ୟବସ୍ଥା, ପଞ୍ଚାୟତ ଆଇନ୍ ଅନ୍ତର୍ଗତ ଅଧିକ ଗତିଶୀଳ, ସ୍ଥାନୀୟ ସ୍ତରରେ ନିରପେକ୍ଷ, କମ୍ ଖର୍ଚ୍ଚରେ ଫଇସଲା ନିମନ୍ତେ ଲୋକଙ୍କ ଭିତରେ ବିଶ୍ୱାସ ଜନ୍ମାଇବା ପରି ଥିଲା । ଅଧିକାଂଶ ଝଗଡ଼ା ପଞ୍ଚାୟତ ସମ୍ମୁଖରେ ରଖାଯାଉଥିଲା ଏବଂ ପଞ୍ଚ ତାଙ୍କର ନିର୍ଣ୍ଣୟ ଶୁଣାଇ ଏହାର ସମାଧାନ କରି ଦେଉଥିଲେ । କେବଳ ଅତି ଆବଶ୍ୟକ ପଡ଼ିଲେ ହିଁ ନ୍ୟାୟପ୍ରାର୍ଥନା ନିମନ୍ତେ ରାଜାଙ୍କ ଦରବାରକୁ ଯିବାକୁ ପଡୁଥିଲା । ଓକିଲ ନାମକ କୌଣସି ଜନ୍ତୁ ହିଁ ନ ଥିଲେ । ଏହି ଅଭିଯୋଗ ସହିତ ସମ୍ବନ୍ଧିତ ଲୋକେ ଆସି ସାକ୍ଷ୍ୟ ପ୍ରଦାନ କରୁଥିଲେ । ସେ ସମୟରେ ସାଧାରଣ ଲୋକଙ୍କ ଧାରଣା ଥିଲା ଯେ ମିଛ ସାକ୍ଷୀ ଦେଲାବାଲା ଲୋକଙ୍କ ସଂଖ୍ୟା ଅତ୍ୟନ୍ତ ନଗଣ୍ୟ । କାରଣ ଯେଉଁମାନେ ସାକ୍ଷୀ ଦେବାକୁ ଆସୁଥିଲେ, ସେମାନଙ୍କୁ ନିଜର ଇଷ୍ଟଦେବତା, ଗ୍ରାମଦେବତା ଓ କୁଳଦେବତାଙ୍କ ନାମରେ ଶପଥ ନେବାକୁ ପଡୁଥିଲା । ଶପଥ ମଧ୍ୟ ନିଜ ଦେବୀ-ଦେବତାଙ୍କର ସମ୍ମୁଖରେ ନେବାକୁ ପଡୁଥିଲା । ଜ୍ଞାତିକୁଟୁମ୍ବଙ୍କର ପଞ୍ଚାୟତ ବସି ନିଷ୍ପତ୍ତି ଶୁଣାଇ ଦେଉଥିଲେ । ଗାଁର କୌଣସି ପ୍ରାଚୀନ ବଟବୃକ୍ଷ କିମ୍ବା ବିଶାଳ ଅଶ୍ୱତ୍ଥ ବୃକ୍ଷର ଛାୟାରେ ଏହି ନ୍ୟାୟ ପଞ୍ଚାୟତ ଆୟୋଜିତ ହେଉଥିଲା । ଲୋକଙ୍କର ଏହି ବିଶ୍ୱାସ ଥିଲା ଯେ ବୃକ୍ଷଛାୟାରେ ବସି ମିଛ କହିଲେ ମଣିଷ ପାପରେ ଭାଗୀ ହୁଏ ଏବଂ ବୃକ୍ଷଦେବତା, ଗ୍ରାମଦେବତା ତାକୁ ତା'ର ଏହି ପାପର ଦଣ୍ଡ ନିଶ୍ଚୟ ଦେଇଥାନ୍ତି । ଲୋକଙ୍କ ମନରେ ଏହି ଦୃଢ଼ବିଶ୍ୱାସ ଥିଲା । ନୂଆ ନ୍ୟାୟ ପ୍ରଣାଳୀରେ ଏହି ବିଶ୍ୱାସମାନେ ପୂରାପୂରି ସମାପ୍ତ ହୋଇଗଲା । ଏବେ ସାକ୍ଷୀମାନେ ନ୍ୟାୟାଧୀଶଙ୍କ ଆଗକୁ ଯିବାରେ ଲାଗିଲେ । ମିଥ୍ୟା ସାକ୍ଷୀ ଦେବାର ଏକ ନୂଆ ଧାରା ସୃଷ୍ଟି ହେଲା । ଦୁଇ ପକ୍ଷର ଓକିଲମାନଙ୍କୁ ଏବେ ଅଧିକ

ମହତ୍ତ୍ୱ ଦିଆଗଲା । ନୂଆ ପ୍ରଣାଳୀର ନୀତିନିୟମ ଦ୍ୱାରା ଲୋକଙ୍କ ମନରେ ଅବିଶ୍ୱାସ, ସନ୍ଦେହ ଏବଂ ଚିନ୍ତାର ନିର୍ମ୍ମାଣ ହେବାରେ ଲାଗିଲା । ଏହି ନିୟମ ଖର୍ଚ୍ଚବହୁଳ ମଧ୍ୟ ଥିଲା । ଲୋକଙ୍କ ଦୃଷ୍ଟିରେ ଏତେ ଖର୍ଚ୍ଚ ବହନ କରିବା ସମ୍ଭବ ନ ଥିଲା । ମକଦ୍ଦମାର ରାୟ ପ୍ରକାଶ ପାଇଁ ବହୁତ ସମୟ ମଧ୍ୟ ଲାଗୁଥିଲା ।

ଷ୍ଟାମ୍ପଡ୍ୟୁଟି ଲୋକଙ୍କ ପାଇଁ ଗୋଟିଏ ନୂଆ କଥା ଥିଲା । କେବେ କେବେ ତାକୁ ନେଇ ମଜାଦାର ଘଟଣାମାନ ଘଟୁଥିଲା । ତା'ର ଏକ ଉଦାହରଣ ଏଠାରେ ପ୍ରସ୍ତୁତ କରିବା ଉଚିତ ମନେକରୁଛି । ୧୮୫୭ର ପ୍ରାରମ୍ଭିକ ଦିନମାନଙ୍କରେ ନାନିକପୁରର ଠାକୁରଙ୍କ ପୁଅ ଗଣେଶ ରାଜୁ ଚନ୍ଦେରୀର ଡେପୁଟୀ ମାଜିଷ୍ଟ୍ରେଟ୍ ଓ ଡେପୁଟୀ କଲେକ୍ଟରଙ୍କ ନାମରେ ଗୋଟିଏ ଆବେଦନପତ୍ର ପଠାଇଥିଲେ । ସେଥିରେ ସେ ଜଣାଇଥିଲେ କି ତାଙ୍କ ବାପା ଜବାହରସିଂହ କମ୍ପାନୀ ସରକାରଙ୍କ ବିରୋଧରେ କାମ କରୁଛନ୍ତି । ଯେହେତୁ ଦରଖାସ୍ତରେ ଷ୍ଟାମ୍ପ ଡ୍ୟୁଟି ଲଗାଯାଇ ନ ଥିଲା, ତେଣୁ ସେହି ଦରଖାସ୍ତକୁ କଚେରିର ଅଳିଆ ଟୋକେଇରେ ଫିଙ୍ଗି ଦିଆଯାଇଥିଲା । ଗଣେଶ ରାଜୁ ବହୁତ ଦିନ ଉତ୍ତରର ଅପେକ୍ଷା କଲେ କିନ୍ତୁ ତାଙ୍କ ପାଖକୁ କୌଣସି ଜବାବ୍ ଆସି ନ ଥିଲା । ସେହି କାରଣରୁ ଝାନ୍‌ସୀ ଏବଂ ତା'ର ଆଖପାଖ ଅଞ୍ଚଳରେ ଯେତେବେଳେ ଇଂରେଜମାନଙ୍କ ବିରୋଧରେ ଯୁଦ୍ଧ ହେଲା ସେତେବେଳେ ଗଣେଶ ରାଜୁ ଓ ଅନ୍ୟ ଠାକୁରମାନେ ହିନ୍ଦୁସ୍ଥାନୀ ସିପାହିମାନଙ୍କ ପ୍ରତି ସହାନୁଭୂତିଶୀଳ ହୋଇପଡ଼ିଥିଲେ ।

ଇଂରେଜମାନଙ୍କ ବିରୋଧରେ ଯୁଦ୍ଧର ଶିଖା ପ୍ରଜ୍ୱଳିତ ହୋଇଥିଲା । ଏତିକିବେଳେ ଲୋକଙ୍କ ମନରେ ଦ୍ୱନ୍ଦ୍ୱ ଓ ସନ୍ଦେହର ସ୍ୱାଭାବିକ ପ୍ରାବଲ୍ୟ ମଧ୍ୟ ଦେଖିବାକୁ ମିଳୁଥିଲା ।

***ବେକାରୀ***–ରାଜ୍ୟମାନଙ୍କ ଉପରେ କବ୍‌ଜା କରିବା ପରେ କମ୍ପାନୀ ସରକାର ରାଜା–ମହାରାଜାଙ୍କ ଦରବାର ଓ ସେମାନେ ବ୍ୟକ୍ତିଗତଭାବେ ନିଯୁକ୍ତ କରିଥିବା ସମସ୍ତ ଲୋକଙ୍କୁ ଚାକିରିରୁ ଛଟେଇ କରିଦେଲେ । ଆଶ୍ରିତମାନଙ୍କର ଏକପ୍ରକାର ଆଶ୍ରୟ ହିଁ ଛଡ଼ାଇ ନିଆଗଲା । ରାଜ୍ୟମାନଙ୍କର ଘୋଡ଼ସବାର, ପଦାତିକ, ତୋପଖାନାର ସୈନିକଙ୍କଠାରୁ ଅସ୍ତ୍ର ଛଡ଼ାଇନେଇ ସେମାନଙ୍କୁ ମଧ୍ୟ ଚାକିରିରୁ ହଟେଇ ଦିଆଗଲା । ଏବେ ସେହି ସମସ୍ତ ଲୋକମାନଙ୍କ ଆଗରେ ଜୀବନ ଜୀବିକାର ସମସ୍ୟା ସୃଷ୍ଟି ହୋଇଗଲା । ଗୋଟିଏ ଦୃଷ୍ଟିରୁ ଏହି ସ୍ଥିତି ଅତ୍ୟନ୍ତ ଅପମାନଜନକ ମଧ୍ୟ ଥିଲା ।

***ଧର୍ମାନ୍ତରର ଭୟ***–ଏହିସବୁ ପରିସ୍ଥିତି ସହିତ ମିଶନାରୀମାନଙ୍କ ଗତିବିଧିର ଆତଙ୍କ ମଧ୍ୟ ଲୋକଙ୍କ ମନରେ ବସା ବାନ୍ଧିଥିଲା । ମିଶନାରୀ ଲୋକମାନେ ବିଭିନ୍ନ ସ୍ଥାନରେ ବୁଲାବୁଲି କରି ହିନ୍ଦୁଧର୍ମର ନିନ୍ଦା କରୁଥିଲେ, ହିନ୍ଦୁଧର୍ମକୁ ବିଦ୍ରୂପ କରୁଥିଲେ ଓ ଖ୍ରୀଷ୍ଟଧର୍ମର ଗୁଣଗାନ କରୁଥିଲେ । ଭିନ୍ନ ଭିନ୍ନ ଉପାୟରେ ସେହି ସ୍ଥାନର ଲୋକମାନଙ୍କୁ ଖ୍ରୀଷ୍ଟଧର୍ମରେ ପରିବର୍ତ୍ତିତ କରିବାର ପ୍ରୟାସକୁ ସେମାନେ ନିରନ୍ତର ଜାରି ରଖିଥିଲେ । ମିଶନାରୀମାନଙ୍କର ଏହି କାର୍ଯ୍ୟ ନିମନ୍ତେ ଜ୍ଞାତ–ଅଜ୍ଞାତରେ କମ୍ପାନୀ ସରକାର ସମ୍ପୂର୍ଣ୍ଣ ସମର୍ଥନ କରୁଥିଲା ।

ଫଳରେ ଲୋକଙ୍କ ମନରେ ମିଶନାରୀମାନଙ୍କ ପ୍ରତି ତିରସ୍କାର ଏବଂ କ୍ରୋଧ ମଧ୍ୟ ବଢ଼ିବାରେ ଲାଗିଲା ।

ଏପରି ବାତାବରଣରେ ସୈନିକମାନଙ୍କ ମଧ୍ୟରେ ରୁଟି ଓ ପଦ୍ମଫୁଲର ଆଦାନପ୍ରଦାନର କଥା ଦୂରଦୂରାନ୍ତର ସୈନ୍ୟଛାଉଣୀ ଯାଏ ପହଞ୍ଚି ସାରିଥିଲା । ୧୭୫୭ର ପଲାସି ଯୁଦ୍ଧକୁ ଶହେବର୍ଷ ପୂରଣ ହେବାମାତ୍ରେ ସେଠାରେ ଇଂରେଜ ଶାସନ ସମାପ୍ତ ହୋଇଯିବ– ସୀତା ହନୁମାନ୍‌ଙ୍କୁ ଏହିପରି ବର ପ୍ରଦାନ କରିଥିଲେ, ଏମିତି ଏକ ନିରୀହ ତଥା ଦୃଢ଼ ବିଶ୍ୱାସ ଜନମାନସରେ ବ୍ୟାପି ଯାଇଥିଲା ।

ଏହା ଅତିରିକ୍ତ ଜନମାନସରେ, ବିଶେଷକରି ସିପାହିମାନଙ୍କ ମନରେ ଆଉ ଏକ ବିଶ୍ୱାସ ଦୃଢ଼ ଭାବରେ ବସା ବାନ୍ଧିଥିଲା ।

କ୍ରିମିଆ ଯୁଦ୍ଧରେ ରୁଷ ଫ୍ରାନ୍ସ ଏବଂ ଇଂରେଜ ସୈନ୍ୟଙ୍କୁ ପରାଜିତ କରିସାରିଥିଲା । ସେଥିଯୋଗୁଁ ସେଠାକାର ସିପାହିମାନଙ୍କର ମନୋବଳ ବହୁତ ବଢ଼ି ଯାଇଥିଲା । ସେମାନେ ଏକଥା ଅନୁଭବ କରୁଥିଲେ ଯେ ଇଂରେଜ ସୈନ୍ୟମାନେ ଅଜେୟ ନୁହନ୍ତି । ଯଦି ରୁଷର ସେନା ତାଙ୍କୁ ହରେଇ ଦେଇପାରନ୍ତି ତା'ହେଲେ ଆମେ ମଧ୍ୟ ଇଂରେଜଙ୍କୁ ହରେଇ ଦେଇପାରିବା । ପାଖାପାଖି ଠିକ୍ ସେହି ସମୟରେ ବ୍ରହ୍ମଦେଶ ସହିତ ଇଂରେଜମାନଙ୍କର ଯୁଦ୍ଧ ହେବାର ସୂଚନା ମିଳୁଥିଲା । ସେଇଥିପାଇଁ କଳାସିପାହି ପଲଟଣଙ୍କୁ ବ୍ରହ୍ମଦେଶ ପଠାଇବା ପାଇଁ ବଦଳି କରିବା ଆରମ୍ଭ ହୋଇଯାଇଥିଲା । କିନ୍ତୁ ଏତେଦୂରକୁ ଯାଇ ମଧ୍ୟ ଦରମା ଓ ଭତ୍ତାରେ ବୃଦ୍ଧି ନ ହେବା ଯୋଗୁଁ ହିନ୍ଦୁସ୍ଥାନୀ ପଲଟଣ ବ୍ରହ୍ମଦେଶ ଯିବାକୁ ମନା କରିଦେଲେ । ପରିଣାମସ୍ୱରୂପ ସରକାରଙ୍କୁ ବ୍ରହ୍ମଦେଶକୁ ଗୋରା ପଲଟଣ ପଠାଇବାର ନିର୍ଣ୍ଣୟ ନେବାକୁ ପଡ଼ିଲା । ଏପରି ସ୍ଥିତିରେ ଭାରତରେ ଗୋରା ସୈନ୍ୟମାନଙ୍କର ସଂଖ୍ୟା ହ୍ରାସ ପାଇଥାନ୍ତା । ଏହି ଅବସରର ଫାଇଦା ଉଠାଇ ଯଦି ହିନ୍ଦୁସ୍ଥାନୀ ପଲଟଣ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ କରିଦିଏ ତ ସେମାନଙ୍କର ସମ୍ମୁଖୀନ ହେବାକୁ ଇଂରେଜ ସୈନ୍ୟ କମ୍ ଥିବେ ଏବଂ ତା'ପରେ ଇଂରେଜମାନଙ୍କର ନିଶ୍ଚିତ ପରାଜୟ ହେବ– ସେଇଥିପାଇଁ ଇଂରେଜଙ୍କ ବିରୋଧରେ ବିଦ୍ରୋହ ନିମନ୍ତେ ଏହାହିଁ ସୁବର୍ଣ୍ଣ ସୁଯୋଗ– ହିନ୍ଦୁସ୍ଥାନୀ ସିପାହିମାନଙ୍କ ମଧ୍ୟରେ ଏପରି ଚର୍ଚ୍ଚା ଆରମ୍ଭ ହୋଇଗଲା ।

କମ୍ପାନୀ ସରକାରଙ୍କ ଉପରେ ଅସନ୍ତୋଷ ପ୍ରକଟ କରିବାପାଇଁ ହିନ୍ଦୁସ୍ଥାନୀ ସିପାହିମାନଙ୍କର ଅନ୍ୟ ଏକ କାରଣ ମଧ୍ୟ ଥିଲା । ହିନ୍ଦୁସ୍ଥାନୀ ଓ ଇଂରେଜ ସିପାହିମାନଙ୍କର ପଦବୀ ଏକ ହୋଇଥିଲେହେଁ ସେମାନଙ୍କର ଦରମା ଓ ଭତ୍ତାରେ ବହୁତ ପାତରଅନ୍ତର କରାଯାଉଥିଲା । ହିନ୍ଦୁସ୍ଥାନୀ ସିପାହିମାନଙ୍କର ଦରମା ଓ ଭତ୍ତା କମ୍ ତ ଥିଲା; ସେମାନଙ୍କୁ ପଦୋନ୍ନତି ମଧ୍ୟ ମିଳୁ ନ ଥିଲା । ବହୁବର୍ଷ ଚାକିରି କଲା ପରେ ମଧ୍ୟ ଅଫିସର ପଦ ପାଇବା କଷ୍ଟକର ଥିଲା । ଏହାର ବିପରୀତରେ ଷୋହଳ–ସତର ବର୍ଷର ତରୁଣ ଇଉରୋପୀୟମାନଙ୍କୁ ଦି–ଚାରିବର୍ଷ ଚାକିରି କଲା ପରେ ଅଫିସର ପଦବୀରେ ନିଯୁକ୍ତ

କରି ଦିଆଯାଉଥିଲା । ଏ ବୟସରେ ବରିଷ୍ଠ ଓ ଅନୁଭବୀ ହିନ୍ଦୀ ସିପାହିମାନଙ୍କୁ ଏପରି ଅଫିସରଙ୍କ ଅଧସ୍ତନ ଭାବରେ କାମ କରିବାକୁ ପଡୁଥିଲା । ସେମାନଙ୍କର ଅପମାନଜନକ ହୁକୁମ, ଆଚରଣ ମଧ୍ୟ ସହିବାକୁ ପଡୁଥିଲା ।

ସିପାହିମାନଙ୍କ ପରି ସାଧାରଣ ଜନତାଙ୍କ ଭିତରେ ମଧ୍ୟ ଇଂରେଜ ବିରୋଧୀ ବିଦ୍ୱେଷର ଭାବନା ଗଢ଼ିଥିଲା । ନିରନ୍ତର ଭ୍ରମଣ କରୁଥିବା ସାଧୁ-ସନ୍ନ୍ୟାସୀ ଓ ବୈରାଗୀମାନେ ଜନସାଧାରଣରେ ଫିରିଙ୍ଗିମାନଙ୍କ ପ୍ରତି ବିରୋଧ ଭାବନା ଜାଗ୍ରତ କରି ନିଆଁରେ ଘିଅ ଢାଳିବା କାମ କରୁଥିଲେ । ରକ୍ତପତ୍ର ଓ ରୁଟିକୁ ବିଭିନ୍ନ ସ୍ଥାନରେ ପହଞ୍ଚାଇବା ବାହାନାରେ ପ୍ରତିଶୋଧର ସନ୍ଦେଶ ପହଞ୍ଚାଉଥିବା ବହୁସଂଖ୍ୟକ ଲୋକ ଏହି ସାଧୁ-ସନ୍ନ୍ୟାସୀ, ବୈରାଗୀ ହିଁ ଥିଲେ । ଝାନ୍ସୀ ଓ ତା'ର ଆଖପାଖ ଅଞ୍ଚଳରେ ଏପରି ଲୋକ 'ହରିବୋଲ' ନାମରେ ପରିଚିତ ଥିଲେ । ଏକଦମ୍ ଭୋରୁଁ, ସୂର୍ଯ୍ୟୋଦୟ ହେବା ପୂର୍ବରୁ, ଈଶ୍ୱରଙ୍କ ଗୁଣଗାନ ଗାଇ ଗାଇ ଏମାନେ ଗାଁ ଗାଁ ଭ୍ରମଣ କରୁଥିଲେ । ଏମାନେ ଭିକ୍ଷା ମାଗୁ ନ ଥିଲେ, କିନ୍ତୁ ଦାନଧର୍ମରେ ଯାହାକିଛି ମିଳୁଥିଲା; ତାହା ଗ୍ରହଣ କରୁଥିଲେ । ସେମାନଙ୍କ ଗୀତରେ ଇଂରେଜବିରୋଧୀ ସ୍ୱର ଥିଲା, ଯାହା ପ୍ରତିଟି ଲୋକଙ୍କୁ ଜାଗ୍ରତ କରିବାର କାମ କରୁଥିଲା । ଏହିସବୁ ଗୀତରେ ଧର୍ମାନ୍ତରଣ ପ୍ରତି ବିରାଗ ଓ ଘୃଣାର ଭାବନା ଭରି ରହିଥିଲା । ''ଧନ ବିଦେଶ ଚାଲିଯାଏ - ବଡ଼ ଦୁଃଖ ହୁଏ''-ସେମାନଙ୍କ ଗୀତର ଏପରି ଧାଡ଼ିସବୁ ଏହି ବାର୍ତ୍ତା ଦେଉଥିଲା ଯେ- ଇଂରେଜ ଆମମାନଙ୍କୁ ଆର୍ଥିକ ଶୋଷଣ କରୁଛନ୍ତି, ଲୁଟ୍‌ପାଟ୍ କରି ଆମ ସମ୍ପତ୍ତିକୁ ବିଦେଶ ପଠାଇ ଦେଉଛନ୍ତି ।

ସବୁ ବର୍ଗର ଲୋକମାନଙ୍କ ମଧ୍ୟରେ ଇଂରେଜ ବିରୋଧୀ ଭାବନା ତୀବ୍ରରୁ ତୀବ୍ରତର ହେବାରେ ଲାଗିଥିଲା ।

## ଦକ୍ଷିଣରେ ବିଦ୍ରୋହ

ଦକ୍ଷିଣ ହିନ୍ଦୁସ୍ଥାନରେ ଇଂରେଜଙ୍କ ପ୍ରତି ରୋଷର ଭାବନା ଉତ୍ତର-ହିନ୍ଦୁସ୍ଥାନ ପରି ଏତେଟା ପ୍ରଖର ନ ଥିଲା । ତଥାପି ନରଗୁନ୍ଦ ପରି ଛୋଟ ରାଜ୍ୟ ଏବଂ କୋଲ୍‌ହାପୁର ପରି ବଡ଼ ରାଜ୍ୟରେ ଇଂରେଜଙ୍କ ବିରୋଧରେ ଜୋରଦାର ସ୍ୱର-ଉତ୍ତୋଳନ କରାଯାଇଥିଲା । ସେ ସମୟରେ କୋହ୍ଲାପୁର ରାଜବଂଶର ନିଜସ୍ୱ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଥିଲା ଓ ଏହାର ରାଜ୍ୟଶାସନ ଅତ୍ୟନ୍ତ ବିଖ୍ୟାତ ଥିଲା । ୧୮୫୭ ଜୁଲାଇରେ କୋହ୍ଲାପୁର ମହାରାଜାଙ୍କ ସାନଭାଇ ଚିମାସାହେବ ବିଦ୍ରୋହ ଘୋଷଣା କରିଦେଲେ ।

ନାନାସାହେବ ପେଶବାଙ୍କ ସହିତ ସେ ସଂପର୍କ ସ୍ଥାପନ କଲେ । ନାନାସାହେବ ପେଶବା ଚିମାସାହେବଙ୍କ ସମ୍ମାନାର୍ଥେ ଉପହାରସ୍ୱରୂପ ତରବାରି ପ୍ରେରଣ କରିଥିଲେ । ଚିମାସାହେବ ଗୋଆଲିଅର ଏବଂ ସାତାରା ରାଜ୍ୟର ରାଜାମାନଙ୍କ ସହିତ ମଧ୍ୟ ସଂପର୍କ ସ୍ଥାପନ କଲେ । କିନ୍ତୁ ସେହି ବିଦ୍ରୋହରେ ଚିମାସାହେବ ପରାଜିତ ହେଲେ । ଇଂରେଜମାନେ

ଚିମାସାହେବଙ୍କୁ ଜେଲଦଣ୍ଡ ଦେଲେ । କରାଚୀରେ ବାରବର୍ଷ ନଜରବନ୍ଦୀ ଭାବରେ ରହିବା ପରେ ସେ ମୃତ୍ୟୁବରଣ କରିଥିଲେ । ୧୮୩୯ରେ ପୋଷ୍ୟସନ୍ତାନ ଅଧିକାର ଅସ୍ୱୀକାର କରି କମ୍ପାନୀ ସରକାର ସାତାରା ରାଜ୍ୟକୁ ନିଜ କବ୍‌ଜାକୁ ନେଇ ଯାଇଥିଲା । ଏହା ପରେ ନିଜର ସପକ୍ଷରେ ଦାବି ଉପସ୍ଥାପନ କରିବାକୁ ସାତାରା ରାଜ୍ୟର ରାଜା ପ୍ରତାପସିଂହ ରଙ୍ଗୋବାପୁଜୀଙ୍କୁ ଲଣ୍ଡନ ପଠାଇଥିଲେ । ସେଥିରେ ମଧ ସେ ନିରାଶ ହେଲେ । କିନ୍ତୁ ରଙ୍ଗୋବାପୁଜୀ ଲଣ୍ଡନରୁ ଫେରିବା ପରେ ୧୮୫୭ର କ୍ରାନ୍ତି ପୂର୍ବରୁ ସେ ନାନାସାହେବ ପେଶବା, ଅନ୍ୟ ରାଜା–ମହାରାଜା, ସରଦାର, ସୁବେଦାରମାନଙ୍କ ସହ ଯୋଗାଯୋଗ କରି ସେମାନଙ୍କ ଭିତରେ ପରସ୍ପର ମିଳାମିଶା କରାଇ ଇଂରେଜମାନଙ୍କ ବିରୋଧରେ ଏକଜୁଟ୍ ହୋଇ ବିଦ୍ରୋହ କରାଇବାରେ ନିଜର ଅକ୍ଳାନ୍ତ ଉଦ୍ୟମ ଆରମ୍ଭ କରି ଦେଇଥିଲେ । ଆପଣମାନେ ଏ ସଂପର୍କରେ ସବିସ୍ତାର ମୋର 'ପ୍ରସ୍ତାବନା'ରେ ପଢ଼ିଥିବେ ।

ନରଗୁନ୍ଦର ରାଜା ବାବାସାହେବଙ୍କ ପରାଜୟ ପରେ ବାବାସାହେବ ସେଠାରୁ ପଳାୟନ କରିବା ପରେ ନରଗୁନ୍ଦର କାର୍ଯ୍ୟାଳୟରେ ନାନାସାହେବ ପେଶବାଙ୍କ ଦ୍ୱାରା ପ୍ରେରିତ ଏକ ପତ୍ର ମିଳିଥିଲା । ପତ୍ରଟିରେ ଲେଖାଥିଲା– ''ସମସ୍ତ ସାମନ୍ତ, ଜାଗିରଦାର, ଜମିଦାର, ପଟବାରୀ, ଚୌଧୁରୀ, ଗ୍ରାମପ୍ରମୁଖ, ପ୍ରଗଣା–ଅଧିକାରୀ, ସେଠ–ସାହୁକାର ଏବଂ ଦକ୍ଷିଣ ଏବଂ କର୍ଣ୍ଣାଟକର ସବୁ ଶ୍ରେଣୀର ଲୋକମାନଙ୍କୁ ଧୋଣ୍ଡେ ପନ୍ତ ନାନାସାହେବ ପେଶବାଙ୍କ ତରଫରୁ ଏହି ସୂଚନା ଦିଆଯାଉଛି ଯେ–

ବେପାର କରିବାର ଉଦ୍ଦେଶ୍ୟ ନେଇ ଦଗାବାଜ ଇଂରେଜମାନେ ଏହି ଦେଶକୁ ଆସିଲେ ଏବଂ ସାମନ୍ତବାଦୀମାନଙ୍କୁ ରାଜଦ୍ରୋହ କରିବାପାଇଁ ପ୍ରବର୍ତ୍ତାଇ ସେମାନେ ସମସ୍ତ ହିନ୍ଦୁ ଏବଂ ମୁସଲମାନ ରାଜ୍ୟ ଉପରେ ନିଜର ଅଧିକାର ସାବ୍ୟସ୍ତ କଲେ । ବହୁ ରାଜା–ମହାରାଜାଙ୍କୁ କାରାଗାରରେ ବନ୍ଦୀ କଲେ । କେତେକ ଲୋକଙ୍କ ଅବସ୍ଥା ଏପରି ଖରାପ କରିଦେଲେ ଯେ ସେମାନଙ୍କୁ ବାଧହୋଇ ଭିକ୍ଷାବୃତ୍ତି କରିବାକୁ ପଡ଼ିଲା । କିନ୍ତୁ ସ୍ୱୟଂ ଇଂରେଜମାନେ ରାଜକୀୟ ବୈଭବର ଆନନ୍ଦ ନେବାରେ ଲାଗିଲେ । ଆପଣମାନେ ଏହି ସମସ୍ତ ବିଷୟରେ ଅବଗତ ଅଛନ୍ତି ।

ଥରେ ସମଗ୍ର ସାମ୍ରାଜ୍ୟକୁ ଗିଳିସାରିବା ପରେ ଏହି ଫିରିଙ୍ଗିମାନେ ଗର୍ବ–ଅହଙ୍କାରରେ ଫାଟି ପଡ଼ିଲେ । ଉପରେ ଉପରେ ସେହି ଲୋକମାନେ ନ୍ୟାୟର ମୁଖା ପିନ୍ଧି ନେଇଥିଲେ, କିନ୍ତୁ ସେମାନେ ଏଠିକାର ଜନସାଧାରଣଙ୍କୁ ନିଜ ଅତ୍ୟାଚାରର ଶିକାର ବନାଇଲେ । ଆମର ସମସ୍ତ ଧନସମ୍ପତ୍ତି ଉପରେ କବ୍‌ଜା କରି ଆମକୁ ଭୋକିଲା ଓ ଲଙ୍ଗଳା ରହିବା ପାଇଁ ବିବଶ କରିଦେଲେ । ଆମ ଦେଶବାସୀଙ୍କୁ ଧର୍ମ, ଜାତି ଛାଡ଼ିବା ପାଇଁ ଓ ଧର୍ମ–ପରିବର୍ତ୍ତନ କରିବାପାଇଁ ସେମାନଙ୍କର ପ୍ରୋତ୍ସାହନ ଏବଂ ଉଦ୍ୟମ ଜାରି ରହିଲା । କିନ୍ତୁ ଏସବୁ ସହଜରେ ହୋଇପାରିବା ଅସମ୍ଭବ ଦେଖି ସେମାନେ ଆମ ସମସ୍ତଙ୍କ ଉପରେ କଠୋରରୁ କଠୋର ଅତ୍ୟାଚାର କରିବାରେ ଲାଗିଲେ ।

ଶ୍ରଦ୍ଧାବାନ୍ ଏବଂ ପାପ–ଭୀରୁ ଲୋକମାନଙ୍କ ଉପରେ ଇଂରେଜମାନେ ଅନ୍ୟାୟ ଏବଂ ଦୁଷ୍ଟତାର ସହିତ ଅତ୍ୟାଚାର କରିବା ଆରମ୍ଭ କରିଦେଲେ । ଏପରି ବିଧର୍ମୀ ନାସ୍ତିକଙ୍କର ବିନାଶ କରି ପୂର୍ବ ପରମ୍ପରାଗତ ହିନ୍ଦୁ ଏବଂ ମୁସଲମାନ ରାଜ୍ୟମାନଙ୍କୁ ପୁଣିଥରେ ଫେରାଇଆଣି, ପୁନରାୟ ପ୍ରତିଷ୍ଠା କରି ନିଜର ଦେଶକୁ ରକ୍ଷା କରିବାକୁ ପରମେଶ୍ୱର ମତେ ଦୂତ କରି ପଠାଇଛନ୍ତି । ମୁଁ ନର୍ମଦା ନଦୀର ଉତ୍ତର କ୍ଷେତ୍ରକୁ ଜିତିସାରିଛି ।

ଏପରି କ୍ରୂର ରାକ୍ଷସ ପରି ବିଧର୍ମୀଙ୍କର ଶରଣ ନେଇ ସେମାନଙ୍କର ଅଧୀନରେ ରହିବା ଅତ୍ୟନ୍ତ ଅପମାନଜନକ ଅଟେ । ସେଥିପାଇଁ ଏହି ଘୋଷଣାପତ୍ର ଦେଖିଲାମାତ୍ରେ ଆପଣ ତୁରନ୍ତ ବୀରତ୍ୱ ସହକାରେ ହାତରେ ଉନ୍ମୁକ୍ତ ତରବାରି ଧରି ଏବଂ କୌଣସି ପ୍ରକାରର ଦୟାମାୟା ନ ରଖି ଏହି ଫିରିଙ୍ଗିମାନଙ୍କୁ ନାଶ କରନ୍ତୁ । ଏପରି କଲେ ଆପଣ ପୁଣ୍ୟ ଅର୍ଜନ କରିବେ । ଆପଣଙ୍କ ପୁରୁଷାର୍ଥ ସାର୍ଥକ ହେବ । ତତ୍‌ସହିତ ଚତୁର୍ଦ୍ଦିଗରେ ଆପଣଙ୍କର ଶୌର୍ଯ୍ୟ ଏବଂ ସାହସର ତୂର୍ଯ୍ୟନାଦ ବାଜିଉଠିବ ।

ହେ ଶୂରବୀରମାନେ, ଆପଣଙ୍କର ପୂର୍ବଜ ଏବଂ ଆପଣଙ୍କ ରାଜାଙ୍କ ଉପରେ ଫିରିଙ୍ଗିମାନେ କରିଥିବା ଅନ୍ୟାୟ, ଅତ୍ୟାଚାରର ପ୍ରତିଶୋଧ ନେବାପାଇଁ ଏହାହିଁ ଉପଯୁକ୍ତ ଅବସର ଅଟେ । ଏହି ସୁଯୋଗକୁ ହାତଛଡ଼ା କରନ୍ତୁ ନାହିଁ । ଯଦି ସୁଯୋଗର ଫାଇଦା ଉଠେଇପାରିବେ ନାହିଁ ତ ଦକ୍ଷିଣର ଲୋକମାନଙ୍କ ଉପରେ ମୂର୍ଖ ତଥା ନପୁଂସକ ହେବାର କଳଙ୍କ ଦାଗ ଲାଗିଯିବ ।

ଆଜିକାଲି ଧର୍ମ ସଂପର୍କରେ ଇଂରେଜମାନଙ୍କ ମଧ୍ୟରେ ବି ପାରସ୍ପରିକ ମତଭେଦ ସୃଷ୍ଟି ହୋଇଛି । ସେମାନେ ପରସ୍ପର ଭିତରେ ଲଢ଼େଇ କରି ପରସ୍ପରକୁ ସଂହାର କରିବାରେ ବ୍ୟସ୍ତ ଅଛନ୍ତି । ଫ୍ରାନ୍‌ସ ଏବଂ ରୁଷର ଲୋକମାନଙ୍କ ମଧ୍ୟରେ ପ୍ରଥମରୁ ହିଁ ଇଂରେଜମାନଙ୍କ ପ୍ରତି ଶତ୍ରୁତାର ଭାବନା ରହିଛି । ହିନ୍ଦୁସ୍ଥାନର ଇଂରେଜମାନଙ୍କୁ ମାରି ତଡ଼ିଦେବା ପାଇଁ ଏହି ଅବସରବାଦିତାର ଲାଭ ଉଠାଇ ସେମାନେ ତିନିମାସ ପୂର୍ବରୁ ହିଁ ସମୁଦ୍ର ପଥରେ ନିଜର ସୈନ୍ୟ ପଠାଇବା ଆରମ୍ଭ କରି ଦେଇଛନ୍ତି । ଚୀନ୍ ସହିତ ଯୁଦ୍ଧ କରିବାକୁ ଯଥେଷ୍ଟ ସୈନ୍ୟ ନ ଥିବା କାରଣରୁ ଇଂରେଜମାନଙ୍କ ଭିତରେ ବ୍ୟସ୍ତବିବ୍ରତ ଭାବ ବ୍ୟାପିଯାଇଛି । ଏହା ଅତିରିକ୍ତ ଇରାନ୍, ଆଫଗାନିସ୍ଥାନ ଏବଂ ବେଲୁଚିସ୍ଥାନ ଏବେ ଆମକୁ ସାହାଯ୍ୟ କରିବାପାଇଁ ନିଜର ସୈନ୍ୟବଳ ପଠାଇବାକୁ ତିଆର ଅଛନ୍ତି । ସଂକ୍ଷେପରେ କହିଲେ ଏହା ହେବ ଯେ ଏ ଦେଶରୁ ଇଂରେଜ ଶାସନର ଚେର ଉପାଡ଼ି ଦେବାଲାଗି ଏହାହିଁ ଏକମାତ୍ର ସୁବର୍ଣ୍ଣ ସୁଯୋଗ ଅଟେ । ଲୋକଙ୍କର ମନୋବଳ ହ୍ରାସ ପାଇଯାଉ, ସେଇଥିପାଇଁ ଇଂରେଜମାନେ ଦିଲ୍ଲୀକୁ କବ୍‌ଜା କରିନେଲେଣି, ଅନ୍ୟ ସ୍ଥାନରେ ବି ଆମକୁ ହରେଇ ଦେଲେଣି ପରି ମନଗଢ଼ା ଗୁଜବ ଲୋକଙ୍କ ଭିତରେ ପ୍ରଚାର କରୁଛନ୍ତି । ସେ ସବୁକୁ ଆଦୌ ବିଶ୍ୱାସ କରନ୍ତୁ ନାହିଁ । ଯଦି ଏପରି ଉପଯୁକ୍ତ ସମୟର ଲାଭ ଉଠାଇବେ ନାହିଁ ତେବେ ଆମେ ଆପଣଙ୍କୁ ଭର୍ତ୍ସନା କରିବୁ, ଆପଣଙ୍କୁ ଦଣ୍ଡ ଦେବୁ, ଆପଣଙ୍କର ଜମିବାଡ଼ି

ଏବଂ ଅନ୍ୟ ସମ୍ପତ୍ତି ମଧ୍ୟ ଜବତ୍ କରିନେବୁ । ଏହି ଫତୱା ବଲୀଶାହ୍, ବନ୍ଦଗୀନ, ବଲୀହଜ୍ଜୁର ଶ୍ରୀମାନ୍ ପ୍ରଧାନମନ୍ତ୍ରୀ ପେଶବା ଜାରି କରିଛନ୍ତି ।

ଏହି ପତ୍ରରେ ନାନାସାହେବ ନିଜକୁ ଦିଲ୍ଲୀ ବାହଶାହଙ୍କର ମିତ୍ର, ସେବକ ଓ ଉତ୍ତରାଧିକାରୀ ବୋଲି କହିଥିଲେ ।

ଗୋଆଲିଅରର ମହାରାଜା ଜିବାଜୀରାଓ ସିନ୍ଧିଆ ତ ଖୋଲାଖୋଲି ଇଂରେଜମାନଙ୍କ ପ୍ରତି ସମବେଦନା ପ୍ରକାଶ କରିଥିଲେ । ଗୋଆଲିଅରରେ ଇଂରେଜଙ୍କ ରାଜନୀତିକ ଏଜେଣ୍ଟ ମକ୍‌ଫର୍ସନ ୧୮୫୮ ମସିହା ୫ ଏପ୍ରିଲ୍‌ରେ କଲିକତା ପଠାଇଥିବା ଚିଠିରେ ଲେଖିଥିଲେ ଯେ– "ରାଣୀ ଲକ୍ଷ୍ମୀବାଈ ଝାନ୍‌ସୀରୁ କେଉଁ ଦିଗରେ ପ୍ରସ୍ଥାନ କରିଛନ୍ତି, ତାହା ଏଯାଏ ଜଣାପଡ଼ି ନାହିଁ । ତାଙ୍କୁ ଖୋଜିବା ଜାରି ରହିଛି । ଝାନ୍‌ସୀର ପରାଜୟ ଖବର ଶୁଣିବାମାତ୍ରେ ମହାରାଜ ସିନ୍ଧିଆ ଖୁସିରେ ୨୧ ଥର ତୋପସଲାମୀ ଦେଇଥିଲେ ।" (ସୁମନ୍ ତାମ୍ବେ ଝାନ୍‌ସୀ କି ରାନୀ, ପୃଷ୍ଠା–୯୦)

କିନ୍ତୁ ଏହା ମଧ୍ୟରେ ସିନ୍ଧିଆ ବାନ୍ଦାର ନବାବଙ୍କୁ ପତ୍ର ଲେଖି ସାହାଯ୍ୟ କରିବାର ଆଶ୍ୱାସନା ମଧ୍ୟ ଦେଇଥିଲେ । ୧୮୫୭, ନଭେମ୍ବର ୧୧ ତାରିଖରେ ଅଲୀ ବାହାଦୁରଙ୍କୁ ପଠାଇଥିବା ଚିଠିରେ ସିନ୍ଧିଆ ଲେଖିଥିଲେ– "ଆପଣ ଇଂରେଜମାନଙ୍କୁ ମାରିପିଟି ତଡ଼ି ଦେଇଛନ୍ତି ଶୁଣି ମୁଁ ଖୁବ୍ ସନ୍ତୋଷ ଲାଭ କରିଅଛି । ଯଦି କେହି ବିରୋଧ କରୁଥାନ୍ତି ତ ମତେ ସୂଚନା ଦେବେ, ମୁଁ ଆପଣଙ୍କୁ ସାହାଯ୍ୟ କରିବା ନିମନ୍ତେ ଫଉଜ ପଠାଇଦେବି, ରୀୱାର ରାଜା ନିଜ ପାଖରେ ବ୍ରିଟିଶ୍ ଲୋକମାନଙ୍କୁ ଆଶ୍ରୟ ଦେଇଛନ୍ତି, ମୋ ପାଖରେ ଏପରି ଖବର ପହଞ୍ଚିଛି । ତାଙ୍କର ଏପରି ଆଚରଣ ଅଶୋଭନୀୟ ଏବଂ ନିନ୍ଦନୀୟ ଅଟେ । ପାନ୍ନାର ରାଜା ମଧ୍ୟ ନାଗୋଡ଼ାରେ ଇଂରେଜମାନଙ୍କୁ ଆଶ୍ରୟ ଦେବାର ଖବର ମୁଁ ପାଇଛି । ଏହା ମଧ୍ୟ ଉଚିତ ନ ଥିଲା । ଏହି ପତ୍ର ପରେ ୧୮୫୭ ନଭେମ୍ବର ୧୮ ତାରିଖ ଦିନ ଅନ୍ୟ ଏକ ପତ୍ର ଲେଖି ସାହାଯ୍ୟ ଯୋଗାଇଦେବାର ପ୍ରସ୍ତୁତି ସଂପର୍କରେ ଦର୍ଶାଇଥିଲେ ଏବଂ 'ସମରଥର ରାଜାଙ୍କ ପରାମର୍ଶରେ ଏହି ପତ୍ର ଲେଖୁଛି' ବୋଲି ଲେଖିଥିଲେ । (ଏସ. ଏନ୍. ସିହ୍ନା Revolt of 1857 in Bundelkhand, ପୃଷ୍ଠା 101-102)

ଏହିସବୁ ତଥ୍ୟକୁ ଆଧାର କରି ମନରେ ଏକଥା ଉଠେ ଯେ ସିନ୍ଧିଆ ଏକସଙ୍ଗରେ ଦୁଇଟି ଡଙ୍ଗାରେ ବସି ସନ୍ତୁଳନ ରଖିବାର ସତର୍କତା ଅବଲମ୍ବନ କରୁଥିଲେ । ସଂକ୍ଷେପରେ କହିଲେ ଯିଏ ଜିତିବ ତା'ରି ସହିତ ରହିବାର ରାସ୍ତା ସେ ଉନ୍ମୁକ୍ତ ରଖିଥିଲେ । ଶ୍ରୀ ସିହ୍ନାଙ୍କୁ ଏହି ପତ୍ର ୧୯୮୦ ପାଖାପାଖି ପ୍ରାପ୍ତ ହୋଇଥିଲା । ଏପରି ଅଗଣିତ ଚିଠି ତଥା ଅନ୍ୟାନ୍ୟ ଲେଖାଲେଖି କେଉଁଠି ନା କେଉଁଠି ଏଠି ସେଠି ପଡ଼ି ରହିଥିବ । ଡାଃ. ବା.ଦ. ଦିବେକର ୧୮୫୭ର ଦକ୍ଷିଣ ହିନ୍ଦୁସ୍ଥାନ ସହିତ ସମ୍ବନ୍ଧିତ ବହୁ ନଥିପତ୍ର ଖୋଜି ବାହାର କରିଛନ୍ତି ଏବଂ ସେ ସମୟରେ ସେଠାରେ କେତେ ବ୍ୟାପକ ଭାବରେ ଇଂରେଜଙ୍କ ବିରୋଧରେ ବିଦ୍ରୋହ ହୋଇଥିଲା, ତା'ର ବିସ୍ତୃତ ବିବରଣୀ ମୁଁ 'ପ୍ରସ୍ତାବନା'ରେ ଲେଖିଅଛି । ଯେତିକି

ଅଧିକ ଅନ୍ୟାନ୍ୟ କାଗଜପତ୍ର ଓ ଲେଖାଲେଖି ମିଳୁଥିବ ସେତିକି ଅଧିକ ୧୮୫୭ ବିଦ୍ରୋହ ସହିତ ସମ୍ବନ୍ଧିତ ସ୍ପଷ୍ଟ ଓ ବାସ୍ତବ ଚିତ୍ର ଆଖି ଆଗରେ ଖୋଲି ଖୋଲି ଯିବ ।

## ସର୍ବନାଶର ଅୟମାରମ୍ଭ

୧୮୫୭ ମସିହାରେ ଇଂରେଜଙ୍କ ବିରୋଧରେ ମହାଯୁଦ୍ଧ ଆରମ୍ଭ ହୋଇଥିଲା କିନ୍ତୁ ବହୁବର୍ଷ ପୂର୍ବରୁ ସେଥିପାଇଁ ମାନସିକ ପ୍ରସ୍ତୁତି ଆରମ୍ଭ କରାଯାଇଥିଲା । ସେଥିରେ ରଙ୍ଗୋବାପୁଜୀଙ୍କର ବହୁତ ସକାରାତ୍ମକ, ବ୍ୟାପକ ଏବଂ ସକ୍ରିୟ ଯୋଗଦାନ ରହିଥିଲା । ସାତାରା ରାଜ୍ୟ ଅଧିକୃତ ହୋଇଗଲା ପରେ ରଙ୍ଗୋବାପୁଜୀ ରାଜାଙ୍କର କୈଫିୟତ୍ ନେଇ ଲଣ୍ଡନ ଯାଇଥିଲେ । କିନ୍ତୁ ସେଠାରୁ ତାଙ୍କୁ ନିରାଶ ହୋଇ ଫେରିବାକୁ ହେଲା । ତତ୍‌ପଶ୍ଚାତ୍ ସେ ମହାରାଷ୍ଟ୍ରର ରାଜା-ମହାରାଜା ଓ ସୈନ୍ୟମାନଙ୍କୁ ଫିରିଙ୍ଗିମାନଙ୍କ ବିରୋଧରେ ଉସ୍‌କେଇ ଗୋଟିଏ ସୂତ୍ରରେ ବାନ୍ଧିବା ପାଇଁ ସର୍ବାନ୍ତଃକରଣରେ ଉଦ୍ୟମ କରିଥିଲେ । ତାଙ୍କର ବାହାଦୁରି ଏବଂ ସାହସ ସମ୍ପର୍କରେ ପ୍ରବୋଧନକାର ଠାକରେ ବିସ୍ତାରିତ ଭାବରେ ସୂଚନା ପ୍ରଦାନ କରିଛନ୍ତି । ୧୮୫୭ ମସିହାର ସ୍ମୃତିଚାରଣ ଅବସରରେ ୧୯୫୭ ମେ ମାସରେ 'ନବଯୁଗ' ସାପ୍ତାହିକ ପତ୍ରିକା 'ସତାବନକୀ କ୍ରାନ୍ତି ବିଶେଷାଙ୍କ' ପ୍ରକାଶିତ କରିଥିଲା । ସେଥିରେ ପ୍ରବୋଧନକାର ଲେଖିଥିଲେ ଯେ "୧୮୫୪ ଜୁଲାଇ ମାସଠାରୁ ୧୮୫୫ ଡିସେମ୍ବର ମଧ୍ୟରେ ରଙ୍ଗୋବାପୁଜୀ ନାନାସାହେବଙ୍କୁ ଭେଟିବା ପାଇଁ ବିଠୁର ଯାଇଥିଲେ । ଦୁହିଁଙ୍କ ମଧ୍ୟରେ ତିନିଦିନ ଧରି ଗୁପ୍ତମନ୍ତ୍ରଣା ଚାଲିଲା ।" ରଙ୍ଗୋବାପୁଜୀ ନାନାସାହେବଙ୍କୁ କହିଥିଲେ- "ଏବେ ଇଂରେଜଙ୍କ ସହିତ ଲେଖାପଢ଼ା କରି ସଂଘର୍ଷ କରିବାର କୌଣସି ପ୍ରୟୋଜନ ଦେଖାଯାଉ ନାହିଁ କିମ୍ବା ସେଥିରୁ କିଛି ଅର୍ଥ ମଧ୍ୟ ବାହାରିବାର ନାହିଁ । କାଶୀରୁ ରାମେଶ୍ୱରଯାଏ ସମଗ୍ର ହିନ୍ଦୁସ୍ଥାନ ଦିନେ ହାତରେ ମଶାଲ ଧରି ଜାଗିଉଠିବ, ତେବେ ଯାଇ ଡଙ୍ଗା ଘାଟରେ ଲାଗିବ । ନ ହେଲେ ସବୁକିଛି ନିରର୍ଥକ ହୋଇଯିବ । ଏତଦ୍‌ବ୍ୟତୀତ ଯଦି କ୍ରାନ୍ତିର ପ୍ରୟାସ କରାଯାଏ ତା'ହେଲେ ଏହାର ସେନାପତି କିଏ ହେବେ ?" ରଙ୍ଗୋବାପୁଜୀ ନାନାସାହେବଙ୍କୁ ଏପରି ପ୍ରଶ୍ନ ପଚାରିଥିଲେ । ସେ ସମୟରେ ନାନାସାହେବ କିଛି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେଇ ନ ଥିଲେ । ତଥାପି- "ଏପରି ପରିସ୍ଥିତି ଉପୁଜିଲେ ଆମେ ସମସ୍ତ ଉତ୍ତର ହିନ୍ଦୁସ୍ଥାନର ଲୋକେ ଦକ୍ଷିଣର ରାଜବଂଶ ଓ ସାଧାରଣ ଜନତାଙ୍କୁ ପୁନର୍ଗଠିତ କରିବାକୁ ଜୀବନକୁ ବାଜି ଲଗେଇଦେବାରେ ପରବାୟ କରିବୁ ନାହିଁ ।" ଏହି ସଂକେତ ନିଶ୍ଚିତରୂପେ ସେହି ବୈଠକରେ ସ୍ପଷ୍ଟ ହୋଇଯାଇଥିଲା । "ଧରି ନିଅନ୍ତୁ ଆମେ ବିଦ୍ରୋହ କରିଦେଲୁ ତାହେଲେ ଆମକୁ ଆପଣଙ୍କ ପାଖରୁ କେଉଁ ପ୍ରକାରର ସାହାଯ୍ୟ ମିଳିବ ?"- ନାନାସାହେବ ରଙ୍ଗୋବାପୁଜୀଙ୍କୁ ଏହି ପ୍ରଶ୍ନ କରିଥିଲେ । ସେ ଏହି ପ୍ରଶ୍ନର ଉତ୍ତର ଦେଇ କହିଥିଲେ- "ମୁଁ ନିଜ ଅଞ୍ଚଳରେ ହଜାରେ ଲୋକ ଏବଂ ନିଜର ଦୁଇ ଭଣଜାଙ୍କୁ ଆପଣଙ୍କୁ ବାର୍ତ୍ତା ପାଇବାମାତ୍ରେ ପଠାଇଦେବି । ଉତ୍ତରଦିଗରେ ଭୋର ସମୟରେ ଶଙ୍ଖନାଦ ଶୁଣାଯିବାମାତ୍ରେ

ମୁଁ ଦକ୍ଷିଣରେ ଦୁନ୍ଦୁଭି ବଜାଇବା ଆରମ୍ଭ କରିଦେବି ।'' ସେ ଏପରି ଆଶ୍ୱାସନା ମଧ୍ୟ ଦେଇଥିଲେ ।

ରଙ୍ଗୋବାପୁଜୀଙ୍କୁ ସାତାରାର ରାଣୀ ରାଜସବାଈ ସମର୍ଥନ କରୁଥିଲେ । ନାସିକ, ତ୍ର୍ୟମ୍ବକେଶ୍ୱରରୁ ବାଙ୍ଗାଲୋର, ତାଞ୍ଜାବୁର ଯାଏ ତାଙ୍କର ଗୁପ୍ତଚରମାନେ ସମର୍ଥନ ଜୁଟାଇବାକୁ କାର୍ଯ୍ୟରତ ଥିଲେ । କୋହ୍ଲାପୁରର ଛତ୍ରପତି ବାବାସାହେବ ଇଂରେଜଙ୍କ ଅଧୀନସ୍ଥ ହୋଇଥିଲେ ହେଁ ତାଙ୍କର ସାବତଭାଇ ଚିମାସାହେବ ରଙ୍ଗୋବାପୁଜୀଙ୍କୁ ପୂରାପୂରି ପ୍ରୋତ୍ସାହିତ କଲେ । ଅସ୍ତ୍ରଶସ୍ତ୍ର, ଗୋଳାବାରୁଦ ଓ ଟଙ୍କାପଇସା ଦେଇ ମଧ୍ୟ ସାହାଯ୍ୟ କରିଥିଲେ । ଏହାଛଡ଼ା କୋହ୍ଲାପୁର, ବେଲଗାଓଁ, ଧାରବାଡ଼ସ୍ଥିତ କମ୍ପାନୀ ସରକାରରେ କାର୍ଯ୍ୟରତ ଦେଶୀ ସିପାହିମାନଙ୍କ ମଧ୍ୟରେ ବିଦ୍ରୋହର ବୀଜ ବପନ କରିବାର ଦାୟିତ୍ୱ ସେ ନିଜେ ଗ୍ରହଣ କରିଥିଲେ । ସାତାରାର ପୋଲିସ୍ କୋତୱାଲ ଅନ୍ତାଜୀରାଜେ ବାବାସାହେବ ଶିର୍କେ ରଙ୍ଗୋବାପୁଜୀଙ୍କୁ ସମର୍ଥନ କରି ଖୋଲାଖୋଲି ଆଗକୁ ଆଗେଇ ଆସିଥିଲେ । ମିରଜ, ସାଙ୍ଗଲୀ, ଔନ୍ଧର ଲୋକଙ୍କୁ ରଙ୍ଗୋବାପୁଜୀ ଧମକ ଦେଇ କହିଥିଲେ– ''ଯଦି ଆମ ଆଡ୍‌ଡାର ଖବର ଇଂରେଜଙ୍କୁ ଜଣାଇବ ତ ଆମେ ତମକୁ ସଫା କରିଦେବୁ ।''

ଇତିମଧ୍ୟରେ ୟୁରୋପରେ ଇଂଲଣ୍ଡ ଓ ରୁଷ ମଧ୍ୟରେ ଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ''ହିନ୍ଦୁସ୍ଥାନରେ ବିଦ୍ରୋହ ନିମନ୍ତେ ଏହାହିଁ ଉଚିତ ସମୟ ଅଟେ'' । ଏହି କଥା କହି ଅଲଗା ଅଲଗା ବେଶରେ ପାଞ୍ଚଶହ ଲୋକଙ୍କୁ ସେ ବିଠୁର ପଠାଇଦେଲେ । ନିଜର ଭଣଜା ଦୁହିଁଙ୍କୁ ମଧ୍ୟ ପଠାଇଦେଲେ । ''ଆପଣ ଆଗେଇ ଯାଆନ୍ତୁ, ଆମେ ପହଞ୍ଚୁଛୁ । ଆଜିମୁଲ୍ଲା ଉପରେ ଭରସା କରନ୍ତୁ ନାହିଁ'' ଏପରି ସୂଚନା ମଧ୍ୟ ପଠାଇଲେ । କିନ୍ତୁ ଆଜିମୁଲ୍ଲା ନାନାସାହେବଙ୍କର ବିଶ୍ୱାସ ପାତ୍ର ଥିଲେ । ଭୋରର ରାଜା ପନ୍ତସଚିବ କାୟମନ–ବାକ୍ୟ ଅର୍ଥରେ ରଙ୍ଗୋବାପୁଜୀଙ୍କୁ ସହାୟତା ଯୋଗାଇବାରେ ଲାଗିଥିଲେ । ନିଜର ଗୁପ୍ତଚର କୃଷ୍ଣାଜୀ ସଦାଶିବ ସିନ୍ଦକରଙ୍କୁ ହିଁ ପାଞ୍ଚଶହ ଲୋକଙ୍କ ସାଥିରେ ବିଠୁର ପଠାଇଥିଲେ । ପରେ ସେ ହିଁ ବିଶ୍ୱାସଘାତକତା କରି ରଙ୍ଗୋବାପୁଜୀଙ୍କୁ ହିଁ ଇଂରେଜଙ୍କ ହାତରେ ଧରାଇଦେଇଥିଲେ । ଇଂରେଜମାନେ ତାଙ୍କୁ ଗୋଆଲିଅର ଜେଲ୍‌ରେ ବନ୍ଦୀ କରି ରଖିଲେ । ସେଠାରୁ ରଙ୍ଗୋବାପୁଜୀ ପଳାୟନ କରିଥିଲେ । ୧୮୫୭ ପରେ ବହୁବର୍ଷଯାଏ ରଙ୍ଗୋବାପୁଜୀ ଅଜ୍ଞାତବାସରେ ରହି ଏଠି ସେଠି ଘୂରିବାକୁ ଲାଗିଲେ । ଡାଃ. ବା.ଦ. ଦିବେକର ନିଜର ପୁସ୍ତକ '୧୮୫୭ର ଯୁଦ୍ଧ, ଜ୍ୱଳନ୍ତ ଦକ୍ଷିଣ ହିନ୍ଦୁସ୍ଥାନ'ରେ ଏହି ଘଟଣା ଉଲ୍ଲେଖ କରିଛନ୍ତି । ଲେଫ୍‌ଟନାଣ୍ଟ ଗ୍ରାଣ୍ଟ ଜେକବ୍ ତାଙ୍କର ପୁସ୍ତକ 'ୱେଷ୍ଟର୍ଣ୍ଣ ଇଣ୍ଡିଆ'ରେ ଲେଖିଛନ୍ତି– ''ସାତାରାର ଅସନ୍ତୋଷର ଫାଇଦା ନେବା କାରଣରୁ ରଙ୍ଗୋବାପୁଜୀ, ନାନାସାହେବ ପେଶବାଙ୍କ ସହିତ ୧୮୫୭–୫୮ର ଅଗ୍ରଗଣ୍ୟ ପ୍ରେରଣା ନାୟକ ବୋଲାଇବେ'' (ପୃ–୧୫୮) । ନାନାସାହେବ ପେଶବାଙ୍କ ପରି ରଙ୍ଗୋବାପୁଜୀଙ୍କର ଅନ୍ତ ମଧ୍ୟ ଗୂଢ଼ ରହସ୍ୟ ହୋଇଯାଇଛି ।

୧୮୫୭ ମେ ୧୧ ତାରିଖ ଦିନ ମିରଠର ପଦାତିକ ଏବଂ ଘୋଡ଼ସବାର ବାହିନୀ ବିଦ୍ରୋହ ଘୋଷଣା କଲେ । ଗୋଟିଏ ଦିନ ପୂର୍ବରୁ ଗାଈ ଓ ଘୁଷୁରିର ଚର୍ବିବୋଳା କାରତୁସ୍‌କୁ ଗ୍ରହଣ କରିବାକୁ ମନା କରିଦେବାରୁ ମିରଠର କମାଣ୍ଡିଂ ଅଫିସର ହିନ୍ଦୁସ୍ଥାନୀ ସିପାହିମାନଙ୍କୁ ହାତକଡ଼ି ଏବଂ ବେଡ଼ି ପିନ୍ଧାଇ ଜେଲରେ ଭର୍ତ୍ତି କରିଦେଲେ । ୧୧ ମଇରେ ଅନ୍ୟ ହିନ୍ଦୁସ୍ଥାନୀ ସିପାହିମାନେ ଯେତେବେଳେ କସରତ କରିବା ନିମନ୍ତେ ନିଜ ବାରାକ୍‌ରୁ ବାହାରକୁ ବାହାରିଲେ, ସେତେବେଳେ ଗ୍ରାମବାସୀମାନେ ବ୍ୟଙ୍ଗ ବିଦ୍ରୂପ କରି ପଚାରିଲେ– ‘‘ଆପଣମାନଙ୍କର ଭାଇବନ୍ଧୁଙ୍କୁ ହାତଗୋଡ଼ରେ ହାତକଡ଼ି ପିନ୍ଧାଇ ଇଂରେଜମାନେ ଜେଲ୍‌ରେ ପୂରାଇଛନ୍ତି, ଆପଣମାନେ ସେହି ଫିରିଙ୍ଗିମାନଙ୍କର ହୁକୁମ୍ କାହିଁକି ପାଳନ କରୁଛନ୍ତି ? ଯେଉଁ ବନ୍ଧୁକ, କାରତୁସ୍ ନିଜର ଧର୍ମଭ୍ରଷ୍ଟ କରାଉଛି, ତାକୁ ସ୍ୱୀକାର କରିବାକୁ ଆପଣମାନେ କାହିଁକି ମନା କରି ଦେଉ ନାହାନ୍ତି ? କୁଆଡ଼େ ଗଲା ଆପଣମାନଙ୍କର ଧର୍ମନିଷ୍ଠା, କୁଆଡ଼େ ଗଲା ଆପଣମାନଙ୍କର ସ୍ୱାଭିମାନ ?’’ ଏହି ପ୍ରକାରର ଆଘାତ ଦେଇଥିବା ଶବ୍ଦ ଶୁଣି ସିପାହିମାନେ ମନେ ମନେ ଅନୁତାପ କଲେ । ପରେଡ୍ ପଡ଼ିଆରେ ପହଞ୍ଚିବାମାତ୍ରେ ଯେଉଁ ସିପାହିମାନଙ୍କୁ ଧରି ବେଡ଼ି ପକେଇ ରଖାଯାଇଥିଲା, କମାଣ୍ଡିଂ ଅଫିସରଙ୍କ ନିକଟରେ ସେମାନଙ୍କୁ ତୁରନ୍ତ ଖଲାସ କରିବାର ଦାବି କରାଗଲା । କିନ୍ତୁ ସେମାନଙ୍କର ଦାବିକୁ ନାମଞ୍ଜୁର କରି ଦିଆଗଲା । ଆବେଶବଶତଃ ସିପାହିମାନେ ଇଂରେଜମାନଙ୍କୁ ପିଟିବାକୁ ଆରମ୍ଭ କଲେ । ସର୍ବପ୍ରଥମେ ସିପାହିମାନେ ଛାଉଣୀର ଇଂରେଜମାନଙ୍କୁ ମାରିବାକୁ ଲାଗିଲେ । ଏହା ପରେ ଗାଁରେ ରହୁଥିବା ଗୋରା ସିପାହିମାନଙ୍କୁ ବଧ କରିବା ଆରମ୍ଭ କରିଦେଲେ । ଜେଲ୍‌ରେ ବନ୍ଦୀ ଥିବା ସିପାହିମାନଙ୍କୁ ମୁକ୍ତ କଲେ ଏବଂ ହିନ୍ଦୁସ୍ଥାନୀମାନଙ୍କର ପଟୁଆର୍ ଦିଲ୍ଲୀ ଅଭିମୁଖେ ରାତାରାତି ପ୍ରସ୍ଥାନ କଲା । ସୂର୍ଯ୍ୟୋଦୟ ପୂର୍ବରୁ ଏହି ଲୋକମାନେ ଦିଲ୍ଲୀରେ ପ୍ରବେଶ କରିସାରିଥିଲେ । ରାସ୍ତାରେ ଯେତେ ଇଂରେଜ ଫିରିଙ୍ଗି ଭେଟ ହେଲେ ସେମାନଙ୍କୁ ହାଣି–ମାରି ଲାଲକିଲ୍ଲାରେ ପହଞ୍ଚିଲେ । ଅଶୀବର୍ଷର ବୃଦ୍ଧ ରୁଗ୍ଣ, ଦୁର୍ବଳ ନାମକୁମାତ୍ର ବାଦଶାହ ବାହାଦୁରଶାହ ଜାଫରଙ୍କୁ ଔପଚାରିକ ଭାବେ ପୁନଶ୍ଚ ମୟୂର ସିଂହାସନରେ ବସାଇ ଦିଆଗଲା ଏବଂ ବାଦଶାହଙ୍କ ନାମରେ ଧେଣ୍ଡୁରା ବଜାଇ ଦିଆଗଲା ।

ଏହି ଖବର ଦ୍ୱିତୀୟ ଦିନ ଝାନ୍‌ସୀରେ ପହଞ୍ଚିଲା । ଝାନ୍‌ସୀର ସୈନିକ ଛାଉଣୀରେ ପଦାତିକ ଓ ଘୋଡ଼ସବାରଙ୍କ ପଲଟଣରେ ଏହି ଘଟଣାକୁ ନେଇ ସବିସ୍ତାର ଆଲୋଚନା କରାଗଲା । କିନ୍ତୁ ପ୍ରତ୍ୟକ୍ଷ ରୂପରେ ତା’ର କୌଣସି ଫଳାଫଳ ଆଗକୁ ଆସିଲା ନାହିଁ । ଝାନ୍‌ସୀ ଶାନ୍ତ ଥିଲା । ସେଠିକାର ସିପାହିମାନଙ୍କ ଭିତରେ କୌଣସି ପ୍ରକାରେ ପ୍ରତିକୂଳ ହଲଚଲ୍ ନ ଥିଲା ।

୧୮ ମଇରେ ଝାନ୍‌ସୀର କମିଶନର ଆଲେକ୍‌ଜାଣ୍ଡାର ସ୍କିନ୍, ଆଗ୍ରାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କୁ ଏକ ପତ୍ର ଲେଖିଲେ । ସେହି ପତ୍ରରେ ସ୍କିନ୍ ଲେଖିଥିଲେ– ‘‘ମୋର ଏପରି ଅନୁଭବ ହେଉଛି ଯେ ଏହି ଅଞ୍ଚଳରେ ଆତଙ୍କିତ ହେବା ପରି କିଛି କଥା ନାହିଁ । ମିରଠ

ଏବଂ ଦିଲ୍ଲୀରେ ଯାହା ବି ଅତ୍ୟାଚାର ହୋଇଛି, ସେ ସଂପର୍କରେ ଏଠିକାର ସିପାହିମାନେ ପ୍ରତିକୂଳ ପ୍ରତିକ୍ରିୟା ବ୍ୟକ୍ତ କରିଛନ୍ତି ତଥା ଏହାର ତିରସ୍କାର ମଧ୍ୟ କରିଛନ୍ତି । ମୁଁ ଅତ୍ୟନ୍ତ ଖୁସି ଯେ ଏଠିକାର ସିପାହିମାନେ ପ୍ରଭୁଭକ୍ତ ଅଟନ୍ତି । ଏଠିକାର ବରିଷ୍ଠ ଅଧିକାରୀ କ୍ୟାପ୍‌ଟେନ୍ ଡନ୍‌ଲପ୍ ଜଣେ ଯୋଗ୍ୟ ଅଧିକାରୀ ଅଟନ୍ତି । ସିପାହିମାନଙ୍କ ଉପରେ କିପରି ନିଜର ଆଧିପତ୍ୟ ଜାହିର କରାଯାଇପାରେ, ଏକଥା ତାଙ୍କୁ ଭଲଭାବରେ ଜଣାଅଛି । ମତେ ଲାଗୁ ନାହିଁ ଯେ ଏଠିକାର ସିପାହିମାନଙ୍କ ମଧ୍ୟରେ କୌଣସି ପ୍ରକାର ଅସନ୍ତୋଷ ବ୍ୟାପିବ ।'' ପତ୍ରରେ ପ୍ରଥମେ ସେ ଆଖପାଖର ଛୋଟ ଛୋଟ ରାଜା ମହାରାଜାଙ୍କ ସଂପର୍କରେ ସୂଚନା ଦେଇ କାହାର କେଉଁପରି ସ୍ଥିତି, ଆଭିଜାତ୍ୟ, ବଂଶବୁନିଆଦି, କାହାର ବୁଦ୍ଧି କମ୍ ଏବଂ କାହାକୁ ନଗଣ୍ୟ ମନେ କରାଯିବ, ସେ ସବୁ କଥା ଜଣାଇଥିଲେ । ଉପରନ୍ତୁ ସେ ଏହା ମଧ୍ୟ ଲେଖିଥିଲେ ଯେ– ''ଆମେ ପୂରାପୂରି ସୁରକ୍ଷିତ ଅଛୁଁ, ଏହା ମୋର ବିଶ୍ୱାସ । ଏହି କଥା ମୁଁ ସଂପୂର୍ଣ୍ଣ ଆତ୍ମବିଶ୍ୱାସର ସହିତ କହିପାରିବି ।

ଏହି ଚିଠି ପରେ ସ୍କିନ୍ ୩୦ ମଇରେ ଦ୍ୱିତୀୟ ପତ୍ର ଲେଖିଥିଲେ । ସେଥିରେ ସେ ଲେଖିଥିଲେ ଯେ ''ଏଠାରେ ପୂର୍ଣ୍ଣ ଶାନ୍ତି ବିରାଜମାନ କରୁଛି, ସିପାହିମାନେ ପୂରାପୂରି ବଚନବଦ୍ଧ ଅଛନ୍ତି ଓ ନିଜ କଥା ରକ୍ଷା କରୁଛନ୍ତି । କିନ୍ତୁ ଗାଁର ଅମୀର ଓ ଠାକୁର୍‌ମାନଙ୍କ ମନ ଭିତରେ ସାମାନ୍ୟ ଆଲୋଡ଼ନର ଆଭାସ ମିଳୁଛି, ସେହି ଲୋକମାନଙ୍କର କୌଣସି ସରକାର ପ୍ରତି ନା କୌଣସି ଆନ୍ତରିକତା ଥିଲା ନା ସେଥିପ୍ରତି ସେମାନେ କେବେ କୌଣସି ଆଗ୍ରହ ପ୍ରକାଶ କରିଛନ୍ତି । କିଛି ନା କିଛି ତ କରିବା ଉଚିତ, ସେମାନେ ଏହି ପ୍ରକାରର କଥା କହୁଥିଲେ । କିନ୍ତୁ ମୋର ବିଶ୍ୱାସ ସବୁକିଛି ଠିକ୍ ହୋଇଯିବ ।''

ଏହା ପରେ ୩ ଜୁନ୍‌ରେ ସ୍କିନ୍ ଆଉ ଗୋଟିଏ ପତ୍ର ଲେଖିଲେ । ସେଥିରେ ସେ କହିଥିଲେ ଯେ ''ଏପର୍ଯ୍ୟନ୍ତ ଆମେ ସୁରକ୍ଷିତ ଅଛୁଁ । ପାଖଆଖରେ ଠାକୁର, ପବାର ଏବଂ ଅନ୍ୟ ଜାତିର ଲୋକେ କରେରା ଗାଁ ଉପରେ ଆକ୍ରମଣ କରିବାକୁ ବିଚାର କରୁଛନ୍ତି, ସୋମବାର ରାତିରେ ମୋତେ ଏହି ଖବର ମିଳିଥିଲା । ତା'ପରେ ମୁଁ ତୁରନ୍ତ ଯାଇ ମଧ୍ୟରାତ୍ରିରେ ନେଲ୍‌ପକୁ ଭେଟିଲି । ସକାଳ ଆଠଟାରେ ପଦାତିକ ଏବଂ ଅଶ୍ୱାରୋହୀ ସୈନ୍ୟଙ୍କର ଏକ ଦଳକୁ ମୁଁ ସହର ଆଡ଼କୁ ପଠାଇଲି । ସେମାନେ ସେଠାରେ ସନ୍ଧ୍ୟା ସାତଟା ପାଖାପାଖି ପହଞ୍ଚିଗଲେ । ସେତେବେଳକୁ ଠାକୁର ସେଠାରୁ ପଳାୟନ କରିଥିଲେ, ସେମାନେ ଆକ୍ରମଣ ହିଁ କଲେ ନାହିଁ । ଶୁଣୁଛି ସବୁଆଡ଼େ ବିଦ୍ରୋହ ବ୍ୟାପିଲାଣି । କିନ୍ତୁ କେବଳ ଝାନ୍‌ସୀର ସିପାହିମାନେ ପୂରାପୂରି ପ୍ରଭୁଭକ୍ତ ହୋଇ ରହିଛନ୍ତି ।'' ( A History of the Great Revolt, Part-III, John William, Page 362 to 364)

କ୍ୟାପଟେନ୍ ସ୍କିନ୍ ବାରମ୍ବାର ସିପାହିମାନଙ୍କର ପ୍ରଭୁଭକ୍ତି ସଂପର୍କରେ ବିଶ୍ୱାସ ଦେଉଥିଲେ । କିନ୍ତୁ ବାସ୍ତବିକତା ଅନ୍ୟ କିଛି ଥିଲା । ଜୁନ ୨ ତାରିଖରେ ସେନାଛାଉଣୀରେ ୨ ଜଣ ଗୋରାଙ୍କ ବଙ୍ଗଳାରେ ନିଆଁ ଲଗାଇ ଦିଆଗଲା । କେଉଁ କାରଣରୁ ନିଆଁ ଲାଗିଲା

ସେ ବିଷୟରେ ନିର୍ଦ୍ଦିଷ୍ଟ କିଛି ଜଣାପଡ଼ିଲା ନାହିଁ । ଏହା ଏକ ଆକସ୍ମିକ ଦୁର୍ଘଟଣା ହୋଇପାରେ ଅଥବା ଆଗାମି ଘଟଣାବଳୀର ଏକ ସଙ୍କେତ ମଧ୍ୟ ହୋଇପାରେ ।

ଏହା ସହିତ ଅନ୍ୟ କେତେକ ମହତ୍ତ୍ୱପୂର୍ଣ୍ଣ ଘଟଣାବଳୀ ଉପରେ ଦୃଷ୍ଟିନିକ୍ଷେପ କରିବା ମଧ୍ୟ ଜରୁରି ଅଟେ । ଝାନ୍ସୀର ବଙ୍ଗଳା ରେଜିମେଣ୍ଟର ଜଣେ ସିପାହିଙ୍କ ସଂପର୍କୀୟ ଦିଲ୍ଲୀର ବଙ୍ଗଳା ରେଜିମେଣ୍ଟ ତରଫରୁ ଏକ ପତ୍ର ଆଣି ଆସିଥିଲେ । ସେଇ ପତ୍ରରେ ଲେଖାହୋଇଥିଲା ଯେ– "ସବୁଆଡ଼ର ବଙ୍ଗଳା ରେଜିମେଣ୍ଟର ସିପାହିମାନେ ଇଂରେଜଙ୍କ ବିରୋଧରେ ଧର୍ମଯୁଦ୍ଧ ଘୋଷଣା କରିଛନ୍ତି ଏବଂ ଯେହେତୁ ଝାନ୍ସୀର ବଙ୍ଗଳା ରେଜିମେଣ୍ଟ ଏ ସମ୍ବନ୍ଧରେ ଚୁପ୍ ହୋଇ ରହିଛି, କୌଣସି ପଦକ୍ଷେପ ନେଉ ନାହିଁ, ସେଥିପାଇଁ ଆମେ ତାକୁ ଧର୍ମଭ୍ରଷ୍ଟ ବୋଲି ଧରିନେଇ ଜାତିରୁ ବହିଷ୍କାର କରୁଅଛୁଁ ।" ଏହି କଟୁକ୍ତି କାମ ଦେଖାଇଲା । ଏହା ପରେ ଦେବୀସିଂହ, ନୌରଙ୍ଗସିଂହ, ଜୟସିଂହ, ଛୟଦିନ ସିଂହ ଏହି ଚାରିଜଣ ସିପାହି ତୁରନ୍ତ ଅନ୍ୟ ସିପାହିମାନଙ୍କୁ ବିଦ୍ରୋହ କରିବାପାଇଁ ଉସ୍‌କେଇବାରେ ଲାଗିଲେ ଏବଂ ସ୍ଥିର କଲେ ଯେ ଝାନ୍ସୀ ସହରର ବାହାରେ ଥିବା ଷ୍ଟାର୍‌ଫୋର୍ଡ଼ ନାମକ ଛୋଟ ଦୁର୍ଗ ପାଖରେ ଇଂରେଜସୈନ୍ୟଙ୍କ ଛାଉଣୀ ଉପରେ ଆକ୍ରମଣ କରାଯିବ । "ସେଠାକୁ ଯାଇ ଆମେ ଜୋର୍‌ରେ ଚିତ୍କାର କରି କହିବା ଯେ ଲୁଟେରାମାନେ ଷ୍ଟାର୍‌ଫୋର୍ଡ଼ ଉପରେ ଆକ୍ରମଣ କରିବାକୁ ଆସୁଛନ୍ତି । ଏହା ଶୁଣି ସମସ୍ତ ପଲଟଣ ମୁକାବିଲା କରିବାକୁ ନିଜ ନିଜ ବାରାକ୍‌ରୁ ବାହାରକୁ ବାହାରି ଆସିବେ । ସେତିକିବେଳେ ମଉକା ଦେଖି ଆମେ ତାଙ୍କ ଉପରେ ଆକ୍ରମଣ କରିଦେବା ।" (ଦି. ରିଭୋଲ୍ଟ ଅଫ୍ ୧୮୫୭ ଇନ୍ ବୁନ୍ଦେଲଖଣ୍ଡ, ଏସ୍.ଏନ୍.ସିହ୍ନା, ପୃଷ୍ଠା ୭୨)

୧୮୫୭ର ଜୁନ୍ ୫ ତାରିଖରେ ଭରା ଦ୍ୱିପ୍ରହରର ତିନିଟାବେଳେ ଡହ ଡହ ଖରାରେ ଷ୍ଟାର୍‌ଫୋର୍ଡ଼ ଦିଗରୁ ଗୁଳିଗୋଳାର ଶବ୍ଦ ଶୁଣାଗଲା ଏବଂ ଝାନ୍ସୀରେ ଇଂରେଜଙ୍କ ବିରୋଧରେ ଖୋଲା ବିଦ୍ରୋହ ଆରମ୍ଭ କରି ଦିଆଗଲା । ଇଂରେଜମାନେ ଭାବିଲେ ଯେ– ଯଦି ଆମେ ଆକ୍ରମଣକାରୀ ସିପାହିମାନଙ୍କ ବିରୋଧ କରିବା ତା'ହେଲେ ଏହି ଯୁଦ୍ଧ ବ୍ୟାପକ ରୂପ ନେବାର ସମ୍ଭାବନା ଅଛି । ମନରେ ଉଠୁଥିବା ଭୟରୁ ଇଂରେଜମାନେ କୌଣସି ପ୍ରକାରର ବିରୋଧ କଲେ ନାହିଁ । ଏକ ଘଣ୍ଟା ଯାଏ ଷ୍ଟାର୍‌ଫୋର୍ଡ଼ରେ ସିପାହିମାନେ ଖୁବ୍ ଉପଦ୍ରବ କଲେ । ସେପର୍ଯ୍ୟନ୍ତ କୌଣସି ହତ୍ୟା କିମ୍ବା ରକ୍ତପାତ ଘଟି ନ ଥିଲା । ସେଠିକାର ତୋପ, ହତିଆର ଏବଂ ଟ୍ରେଜେରୀର ପାଞ୍ଚଲକ୍ଷ ଟଙ୍କାକୁ ସିପାହିମାନେ ନିଜ କବ୍‌ଜାକୁ ନେଇଗଲେ । ଷ୍ଟାରଫୋର୍ଡ଼ରେ ରହୁଥିବା ମହିଳା ଓ ଶିଶୁଙ୍କ ସମେତ ସମସ୍ତ ୟୁରୋପିଆନ୍ ଏବଂ ଆଂଗ୍ଲୋଇଣ୍ଡିଆନ ଲୋକଙ୍କୁ ଝାନ୍ସୀର ମୁଖ୍ୟ କିଲ୍ଲାରେ ପହଞ୍ଚାଇ ଦିଆଗଲା । ସେଠାରେ ପହରା ବ୍ୟବସ୍ଥା ମଧ୍ୟ କରାଗଲା । ପରେ ପରେ ଏହା ଜଣାଗଲା ଯେ କେବଳ ୩୫ ଜଣ ସିପାହି ଏହି ଗଣ୍ଡଗୋଳ କରିଥିଲେ । କ୍ୟାପ୍‌ଟେନ୍ ଗାର୍ଡ଼ନ ତୁରନ୍ତ ଗୋଆଲିଅର, ନୌଗାଏ ଏବଂ କାନ୍‌ପୁରକୁ ତାରବାର୍ତ୍ତା ପଠାଇ ନିଜର ବରିଷ୍ଠ

ଅଧିକାରୀମାନଙ୍କୁ ସମ୍ପୂର୍ଣ୍ଣ ବିବରଣୀ ଜଣାଇଲେ ଏବଂ ସାହାଯ୍ୟ ଭିକ୍ଷା କଲେ । ଆଖ-ପାଖର ଛୋଟ-ବଡ଼ ରାଜା-ମହାରାଜାମାନଙ୍କୁ ମଧ୍ୟ ସେ ସାହାଯ୍ୟ ନିମନ୍ତେ ନିବେଦନ କଲେ ।

ସେହିଦିନ ରାତିରେ କ୍ୟାପ୍‌ଟେନ୍ ଗାର୍ଡ଼ନ ଦୁଇଜଣ ଇଂରେଜ ସିପାହିଙ୍କୁ ସଙ୍ଗରେ ଧରି ରାଣୀ ଲକ୍ଷ୍ମୀବାଈଙ୍କୁ ଦେଖା କରିବାପାଇଁ ରାଣୀମହଲରେ ପହଞ୍ଚିଲେ । ସେ ରାଣୀସାହିବାଙ୍କୁ ଦେଖା କରିବାକୁ ଅନୁମତି ମାଗିଲେ । ରାଣୀ କ୍ୟାପ୍‌ଟେନ୍ ଗାର୍ଡ଼ନଙ୍କ ସହିତ କଥାବାର୍ତ୍ତା କଲେ । ସେତେବେଳେ ଗାର୍ଡ଼ନ ଖରାବେଳେ ଷ୍ଟାର୍‌ଫୋର୍ଡ଼ରେ ଘଟିଥିବା ଘଟଣାର ସବିସ୍ତାର ବିବରଣୀ ପ୍ରଦାନ କଲେ ଏବଂ କହିଲେ "ଏବେ ମୋର ଆସନ୍ତାକାଲି ଉପରେ ଭରସା ନାହିଁ । ମୋର ଭୟ ହେଉଛି ଯେ ଅନ୍ୟ ସ୍ଥାନମାନଙ୍କ ପରି ଏଠିକାର ହିନ୍ଦୁ ସିପାହିମାନେ ମଧ୍ୟ ଇଂରେଜମାନଙ୍କୁ ବଧ କରିଦେବେ । ଏପରି ବିକଟ ପରିସ୍ଥିତିରେ ରାଣୀସାହେବା ଝାନ୍‌ସୀରେ ବାସ କରୁଥିବା ଇଂରେଜମାନଙ୍କୁ ଅନ୍ତତଃ ସେମାନଙ୍କ ପରିବାରର ସଦସ୍ୟମାନଙ୍କୁ ରକ୍ଷା କରନ୍ତୁ ବୋଲି ସେ ରାଣୀଙ୍କୁ ଅନୁରୋଧ କରିଥିଲେ । ସେ ସମୟରେ ରାଣୀ ନିଶ୍ଚୟ ମନେ ମନେ ହସିଥିବେ । ଭାବିଥିବେ ମହାକାଳ ଆଜି ପ୍ରତିଶୋଧ ନେଉଛି । ଦୁଇବର୍ଷ ପୂର୍ବେ ନିଜ ରାଜ୍ୟ ଝାନ୍‌ସୀକୁ କବ୍‌ଜା କଲା ପରେ ସେ ନିଜ ପ୍ରତି ହୋଇଥିବା ଅନ୍ୟାୟ ଓ ନିଜ ରାଜ୍ୟ ଫେରସ୍ତ ଦେବାଲାଗି ସେ ବାରମ୍ବାର ଅନୁନୟ-ବିନୟ କରିଛନ୍ତି । ଏପରିକି ସେ ଏହି ପ୍ରଶ୍ନ ଲଣ୍ଡନ ପର୍ଯ୍ୟନ୍ତ କମ୍ପାନୀ ସରକାରଙ୍କ ଅଧିକାରୀମାନଙ୍କ ଆଗରେ ଉପସ୍ଥାପିତ କରିଛନ୍ତି । ଆଜି ସେହି ଇଂରେଜମାନେ ନିଜର ସୁରକ୍ଷା ପାଇଁ ତାଙ୍କୁ ନିବେଦନ କରୁଛନ୍ତି । ଏହି ସୁଯୋଗକୁ ହାତଛଡ଼ା ନ କରିବାକୁ ଭାବି ରାଣୀ ମନ ଭିତରେ ଏକ ନିର୍ଣ୍ଣୟ ଗ୍ରହଣ କଲେ ।

ରାଣୀ ଲକ୍ଷ୍ମୀବାଈ ଶାନ୍ତଭାବରେ ଗାର୍ଡ଼ନଙ୍କୁ ଉତ୍ତର ଦେଲେ "ଆପଣ ଯେତେବେଳେ ମୋ ରାଜ୍ୟକୁ ବାଜ୍ୟାପ୍ତ କରିଥିଲେ ସେତେବେଳେ ଆପଣ ମୋର ସମସ୍ତ ସୈନିକଙ୍କୁ ବରଖାସ୍ତ କରି ଦେଇଥିଲେ । ଆଜି ମୁଁ ଆପଣମାନଙ୍କୁ ରକ୍ଷା କରିବାକୁ ଇଚ୍ଛା କଲେ ମଧ୍ୟ କିପରି କରିପାରିବି ? ମୋ ପାଖରେ ରାଣୀମହଲର ପାଞ୍ଚପଚିଶଜଣ ପହରାଦାର ଓ ଜଗୁଆଳିଙ୍କ ବ୍ୟତୀତ ଆଉ କିଏ ଅଛନ୍ତି ? ସେମାନଙ୍କର ସହାୟତାରେ ସେହି ଉପଦ୍ରବ କରୁଥିବା ସିପାହିମାନଙ୍କଠାରୁ ଆପଣମାନଙ୍କର ରକ୍ଷା କିପରି କରାଯାଇପାରିବ ? ତଥାପି ଯଦି ମୁଁ ଆପଣମାନଙ୍କୁ ସାହାଯ୍ୟ କରିବି ତ ପଲଟଣର ବିଦ୍ରୋହୀ ସିପାହିମାନେ ଆମକୁ ପୋଡ଼ି ପାଉଁଶ କରିଦେବେ । ତେବେ ମଧ୍ୟ ଯେପରି ହେଉ ମୁଁ ଆପଣଙ୍କୁ ସାହାଯ୍ୟ କରିବି । କିନ୍ତୁ ସେଥିପାଇଁ ନୂଆ ସୈନିକ ନିଯୁକ୍ତ କରିବାକୁ ଆପଣଙ୍କର ଅନୁମତି ଆବଶ୍ୟକ ।" ରାଣୀଙ୍କ କଥା ମାନିନେବା ଛଡ଼ା ଗାର୍ଡ଼ନଙ୍କ ପାଖରେ ଅନ୍ୟ କିଛି ବିକଳ୍ପ ନ ଥିଲା । ରାଣୀଙ୍କୁ ନୂଆ ସୈନିକ ନିଯୁକ୍ତି ଦେବାପାଇଁ ଅନୁମତି ମିଳିଗଲା । (Melleson's History of the Indian Mutiny, Page 180)

ସକାଳୁ ଗାର୍ଡ଼ନ ଝାନ୍‌ସୀରେ ରହୁଥିବା ଇଂରେଜଙ୍କର ସ୍ତ୍ରୀଲୋକ ଓ ଶିଶୁମାନଙ୍କୁ ରାଣୀମହଲରେ ପହଞ୍ଚାଇଦେଲେ । ରାଣୀମହଲର ଏକ ବିଶାଳ ବୈଠକଖାନାରେ ଲକ୍ଷ୍ମୀବାଈ ସେମାନଙ୍କର ସୁରକ୍ଷିତ ରହିବାର ବ୍ୟବସ୍ଥା କରିଦେଲେ ।

ଏହା ପରେ ପୂର୍ବାହ୍ନରେ ଗାର୍ଡ଼ନ ଏବଂ ସ୍କିନ ଛାଉଣୀକୁ ଯାଇ ଡନ୍‌ଲପ୍‌ଙ୍କୁ ସାକ୍ଷାତ୍ କଲେ । ଭବିଷ୍ୟତ୍ ଯୋଜନା ବିଷୟରେ ବିଚାର ବିମର୍ଶ କରି, ପୁନଶ୍ଚ ସାହାଯ୍ୟ ମାଗି କେତେକ ପତ୍ର ଲେଖିବାର ସ୍ଥିର କରାଗଲା । ସ୍କିନ୍ ଏବଂ ଗାର୍ଡ଼ନ ସହରର କିଲ୍ଲାକୁ ଫେରି ଆସିଲେ । ଗାର୍ଡ଼ନ ତୋପ ଓ ଗୋଳାବାରୁଦ ପର୍ଯ୍ୟବେକ୍ଷଣ କଲେ, ସୁରକ୍ଷା ବ୍ୟବସ୍ଥାକୁ ଅଧିକ ସୁଦୃଢ଼ କଲେ । ଡନ୍‌ଲପ୍, ଟେଲର୍ ନାମକ ଜଣେ ତଳିଆ ଅଫିସରକୁ ଧରି ଚିଠି ଏବଂ ତା'ର ପଠାଇବା ପାଇଁ ସହରର ବଡ଼ ଡାକଘରକୁ ଗଲେ । ସେଠାରୁ ସୈନିକମାନଙ୍କ ପ୍ୟାରେଡ୍ ଗ୍ରାଉଣ୍ଡକୁ ଆସିଲେ । ପଲଟଣର ସବୁ ସିପାହିଙ୍କୁ ସେ ସେଇଠିକୁ ଡକାଇନେଲେ । କିନ୍ତୁ କଳାସିପାହିମାନେ ସେଠାରେ ପହଞ୍ଚିଲାମାତ୍ରେ ସେ ଦୁହିଁଙ୍କ ଉପରେ ଗୁଳିବର୍ଷଣ ଆରମ୍ଭ କଲେ ଓ ଡନ୍‌ଲପ୍‌ଙ୍କୁ ହତ୍ୟା କରିଦେଲେ । ଝାନ୍‌ସୀର ଏହି ଯୁଦ୍ଧରେ ଡନ୍‌ଲପ୍ ପ୍ରଥମ ବଳି ଥିଲେ । ଏହାର ପରେ ପରେ ସହରରେ ଇଂରେଜଙ୍କ ଘର ଓ ବଙ୍ଗଳାରେ ନିଆଁ ଲଗେଇବା ଆରମ୍ଭ ହୋଇଗଲା । ଏପରି ପରିସ୍ଥିତିରେ ସହରର ଘର, ବଙ୍ଗଳା ଓ ରାଣୀମହଲରେ ମଧ୍ୟ ସ୍ତ୍ରୀଲୋକ ଓ ଶିଶୁମାନଙ୍କୁ ଅସୁରକ୍ଷିତ ମଣି ସେମାନଙ୍କୁ କିଲ୍ଲା ଭିତରେ ନେଇ ରଖାଗଲା । ଲକ୍ଷ୍ମୀବାଈ ସଂପୂର୍ଣ୍ଣ ଭାବରେ ନିଜର ପ୍ରତିଶ୍ରୁତି ପାଳନ କରି କିଲ୍ଲା ଭିତରେ ଅଟକିଥିବା ଇଂରେଜମାନଙ୍କ ପାଇଁ ଖାଦ୍ୟଦ୍ରବ୍ୟ ପଠାଇଲେ । ତିନି ମହଣ ଅଟା, ଚିନି ବସ୍ତା ଏବଂ ଘିଅ ଟିଣ ସେମାନଙ୍କ ପାଇଁ ପଠାଇ ଦିଆଗଲା । ଏହି କଥାକୁ ଅତି ସାବଧାନତାର ସହ ଗୁପ୍ତ ରଖାଯାଇଥିଲା । ବିଦ୍ରୋହୀ ସିପାହିମାନଙ୍କୁ ଏ କଥା ଯେପରି କୌଣସିମତେ ଜଣା ନ ପଡ଼େ, ସେଥିପାଇଁ ବିଶେଷ ଧ୍ୟାନ ଦିଆଯାଇଥିଲା (Indian Empire Col. Melleson, Page 305) ।

ସହରରେ ରହୁଥିବା ଇଂରେଜମାନଙ୍କ ଘରେ ନିଆଁ ଲଗେଇଦେବା ପରେ ସିପାହିମାନେ ସୈନିକ ଛାଉଣୀ ଆଡ଼କୁ ମାଡ଼ିଚାଲିଲେ । ଧୀରେ ଧୀରେ ସାରା ସହର କ୍ରାନ୍ତିର ସହରରେ ପରିଣତ ହେବାରେ ଲାଗିଲା । ରାସ୍ତାରେ ଯେଉଁଠି ମଧ୍ୟ ଫିରିଙ୍ଗି ଦେଖାଦେଲେ ତାକୁ ମାରି ଦିଆଯାଉଥିଲା । ସିପାହିମାନଙ୍କୁ ଛାଉଣୀ ଆଡ଼କୁ ଅଗ୍ରସର ହେବାର ଦେଖି କ୍ୟାପ୍‌ଟେନ୍ ସ୍କିନ୍ ନିଜର ପତ୍ନୀ ଓ ଦୁଇ ପିଲାଙ୍କ ସମେତ ଅନ୍ୟ ଚାଳିଶ ପଚାଶ ଜଣ ସ୍ତ୍ରୀ, ପୁରୁଷ ଓ ଶିଶୁଙ୍କୁ ଲୁଚେଇଛପେଇ ସାହସର ସହିତ କିଲ୍ଲା ଭିତର ପର୍ଯ୍ୟନ୍ତ ସୁରକ୍ଷିତ ଭାବରେ ପହଞ୍ଚାଇଦେଲେ । ଯଦି ସେଠାକୁ ସିପାହିମାନେ ଆସିଯାନ୍ତି ତେବେ ତାଙ୍କର ମୁକାବିଲା କରି ନିଜକୁ ରକ୍ଷା କରିବାପାଇଁ ଆଗରୁ ସେଠାରେ ପ୍ରସ୍ତୁତି ସରିଥାଏ । କିଲ୍ଲାର ବଡ଼ ବଡ଼ କବାଟକୁ ପୂରାପୂରି ବନ୍ଦ କରି ଦିଆଯାଇଥାଏ ।

ଦ୍ୱିତୀୟ ଦିନ, ଅର୍ଥାତ୍ ଜୁନ୍ ୭ ତାରିଖ ସକାଳୁ କ୍ୟାପ୍‌ଟେନ୍ ସ୍କିନ୍, ସ୍ମାର୍ଟ ଏବଂ ପର୍ସଲ ନାମକ ଦୁଇ ଭାଇଙ୍କୁ ରାଣୀଙ୍କଠାରୁ ସହାୟତା ମାଗିବା ପାଇଁ ପଠାଇଲେ । କିନ୍ତୁ

ସିପାହିମାନେ ତାଙ୍କୁ ବାଟରୁ ହିଁ ଧରି ପକାଇଲେ ଏବଂ ହତ୍ୟା କରିଦେଲେ । ଝାନ୍‌ସୀର ମୁଖ୍ୟ ନ୍ୟାୟାଧୀଶ ଏଣ୍ଟ୍ରୁଇଙ୍କୁ ମଧ୍ୟ ରାଣୀମହଲ ଆଗରେ ହତ୍ୟା କରି ଦିଆଗଲା । ସେ ମଧ୍ୟ ସାହାଯ୍ୟ ଓ ସୁରକ୍ଷା ମାଗିବାକୁ ରାଣୀଙ୍କ ପାଖକୁ ଯାଉଥିଲେ । ସ୍କିନ୍, ଗାର୍ଡ଼ନ ବାରମ୍ବାର ଗୋଆଲିଅର, ନୌଗାଓଁକୁ ଖବର ପଠାଇ ସୈନ୍ୟ ପଠାଇବାକୁ କହୁଥିଲେ । ୭ ଜୁନ୍ ଦ୍ୱିପହରବେଳକୁ ସିପାହିମାନେ କିଲ୍ଲା ଉପରେ ଆକ୍ରମଣ କରିଦେଲେ ଏବଂ ଏହିପରି ଯୁଦ୍ଧ ଆରମ୍ଭ ହୋଇଗଲା । କିଲ୍ଲା ଉପରୁ ଇଂରେଜମାନେ ସିପାହିମାନଙ୍କ ଉପରେ ନିରବଚ୍ଛିନ୍ନ ଭାବେ ଗୁଳି ବର୍ଷଣ କଲେ । ଉଭୟ ତରଫରୁ ଗୁଳିଗୋଳା ବର୍ଷଣ ଜାରି ରହିଲା । ଏହି ବିଦ୍ରୋହ କେବଳ ପଇଁତିରିଶଜଣ ସିପାହିଙ୍କୁ ନେଇ ଆରମ୍ଭ ହୋଇଥିଲା । କିନ୍ତୁ ବଢ଼ି ବଢ଼ି ଏବେ ସେମାନଙ୍କର ସଂଖ୍ୟା ବହୁ ଅଧିକ ହୋଇଯାଇଥିଲା । କିଲ୍ଲାରେ ରହୁଥିବା ଅନେକ ଲୋକ ଗୁଳିର ଶିକାର ହେଲେ । ସବୁ ସିପାହିମାନେ ଗାର୍ଡ଼ନଙ୍କ ଚେହେରାକୁ ଚିହ୍ନିଥିଲେ । ସିପାହିମାନଙ୍କର ସଂଖ୍ୟା ଓ ହତିଆରର ସ୍ଥିତି ଅନୁମାନ କରିବାପାଇଁ ଗାର୍ଡ଼ନ କିଲ୍ଲା ପାଚିରିର ଗୋଟିଏ ଝରକାରୁ ଝୁଙ୍କିପଡ଼ି ଦେଖିବାକୁ ଲାଗିଥିଲେ । ସେତିକିବେଳେ ଜଣେ ସିପାହି ତାଙ୍କୁ ଚିହ୍ନିପାରି ଗୁଳିମାରି ହତ୍ୟା କରିଥିଲା । ଗୁଳି ବାଜି ଗାର୍ଡ଼ନଙ୍କର ମୃତ୍ୟୁ ହେବାର ଦେଖି ଇଂରେଜମାନେ ନିଜର ଧୈର୍ଯ୍ୟ ହରାଇଦେଲେ, ସେମାନଙ୍କର ମନୋବଳ ଭାଙ୍ଗିଗଲା । କିଲ୍ଲାର ଗୋଳାବାରୁଦ ମଧ୍ୟ ନିଃଶେଷ ହୋଇଆସୁଥିଲା । ସନ୍ଧ୍ୟା ହେଉ ହେଉ ଖଜଣା ଆଦାୟକାରୀ ଅଫିସର କାଲେଖାଁ ଓ ତହସିଲଦାର ମହମ୍ମଦ ଅଲ୍ଲୀ ହୁସେନ୍ ବହୁ ଚେଷ୍ଟା କରି କିଲ୍ଲା ଭିତରେ ପ୍ରବେଶ କରି ଇଂରେଜଙ୍କ ସପକ୍ଷରେ ଲଢ଼ୁଥିବା ସିପାହିମାନଙ୍କୁ ହାଣି–କାଟି ଆଗେଇ ଚାଲିଲେ । ଏହା ଦେଖି ଇଂରେଜମାନେ ନିଜ ରହିବା ସ୍ଥାନରେ କିଲ୍ଲା ଉପରେ ଧଳାପତାକା ଉଡ଼ାଇ ଆତ୍ମସମର୍ପଣ କରିଦେଲେ ।

ଏହାର ଦ୍ୱିତୀୟ ଦିନ ଅର୍ଥାତ୍ ଜୁନ୍ ଆଠ ତାରିଖ ସକାଳେ ସିପାହିମାନେ ନିଜର ଓକିଲ ଭାବରେ ଝାନ୍‌ସୀ ସହରର ଜଣେ ସୁପ୍ରସିଦ୍ଧ ଡାକ୍ତର ସାଲେ–ମହମ୍ମଦଙ୍କୁ କିଲ୍ଲା ଭିତରେ ଇଂରେଜଙ୍କ ସହିତ କଥାବାର୍ତ୍ତା କରିବାକୁ ପଠାଇଲେ । କ୍ୟାପ୍‌ଟେନ୍ ସ୍କିନ୍ ସାଲେ ମହମ୍ମଦଙ୍କ ଆଗରେ ପ୍ରସ୍ତାବ ରଖିଲେ ଯେ ‘‘ଆମେ କିଲ୍ଲା ଏବଂ ଝାନ୍‌ସୀ ସହର ଛାଡ଼ି ସାଗରକୁ ଚାଲିଯିବା ପାଇଁ ପ୍ରସ୍ତୁତ ଅଛୁଁ । ତେବେ ଆପଣଙ୍କ ସିପାହିମାନେ ଆମକୁ ବିନା ବାଧା ଓ ପ୍ରତିବନ୍ଧକରେ ସାଗର ପର୍ଯ୍ୟନ୍ତ ଯିବାକୁ ଦେବେ, ଆପଣଙ୍କୁ ଏହି ପ୍ରତିଶ୍ରୁତି ଦେବାକୁ ହେବ ।’’ ଏ କଥା ଶୁଣି ସାଲେ ମହମ୍ମଦ କ୍ୟାପ୍‌ଟେନ୍ ସ୍କିନ୍‌ଙ୍କୁ କହିଲେ ଯେ, ‘‘ଯଦି ଆପଣ ଅସ୍ତ୍ରଶସ୍ତ୍ର ସମର୍ପଣ କରିଦେବେ ଓ ନିରସ୍ତ୍ର ହୋଇଯିବେ ତା’ହେଲେ ମୁଁ କଥା ଦେଉଛି ଯେ ଆମ ସିପାହିମାନେ ଆପଣଙ୍କର କେଶ ମଧ୍ୟ ସ୍ପର୍ଶ କରିବେ ନାହିଁ ।’’ ସାଲେ–ମହମ୍ମଦ କୋରାନ୍ ଉପରେ ହାତରଖି ଏହିପରି ଶପଥ କରିଥିଲେ । ସ୍କିନ୍ ସାଲେ–ମହମ୍ମଦଙ୍କ କଥାକୁ ବିଶ୍ୱାସ କରି କିଲ୍ଲାର ସମସ୍ତ ଇଂରେଜ ସ୍ତ୍ରୀ, ପୁରୁଷ ଓ ଶିଶୁମାନଙ୍କୁ ଏକାଠି କଲେ ଏବଂ ଅସ୍ତ୍ର–ସମର୍ପଣ କରି ସମସ୍ତ ଇଂରେଜ କିଲ୍ଲା ବାହାରକୁ ବାହାରି

ଆସିଲେ । ସେତେବେଳେ 'ଦୀନ୍-ଦୀନ୍' ଚିତ୍କାର କରି ସିପାହିମାନେ ଏହି ସମସ୍ତଙ୍କୁ ଚାରିଦିଗରୁ ଘେରିନେଲେ ଏବଂ ସମସ୍ତ ଇଂରେଜଙ୍କୁ ସହରର ରାସ୍ତା ଦେଇ ନେଇଯିବାରେ ଲାଗିଲେ । ସେମାନଙ୍କ ସହିତ ସହରର ଲୋକମାନେ ମଧ୍ୟ ପଛେ ପଛେ ଯିବାରେ ଲାଗିଲେ । ରାସ୍ତାସାରା ଉନ୍ମାଦନାରେ ଭରିଥିବା ସିପାହିମାନେ କୋଳାହଳ କରି ସ୍ଲୋଗାନ ଦେଉଥାନ୍ତି ଏବଂ ସମସ୍ତଙ୍କୁ ସେମାନେ ସହର ବାହାରେ ଥିବା ଜୋଖନବାଗ ପର୍ଯ୍ୟନ୍ତ ନେଇଗଲେ । ସେଠାରେ ପହଞ୍ଚି ଆଗକୁ କି କାର୍ଯ୍ୟପନ୍ଥା ଗ୍ରହଣ କରାଯିବ ସେ ସଂପର୍କରେ କାହାକୁ କିଛି ଜଣା ନ ଥିଲା । ଚତୁର୍ଦ୍ଦିଗରେ ଅସ୍ଥିରତା ବ୍ୟାପି ଯାଇଥିଲା ।

ଏତିକିବେଳେ କେତେକ ଅଶ୍ୱାରୋହୀ ସେଠାରେ ପହଞ୍ଚିଲେ । ସେମାନେ ଜଣାଇଲେ ଯେ ଖଜଣା ଆଦାୟକାରୀ ସାହେବ ସମସ୍ତ ଫିରିଙ୍ଗିଙ୍କୁ ମାରି ପକାଇବାର ଆଦେଶ ଦେଇଛନ୍ତି । ବାସ୍, ଏତିକିମାତ୍ର ଶୁଣିବା ଲାଗି ବିଳମ୍ବ ଥିଲା । ସାଙ୍ଗେ ସାଙ୍ଗେ ଉନ୍ମାଦଗ୍ରସ୍ତ ସିପାହିମାନଙ୍କ ହାତରେ ଯେପରି ଗୋଟିଏ ଅସ୍ତ୍ର ମିଳିଗଲା । ଜେଲର ଦାରୋଗା ବକ୍ଷଶୀଶ ଅଲ୍ଲୀ ଆଗେଇ ଯାଇ ସ୍ତ୍ରୀଲୋକ ଓ ପିଲାମାନଙ୍କର ଗୋଟିଏ ଧାଡ଼ି ବନାଇଦେଲେ, ଆଉ ଏକ ଧାଡ଼ି ପୁରୁଷ ଲୋକଙ୍କର କଲେ । ଏହା ପରେ ସର୍ବପ୍ରଥମେ ସେ ନିଜ ତରବାରିରେ କ୍ୟାପ୍‌ଟେନ୍ ସ୍କିନ୍‌ଙ୍କ ମୁଣ୍ଡ ଗଣ୍ଡିରୁ ଅଲଗା କରିଦେଲେ । ପରେ ପରେ ଅନ୍ୟ ସିପାହିମାନେ ଗୋଟି ଗୋଟି କରି ସମସ୍ତଙ୍କୁ ହତ୍ୟା କଲେ । ଦେଖୁ ଦେଖୁ ଝାନ୍‌ସୀର ସମସ୍ତ ଇଂରେଜଙ୍କୁ ମାରି ଦିଆଗଲା । କେବଳ ଜଣେ ଡେପୁଟୀ କମିଶନର ବ୍ରାଉନ୍, ତାଙ୍କର ଭାଇ ଲେଫ୍‌ଟନାଣ୍ଟ ଲ୍ୟାମ୍ବ ଏହି ତିନିଜଣ ବଞ୍ଚିଯାଇଥିଲେ । କାରଣ ଏମାନେ ସହର ଭିତରେ କେଉଁଠି ଲୁଚି ଯାଇଥିଲେ । ନା ସେମାନେ କିଲ୍ଲା ଭିତରେ ଥିଲେ ନା ପରେ ଜୋଖନବାଗ୍‌ରେ ଦେଖାଯାଇଥିଲେ । ସେଇଥିପାଇଁ ସେମାନେ ବଞ୍ଚିଗଲେ । ଜବଲପୁରର କମିଶନର ମେଜର ଆସ୍କିନ ନିଜର ରିପୋର୍ଟରେ ସେମାନଙ୍କର ବିବରଣୀ ଦେଇ ସୂଚନା ଦେଇଥିଲେ ଯେ ଝାନ୍‌ସୀରେ ସେତେବେଳେ ୭୬ ଜଣ ଇଂରେଜ ଲୋକଙ୍କୁ ହତ୍ୟା କରାଯାଇଥିଲା ।

ଇଂରେଜ ମହିଳା, ପୁରୁଷ ଏବଂ ଶିଶୁଙ୍କ ହତ୍ୟାରେ କ'ଣ ରାଣୀଙ୍କର ହାତ ଥିଲା ? ଏହି ପ୍ରଶ୍ନ ପରେ ଖୁବ୍ ଚର୍ଚ୍ଚାର ବିଷୟ ହୋଇଥିଲା । ୧୮୯୪ରେ ପାରସନିସ୍‌ଙ୍କ ଦ୍ୱାରା ଲିଖିତ ଜୀବନଚରିତ 'ଝାନ୍‌ସୀର ରାଣୀ' ପୁସ୍ତକରେ ରାଣୀଙ୍କ ନିର୍ଦ୍ଦୋଷତା ପ୍ରମାଣ କରିବାକୁ ଜଣେ ଇଂରେଜ ଅଧିକାରୀଙ୍କ ଦ୍ୱାରା ଲିଖିତ ଏକ ଚିଠିର ଦୃଷ୍ଟାନ୍ତ ଦିଆଯାଇଥିଲା । ମାର୍ଟିନ୍ ନାମକ ସେହି ଅଫିସର୍ ସେ ସମୟରେ ଝାନ୍‌ସୀରେ ଉପସ୍ଥିତ ଥିଲେ । ସେହି ଗଣ୍ଡଗୋଳ ଭିତରେ କୌଣସି ପ୍ରକାରେ ନିଜ ଜୀବନ ବଞ୍ଚାଇ ଦୁଇଜଣ ପୁରୁଷ ଓ ଜଣେ ମହିଳା ଝାନ୍‌ସୀରୁ ପଳାୟନ କରିଥିଲେ । ମାର୍ଟିନ୍ ସେମାନଙ୍କ ମଧ୍ୟରୁ ଜଣେ ଥିଲେ । ସେ ରାଣୀ ଲକ୍ଷ୍ମୀବାଈଙ୍କର ପୋଷ୍ୟପୁତ୍ର ଦାମୋଦର ରାଓଙ୍କୁ ୧୮୮୧ ମସିହା ଅଗଷ୍ଟ ୨୦ ତାରିଖରେ ଗୋଟିଏ ଚିଠି ଲେଖିଥିଲେ । ସେହି ଚିଠିରେ ମାର୍ଟିନ୍ ଲେଖିଥିଲେ, "୧୮୫୭ ଜୁନ୍‌ରେ ଝାନ୍‌ସୀରେ ୟୁରୋପିଆନ୍ ନାଗରିକମାନଙ୍କର ଯେଉଁ ନରସଂହାର ହୋଇଥିଲା, ସେଥିରେ

ବିଚାରୀ ରାଣୀଙ୍କର କୌଣସି ସହଯୋଗ ନ ଥିଲା । ବରଂ କିଲ୍ଲାରେ ରହୁଥିବା ଆମପରି ଲୋକମାନଙ୍କୁ ସେ ଦୁଇଦିନଯାଏ ଖାଦ୍ୟପେୟ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ପ୍ରଦାନ କରିଥିଲେ ।'' (ପାରସନିସ୍, ପୃଷ୍ଠା ୮୧) ସ୍ୱୟଂ ପାରସନିସ୍ ଏହି ପତ୍ରକୁ ଲେଖିଥିଲେ ବୋଲି କହିଛନ୍ତି । କିନ୍ତୁ ପରେ ଏହି ପତ୍ର କେଉଁଠି ମଧ୍ୟ ଦୃଷ୍ଟିଗୋଚର ହୋଇ ନ ଥିଲା । ଏହି ପତ୍ରଟି କେଉଁଆଡ଼େ ଉଭାନ୍ ହୋଇଯାଇଥିଲା । ଦାମୋଦର ରାଓଙ୍କ ଅଣନାତି ଅତୁଲ୍ ଝାନ୍‌ସୀୱାଲେ (ଇନ୍ଦୋର)ଙ୍କୁ ଏହି ପତ୍ର ସମ୍ପର୍କରେ ମୁଁ ଫୋନ୍‌ଯୋଗେ ପଚାରିଥିଲି । କିନ୍ତୁ ସେ ଉତ୍ତର ଦେଇଥିଲେ ଯେ ଆମ ଘରର କାହା ପାଖରେ କୌଣସି ପୁରୁଣା କାଗଜପତ୍ର ନାହିଁ ।

ମାତ୍ର ଇଂରେଜ ଅଧିକାରୀମାନେ ଏ ସମ୍ବନ୍ଧରେ ରାଣୀଙ୍କୁ ଦୋଷୀ ସାବ୍ୟସ୍ତ କରିଛନ୍ତି । ସେଥିପାଇଁ ତାଙ୍କୁ ଘୋର୍ ଗାଳିବର୍ଷଣ କରିଛନ୍ତି । ରାଣୀଙ୍କ ପ୍ରତି କଠୋରରୁ କଠୋର ଦଣ୍ଡବିଧାନ କରିବାର ଦାବି କରିଛନ୍ତି । ଏହା ପରେ ବି ସେମାନେ ଆରୋପ ଲଗାଇଛନ୍ତି ଯେ ରାଣୀ ଏଠାରେ 'ଧର୍ମାନ୍ଧତାର କଳା ଷଡ଼ଯନ୍ତ୍ର' ପ୍ରୟୋଗ କରିଥିଲେ ।

ଜୋଖନ୍‌ବାଗରେସେ ସମସ୍ତ ଫିରିଙ୍ଗିଙ୍କୁ ହତ୍ୟା କଲା ପରେ କାଲେଖାଁ ତୁରନ୍ତ ରାଣୀ ଲକ୍ଷ୍ମୀବାଈଙ୍କୁ ସାକ୍ଷାତ୍ କରିବାକୁ ରାଣୀମହଲ ଆଗରେ ଯାଇ ଠିଆ ହୋଇଗଲେ । ତାଙ୍କ ସହିତ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହରେ ସାମିଲ ହୋଇଥିବା ପଦାତିକ ଓ ଘୋଡ଼ସବାର ସିପାହିମାନେ ମଧ୍ୟ ଥିଲେ । ରାଜମହଲ ଆଗରେ ଠିଆ ହୋଇ କାଲେଖାଁ ଓ ଅନ୍ୟ ସିପାହିମାନେ ରାଣୀ ଲକ୍ଷ୍ମୀବାଈଙ୍କ ନାମରେ ଜୟଜୟକାର କରିବା ଆରମ୍ଭ କରିଦେଲେ । ତାଙ୍କୁ ସାକ୍ଷାତ୍ କରିବାକୁ ନିବେଦନ କରିବାକୁ ଲାଗିଲେ । ଗତ ତିନିଦିନ ଧରି ଝାନ୍‌ସୀରେ ଯାହାସବୁ ଘଟୁଥିଲା ତା'ର ପୂରା ବିବରଣୀ ଲକ୍ଷ୍ମୀବାଈଙ୍କୁ ମିଳିବା ଜରୁରି ଥିଲା । କାଲେଖାଁ ଓ ସିପାହିମାନଙ୍କର କୋଳାହଳ ଜାରି ରହିଥିଲା । ସେମାନେ ସମସ୍ତେ ରାଣୀଙ୍କୁ ଦେଖା କରିବାକୁ ଚାହୁଁଥିଲେ । କିନ୍ତୁ ରାଣୀଙ୍କୁ ଏପରି ଅନୁଶାସନହୀନତା ପସନ୍ଦ ନ ଥିଲା ଏବଂ ସେଇଥିପାଇଁ ସେ ସିପାହିମାନଙ୍କୁ ସାକ୍ଷାତ୍ ଦେବାକୁ ଚାହୁଁ ନ ଥିଲେ । କାଲେଖାଁ ରାଣୀଙ୍କ ପାଖକୁ ଖବର ପଠାଇଲେ – ''ଆମେ ଝାନ୍‌ସୀରୁ ଫିରିଙ୍ଗିମାନଙ୍କୁ ବିନାଶ କରିସାରିଛୁ । ଏବେ ଆମେ ଦିଲ୍ଲୀ ବାଦଶାହଙ୍କ ପାଖକୁ ଯାଉଛୁ । ଆମକୁ ଖର୍ଚ୍ଚ ନିମନ୍ତେ ତିନିଲକ୍ଷ ଟଙ୍କା ଦିଆଯାଉ ।''

ଏହା ଶୁଣି ଲକ୍ଷ୍ମୀବାଈ ମୋରୋପନ୍ତ ତାମ୍ବେ ଏବଂ ଦେବାନ ଲକ୍ଷ୍ମଣ ରାଓଙ୍କ ଜରିଆରେ ଉତ୍ତର ଦେଇ ପଠାଇଲେ ଯେ ''ଇଂରେଜଙ୍କ ଦ୍ୱାରା ପ୍ରଦତ୍ତ ପେନ୍‌ସନ୍‌ଦ୍ୱାରା ହିଁ ମୁଁ ଚଳୁଛି । ରାଜ୍ୟର ସମସ୍ତ ସମ୍ପତ୍ତି ଇଂରେଜ ସରକାର ଜବତ କରି ନେଇଛନ୍ତି । ମୋର ନିଜସ୍ୱ ସମ୍ପତ୍ତି ମଧ୍ୟ କମ୍ପାନୀ ସରକାରର କବ୍‌ଜାରେ ଅଛି । ତେଣୁ ମୁଁ ଆପଣମାନଙ୍କୁ କିପରି ଅର୍ଥ ଦେଇପାରିବି ? ମୋ ପାଖରେ ଏତେ ଟଙ୍କା ମଧ୍ୟ ନାହିଁ ।''

ଏହା ପରେ କାଲେଖାଁ ନିଜର ବାର୍ତ୍ତା ପଠାଇଲେ ଯେ– ''ଟଙ୍କା ଦିଅନ୍ତୁ ନ ହେଲେ ଆମେ ରାଣୀମହଲକୁ ଲୁଟ୍‌କରି ପରେ ସେଥିରେ ନିଆଁ ଲଗେଇଦେବୁ ।''

ସେତେବେଳେ ରାଣୀ ଲକ୍ଷ୍ମୀବାଈ, ମୋରୋପନ୍ତ ଓ ଲକ୍ଷ୍ମଣ ରାଓଙ୍କର ସିପାହିମାନଙ୍କ ଉପରୁ ଭରସା ତୁଟିବାରେ ଲାଗିଲା । ମନରେ ଭୟ ମଧ୍ୟ ଉପୁଜିଲା । ତେଣୁ ସ୍ୱୟଂ ରାଣୀ ଲକ୍ଷ୍ମୀବାଈ ରାଣୀମହଲର ଦର୍ଶନୀ ଦରୱାଜାର ମଣ୍ଡପ ଉପରେ ଆସି ଠିଆ ହୋଇଗଲେ ଏବଂ ସିପାହିମାନଙ୍କର ସମ୍ମୁଖୀନ ହୋଇ କହିଲେ– ''ମୁଁ ଜଣେ ବିଧବା, ଅବଳା, ଇଂରେଜଙ୍କ ପେନ୍ସନ୍ ଉପରେ ନିର୍ଭର କରି ଚଳୁଛି । ମୋ ପାଖରେ ଏତେ ବେଶି ଧନ କେଉଁଠୁ ଆସିବ ?'' ଏହା ଶୁଣି କାଲେଖାଁ ନିଜର ଧମକ ଦୋହରାଇଲେ ଯେ ''ଯଦି ଆପଣ ଖର୍ଚ୍ଚ ନିମନ୍ତେ ଟଙ୍କା ନ ଦିଅନ୍ତି ତ ରାଣୀମହଲ ଲୁଟ କରି ଦିଆଯିବ । ଏତଦ୍‌ବ୍ୟତୀତ ସଦାଶିବ ରାଓ ଭାଇ ନେୱାଲକରଙ୍କୁ ଡାକିଆଣି ଆମେ ଝାନ୍ସୀର ରାଜଗାଦିରେ ବସାଇଦେବୁ ।'' ଏହି ଧମକ ଲକ୍ଷ୍ମୀବାଈଙ୍କ ନିମନ୍ତେ ଚେତାବନୀ ସଦୃଶ ଥିଲା । ଏ ଦିଗରେ ଅଣଦେଖା କରିବା ରାଣୀଙ୍କ ପାଇଁ ସମ୍ଭବ ନ ଥିଲା ।

ଝାନ୍ସୀ ବାହାରେ ବାରମାଇଲ୍ ଦୂରରେ ଉନ୍ନାବ ସହରରେ ଗଙ୍ଗାଧର ରାଓଙ୍କର ଜଣେ ଦୂରସମ୍ପର୍କୀୟ ସଦାଶିବ ନାରାୟଣ ବାସ କରୁଥିଲେ । ଗଙ୍ଗାଧର ରାଓଙ୍କ ମୃତ୍ୟୁ ପରେ ଇଂରେଜମାନେ ଯେତେବେଳେ ପୋଷ୍ୟପୁତ୍ରକୁ ନାମଞ୍ଜୁର କରିଦେଲେ, ସେତେବେଳେ ସେହି ସଦାଶିବ ରାଓ ଭାଇ ନିଜକୁ ଶିବରାମ ରାଓଙ୍କ ବଂଶଜ କହି ନିଜର ଦାବି ଉପସ୍ଥାପନ କରି ଝାନ୍ସୀର ରାଜଗାଦି ଉପରେ ନିଜର ଅଧିକାର କଥା ଉଠାଇଥିଲେ । ଇଂରେଜମାନେ ଏହାକୁ ଧ୍ୟାନ ଦେଇ ନ ଥିଲେ । ବର୍ତ୍ତମାନ ସିପାହିମାନେ ସେହି ମୋହରକୁ ନେଇ ରାଣୀଙ୍କ ଆଗରେ ଗୋଟିଏ ଚାଲ୍ ଚଳାଇଲେ । ଏହି ବିଷୟ ନିଶ୍ଚିତଭାବେ ଚିନ୍ତାଜନକ ଥିଲା ।

ଅନନ୍ୟୋପାୟ ହୋଇ ଲକ୍ଷ୍ମୀବାଈ ନିଜର ରୁପାବାସନ, ଅଳଙ୍କାର ଇତ୍ୟାଦି ଲକ୍ଷେଟଙ୍କା ମୂଲ୍ୟର ପଦାର୍ଥ ସିପାହିମାନଙ୍କୁ ପ୍ରଦାନ କଲେ । ଏହି ଘଟଣାରୁ ଗୋଟିଏ କଥା ପ୍ରମାଣିତ ହୁଏ ଯେ ବିଦ୍ରୋହୀ ସିପାହିମାନଙ୍କ ସହିତ ରାଣୀ ଲକ୍ଷ୍ମୀବାଈଙ୍କର ମୈତ୍ରୀ–ସଂପର୍କ ନ ଥିଲା । ଏହାଛଡ଼ା ରାଣୀ କିଲ୍ଲାରେ ରହୁଥିବା ଇଂରେଜଙ୍କ ନିମନ୍ତେ ଘିଅ, ଚିନି, ଅଟା ଇତ୍ୟାଦି ଖାଦ୍ୟପଦାର୍ଥ ପଠାଇଥିଲେ । ଏସବୁକୁ ଦେଖିଲା ପରେ ଇଂରେଜମାନଙ୍କ ନରସଂହାରରେ ତାଙ୍କର କୌଣସି ପ୍ରକାରର ହାତ ଥିଲା ପରି କୌଣସି ସଙ୍କେତ ମିଳେ ନାହିଁ ।

ରାଣୀ ଲକ୍ଷ୍ମୀବାଈଙ୍କ ପ୍ରଦତ୍ତ ଅର୍ଥ ଧରି ସିପାହିମାନେ ଦିଲ୍ଲୀ ବାହାରିଗଲେ । ସେତେବେଳକୁ ଦିଲ୍ଲୀ ସିଂହାସନରେ ବାହାଦୁରଶାହ ଜାଫର ଆରୋହଣ କରିସାରିଥିଲେ । ବାଦଶାହୀ ଶାସନ ଆରମ୍ଭ ହୋଇଯାଇଥିଲା । ସବୁ ଦିଗରୁ ସିପାହିମାନେ ଦିଲ୍ଲୀ ଆଡ଼କୁ ଯାତ୍ରା କରୁଥିଲେ । ସେହିପରି ଝାନ୍ସୀର ସିପାହିମାନେ ବି ଦିଲ୍ଲୀ ଯାତ୍ରା କରୁଥିଲେ । ଯାଉ ଯାଉ ରାଣୀଙ୍କ ନାମରେ ଘୋଷଣା ମଧ୍ୟ କରୁଥିଲେ – ''ଦୁନିଆ ଈଶ୍ୱରଙ୍କର, ଦେଶ ବାଦଶାହଙ୍କର, ଶାସନ ରାଣୀ ଲକ୍ଷ୍ମୀବାଈଙ୍କର ।''

ଝାନ୍‌ସୀର ନାଗରିକମାନଙ୍କୁ ଏହି ଘୋଷଣା ଭାରି ପସନ୍ଦ ହେଲା । ସେମାନେ ଏହି ଘୋଷଣାକୁ ଖୁବ୍ ପ୍ରଚାର କଲେ । ପୂରା ଝାନ୍‌ସୀ ପରିସରରେ "ଖୁଲ୍କ ଖୁଦାକା, ମୁଲ୍କ ବାଦଶାହକା, ଶାସନ ରାଣୀ ଲକ୍ଷ୍ମୀବାଈକା (ସୃଷ୍ଟି ଈଶ୍ୱରଙ୍କର, ଦେଶ ବାଦଶାହଙ୍କର, ଶାସନ ରାଣୀ ଲକ୍ଷ୍ମୀବାଈଙ୍କର) ସ୍ୱର ନିନାଦିତ ହୋଇଉଠିଲା । ଏହା ପରେ ଝାନ୍‌ସୀର ପାଖଆଖ ଅଞ୍ଚଳର ଠାକୁର, ତହସିଲଦାର, ସିପାହି ଏବଂ ସାଧାରଣ ଲୋକମାନେ ଇଂରେଜ ଶାସନ ବିରୋଧରେ ଅଭିଯାନ ଜାରି ରଖିଲେ । ଇଂରେଜ ଅଧିକାରୀଙ୍କ ଆଦେଶ ଅବମାନନା କରିବା, ଖଜଣାଖାନାରୁ ଟଙ୍କାପଇସା କାଢ଼ିଆଣି ବିଦ୍ରୋହୀ ସିପାହିମାନଙ୍କ ମଧ୍ୟରେ ବାଣ୍ଟିଦେବା, ଇଂରେଜ ଅଧିକାରୀମାନଙ୍କୁ ଘଉଡ଼େଇ ଦେବା, ସୁଯୋଗ ମିଳିଲେ ମାରି ପକାଇବା ଇତ୍ୟାଦି ଏକପ୍ରକାରର ଦୈନନ୍ଦିନର କାର୍ଯ୍ୟକ୍ରମରେ ପରିଣତ ହୋଇସାରିଥିଲା ।

ସେତେବେଳେ ଝାନ୍‌ସୀର ରାଜ୍ୟଶାସନ ଏକପ୍ରକାରର ପୂରାପୂରି ଖାଲି ପଡ଼ିଥିଲା । ଗୋରାଙ୍କୁ ହତ୍ୟାକରି ସିପାହି ଦିଲ୍ଲୀ ଆଡ଼କୁ ଚାଲିଯାଇଥିଲେ । ଝାନ୍‌ସୀର ଜଣେ ବି ଇଂରେଜ ଅଧିକାରୀ ବଞ୍ଚି ରହି ନ ଥିଲେ । ଲକ୍ଷ୍ମୀବାଈଙ୍କ ହାତରେ କୌଣସି ପ୍ରକାରର ଅଧିକାର ନ ଥିଲା । କିଛି ନା କିଛି ବ୍ୟବସ୍ଥା କରିବା ଅନିବାର୍ଯ୍ୟ ହୋଇପଡ଼ିଥିଲା ।

ରାଣୀ ପୂର୍ବଦିନମାନଙ୍କର ନିଜର ଅନୁଭବୀ ଅଧିକାରୀ, ଦରବାରୀ ଓ କର୍ମଚାରୀମାନଙ୍କୁ ଡାକି ପଠାଇଲେ । ସେମାନଙ୍କ ମଧ୍ୟରେ ଦରବାରର ପ୍ରମୁଖ ପରାମର୍ଶଦାତା ଗୋପାଳ ରାଓ ଲଘାଟେ, ନ୍ୟାୟାଧୀଶ ନାନା ଭୋପଟକର, ତହସିଲଦାର ଏହସାନଅଲ୍ଲୀ, ସେନାପତି ଜବାହରସିଂହଙ୍କ ପରି ଲୋକ ସାମିଲ୍ ଥିଲେ । ଏମାନଙ୍କ ବ୍ୟତୀତ ରାଣୀଙ୍କ ପିତା ମୋରୋପନ୍ତ ଏବଂ ଦେଓ୍ୱାନ ଲକ୍ଷ୍ମଣ ରାଓ ତ ଆଗରୁ ରହିଥିଲେ । ଉପସ୍ଥିତ ପରିସ୍ଥିତି ସଂପର୍କରେ ବିଚାର-ବିମର୍ଶ ଓ ଚର୍ଚ୍ଚା କରାଗଲା । ଝାନ୍‌ସୀ ଯଦି ଏହିପରି ଶାସନବିହୀନ ହୋଇ ରହିବ ତା'ହେଲେ ପ୍ରଜାଙ୍କ ଅବସ୍ଥା ଖରାପ ଆଡ଼କୁ ଯିବ । ଆଖପାଖର ଠାକୁର, ଛୋଟ ଛୋଟ ରାଜା-ମହାରାଜା, ଜାଗିରଦାର ଝାନ୍‌ସୀକୁ ଝୁଣି ଖାଇବାରେ ଲାଗିବେ । ସେଥିପାଇଁ ନିଷ୍ପତ୍ତି କରାଗଲା ଯେ ସାଗରରେ ଥିବା ଇଂରେଜ ପଲଟଣର ସିପାହିମାନେ ଏବେ ମଧ୍ୟ ଇଂରେଜଙ୍କ ବିରୋଧରେ ଯାଇ ନାହାନ୍ତି । ସେଠାରେ ଶାନ୍ତି ବିରାଜୁଛି । ସେଥିପାଇଁ ସାଗରର କମିଶନର ମେଜର ଇର୍କସନଙ୍କୁ ରାଣୀ ଗୋଟିଏ ପତ୍ର ଲେଖନ୍ତୁ ।

ସେମାନଙ୍କର ନିଷ୍ପତ୍ତି ଅନୁଯାୟୀ ୧୨ ଜୁନ୍ ୧୮୫୭ରେ ଲକ୍ଷ୍ମୀବାଈ ମେଜର ଇର୍କସନଙ୍କୁ ଏକ ପତ୍ର ପ୍ରେରଣ କଲେ ।

"ନମସ୍କାର, ନିବେଦନ ଏହିକି ଯେ ଝାନ୍‌ସୀସ୍ଥିତ ଇଂରେଜ ସୈନ୍ୟବାହିନୀରେ ଯେଉଁ ହିନ୍ଦୁସ୍ଥାନୀ ସିପାହିମାନେ ଥିଲେ, ସେମାନେ ବିଶ୍ୱାସଘାତକ, କ୍ରୂର ଓ ଅତ୍ୟାଚାରୀ ପ୍ରମାଣିତ ହେଲେ । ସେମାନେ ଏଠାର ସୈନିକ, ସହରର ୟୁରୋପିୟାନ ଅଧିକାରୀ, କର୍ମଚାରୀ ଏବଂ ସେମାନଙ୍କ ପରିବାରବର୍ଗଙ୍କୁ ହତ୍ୟା କଲେ । ରାଣୀଙ୍କ ପାଖରେ ତୋପ ନାହିଁ, ସୈନ୍ୟ ମଧ୍ୟ ନାହାନ୍ତି, କେବଳ ପଚାଶ ଶହେଜଣ ଲୋକ ଅଛନ୍ତି । ସେହି ଲୋକମାନଙ୍କ

ପାଖରେ ମଧ ଅସ୍ତ୍ରଶସ୍ତ୍ର ନାହିଁ । ସେମାନେ କେବଳ ରାଣୀଙ୍କ ବାସସ୍ଥଳୀର ରକ୍ଷଣାବେକ୍ଷଣ କରୁଛନ୍ତି । ସେହି କାରଣରୁ ରାଣୀ ୟୁରୋପୀୟ ଲୋକମାନଙ୍କର କୌଣସି ସହାୟତା କରିପାରିଲେ ନାହିଁ । ସେଥିପାଇଁ ତାଙ୍କୁ ବହୁତ ଦୁଃଖ ହୋଇଛି । ପରେ ସେହି ବିଦ୍ରୋହୀମାନେ ରାଣୀଙ୍କ ବିରୋଧରେ ମଧ କ୍ରୁରତା ପ୍ରଦର୍ଶନ କରିଛନ୍ତି । ସେମାନେ ରାଣୀଙ୍କ ପ୍ରତି ଖରାପ ବ୍ୟବହାର ଦେଖାଇଛନ୍ତି । ଉପରନ୍ତୁ ରାଣୀଙ୍କୁ ଧମକ ଚମକ ଦେଇ ତାଙ୍କଠାରୁ ଜୋରଜବରଦସ୍ତି କରି ବହୁତ ବେଶି ଅର୍ଥ ଆଦାୟ କରି ନେଇଛନ୍ତି ଏବଂ ତା'ପରେ ଝାନ୍‌ସୀର ହର୍ତ୍ତାକର୍ତ୍ତା ରାଣୀ ହିଁ ହେବେ ବୋଲି ଘୋଷଣା କରିଦେଇଛନ୍ତି । ସିପାହିମାନେ ଦିଲ୍ଲୀ ବାଦଶାହଙ୍କ ପାଖକୁ ଚାଲିଯିବା ଯୋଗୁଁ ଏବେ ରାଣୀଙ୍କୁ ହିଁ ରାଜ୍ୟଶାସନ ସମ୍ଭାଳିବାକୁ ପଡ଼ିବ, ଏହାହିଁ ପତ୍ରରେ ଜଣାଉଅଛି ।

ଏପର୍ଯ୍ୟନ୍ତ ରାଣୀ ପୂରାପୂରି ଇଂରେଜ ଅଧିକାରୀଙ୍କୁ ଆଶ୍ରୟ କରିଥିଲେ । ତାଙ୍କର ଭରସାରେ ଥିଲେ । ଏବେ ତାଙ୍କୁ ହିଁ ଦୁର୍ଭାଗ୍ୟ ମାଡ଼ିବସିଛି । ସେହି କାରଣରୁ ରାଣୀ ଏବେ ସମ୍ପୂର୍ଣ୍ଣ ଅସହାୟ ହୋଇପଡ଼ିଛନ୍ତି । ସିପାହିମାନେ ଏହା ଖୁବ୍ ଭଲଭାବରେ ବୁଝି ପାରିଥିଲେ । ଝାନ୍‌ସୀର ତହସିଲଦାର, ଟିକସ ଆଦାୟକାରୀ ଓ ନ୍ୟାୟାଳୟର ସିରସ୍ତାଦାରଙ୍କ ମାର୍ଫତରେ ସେ ଏହି ଖବର ପଠାଇଲେ ଯେ ଯଦି ସେ ସିପାହିମାନଙ୍କର ଅନୁରୋଧ ସ୍ୱୀକାର କରିବେ ନାହିଁ, ତା'ହେଲେ ସେମାନେ ତାଙ୍କର ବାସସ୍ଥାନ ରାଣୀମହଲକୁ ତୋପ ଚଳାଇ ଛାରଖାର କରିଦେବେ । ଏହି ପରିସ୍ଥିତିକୁ ଧ୍ୟାନରେ ରଖି, ନିଜ ଇଚ୍ଛା ବିରୋଧରେ ଏବଂ ଚାପରେ ପଡ଼ି ତାଙ୍କୁ ସେହି ଲୋକମାନଙ୍କୁ ଯଥେଷ୍ଟ ଟଙ୍କାପଇସା ଓ ସମ୍ପତ୍ତି ଦେବାକୁ ପଡ଼ିଥିଲା ।

ଏହି ସମ୍ପୂର୍ଣ୍ଣ ଜିଲ୍ଲାରେ ଜଣେ ହେଲେ ବ୍ରିଟିଶ୍ ଅଧିକାରୀ ଜୀବିତ ନାହାନ୍ତି । ଏହା ଜାଣିବା ପରେ ଏବଂ ପ୍ରଜାଙ୍କ ଅବସ୍ଥାକୁ ଦୃଷ୍ଟିରେ ରଖି, ସରକାରଙ୍କ ଅଧୀନରେ ଥିବା ସମସ୍ତ ବିଭାଗ, ପୁଲିସ୍ ଇତ୍ୟାଦିଙ୍କୁ ରାଣୀଙ୍କୁ ହୁକୁମ୍ ଦେବାକୁ ହେଲା ଯେ ସମସ୍ତେ ନିଜ ନିଜ ପଦରେ ଦୃଢ଼ ରହି ସବୁଦିନ ପରି ନିଜ ନିଜର କର୍ତ୍ତବ୍ୟ ପାଳନ କରୁଥାନ୍ତୁ । ତାଙ୍କୁ ନିଜର ଜୀବନ, ଏଠିକାର ନାଗରିକଙ୍କ ଜୀବନର ସୁରକ୍ଷା ସଂପର୍କରେ ନିରନ୍ତର ଭୟ ଲାଗୁଅଛି ।

ଏହି ସମସ୍ତ ଘଟଣା ସହିତ ସମ୍ବନ୍ଧିତ ଏକ ରିପୋର୍ଟ ତୁରନ୍ତ ପଠାଇବା ଉଚିତ ଥିଲା । କିନ୍ତୁ ଏଠିକାର ଅସ୍ତବ୍ୟସ୍ତ ପରିସ୍ଥିତି ଯୋଗୁଁ ତାଙ୍କୁ ଏପରି କରିବାର ସୁଯୋଗ ହିଁ ମିଳିଲା ନାହିଁ । ଏବେ ସେହି ସମସ୍ତ ଲୋକ ଦିଲ୍ଲୀ ଅଭିମୁଖେ ଚାଲିଯିବା ଯୋଗୁଁ ସେ ଅବିଳମ୍ବେ ସମସ୍ତ ଘଟଣା ଲେଖି ପଠାଇଲେ ।

ରାଣୀ ଲକ୍ଷ୍ମୀବାଈଙ୍କ ଏହି ପତ୍ର ଦର୍ପଣ ପରି ପୂରାପୂରି ସ୍ୱଚ୍ଛ ଅଟେ । ସେପରି ପରିସ୍ଥିତିରେ ରାଣୀ କମ୍ପାନୀ ସରକାରଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହୁଁ ନ ଥିଲେ । କମ୍ପାନୀ ସରକାରଙ୍କ ପ୍ରତି ରାଣୀଙ୍କର ନିଷ୍ଠା ଦୃଢ଼ ଥିଲା । କିନ୍ତୁ ବିଗିଡ଼ିଯାଇଥିବା ପରିସ୍ଥିତି ଯୋଗୁଁ

ରାଜକୀୟ ସ୍ଥିରତା ନିମନ୍ତେ, ଅସୁରକ୍ଷା ଯୋଗୁଁ ନିଜର ଓ ପ୍ରଜାଙ୍କର ସୁରକ୍ଷା ଦୃଷ୍ଟିରୁ କେବଳ ତାଙ୍କୁ ଆଦେଶ ପ୍ରଦାନପୂର୍ବକ ସ୍ଥିତିକୁ ସହଜ କରିବାର ଏହି ଦାୟିତ୍ୱ ଗ୍ରହଣ କରିବାକୁ ହେଲା । ବିଗିଡ଼ି ଯାଇଥିବା ପରିସ୍ଥିତିକୁ ନିଜର ସ୍ୱାର୍ଥ ପାଇଁ ବ୍ୟବହାର କରିବା ଉଦ୍ଦେଶ୍ୟ ତାଙ୍କର ନାହିଁ । ଏହି ସମସ୍ତ ବିଷୟରେ ସେ ଇର୍କସନଙ୍କ ନିକଟକୁ ଲେଖି ପଠାଇଥିଲେ । ଏହି ପତ୍ରରେ ରାଣୀ ନିଜକୁ ଉଲ୍ଲେଖ କଲାବେଳେ 'ମୁଁ' ନ କହି 'ରାଣୀ' ଏବଂ 'ସେ' ଏହିପରି ଶବ୍ଦ ପ୍ରୟୋଗ କରିଥିଲେ ।

ଦୁଇଦିନ ପରେ ୧୮୫୭ ଜୁନ ୧୪ ତାରିଖରେ ରାଣୀ ଇର୍କସନଙ୍କୁ ଆଉ ଗୋଟିଏ ପତ୍ର ଲେଖିଲେ । ଏହି ପତ୍ର ସହିତ ରାଣୀ କମିଶନର ସାହେବଙ୍କୁ ସମ୍ବୋଧିତ କରି ଝାନ୍‌ସୀରେ ଘଟିଥିବା ଭୟାନକ ଘଟଣାବଳୀର ଜୁନ ୧୨ ତାରିଖରେ ଏକ ରିପୋର୍ଟ ମଧ୍ୟ ସଂଲଗ୍ନ କରିଥିଲେ । ଏହି ରିପୋର୍ଟକୁ ସେ ଗଙ୍ଗାଧର ଦାଉଜୀ ଏବଂ ଭବାନୀ ସେବକଙ୍କ ଜରିଆରେ ପଠାଇଥିଲେ । ''ଝାନ୍‌ସୀରେ ରହୁଥିବା ୟୁରୋପୀୟମାନଙ୍କ ସହିତ ଯେଉଁପରି ବ୍ୟବହାର କରାଗଲା, ସେ ସମ୍ବନ୍ଧରେ ଏବେ ମଧ୍ୟ ତାଙ୍କ ମନରେ ପୀଡ଼ା ରହିଛି, ଖୋଜିଲେ ମଧ୍ୟ ଏହାଠାରୁ ଅଧିକ ଘୃଣ୍ୟ ଏବଂ କ୍ରୂରତା କେଉଁଠି ମିଳିବ ନାହିଁ, ମୋର ଏହା ପୂରା ବିଶ୍ୱାସ । ଘଟଣା ସହିତ ସଂପର୍କିତ ସମ୍ପୂର୍ଣ୍ଣ ବିବରଣୀ ଏହି ପତ୍ର ସହିତ ଆପଣଙ୍କ ଗୋଚରାର୍ଥେ ପ୍ରେରଣ କରୁଅଛି ।''

''ଏଠାରେ ତାଜା ଖବର ଏହି ଯେ ଝାନ୍‌ସୀର ପ୍ରଶାସନ ଅନ୍ତର୍ଗତ ଅଞ୍ଚଳରେ ସରଦାରମାନେ ଅନେକ ସ୍ଥାନର କିଲ୍ଲା ଓ ଗଡ଼ ଉପରେ କବ୍‌ଜା କରି ନେଇଛନ୍ତି ଏବଂ ଅନ୍ୟ ଲୋକମାନେ ଏହି ଇଲାକାରେ ଲୁଟ୍‌ପାଟ୍ ଚଳାଇଛନ୍ତି । ଏହି କିଲ୍ଲାକୁ ରକ୍ଷା କରିବା ଏବେ ତାଙ୍କର ସାମର୍ଥ୍ୟ ବାହାରେ, କାରଣ ଏଥିପାଇଁ ଖର୍ଚ୍ଚ କରିବା ପରି ଅର୍ଥ ତାଙ୍କ ପାଖରେ ନାହିଁ । ଏଥିସହିତ ଏପରି ପରିସ୍ଥିତିରେ ସାହୁକାରମାନେ ମଧ୍ୟ ରାଣୀଙ୍କୁ ଟଙ୍କା କରଜ ଦେବାକୁ ପ୍ରସ୍ତୁତ ନୁହନ୍ତି । ଏପର୍ଯ୍ୟନ୍ତ ସେ ନିଜର ସଂପତ୍ତି ବିକ୍ରି କରି, ନିଜକୁ ଅସୁବିଧାରେ ରଖି ମଧ୍ୟ କୌଣସି ପ୍ରକାରେ ଝାନ୍‌ସୀ ସହର ଓ ଏହାର ଆଖପାଖ ଇଲାକାର ଦେଖାଶୁଣା କରିଛନ୍ତି, ଯେପରିକି ଲୁଟ୍‌ତରାଜ କରାଯାଇ ନ ପାରୁ । ଏହିପରି ପରବର୍ତ୍ତୀ ସରକାରର ପ୍ରଶାସନକୁ କୌଣସି ପ୍ରକାର ଅବରୋଧ ବିନା ଜାରି ରଖାଯାଇଛି । ସହରର ରକ୍ଷା ନିମନ୍ତେ ରାଣୀ କିଛି ଲୋକଙ୍କୁ ନିଜ ସାଥିରେ ରଖିଛନ୍ତି । କିନ୍ତୁ ଏକ ଦାୟିତ୍ୱସମ୍ପନ୍ନ ସରକାର ଏବଂ ଧନର ଅଭାବରେ ଏହି ସମସ୍ତ ବିଷୟକୁ ତୁଲାଇବା, ଭବିଷ୍ୟତ୍‌ରେ ଏକ କଠିନ କାର୍ଯ୍ୟ ହେବ । ସେଥିପାଇଁ ସ୍ଥିତିର ବାସ୍ତବିକ୍ ସୂଚନା ଆପଣଙ୍କୁ ଦେଉଅଛି । ଏ ବିଷୟରେ କ'ଣ କରାଯିବ, ସେ ସମ୍ବନ୍ଧରେ ତୁରନ୍ତ ହୁକୁମ ଦେବାର କୃପା କରନ୍ତୁ, ତା'ହେଲେ ତାକୁ ତୁରନ୍ତ କାର୍ଯ୍ୟକାରୀ କରାଯାଇପାରିବ । ୧୮୫୭, ୫ ଜୁନରେ ସହରରେ ଘଟିଥିବା ଘଟଣାର ସବିସ୍ତାର ବିବରଣୀ ମଧ୍ୟ ସେ ଇର୍କସନଙ୍କୁ ଦେଇଥିଲେ । ଏଥି ସମ୍ବନ୍ଧିତ ପତ୍ରରେ ଲକ୍ଷ୍ମୀବାଈ ଲେଖିଥିଲେ–

"ଅଚାନକ ୫୦–୬୦ ଜଣ ସିପାହି ତୋପଖାନା ଉପରେ ଆକ୍ରମଣ କରିଦେଲେ ଓ ତା' ସହିତ ସରକାରୀ ଖଜଣାଖାନା ଉପରେ ମଧ୍ୟ କବ୍‌ଜା କରିନେଲେ । ଏହା ଦେଖି କ୍ୟାପଟେନ୍ ସ୍କିନ୍ ନିଜର ପତ୍ନୀ ଓ ପିଲାମାନଙ୍କ ସହିତ କ୍ୟାପ୍ଟେନ୍ ଗାର୍ଡ଼ନଙ୍କ ସାଥିରେ ସହରକୁ ଚାଲିଆସିଲେ । ସେଠାରୁ ପୁଣି ସେ କିଲ୍ଲା ଭିତରେ ପହଞ୍ଚିଗଲେ । କିଛି ସମୟ ପରେ ଆଉ କେତେକ ଲୋକ ମଧ୍ୟ କିଲ୍ଲାରେ ରହିବାକୁ ଚାଲିଆସିଲେ । ସେଠାରେ ସୁରକ୍ଷାର ସମ୍ପୂର୍ଣ୍ଣ ବ୍ୟବସ୍ଥା ଥିଲା । ରାଣୀ ସେମାନଙ୍କୁ ସାହାଯ୍ୟ କରିବାପାଇଁ କେତେକ ଜଗୁଆଳିଙ୍କୁ କିଲ୍ଲାକୁ ପଠାଇ ଦେଇଥିଲେ ।"

୬ ଜୁନରେ ମଧ୍ୟ ପୂର୍ବଦିନ ପରି ସ୍ଥିତି ରହିଥିଲା । ବାକି ସିପାହିମାନଙ୍କ ତମ୍ବୁରେ ମଧ୍ୟ ଶାନ୍ତି ରହିଥିଲା । କିନ୍ତୁ ମଧ୍ୟାହ୍ନ ବାରଟାବେଳେ ପାଖାପାଖି ସିପାହିମାନଙ୍କ ମଧ୍ୟରେ ଅସନ୍ତୋଷ ବ୍ୟାପିବାରେ ଲାଗିଲା । କମ୍ପାନୀ ସରକାରଙ୍କ ପ୍ରତି ସେମାନଙ୍କ ନିଷ୍ଠା ହ୍ରାସ ପାଇଲା ଏବଂ ସମସ୍ତେ ଏକଜୁଟ୍ ହୋଇ ସମସ୍ତ ଗୋରା ଅଫିସରମାନଙ୍କୁ ହତ୍ୟା କଲେ । ସେମାନଙ୍କର ବଙ୍ଗଳା ଓ କଚେରି ଜଳାଇଦେଲେ । ତାଙ୍କ ପାଖରେ ଥିବା ସମସ୍ତ କାଗଜପତ୍ର ଓ ଦଲିଲ୍ ଦସ୍ତାବିଜ୍ ଚିରିଚାରି ନଷ୍ଟ କରିଦେଲେ । ଏହା ପରେ ସିପାହିମାନେ ଜେଲ୍ ଆଡ଼କୁ ଗଲେ ଏବଂ ସମସ୍ତ କଏଦୀଙ୍କୁ ମୁକ୍ତ କରିଦେଲେ । ଜେଲର ଦାରୋଗା ମଧ୍ୟ ବିଦ୍ରୋହୀମାନଙ୍କ ସହିତ ସାମିଲ ହୋଇଗଲେ । ସେଠାରୁ ସେମାନେ ସହର ଆଡ଼କୁ ଆସିଲେ ଏବଂ କିଲ୍ଲାର ସୀମା ପାଖରେ ଏକତ୍ରିତ ହେଲେ । କିନ୍ତୁ ଇଂରେଜ ଅଧିକାରୀମାନେ କିଲ୍ଲାର ଫାଟକ ଭିତରୁ ସମ୍ପୂର୍ଣ୍ଣଭାବେ ବନ୍ଦ କରି ରଖିଥିଲେ । ସେମାନେ ସାହସ କରି କିଲ୍ଲା ଉପରୁ ବିଦ୍ରୋହୀମାନଙ୍କ ଉପରେ ଗୁଳିବର୍ଷଣ କଲେ । ବିଦ୍ରୋହୀମାନଙ୍କ ପକ୍ଷେ କିଲ୍ଲାର ଫାଟକ ଖୋଲିବା ଅସମ୍ଭବ ଥିଲା ।

"୭ ଜୁନ୍‌ରେ ବିଦ୍ରୋହୀମାନେ କିଲ୍ଲା ଉପରେ ଗୁଳି ବର୍ଷଣ କରିବା ଆରମ୍ଭ କଲେ । ସହରର ଲୋକେ ଏ ଦୃଶ୍ୟ ଦେଖି ବହୁତ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ, କାରଣ କିଲ୍ଲା ଉପରକୁ ଫୁଟାଯାଇଥିବା ୪/୫ଟି ତୋପର ଗୋଳା ସହର ଭିତରେ ଆସି ପଡ଼ିଥିଲା । ଏହା ସତ୍ତ୍ୱେ ସହର ପୂରାପୂରି ଶାନ୍ତ ଥିଲା ।"

"୮ ଜୁନ୍‌କୁ ବିଦ୍ରୋହୀମାନେ କିଲ୍ଲା ଉପରେ ଆକ୍ରମଣ କରିବାର ନିଷ୍ପତ୍ତି ନେଲେ ଏବଂ ରାଣୀଙ୍କର ଦେଢ଼ଶହ ଲୋକଙ୍କୁ ସେମାନେ ଜୋରଜବରଦସ୍ତି ନିଜ ପକ୍ଷରେ ସାମିଲ କରିନେଲେ । ତା'ପରେ ସମସ୍ତେ ମିଶି ଦ୍ୱିପ୍ରହର ତିନିଟା ପର୍ଯ୍ୟନ୍ତ କିଲ୍ଲା ଉପରେ ଆକ୍ରମଣ ଜାରି ରଖିଲେ ।"

କିଲ୍ଲାର ମୁଷ୍ଟିମେୟ ଅଧିକାରୀ ବଡ଼ ସାହସର ସହିତ କିଲ୍ଲାର ରକ୍ଷା କଲେ । ବିଦ୍ରୋହୀମାନଙ୍କ ପାଖରେ ତୋପ ଥିବା ସତ୍ତ୍ୱେ କିଛି କିଛି ବିଦ୍ରୋହୀଙ୍କୁ ସେମାନେ ମାରିଦେଲେ ଓ କେତେକଙ୍କୁ ଆହତ କଲେ । ସେତିକିବେଳେ କ୍ୟାପଟେନ୍ ଗାର୍ଡ଼ନଙ୍କ ଦେହରେ ଏକ ଗୁଳି ବାଜିଲା ଏବଂ ସେ ଘଟଣାସ୍ଥଳରେ ହିଁ ମୃତ୍ୟୁବରଣ କଲେ । ତା'ପରେ କ୍ୟାପ୍ଟେନ୍

ସ୍କିନ୍, ତାଙ୍କର ପତ୍ନୀ ଓ ପିଲାମାନେ ତଥା ଅନ୍ୟ ଲୋକମାନେ କିଲ୍ଲାରୁ ତଳକୁ ଓହ୍ଲେଇ ଆସିଲେ । ସେମାନେ ସହର ବାହାରକୁ ଚାଲିଯିବାକୁ ଭାବିଥିଲେ । କିନ୍ତୁ ନିର୍ମମ ବିଦ୍ରୋହୀମାନେ ତାଙ୍କର ଏହି ଉଦ୍ଦେଶ୍ୟକୁ ନିଷ୍ଫଳ କରିଦେଲେ । ବିଦ୍ରୋହୀମାନେ ସେ ସମସ୍ତଙ୍କୁ ନିର୍ମମ ଭାବରେ ହତ୍ୟା କଲେ । ସେମାନଙ୍କର ଏପରି କୁକର୍ମ ନିମନ୍ତେ ଈଶ୍ୱର ମଧ୍ୟ ତାଙ୍କୁ କ୍ଷମା ଦେବେ ନାହିଁ ଏବଂ ନିଶ୍ଚୟ କଠୋରରୁ କଠୋର ଦଣ୍ଡ ଦେବେ । ସହରରେ ରହୁଥିବା ୟୁରୋପିଆନ୍‌ମାନଙ୍କୁ ମଧ୍ୟ ବିଦ୍ରୋହୀମାନେ ଲୁଟିଲେ ଓ ସେମାନଙ୍କୁ ହତ୍ୟା କଲେ । ବିଦ୍ରୋହୀମାନେ ମନଇଚ୍ଛା ଆଚରଣ କରି ଚାଲିଲେ । ରାଣୀ ଅତ୍ୟନ୍ତ କଷ୍ଟରେ ନିଜର ପ୍ରାଣରକ୍ଷା କରିପାରିଲେ, କିନ୍ତୁ ତାଙ୍କ ଟଙ୍କାପଇସା ଓ ଅନ୍ୟାନ୍ୟ ସମ୍ପତ୍ତି ବିଦ୍ରୋହୀମାନେ ଲୁଟ୍ କରିନେଲେ ।

ଏହି ସମସ୍ତ ଘଟଣା ଏହା ଆଗରୁ କମିଶନର୍ ସାହେବ କିମ୍ବା ତାଙ୍କର ଏଜେଣ୍ଟଙ୍କୁ ସୂଚିତ କରିବା ସମ୍ଭବ ହୋଇପାରି ନ ଥିଲା, କାରଣ ବିଦ୍ରୋହୀମାନଙ୍କର ଉପଦ୍ରବ ଯୋଗୁଁ ଡାକବ୍ୟବସ୍ଥା ଧୂଳିସାତ୍ ହୋଇଯାଇଥିଲା । ବିଦ୍ରୋହୀମାନେ ସହରକୁ ଯୋଗ କରୁଥିବା ସବୁ ରାସ୍ତାରେ ପହରା ଲଗାଇଥିଲେ । ଯିବାଆସିବା ପୂରାପୂରି ଅବରୁଦ୍ଧ ହୋଇ ଯାଇଥିଲା ।

''୧୧ ଜୁନ ରାତିରେ ସେମାନେ ଏଠାରୁ ଚାଲିଗଲେ । ସେମାନେ ନିଜ କର୍ମଫଳ ଭୋଗିବାକୁ ନର୍କକୁ ଯିବେ, ଏପରି ଆଶା କରାଯାଏ'' (ରାଣୀଙ୍କର ସମସ୍ତ ପତ୍ର ଏସ୍.ଏନ୍ ସିହ୍ନାଙ୍କର ପୁସ୍ତକ, "Rani Laxmi Bai of Jhansi"ରୁ ଉଦ୍ଧୃତ କରାଯାଇଛି ।)

ଏଠାରେ ମଜାର କଥା ହେଉଛି ଯେ ରାଣୀ ସିପାହିମାନଙ୍କ ନିମନ୍ତେ ବିଦ୍ରୋହୀ–ମ୍ୟୁଟିନିଅର୍ସ ଆଦି ଶବ୍ଦର ପ୍ରୟୋଗ କରିଛନ୍ତି । ସେତେବେଳେ ତାଙ୍କ ଦୃଷ୍ଟିକୋଣରୁ ସେମାନେ ବିଦ୍ରୋହୀ ଥିଲେ ଏବଂ ଇଂରେଜମାନଙ୍କୁ ମାରିପକାଇବା ହେତୁ ତା'ର ପ୍ରାୟଶ୍ଚିତ୍ତ ରୂପରେ ଈଶ୍ୱର ସେମାନଙ୍କୁ ଦଣ୍ଡ ତ ଦେବେ ନିଶ୍ଚୟ, ସେମାନେ ନର୍କକୁ ଯିବେ–ରାଣୀ ଏପରି ମଧ୍ୟ କହିଥିଲେ । ଏହି ଯୁଦ୍ଧର ଚିତ୍ର ଏପର୍ଯ୍ୟନ୍ତ ମଧ୍ୟ ସ୍ପଷ୍ଟ ହୋଇ ନ ଥିଲା, ଅସ୍ପଷ୍ଟ ଥିଲା । ତାଙ୍କ ପତ୍ରରୁ ପ୍ରାପ୍ତ ତାଙ୍କ ଦୃଷ୍ଟିକୋଣରୁ କମ୍ପାନୀ ସରକାରଙ୍କ ବିରୋଧରେ ଏହି ବିଦ୍ରୋହ ହୋଇଥିଲା । କିନ୍ତୁ ସେ କ'ଣ ବାସ୍ତବରେ ଠିକ୍ ଏହିପରି ବିଚାର କରୁଥିଲେ ? କିମ୍ବା ବରିଷ୍ଠ ଇଂରେଜ ଅଧିକାରୀମାନଙ୍କୁ ସେ କେବଳ ଏପରି ଆଭାସ ଦେବାକୁ ଚାହୁଁଥିଲେ ? ଏ ସଂପର୍କରେ ନିଶ୍ଚିତ ଭାବରେ କିଛି କୁହାଯାଇପାରିବ ନାହିଁ । କିନ୍ତୁ ସିପାହିମାନଙ୍କ ଭିତରେ ବ୍ୟାପିଥିବା ଅସନ୍ତୋଷକୁ ଯେ ସେ ଜାଣିପାରି ନ ଥିଲେ ଏପରି ବିଶ୍ୱାସ କରିବା କଠିନ ଅଟେ । ବାଣପୁର ରାଜାଙ୍କୁ ରାଣୀ ଲେଖିଥିବା ପ୍ରାପ୍ତପତ୍ରରୁ ଏହା ସ୍ପଷ୍ଟ ଜଣାଯାଏ ଯେ ରାଣୀଙ୍କ ମନରେ ସ୍ୱରାଜ୍ୟର ଇଚ୍ଛା ଥିଲା । ସେଥିନିମନ୍ତେ ବିଦେଶୀ ଇଂରେଜଙ୍କ ସହିତ ଲଢ଼ିବାର ପ୍ରସ୍ତୁତି ମଧ୍ୟ ସେ ପ୍ରଦର୍ଶନ କରିଥିଲେ । କିନ୍ତୁ ଇଂରେଜଙ୍କ ସୈନ୍ୟବାହିନୀରେ କାର୍ଯ୍ୟରତ ହିନ୍ଦୁସ୍ଥାନୀ ସିପାହିଙ୍କ ସହିତ ତାଙ୍କର କେତେ ସଂପର୍କ ଥିଲା, ଏକଥା ସ୍ପଷ୍ଟ ହୋଇ ନ ଥିଲା । ରାଣୀ ଆରମ୍ଭରୁ ହିଁ ହିନ୍ଦୁସ୍ଥାନୀ ସିପାହିମାନଙ୍କର ବିଦ୍ରୋହରେ ସାମିଲ୍

ଥିଲେ, ଅନେକ ଇଂରେଜ ଲେଖକ ଏପରି ଲେଖିଛନ୍ତି । କିନ୍ତୁ ଯୁଦ୍ଧ ପରେ ଲେଖାଯାଇଥିବା ପୁସ୍ତକରେ ସ୍ୱଦେଶୀ ଲେଖକମାନେ ରାଣୀଙ୍କୁ ଦୋଷୀ ବୋଲି କହି ନାହାନ୍ତି ।

ସେମାନଙ୍କର କହିବା କଥା ହେଲା ଯେ ରାଣୀ ବାସ୍ତବିକତା ସହ ଅନଭିଜ୍ଞ ଥିଲେ । ସିପାହିମାନେ ତାଙ୍କୁ ଧମକ ଦେଲେ । ତାଙ୍କଠୁଁ ଟଙ୍କାପଇସା ଆଦାୟ କରିନେଲେ, ଏପରି ସେମାନେ ଲେଖିଛନ୍ତି । ଏଠାରେ ଧ୍ୟାନ ଦେବାର କଥା ଯେ ମିରଠରୁ ଆସିଥିବା ସିପାହି ଏବଂ ଦିଲ୍ଲୀର ବାଦଶାହଙ୍କ ମଧ୍ୟରେ ଯେପରି ଯାହା ଘଟିଥିଲା, ଠିକ୍ ତାହାହିଁ ରାଣୀ ଲକ୍ଷ୍ମୀବାଈ ଏବଂ ଝାନ୍ସୀର ସିପାହିମାନଙ୍କ ମଧ୍ୟରେ ଘଟିଥିଲା । ଦୁଇ ଆଡ଼ର ଘଟଣାରେ ଅଦ୍ଭୁତ ସାମଞ୍ଜସ୍ୟ ଥିଲା । ମିରଠର ସିପାହିମାନେ ମଧ୍ୟ ଏହିପରି ପ୍ରଭାବ ବିସ୍ତାର କରି ଜୋର-ଜବରଦସ୍ତି ବାଦଶାହଙ୍କୁ ସିଂହାସନରେ ବସାଇଥିଲେ ।

## ପୁନଶ୍ଚ ରାଣୀପଦବୀ

ମେଜର ଇର୍କସନ ରାଣୀଙ୍କର ଦୁଇଟିଯାକ ପତ୍ର ଉପରେ ଗୁରୁତ୍ୱର ସହିତ ବିଚାର କଲେ । ୧୮୫୭ ଜୁଲାଇ ୨ ତାରିଖରେ ରାଣୀଙ୍କୁ ଏକ ପତ୍ର ଲେଖି ସେ ଏହି ଆଶ୍ୱାସନା ଦେଲେ ଯେ, ସୈନ୍ୟ ଏବଂ ଇଂରେଜ ଅଧିକାରୀଙ୍କୁ ଶୀଘ୍ର ପ୍ରେରଣ କରାଯିବ । ଏହା ସହିତ ସେ ରାଣୀଙ୍କୁ ଅନୁରୋଧ କଲେ ଯେ ଯେପର୍ଯ୍ୟନ୍ତ ଝାନ୍ସୀରେ ନୂଆ ସୁପରିଣ୍ଟେଣ୍ଡେଣ୍ଟ୍ ନିଯୁକ୍ତି ହୋଇ ନାହାନ୍ତି ସେପର୍ଯ୍ୟନ୍ତ ରାଣୀ ହିଁ ବ୍ରିଟିଶ୍ ସରକାରଙ୍କ ତରଫରୁ ଝାନ୍ସୀ ରାଜ୍ୟର ଦେଖାଶୁଣା କରନ୍ତୁ । ରାଜସ୍ୱ ଏକାଠି କରି ଅର୍ଥର ବନ୍ଦୋବସ୍ତ କରନ୍ତୁ ଏବଂ ଆବଶ୍ୟକସ୍ଥଳେ ଜରୁରି କାଳୀନ ସେନାବାହିନୀ ମଧ୍ୟ ନିଯୁକ୍ତ କରନ୍ତୁ । ଏହା ସଂଗେ ସଂଗେ ଅନ୍ୟ ଆବଶ୍ୟକ ବିଷୟଗୁଡ଼ିକ ମଧ୍ୟ ପର୍ଯ୍ୟବେକ୍ଷଣ କରନ୍ତୁ । ଇର୍କସନ ସ୍ୱୟଂ ନିଜର ହସ୍ତାକ୍ଷରରେ ଯେଉଁ ହୁକୁମ୍‌ନାମା ପଠାଇଥିଲେ, ତା'ର ସ୍ୱରୂପ ଏହିପରି ଥିଲା ।

''ଝାନ୍ସୀ କ୍ଷେତ୍ରରେ ବସବାସ କରୁଥିବା ଏବଂ ଝାନ୍ସୀ ସହରର ନାଗରିକମାନେ, ଆପଣମାନେ ଏକଥା ଭୁଲିଯିବା ଉଚିତ ନୁହେଁ ଯେ ସିପାହିମାନଙ୍କର ଦାୟିତ୍ୱହୀନ ଆଚରଣ ଯୋଗୁଁ ବହୁ ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତି ମୃତ୍ୟୁବରଣ କରିଛନ୍ତି । ସରକାରୀ ସମ୍ପତ୍ତିକୁ ସେହି ଲୋକମାନେ ପ୍ରଭୂତ କ୍ଷତି ପହଞ୍ଚାଇଛନ୍ତି । କିନ୍ତୁ ସକ୍ଷମ ଏବଂ କୁଶଳୀ ବ୍ରିଟିଶ୍ ସରକାର ହଜାର ହଜାର ୟୁରୋପିୟାନ ସୈନିକମାନଙ୍କୁ ଯେଉଁ ଯେଉଁଠି ବିଶୃଙ୍ଖଳା ହୋଇଛି ସେସବୁ ସ୍ଥାନକୁ ପ୍ରେରଣ କରୁଅଛି । ଝାନ୍ସୀରେ ସମଗ୍ର ପରିସ୍ଥିତିକୁ ପୁନରାୟ ନିୟନ୍ତ୍ରଣରେ ଆଣିବା ନିମନ୍ତେ ଯଥୋଚିତ ଉଦ୍ୟମ କରାଯାଉଅଛି । ଯେପର୍ଯ୍ୟନ୍ତ ୟୁରୋପିୟାନ ଅଧିକାରୀ ଏବଂ ସୈନିକ ଝାନ୍ସୀ ପହଞ୍ଚି ନ ଯାଇଛନ୍ତି, ସେପର୍ଯ୍ୟନ୍ତ ବ୍ରିଟିଶ ସରକାରଙ୍କ ନାମରେ, ବ୍ରିଟିଶ୍ ସରକାରଙ୍କ କାର୍ଯ୍ୟଶୈଳୀ ଅନୁସାରେ ଲକ୍ଷ୍ମୀବାଈ ଝାନ୍ସୀକୁ ଶାସନ କରିବେ । ମୁଁ ସମସ୍ତ ସାନ-ବଡ଼ ଲୋକମାନଙ୍କୁ ନିବେଦନ କରୁଛି ଯେ ସେମାନେ ରାଣୀଙ୍କ ଆଦେଶ ମାନି ସରକାରୀ ରାଜସ୍ୱ ତାଙ୍କ ପାଖରେ ଜମା କରନ୍ତୁ । ଏଇଥିରେ ସେମାନଙ୍କର କଲ୍ୟାଣ ଓ ପ୍ରତିଷ୍ଠା ନିହିତ ଅଛି ।

"ବ୍ରିଟିଶ୍ ସୈନ୍ୟ ଦିଲ୍ଲୀ ସହରକୁ ପୁନରାୟ ଅଧିକାର କରି ନେଇଛନ୍ତି । ହଜାର ହଜାର ବିଦ୍ରୋହୀଙ୍କୁ ହତ୍ୟା କରି ଦେଇଛନ୍ତି ଏବଂ ଯେଉଁଠି ଯେଉଁଠି ବିଦ୍ରୋହୀ ଦେଖାଦେବେ ସେମାନଙ୍କୁ ଯଥାସ୍ଥାନରେ ଫାଶୀ ଦେଇ ଦିଆଯିବ, ନ ହେଲେ ଗୁଳିରେ ଉଡ଼ାଇ ଦିଆଯିବ ।"

ରାଣୀ ଲକ୍ଷ୍ମୀବାଇଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ତାଙ୍କୁ ଝାନ୍‌ସୀର ପ୍ରଶାସନ ସଂଭାଳିବାର ଅନୁମତି ପ୍ରଦାନ କରିବା ବ୍ୟତୀତ ଇର୍କସନଙ୍କ ପାଖରେ ଅନ୍ୟ କିଛି ବିକଳ୍ପ ହିଁ ନ ଥିଲା । ରାଣୀ ଲକ୍ଷ୍ମୀବାଈଙ୍କ ପ୍ରେରିତ ପତ୍ର ସହିତ ଇର୍କସନ ଗଭର୍ଣ୍ଣର ଜେନେରାଲଙ୍କୁ ପତ୍ର ଲେଖି ଘଟଣାର ବାସ୍ତବିକତା ଜଣାଇଲେ ଏବଂ ଲେଖିଲେ- "ରାଣୀଙ୍କ ଅନୁରୋଧ ପତ୍ରରୁ ଏହା ସ୍ପଷ୍ଟ ହୋଇଯାଉଛି ଯେ ସେ ବିଦ୍ରୋହୀମାନଙ୍କୁ କୌଣସି ପ୍ରକାରର ସମର୍ଥନ ଦେଇ ନାହାନ୍ତି ବା ସେମାନଙ୍କୁ କିଛି ସାହାଯ୍ୟ କରି ନାହାନ୍ତି । ବରଂ ବିଦ୍ରୋହୀମାନେ ତାଙ୍କୁ ଧମକଚମକ ଦେଇ ଲୁଟ୍‌ପାଟ କରିଛନ୍ତି । ପରିସ୍ଥିତି ନିୟନ୍ତ୍ରଣ କରିବାପାଇଁ ତାଙ୍କୁ ଶାସନବ୍ୟବସ୍ଥା ନିଜ ହାତକୁ ନେବାକୁ ପଡ଼ିଛି । ଅନ୍ୟ ଲୋକମାନଙ୍କ ପାଖରୁ ଏବଂ ବିଭିନ୍ନ ସ୍ଥାନରୁ ମୁଁ ଯେଉଁ ସୂଚନା ସଂଗ୍ରହ କରିଛି ବା ମତେ ମିଳିଛି ତା'ର ଆଧାରରେ ମୋ ପାଖରେ ଏହି ଏକମାତ୍ର ବିକଳ୍ପ ଥିଲା ଯେ ମୁଁ ରାଣୀଙ୍କୁ ପ୍ରଶାସନ ଚଳାଇବାକୁ ଅନୁମତି ଦିଏ, ଏହା ମୋର ବିବଶତା ମଧ ଥିଲା ।

ଇର୍କସନ୍‌ଙ୍କ ନିଷ୍ପତ୍ତିକୁ ସରକାର ସ୍ୱୀକାର ତ କରିନେଲେ କିନ୍ତୁ ସେଥିସହିତ ଗୋଟିଏ ସର୍ତ୍ତ ମଧ ରଖିଲେ । ଗଭର୍ଣ୍ଣର ଜେନେରାଲ ଇର୍କସନ୍‌ଙ୍କୁ ଲେଖିଥିବା ପତ୍ରର ମର୍ମ ଏହିପରି ଥିଲା- "ରାଣୀଙ୍କ ପ୍ରସଙ୍ଗରେ ସରକାରଙ୍କ ମତାମତ ଏହା ଯେ ରାଣୀ ନିଜର ଏବଂ ଆଖପାଖର ବାସ୍ତବିକ୍ ପରିସ୍ଥିତିର ଯେଉଁ ସୂଚନା ବା ଘଟଣା ସହିତ ସଂପର୍କିତ ଯେଉଁ ସୂଚନା ଆପଣଙ୍କ ପାଖକୁ ଲେଖି ପଠାଇଛନ୍ତି, ସେ ସବୁ ସହିତ ସଂଶ୍ଳିଷ୍ଟ ନିଜର ଭାବନାତ୍ମକ ପ୍ରତିକ୍ରିୟା ମଧ୍ୟ ଆପଣଙ୍କ ପାଖକୁ ଲେଖି ପଠାଇଛନ୍ତି, ତାହାରି ଉପରେ ବିଶ୍ୱାସ କରି ଆପଣ ବ୍ରିଟିଶ୍ ସରକାରଙ୍କ ତରଫରୁ ତାଙ୍କୁ ଝାନ୍‌ସୀର ଶାସନ ଦାୟିତ୍ୱ ସମର୍ପଣ କରିଛନ୍ତି । ସରକାର ଏଥିପାଇଁ ଆପଣଙ୍କୁ ଦୋଷ ଦେବାକୁ ଚାହୁଁ ନାହାନ୍ତି । କିନ୍ତୁ ଯଦି ରାଣୀ ଲେଖିଥିବା କଥା ମିଥ୍ୟା ପ୍ରମାଣିତ ହୁଏ କିମ୍ବା ଆମ ଦୃଷ୍ଟିକୁ ଏପରି କୌଣସି ପ୍ରତିକୂଳ କଥା ଅଣାଯାଏ, ତେବେ ବ୍ରିଟିଶ୍ ସରକାର ରାଣୀଙ୍କଠାରୁ ସମର୍ଥନ ପ୍ରତ୍ୟାହାର କରିନେବେ । ମେଜର ଏଲିସ୍ ସରକାରଙ୍କୁ ଯେଉଁ ସୂଚନା ପ୍ରେରଣ କରିଛନ୍ତି, ସେହି ସୂଚନା ଅନୁସାରେ ଏହା ଜଣାଯାଉଅଛି ଯେ ରାଣୀ ବିଦ୍ରୋହୀ ଓ ଦଙ୍ଗାକାରୀଙ୍କୁ ସାହାଯ୍ୟ କରିଥିଲେ । ସେ ସେମାନଙ୍କୁ ତୋପ ଓ ଗୋଳାବାରୁଦ ମଧ ପ୍ରଦାନ କରିଥିଲେ । ସେ ସେମାନଙ୍କୁ ଯଥାସାଧ ସହାୟତା କରିଥିଲେ ।" (ସିହ୍ନା, ରାଣୀ ଲକ୍ଷ୍ମୀବାଈ, ୧୯୮୦, ପୃଷ୍ଠା-୫୯-୬୦)

ଏହା କହିବାର ତାତ୍ପର୍ଯ୍ୟ ହେଉଛି ଯେ କମ୍ପାନୀ ସରକାର ରାଣୀଙ୍କ ପ୍ରସଙ୍ଗରେ ନିଜ ସୁବିଧା ଅନୁଯାୟୀ ରାଣୀଙ୍କୁ କ୍ଷମତା ପ୍ରଦାନ କରିବା କିମ୍ବା ତାଙ୍କ ଉପରେ ପୂରା ନଜର ରଖିବା- ଏ ଦୁଇଟିଯାକ ବିକଳ୍ପ ଖୋଲା ରଖିଥିଲେ । ଏହିପରି କିଲ୍ଲାରେ ସୁରକ୍ଷାର

ପୂରା ବନ୍ଦୋବସ୍ତ କରି ଇଂରେଜଙ୍କ ପାଇଁ ଖାଦ୍ୟପେୟର ବ୍ୟବସ୍ଥା ସଂପର୍କରେ ଅଥବା ତୋପ ଏବଂ ଜନଶକ୍ତିର ସହାୟତା ଦେବା ସଂପର୍କରେ କମ୍ପାନୀ ସରକାର ନିଜ ମର୍ଜି ଅନୁସାରେ ଉଚିତ ଅନୁଚିତର ନିଷ୍ପତ୍ତି ନେବାପାଇଁ ଏହି ଦୁଇଟି କଥା ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଥିଲା ।

ଏହା ସ୍ୱାଭାବିକ ଅଟେ ଯେ ସରକାର ଇର୍କସନଙ୍କୁ ଯେଉଁ ପତ୍ର ପଠାଇଥିଲେ ସେଥିରେ ଲେଖା ହୋଇଥିବା ବିଷୟ ଜାଣିବା ରାଣୀଙ୍କ ପକ୍ଷେ ଅସମ୍ଭବ ଥିଲା । ଝାନ୍‌ସୀର ଶାସନବ୍ୟବସ୍ଥା ନିଜ ହାତକୁ ନେବାର ଆଦେଶ ଇର୍କସନ୍ ରାଣୀଙ୍କୁ ପୂର୍ବରୁ ଦେଇ ସାରିଥିଲେ । ଏଥିପାଇଁ ରାଣୀ ସନ୍ତୁଷ୍ଟ ଏବଂ ଆନନ୍ଦିତ ହେବା ସ୍ୱାଭାବିକ ଥିଲା । ରାଜ୍ୟକୁ ଅନ୍ୟର କବ୍‌ଜାରୁ ମୁକ୍ତ କରିବା ଦିଗରେ ଏହା ପ୍ରଥମ ପାହାଚ ଥିଲା । ତିନି ବର୍ଷ ପୂର୍ବେ ମାର୍ଚ୍ଚ, ୧୮୫୪ରେ ଝାନ୍‌ସୀ ରାଜ୍ୟ ଦଖଲ କରିଲା ପରେ ଅତ୍ୟନ୍ତ ଅପମାନଜନକ ସର୍ତ୍ତ ସ୍ୱୀକାର କରିବାକୁ ବାଧ କରି ଝାନ୍‌ସୀ ଦୁର୍ଗର ରାଜମହଲରୁ ବାହାରିଯାଇ ସହରର ନିଜ ରାଜମହଲରେ ଆସି ରହିବାକୁ ପଡ଼ିଥିଲା । ତାଙ୍କଠାରୁ ସମସ୍ତ ଅଧିକାର ଛଡ଼େଇ ନିଆଯାଇଥିଲା । ତାଙ୍କୁ ନିଜର ସମସ୍ତ ରାଜବୈଭବ ମଧ ହରେଇବାକୁ ପଡ଼ିଥିଲା । ଯେଉଁ ସରକାର ତାଙ୍କର ରାଜ୍ୟ ଅଧିକାର କରି ତାଙ୍କଠାରୁ ରାଜସତ୍ତା ଛଡ଼େଇନେଇଥିଲା, ସେହି ସରକାରଙ୍କ ଆଦେଶରେ ପୁଣି ଥରେ ତାଙ୍କ ରାଜ୍ୟକର୍ତ୍ତାର ଭୂମିକା ତୁଲାଇବାକୁ କୁହାଯାଇଥିଲା । ସେ ସମୟରେ ରାଣୀଙ୍କୁ ୨୭ ବର୍ଷ ବୟସ ହୋଇଥିଲା ।

## ଝାନ୍‌ସୀ ଏବଂ ତା'ର ଆଖପାଖରେ ହୋଇଥିବା ବିଦ୍ରୋହ

ଉପରୋକ୍ତ ବର୍ଣ୍ଣିତ ଭିନ୍ନ ଭିନ୍ନ କାରଣରୁ କମ୍ପାନୀ ସରକାରଙ୍କ ପ୍ରତି ବିରୋଧୀଭାବନା ସମ୍ପୂର୍ଣ୍ଣ ହିନ୍ଦୁସ୍ଥାନୀ ସିପାହି ଏବଂ ଜନମାନସରେ ବ୍ୟାପି ଯାଇଥିଲା । କିନ୍ତୁ ଏହି ଭାବନା ତାତିଉଠି ପୁଣି ଯେଉଁଠିକୁ ସେଇଠି ଥମି ଯାଉଥିଲା । ବିରୋଧର ଏହି ଭାବନା ସର୍ବପ୍ରଥମେ ମିରଠରେ ନିଆଁ ପରି ଜଳିଉଠି ବାହାରକୁ ଆସିଥିଲା । ବୁନ୍ଦେଲଖଣ୍ଡର ଝାନ୍‌ସୀରେ ତା'ର ପ୍ରଥମ ସ୍ଫୁଲିଙ୍ଗ ଜଳି ଉଠିଥିଲା । ଝାନ୍‌ସୀ ସହିତ ବୁନ୍ଦେଲଖଣ୍ଡର ଅନ୍ୟ ରାଜ୍ୟ ସବୁରେ ମଧ ବିଦ୍ରୋହ ଆରମ୍ଭ ହୋଇଗଲା । କେତେକ ସ୍ଥାନରେ ସେଠାର କ୍ଷମତାସୀନମାନେ ବିଦ୍ରୋହ କଲେ ତ କେତେକ ସ୍ଥାନରେ ସିପାହିମାନେ ଏହି ବିଦ୍ରୋହର ଆରମ୍ଭ କଲେ । ନୌଗାଓଁ, ଚନ୍ଦେରୀ, ଲଳିତପୁର, ଶାହଗଡ଼, ବାଣପୁର, ଜାଲୌନ, ଭରଇ, ମନ୍ଦସୋର, ମଉରାନୀପୁର, ଗୁରସରାୟ, ବାଧେକ, ବାନ୍ଦା, କରବୀ, ମହୁ, ମର୍କ, ସାମଗଡ଼, ବବେରୁ, ଟିଣ୍ଡୱାରୀ, ପାୟଲାନୀ ଇତ୍ୟାଦି କ୍ଷୁଦ୍ର କ୍ଷୁଦ୍ର ତହସିଲ ଏବଂ ରାଜ୍ୟରେ ବିଦ୍ରୋହ ହୋଇଗଲା । ନରବଣର ରାଜା ଏବଂ ଭାଦେକର ରାଜା ତଥା ଶିବପୁରୀର ରାଜା ସ୍ୱୟଂ ଇଂରେଜଙ୍କ ବିରୋଧରେ ଯୁଦ୍ଧ ଆରମ୍ଭ କରିଥିଲେ ।

ଅଧିକାଂଶ ସ୍ଥାନରେ ସିପାହିମାନେ ଇଂରେଜ ଅଧିକାରୀ ଓ ମିଶନାରୀମାନଙ୍କୁ ହତ୍ୟା କରି ସରକାରୀ ଟ୍ରେଜେରୀର ଟଙ୍କାପଇସା ଓ ଅସ୍ତ୍ରଶସ୍ତ୍ରକୁ ଦଖଲ କରି ନେଇଥିଲେ ।

ସିପାହିମାନେ ଅଧିକାଂଶ ସରକାରୀ ଅଫିସର କାଗଜପତ୍ର ଜଳାଇଦେଲେ ଓ ଚିରିଚାରି ନଷ୍ଟ କରିଦେଲେ । ଏହି କାଗଜପତ୍ର ଭିତରେ ମୁଖ୍ୟତଃ ଖଜଣା, ଜମିର କର ଆଦାୟ, କଷ୍ଟମ୍ ଏବଂ ଷ୍ଟାମ୍ପଡ୍ୟୁଟି ସମ୍ବନ୍ଧିତ ନଥିପତ୍ର ଥିଲା ।

ବାନ୍ଦାରେ ଥିବା ଗୋରା ମିଶନାରୀଙ୍କୁ ମାରିବା ବଦଳରେ ତାଙ୍କୁ ଜବରଦସ୍ତି ମୁସଲମାନ କରି ଦିଆଗଲା । ଯେଉଁଠି ମଧ୍ୟ ସିପାହିମାନେ ବିଦ୍ରୋହ କରିଥିଲେ, ସେଠାରେ ସେମାନେ ଇଂରେଜମାନଙ୍କୁ ହତ୍ୟା କଲେ ଅଥବା ନିଜ ରାଜ୍ୟରୁ ତଡ଼ିଦେବା ପରେ ରାଜା ଓ ନବାବମାନଙ୍କୁ ପୁନରାୟ ରାଜସିଂହାସନରେ ବସାଇଦେଲେ । ସେତେବେଳେ ରାଜବଂଶ ଓ ରାଜପରିବାରମାନଙ୍କ ମଧ୍ୟରେ ଥିବା କ୍ଷମତା ପାଇଁ ପ୍ରତିଯୋଗିତା, ପରସ୍ପର ସଂଘର୍ଷ ଆଗକୁ ଆସିବାକୁ ଲାଗିଲା । ଏହା ସହିତ ରାଜପରିବାରରେ ସିଂହାସନ ପାଇଁ ପ୍ରତିଯୋଗିତା ମଧ୍ୟ ଦେଖାଦେବାରେ ଲାଗିଲା । ତାନ୍ତିଆ ଟୋପେ କାଲ୍‌ପୀକୁ ପେଶବାମାନଙ୍କର ମୁଖ୍ୟ କେନ୍ଦ୍ର କରିଥିଲେ ଏବଂ ସେଇଠାରୁ ସେ ସମ୍ପୂର୍ଣ୍ଣ ବୁନ୍ଦେଲଖଣ୍ଡର ଗତିବିଧି ଉପରେ ପୂରାପୂରି ଧ୍ୟାନ ରଖିଥିଲେ ଏବଂ ଆବଶ୍ୟକ ପଡ଼ିଲେ ହସ୍ତକ୍ଷେପ ମଧ୍ୟ କରୁଥିଲେ । ଝାନ୍‌ସୀ ପରେ ତୁରନ୍ତ ଜାଲୋନୀରେ ବିଶୃଙ୍ଖଳାର ଆଭାସ ଦେଖାଦେଲା । ଏହି ସୂଚନା ମିଳିବାମାତ୍ରେ ଇଂରେଜ ଅଧିକାରୀମାନେ ଗୁରସରାୟର ଜାଗିରଦାରଙ୍କ ନିକଟରେ ବୁଝାମଣା ପାଇଁ କଥାବାର୍ତ୍ତା ଆରମ୍ଭ କଲେ । ସାହାଯ୍ୟ ପାଇଁ ନିବେଦନ ମଧ୍ୟ କଲେ । ଜାଲୋନିର ସୁବେଦାର କେଶବ ରାଓ ଇଂରେଜଙ୍କୁ ସାହାଯ୍ୟ କରିବା ଓ କିଲ୍ଲାରେ ଶାନ୍ତି ବଜାୟ ରଖିବାର ଆଶ୍ୱାସନା ମଧ୍ୟ ଦେଲେ । ଏ ସଂପର୍କରେ ଏକ ରାଜିନାମା ମଧ୍ୟ କରାଗଲା । ଜାଲୌନର ବରିଷ୍ଠ ଏବଂ କନିଷ୍ଠ ଇଂରେଜ କମିଶନରଙ୍କୁ ଉର୍ଦ୍ଦୁ ଜଣା ନ ଥିଲା । ଏହାର ସୁଯୋଗ ନେଇ କେଶବ ରାଓ ନିଜ ସପକ୍ଷରେ କେତେକ ଅଧିକାର ଲିପିବଦ୍ଧ କରି ସେହି ଉର୍ଦ୍ଦୁ ପତ୍ର ଉପରେ ଇଂରେଜ ଅଧିକାରୀଙ୍କ ଦସ୍ତଖତ୍ କରାଇନେଲେ । ସେହି ରାଜିନାମା ଅନୁସାରେ ଜାଲୌନର ସିଂହାସନ ଉପରେ ତାଙ୍କର ପୁଅର ଅଧିକାର ରହିବ । ଏଥି ସହିତ ସେ ଜାଲୌନ କିଲ୍ଲା ଉପରେ ନଜର କବ୍‌ଜା କରିନେଲେ । ସେଠିକାର ଇଂରେଜ ଅଧିକାରୀ ଓ ପୁଲିସ୍ ଅଧିକାରୀମାନଙ୍କୁ କିଲ୍ଲା ବାହାରକୁ ବାହାର କରିଦେଲେ । ସେତେବେଳେ ଯାଇ ଇଂରେଜ ଅଧିକାରୀମାନଙ୍କୁ ନିଜ ଭୁଲ୍ ଜଣାପଡ଼ିଲା । କିନ୍ତୁ ସେତେବେଳକୁ ଖୁବ୍ ଡେରି ହୋଇଯାଇଥିଲା । କେଶବ ରାଓଙ୍କ ବିରୋଧରେ କାର୍ଯ୍ୟପନ୍ଥା ଗ୍ରହଣ କରିବାର ଅଧିକାର ମଧ୍ୟ ସେମାନଙ୍କ ପାଖରେ ନ ଥିଲା । କେଶବ ରାଓଙ୍କୁ ଯଦି କେଉଁଠାରୁ ଭୟ ଥିଲା ତ କେବଳ ତାଇବାଇଙ୍କୁ ଭୟ ଥିଲା । ସେହି ମହିଳା ଜାଲୌନର ରାଜାଙ୍କର ନାତୁଣୀ ଥିଲେ । ରାଜ୍ୟର ମାନ୍ୟଗଣ୍ୟ ବ୍ୟକ୍ତି, ପଣ୍ଡିତ ଓ ଦରବାରୀ ଲୋକଙ୍କର ତାଇବାଇଙ୍କ ପ୍ରତି ଶ୍ରଦ୍ଧା ଥିଲା ଓ ତାଙ୍କପ୍ରତି ମାନ୍ୟତା ମଧ୍ୟ ଥିଲା । କିନ୍ତୁ କେଶବ ରାଓ ମୌକାର ଫାଇଦା ଉଠାଇ ନିଜର ହାତମୁଠା ଟାଣ କରିଦେଲେ । ସେ ଜୁନ୍‌ର ଶେଷଭାଗରେ କର ଆଦାୟ ତଥା ଧନୀ ସାହୁକାରଙ୍କଠାରୁ ଟଙ୍କା ଆଦାୟ କାମ ଆରମ୍ଭ କରିଦେଲେ । ଜାଲୌନରେ ସେ

ନିଜ ନାମରେ ମୁଦ୍ରା ମଧ୍ୟ ପ୍ରଚଳନ କଲେ । ବିଭିନ୍ନ ସ୍ଥାନରେ ନିଜର କର୍ମଚାରୀ ନିଯୁକ୍ତ କଲେ । ଯେଉଁ ଲୋକମାନେ ତାଙ୍କୁ ସାହାଯ୍ୟ କଲେ, ସେମାନଙ୍କୁ ପୁରସ୍କାରସ୍ୱରୂପ ଚାଷଜମି, ଗାଁ ଇତ୍ୟାଦି ଦେବା ମଧ୍ୟ ଆରମ୍ଭ କରିଦେଲେ ଏବଂ ପେଶବାମାନଙ୍କ ସହିତ ବିଚାର ବିମର୍ଶ କରିବା ଲାଗି ବିଠୁରରୁ ବାରମ୍ବାର ପତ୍ର ବିନିମୟ ମଧ୍ୟ ଆରମ୍ଭ କରିଦେଲେ ।

କିନ୍ତୁ ଏସବୁ କରିବା ଭିତରେ ଇଂରେଜମାନଙ୍କୁ ଖୁସି ରଖିବାକୁ ବି ସେ ବିଚାର କରୁଥିଲେ । ଇଂରେଜଙ୍କ ତରଫରୁ ମଧ୍ୟ କେଶବ ରାଓ ପୂରା ସୁରକ୍ଷା କବଚ ଚାହୁଁଥିଲେ । ତାଙ୍କୁ ଆଖିରେ ରଖି ସେ ପୂରା ସତର୍କତା ଅବଲମ୍ବନ କରୁଥିଲେ । ଜାଲୌନରେ ରହୁଥିବା ଇଂରେଜ ଅଧିକାରୀଙ୍କୁ ଆଘାତ ଦେଲାପରି କୌଣସି କାମ କରିବାକୁ ସେ ଏଡ଼ାଇ ଯାଉଥିଲେ । ତାନ୍ତିଆ ଟୋପେଙ୍କ ଦୃଷ୍ଟିରେ ଯେତେବେଳେ ଏ କଥା ପଡ଼ିଲା, ସେତେବେଳେ ସେ ନିଜେ ନେତୃତ୍ୱ ନେଇ ତାଇବାଈଙ୍କ ପକ୍ଷରେ ରହିଲେ । ସୈନ୍ୟ ପଠାଇ କେଶବ ରାଓ ଏବଂ ତାଙ୍କ ପୁଅକୁ କାରାଗାରରେ ବନ୍ଦୀ କରି ତାଇବାଈଙ୍କ ଦେଢ଼ବର୍ଷର ପୁଅ ଗୋବିନ୍ଦ ରାଓଙ୍କୁ ଜାଲୌନ ରାଜଗାଦିରେ ବସାଇଦେଲେ ଏବଂ ସେହି ନୂଆ ରାଜାଙ୍କ ତରଫରୁ ନିଜର ନିଷ୍ଠା ନିବେଦନ କରି ନାନାସାହେବ ପେଶବାଙ୍କ ନିକଟକୁ ପତ୍ର ପଠାଇଦେଲେ ।

୧୮୫୭ ମସିହା ଜୁନ୍ ୧୪ରେ ଚରଖାରୀର ସିପାହିମାନେ ବିଦ୍ରୋହ କରିଦେଲେ । ସେଠିକାର କେତେକ ଇଂରେଜ ଅଧିକାରୀ ଡଙ୍ଗାରେ ଯମୁନା ନଦୀ ପାରି ହେଉଥିଲେ, କିନ୍ତୁ ସେମାନେ ଯାଇପାରିଲେ ନାହିଁ । ସେମାନଙ୍କୁ ସିପାହିମାନେ ମାରି ପକାଇଲେ । କାରାଗାରର ଦରଜା ଭାଙ୍ଗି ବନ୍ଦୀମାନଙ୍କୁ ମୁକ୍ତ କରିଦେଲେ । ଚରଖାରୀର ସୁବେଦାର ଅଲ୍ଲୀବଖ୍ଶ ଦିଲ୍ଲୀର ବାଦଶାହ ବାହାଦୁରଶାହଙ୍କ ନାମରେ ଘୋଷଣାପତ୍ର ଜାରି କଲେ ଏବଂ ନିଜେ ନିଜକୁ ବାଦଶାହଙ୍କ ଗୁମାସ୍ତା ଘୋଷଣା କରିଦେଲେ । ଅଲ୍ଲୀବଖ୍ଶ ନାନାସାହେବ ପେଶବାଙ୍କ ସହିତ ସମ୍ପର୍କ ସ୍ଥାପନ କରି ତାଙ୍କଠାରୁ ସୈନିକ ସହାୟତା ମଧ୍ୟ ମାଗିଲେ ।

ଏହା ପରେ ଟ୍ରେଜେରୀରେ ଥିବା ଦେଢ଼ଲକ୍ଷ ଟଙ୍କା ପାଇଁ ସୁବେଦାର ଅଲ୍ଲୀବଖ୍ଶ ଏବଂ ସିପାହିମାନଙ୍କ ମଧ୍ୟରେ ଝଗଡ଼ା ଆରମ୍ଭ ହୋଇଗଲା । ଅଲ୍ଲୀବଖ୍ଶ ଏହି ଟଙ୍କା ନେଇ ଦିଲ୍ଲୀ ଯିବାକୁ ଚାହୁଁଥିଲା । ସିପାହିମାନେ ଏହାର ବିରୋଧ କରୁଥିଲେ । ଏହି ଝଗଡ଼ା ଆରମ୍ଭ ହେଲାମାତ୍ରେ ଜୁଲାଇ ୧ ତାରିଖରେ ନାନାସାହେବ ପେଶୱାଙ୍କ ତରଫରୁ ଜିଲ୍ଲାଧିକାରୀ ୱହିଦ୍ ଉଜମାଙ୍କ ନାମରେ ଏକ ହୁକୁମନାମା ଜାରି କରାଗଲା, ଯେଉଁଥିରେ ନାନାସାହେବ ପେଶୱାଙ୍କୁ ନିଜ ନାମରେ ରାଜ୍ୟର କାମ ସମ୍ଭାଳିବା ପାଇଁ କୁହାଗଲା । ତୁରନ୍ତ ନାନାସାହେବ ପେଶୱାଙ୍କ ଶାସନର ଘୋଷଣା ଜାରି କରି ଦିଆଗଲା । ତିନିଦିନ ଭିତରେ ସମସ୍ତ ଜମିଦାର, ଚାଷୀ, ବ୍ୟବସାୟୀ ଇତ୍ୟାଦି ଲୋକେ ପେଶୱାଙ୍କ ଅଧିକାରୀଙ୍କ ପାଖରେ କର ଜମା କରିବେ, ଏପରି ଆଦେଶନାମା ଜାରି କରାଗଲା । ସମସ୍ତେ ଏହି ନୂଆ ଶାସନବ୍ୟବସ୍ଥାକୁ ମାନ୍ୟତା ପ୍ରଦାନ କଲେ ।

ସୁବେଦାର ଅଲ୍ଲୀବକ୍ସ୍‌ଶଙ୍କ ପରି ଚରଖାରୀର ରାଜା ରତନସିଂହ ମଧ୍ୟ ଦିଲ୍ଲୀର ବାଦଶାହଙ୍କୁ ଚିଠି ଲେଖି ନିଜର ସ୍ୱାମୀନିଷ୍ଠା ବ୍ୟକ୍ତ କଲେ । କିନ୍ତୁ ଏହାର ପ୍ରତିଦାନରେ ରାଜା ଛତ୍ରପାଲଙ୍କ ସମୟରେ ତାଙ୍କ ପୂର୍ବପୁରୁଷଙ୍କ ଦଖଲରେ ଯେଉଁ ଇଲାକା ଥିଲା, ତାକୁ ଫେରାଇ ଦେବାପାଇଁ ସର୍ତ୍ତ ମଧ୍ୟ ରଖିଲେ ଏବଂ ସେହି ସମୟରେ ମରହଟ୍ଟାମାନଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ରଖିବାର ପ୍ରଯତ୍ନ ମଧ୍ୟ ସେ ଚଳାଇଥିଲେ ।

ଅଲୀ ବାହାଦୁର ବାନ୍ଦା ରାଜ୍ୟର ନବାବ ଥିଲେ । ସେ ବାଜିରାଓ ପ୍ରଥମ ଏବଂ ମସ୍ତାନୀଙ୍କର ନାତି ଥିଲେ । ବାନ୍ଦାର ଲୋକମାନେ ଇଂରେଜଙ୍କ ବିରୋଧରେ ଯୁଦ୍ଧ ଆରମ୍ଭ କରିଥିଲେ । ତା'ପରେ ସିପାହିମାନେ ବିଦ୍ରୋହ କଲେ । ସେ ସମୟରେ ବାନ୍ଦାର ଇଂରେଜ ଅଧିକାରୀମାନେ ସୁରକ୍ଷା ଦୃଷ୍ଟିରୁ ନିଜର ପରିବାରର ଲୋକଙ୍କୁ ନବାବଙ୍କର ରାଜମହଲରେ ରଖିଦେଲେ । ରାତିରେ ୟୁରୋପିୟାନ୍‌ମାନଙ୍କ ଘରେ ନିଆଁ ଲଗାଇ ଦିଆଗଲା । ଇଂରେଜମାନେ ନବାବଙ୍କ ସହାୟତାରେ ସିପାହିମାନଙ୍କୁ ଆତ୍ମସମର୍ପଣ କରାଇବାର ଯୋଜନା କରିଥିଲେ । ନବାବଙ୍କ ସହିତ ସେହିପରି କଥାବାର୍ତ୍ତା ଆରମ୍ଭ କରା ହୋଇଥିଲା । କିନ୍ତୁ ଏ କଥା ଜାଣିପାରିବାମାତ୍ରେ ସିପାହିମାନେ ସିଧା ଇଂରେଜମାନଙ୍କ ଉପରେ ଆକ୍ରମଣ କରିଦେଲେ । 'ଜେହାଦ୍' ଘୋଷଣା କରିଦେଇ 'ଦୀନ-ଦୀନ୍' ଗର୍ଜନ କରି ସିପାହିମାନେ ସୈନିକ ଛାଉଣୀ ଆଡ଼କୁ ବାହାରିଗଲେ । ସେତିକିବେଳେ ଇଂରେଜମାନେ ନବାବଙ୍କ ସହାୟତାରେ ରାତିର ଅନ୍ଧକାର ଭିତରେ ନବାବଙ୍କ ମହଲ ଛାଡ଼ିଦେଲେ । ସିପାହିମାନେ ସେନାଛାଉଣୀରେ ଥିବା ଇଂରେଜଙ୍କ ବଙ୍ଗଳା ଉଡ଼ାଇଦେଲେ । ସରକାରୀ ଅଫିସ୍‌ର କାଗଜପତ୍ର, କୋର୍ଟ କାମରେ ଲାଗୁଥିବା ଷ୍ଟାମ୍ପ କାଗଜ, ହିସାବର ଖାତା-ବହି ଇତ୍ୟାଦି ସବୁକିଛି ଧ୍ୱଂସ କରିଦେଲେ । ନବାବ କୌଣସି ପ୍ରକାରେ ପରିସ୍ଥିତିକୁ ନିୟନ୍ତ୍ରଣକୁ ଆଣିଲେ ଏବଂ ନିଜ ନାମରେ ହିଁ ଘୋଷଣା କରିଦେଲେ- "ଖୁଲ୍କ ଖୁଦା କା, ମୁଲ୍କ ବାଦଶାହ କା, ହୁକୁମ୍ ନବାବ ଅଲ୍ଲୀ ବାହାଦୁରକା" (ସୃଷ୍ଟି ଈଶ୍ୱରଙ୍କର, ଦେଶ ବାଦଶାହଙ୍କର, ରାଜୁତି ନବାବ ଅଲ୍ଲୀ ବାହାଦୁରଙ୍କର)

ଦ୍ୱିତୀୟ ଦିନ ଯାହାକୁ ପାଇଲେ, ବଞ୍ଚିଯାଇଥିବା ଇଂରେଜମାନଙ୍କୁ ହତ୍ୟାକରି ସିପାହିମାନେ ଜେଲ୍ ଭାଙ୍ଗି ବନ୍ଦୀମାନଙ୍କୁ ମୁକ୍ତ କରିଦେଲେ । ମିଶନାରୀମାନଙ୍କ ଦ୍ୱାରା ସଞ୍ଚାଳିତ ସ୍କୁଲ୍‌କୁ ଧ୍ୱଂସ କରିଦେଲେ । ନିଜର ବିଜୟର ଖୁସିରେ ଗାଁ ସାରା ମିଠେଇ ବାଣ୍ଟିଲେ । ନିଜ ମହଲରେ ଇଂରେଜଙ୍କୁ ରଖିବା ଓ ସାହାଯ୍ୟ କରିବା ଯୋଗୁଁ ନବାବଙ୍କ ଉପରୁ ସିପାହିମାନଙ୍କର ବିଶ୍ୱାସ ତୁଟି ଯାଇଥିଲା । ସେଥିପାଇଁ ସେମାନେ ଏବେ ନିଜ ନାମରେ ନୂଆ ଘୋଷଣା କରି କହିଲେ "ଖୁଲ୍କ କୌମକା, ମୁଲ୍କ ବାଦଶାହକା, ହୁକୁମ ସୁବେଦାର ସିପାହି ବାହାଦୁରକା" ।

ଏହି ନୂଆ ଘୋଷଣାରୁ ଦୁଇଟି ମହତ୍ତ୍ୱପୂର୍ଣ୍ଣ କଥା ଆଗକୁ ଆସିଲା । ପ୍ରଥମ କଥା ଏହି ଯେ ଏବେ 'ଖୁଲ୍କ ଖୁଦା' ସ୍ଥାନରେ 'ଖୁଲ୍କ କୌମ' ହୋଇଗଲା । ଅର୍ଥାତ୍ ସୃଷ୍ଟି

ଈଶ୍ୱରଙ୍କର ସ୍ଥାନରେ ସମାଜର ମାଲିକାନା ସ୍ଥିର କରାଗଲା ଏବଂ ଦ୍ୱିତୀୟ ମହତ୍ତ୍ୱପୂର୍ଣ୍ଣ କଥାଟି ହେଲା ଯେ ଏବେ ଶାସନ ରାଜା କିମ୍ବା ନବାବଙ୍କର ନ ହୋଇ ସୁବେଦାର ବାହାଦୁର ସିପାହିଙ୍କର ହେଲା । ଏହାର ଅର୍ଥ ସେତେବେଳେ ସତ୍ତା ସିପାହିମାନଙ୍କର ହାତରେ ଥିଲା । ସେମାନେ ମହମ୍ମଦ ସରଦାର ଖାନ୍‌ଙ୍କୁ ବାନ୍ଦାର 'ନାଜିମ୍' ନିଯୁକ୍ତ କଲେ ଓ ରାଜ୍ୟ ପ୍ରଶାସନର ସାରା ଅଧିକାର ସମର୍ପଣ କଲେ । ବିଭିନ୍ନ ସ୍ଥାନରେ କନିଷ୍ଠ ଅଧିକାରୀମାନଙ୍କୁ ମଧ୍ୟ ନିଯୁକ୍ତ କଲେ । ବାନ୍ଦାର ହିନ୍ଦୁ ସମାଜକୁ ଖୁସି କରିବାପାଇଁ ଗାଈ ବଳଦଙ୍କୁ ହତ୍ୟା କରିବା ଉପରେ କଟକଣା ଲଗାଇ ଦିଆଗଲା ।

ଏହା ପରେ ନବାବ ଅଲୀ ବାହାଦୁର ସିପାହିମାନଙ୍କ ସହିତ ବୁଝାମଣା ପାଇଁ କଥାବାର୍ତ୍ତା ଆରମ୍ଭ କଲେ । ସିପାହିମାନଙ୍କର ମୁଖିଆମାନଙ୍କ ସହିତ କଥାବାର୍ତ୍ତା କଲା ପରେ ସ୍ଥିର କରାଗଲା ଯେ ବିଠୁରର ନାନାସାହେବ ପେଶୱାଙ୍କ ପାଖରୁ ଆସିବାକୁ ଥିବା ଆଦେଶର ପ୍ରତୀକ୍ଷା କରାଯିବ । ସିପାହିମାନଙ୍କୁ ମଧ୍ୟ ଦିଲ୍ଲୀ ଯିବାର ଥିଲା । ସେମାନଙ୍କର ପ୍ରସ୍ଥାନ ପରେ, ନାନାସାହେବ ପେଶୱାଙ୍କ ନିକଟରୁ ଆଦେଶ ଆସିବାଯାଏ ନବାବ ରାଜ୍ୟର ଶାସନ ଦାୟିତ୍ୱ ସଂଭାଳିବାର ନିର୍ଣ୍ଣୟ ନିଆଗଲା । ସରକାରୀ କୋଷାଗାରରୁ ଦୁଇଲକ୍ଷ ଟଙ୍କା, ତୋପ ଏବଂ ଗୋଳାବାରୁଦ ଧରି ସିପାହିମାନେ ୧୭ ଜୁନ୍‌ରେ ଦିଲ୍ଲୀ ଆଡ଼କୁ ବାହାରିଗଲେ । ନବାବଙ୍କର କିଛି ବ୍ୟକ୍ତିଗତ ସୈନିକ ମଧ୍ୟ ସେମାନଙ୍କ ସାଥିରେ ଯାଇଥିଲେ ।

ନାନାସାହେବ ପେଶୱା ଅଗଷ୍ଟ ମାସରେ କାନପୁରରେ ଇଂରେଜଙ୍କୁ ପରାସ୍ତ କରିବା ପରେ ବିଠୁରରେ ପୁନରାୟ ପେଶୱାମାନଙ୍କର ରାଜ୍ୟ ସ୍ଥାପନ କଲେ । ସେ ସମୟରେ ଅଲୀ ବାହାଦୁର ନାନାସାହେବଙ୍କୁ ନଜରାନାସ୍ୱରୂପ ୨୧ ସ୍ୱର୍ଣ୍ଣମୁଦ୍ରା ଭେଟି ଦେଲେ ଏବଂ ସୈନ୍ୟ ଏବଂ ଅର୍ଥ ସାହାଯ୍ୟ ମାଗିଲେ । ନିଜ ପତ୍ରରେ ଅଲୀ ବାହାଦୁର ନାନାସାହେବଙ୍କୁ ଲେଖିଲେ– "ଆପଣଙ୍କ ପାଖରୁ ଅର୍ଥ ଏବଂ ସୈନିକମାନେ ଆସିବାଯାଏ ଦିନ–ରାତି ଚିନ୍ତାରେ ବୁଡ଼ି ରହିବି । ଈଶ୍ୱର ନ କରନ୍ତୁ କୌଣସି ଅଘଟଣ ଘଟିଯାଉ, କିନ୍ତୁ ଜନଶକ୍ତି ଏବଂ ଅର୍ଥାଭାବରୁ ପ୍ରାଚୀନ କାଳରୁ ପେଶୱାମାନଙ୍କର ଅଧିକାରରେ ଥିବା ବାନ୍ଦା କିଲ୍ଲାକୁ ଆମେ ଯେପରି ହରାଇ ନ ଦେଉ ।" (The Revolt of 1857 in Bundelkhand, S.N. Sinha, 1982, Page - 99)

ସିପାହିମାନଙ୍କ ପରି ଅନ୍ୟ ରାଜା–ମହାରାଜା ମଧ୍ୟ ନବାବଙ୍କ ପ୍ରତି ଆଶଙ୍କିତ ଥିଲେ । ନାଗପୁରର ରାଜା ମର୍ଦାନସିଂହ ଚାନ୍ଦକିଶୋର ନାମକ ନିଜର ଦୂତ ମାର୍ଫତରେ ୭ ସେପ୍ଟେମ୍ବର ୧୮୫୭ରେ ନବାବ ଅଲୀ ବାହାଦୁରଙ୍କୁ ଏକ ପତ୍ର ପ୍ରେରଣ କଲେ । ସେଥିରେ କୁହାଯାଇଥିଲା– "ବର୍ତ୍ତମାନ ଏହି ଯୁଦ୍ଧ ନାସ୍ତିକଙ୍କ ବିରୋଧରେ ଘୋଷିତ, ହିନ୍ଦୁ ମୁସଲମାନମାନଙ୍କର ଏକପ୍ରକାର ଧର୍ମଯୁଦ୍ଧ ଅଟେ । ସେଥିପାଇଁ ହିନ୍ଦୁ ଏବଂ ମୁସଲମାନ ଏକପ୍ରାଣ ହୋଇ ଏକାଠି ହେବା ଉଚିତ ଏବଂ ହିନ୍ଦୁସ୍ଥାନରୁ ଏହି ନାସ୍ତିକମାନଙ୍କର ଚେରମୂଳ ଉପାଡ଼ି ଫିଙ୍ଗିଦେବା ଉଚିତ । ଯମୁନାତଟରୁ ନାଗପୁର ପର୍ଯ୍ୟନ୍ତ ଅଞ୍ଚଳରେ ବସବାସ କରୁଥିବା

ଏହି ନାସ୍ତିକମାନଙ୍କୁ ମାରି ନିକାଲିଦେବା ନିମନ୍ତେ ଆପଣ ଏକଜୁଟ୍ ହୋଇ ପ୍ରଯତ୍ନ କରିବେ– ମୋର ଏହାହିଁ ଇଚ୍ଛା । ଥରେ ଆମକୁ ବିଜୟ ପ୍ରାପ୍ତ ହେଲେ ଆମେ ତା'ପରେ ବାଦଶାହଙ୍କ ସେବାରେ ଉପସ୍ଥିତ ହୋଇଯିବା ଏବଂ ଆମକୁ ରାଜକୀୟ ଅନୁଗ୍ରହ ପ୍ରାପ୍ତି ହେବ ।'' (ଉପରୋକ୍ତ ଗ୍ରନ୍ଥ, ପୃଷ୍ଠା ୧୦୦)

ବାନ୍ଦାର ନବାବ ଅଲୀବାହାଦୁର ନିଜର ବୀରତ୍ୱ ଏବଂ ବୁଦ୍ଧିମତ୍ତା ନିମନ୍ତେ ପ୍ରସିଦ୍ଧ ଥିଲେ । ଆରମ୍ଭ ଦିନମାନଙ୍କରେ ତାଙ୍କର ଅସ୍ତ-ବ୍ୟସ୍ତ ଭାବ ଓ ଅସ୍ଥିର ଆଚରଣକୁ ଛାଡ଼ିଦେଲେ ପରେ ପରେ ସେ ନିଜର କାମଧନ୍ଦା ଭଲଭାବରେ ସଂଭାଳି ନେଇଥିଲେ । ସେ ନିଜର କାର୍ଯ୍ୟକ୍ଷମତାର ଏକ ଉତ୍କୃଷ୍ଟ ଉଦାହରଣ ଦେଇଥିଲେ । ସମସ୍ତ ପୁରୁଣା ହିନ୍ଦୁସ୍ଥାନୀ ଅଧିକାରୀ, ଚାକର-ବାକର ଏବଂ ସୈନିକଙ୍କୁ ପୁନରାୟ କାର୍ଯ୍ୟରେ ନିଯୁକ୍ତ କଲେ । ପୁରୁଣା କର୍ତ୍ତବ୍ୟଦକ୍ଷ ଅଧିକାରୀମାନଙ୍କର ଏକ ଉପଦେଷ୍ଟା-ମଣ୍ଡଳୀ ଗଠନ କରାଗଲା । ହିଜରୀ ଶକାବ୍ଦ ପୁନଶ୍ଚ ଆରମ୍ଭ କରାଗଲା । ଇଂରେଜମାନଙ୍କ ପୂର୍ବରୁ ଲାଗୁ ହୋଇଥିବା କାଇଦା-କାନୁନ୍‌କୁ ପୁଣି କାର୍ଯ୍ୟକ୍ଷମ କରାଗଲା ଏବଂ ଲୁଟେରା/ଡାକୁମାନଙ୍କ ଉପରେ କଠୋର କାର୍ଯ୍ୟପନ୍ଥା ଗ୍ରହଣ କରାଯାଇ ସେମାନଙ୍କ ଉପରେ ନିୟନ୍ତ୍ରଣ ରଖିବା ଆରମ୍ଭ ହେଲା । ନାନାସାହେବ ପେଶବାଙ୍କ ସହିତ ସେ ଘନିଷ୍ଠ ସମ୍ବନ୍ଧ ସ୍ଥାପନ କଲେ ଏବଂ ମୋଗଲ ବାଦଶାହଙ୍କର ସ୍ୱାମିତ୍ୱ ସ୍ୱୀକାର କରିବା ସହିତ ସେ ଇଂରେଜମାନଙ୍କ ପରି ମିତବ୍ୟୟିତା ଏବଂ ଅଧିକରୁ ଅଧିକ କର ଆଦାୟ କରିବା ଉପରେ ଗୁରୁତ୍ୱ ଦେଲେ । ଏପରି ସବୁ କରିବା ସତ୍ତ୍ୱେ ବାନ୍ଦାର ନବାବ ଶେଷପର୍ଯ୍ୟନ୍ତ ଯୁଦ୍ଧର ଚକ୍ରରେ ଆବଦ୍ଧ ଇଂରେଜ ଅଧିକାରୀମାନଙ୍କର ସୁରକ୍ଷା ପାଇଁ ଯତ୍ନଶୀଳ ଥିଲେ । ସେମାନଙ୍କୁ ସାହାଯ୍ୟ କରୁଥିଲେ । ଅନ୍ୟ ପକ୍ଷରେ ବାଣପୁର ମହାରାଜା ଆଖପାଖରେ ଛୋଟ ରାଜା ମହାରାଜା, ସୁବେଦାର, ଜମିଦାର୍, ଠାକୁର ଏବଂ ଇଂରେଜ ସେନାବାହିନୀରେ କାର୍ଯ୍ୟରତ ହିନ୍ଦୁସ୍ଥାନୀ ସିପାହି, ସମସ୍ତଙ୍କୁ ନିଜ ପକ୍ଷରେ ସାମିଲ୍ କରାଇବାର ପ୍ରଯତ୍ନ କରୁଥିଲେ । ତାଙ୍କୁ ଅଲ୍ଲୀ ବାହାଦୁର ସମ୍ପୂର୍ଣ୍ଣ ସମର୍ଥନ କରୁଥିଲେ । ବିହାରର ଜଗଦୀଶପୁରର ୭୫ ବର୍ଷୀୟ ପରାକ୍ରମୀ ସୁବେଦାର ସରଦାର କୁଅଁର ସିଂହ ଇଂରେଜ ଫଉଜଙ୍କ ସହିତ ଖୁବ୍ ହିମ୍ମତ୍ ଏବଂ ବାହାଦୁରି ଦେଖାଇ ଲଢୁଥିଲେ । ଜଗଦୀଶପୁରରେ ଇଂରେଜଙ୍କୁ ହରାଇବା ପରେ ସରଦାର ନିଜର ସୈନ୍ୟବଳ ନେଇ, ନାନାସାହେବ ପେଶବାଙ୍କ ତରଫରୁ ଇଂରେଜଙ୍କ ବିରୋଧରେ ଲଢ଼ିବା ପାଇଁ ବାନ୍ଦାରେ ପହଞ୍ଚିଗଲେ ।

ଝାନ୍‌ସୀ, ଜାଲୌନ, ବାନ୍ଦା ପରି ଯେଉଁସବୁ ଜନଶକ୍ତି ଇଂରେଜମାନଙ୍କଠାରୁ ନିଜର ସତ୍ତା, ସ୍ୱତନ୍ତ୍ରତା ଓ ସ୍ୱାୟତ୍ତତା ହାସଲ କରି ତୁରନ୍ତ ରାଜ୍ୟ ପ୍ରଶାସନକୁ ନିଜ ହାତକୁ ନେଲେ, ସେମାନେ ସ୍ୱୟଂଚାଳିତ ସ୍ୱତନ୍ତ୍ର ଶାସନ ପ୍ରଣାଳୀକୁ ଏକ ନୂଆ ଦିଗ ଦେଲେ । କିନ୍ତୁ ଦତିଆ, ଚରଖାରୀ, ପନ୍ନା, ରାମଥର ପରି ସ୍ଥାନରେ ବିଦ୍ରୋହ ହେଲା ନାହିଁ । ଏହାର ବିପରୀତରେ ଏଠାର ଲୋକମାନେ ଇଂରେଜ ସରକାରଙ୍କୁ ସାହାଯ୍ୟ ହିଁ କରିଥିଲେ ।

ଗୋଆଲିଅରରେ ବିଦ୍ରୋହ ନିଶ୍ଚୟ ହୋଇଥିଲା । କିନ୍ତୁ ସିନ୍ଧିଆ ସରକାର ଇଂରେଜମାନଙ୍କୁ ଦୃଢ଼ ସମର୍ଥନ ଯୋଗାଇ ଦେଇଥିଲେ । ଏହିସବୁର ପରିଣାମ ଏପରି ହେଲା ଯେ ବିଦ୍ରୋହର ସ୍ଫୁଲିଙ୍ଗ ବ୍ୟାପକ ଭାବରେ ପ୍ରସାରିତ ହେଲା ନାହିଁ । ଏହି ସିପାହିମାନେ ତାନ୍ତିଆ ଟୋପେଙ୍କ ପାଖକୁ ଚାଲିଗଲେ ।

ଚରଖାରୀ ରାଜାଙ୍କର ଇଚ୍ଛା ଥିଲା ଯେ ଇଂରେଜ ଶାସନ ସମାପ୍ତ ହେଲା ପରେ ତଥା ବୁନ୍ଦେଲଖଣ୍ଡରେ ମରହଟ୍ଟାମାନଙ୍କର ଶାସନ ପ୍ରତିଷ୍ଠା ହେବା ପୂର୍ବରୁ ତାଙ୍କର-ପୂର୍ବପୁରୁଷଙ୍କର ଅଧିକାରରେ ଥିବା ଅଞ୍ଚଳ ଚରଖାରୀବାସୀଙ୍କୁ ପୁନଶ୍ଚ ଫେରାଇ ଦିଆଯାଉ । କିଛି ରାଜା-ମହାରାଜା ଦିଲ୍ଲୀ ରାଜାଙ୍କର ଶାସନକୁ ସ୍ୱୀକାର କରିନେଲେ ତ କିଛି ଲୋକ ନାନାସାହେବ ପେଶବାଙ୍କର ଆଧିପତ୍ୟକୁ ଗ୍ରହଣ କରିନେଲେ । ଅନେକ ସ୍ଥାନରେ ସିପାହିମାନେ ହିଁ ଇଂରେଜଙ୍କ ବିରୋଧରେ ଯୁଦ୍ଧ ଆରମ୍ଭ କରିଥିଲେ । ପରେ ରାଜାମାନେ ସେଥିରେ ଅଂଶଗ୍ରହଣ କରିଥିଲେ । କିନ୍ତୁ ସମସ୍ତଙ୍କର ଉଦ୍ଦେଶ୍ୟ ସେଇ ଗୋଟିଏ ଥିଲା, ଇଂରେଜ ଶାସନ ଦରକାର ନାହିଁ । ଇଂରେଜ ଶାସନକୁ ପରିବର୍ତ୍ତନ କରି ସେମାନେ ନିଜର ରାଜସତ୍ତା ଓ ସ୍ୱତନ୍ତ୍ରତାକୁ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ ।

## ପତ୍ରାବଳୀର ଅମୂଲ୍ୟ ଗନ୍ତାଘର

ବୁନ୍ଦେଲଖଣ୍ଡ ପରିସରରୁ ଯେଉଁ ପତ୍ର ପ୍ରାପ୍ତ ହୋଇଥିଲା, ସେସବୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । କାଳର ପ୍ରବାହରେ ସେ ସବୁ ପତ୍ର କେଉଁଠାରେ ନିଖୋଜ ହୋଇଯାଇଥିଲା । ସେହି ଅଜ୍ଞାତ ପତ୍ରସବୁକୁ କିପରିଭାବେ ଆଲୋକକୁ ଅଣାଗଲା, ତା'ର ଏକ ଖୁବ୍ ରୋମାଞ୍ଚକାରୀ ବାସ୍ତବତା ରହିଛି । ଏ ସଂପର୍କରେ କୁହାଯାଏ ଯେ ବୁନ୍ଦେଲଖଣ୍ଡର ଯୁଦ୍ଧ ଯେତେବେଳେ ତା'ର ଚରମ ସୀମାରେ ପହଞ୍ଚିଥିଲା ସେତେବେଳେ ଦିନେ ଝାନ୍ସୀ ନିକଟସ୍ଥ ଓରଛା ରାଜ୍ୟର ଆଷ୍ଟୋନ୍ ଗ୍ରାମରେ ତାନ୍ତିଆ ଟୋପେ ଏବଂ ଇଂରେଜଙ୍କ ମଧ୍ୟରେ ପ୍ରାଣମୂର୍ଚ୍ଛା ଲଢ଼ାଇ ଚାଲିଥିଲା । ଇଂରେଜଙ୍କ ଆକ୍ରମଣ ଆଗରେ ତାନ୍ତିଆ ଟୋପେ ଦୁର୍ବଳ ପଡ଼ି ଆସୁଥିଲେ । ଏହା ଦେଖି ନିଜ ପାଖରେ ଥିବା ସମସ୍ତ ଦ୍ରବ୍ୟ ସେଇଠି ଛାଡ଼ିଛୁଡ଼ି ତାନ୍ତିଆ ଟୋପେଙ୍କୁ ସେଠାରୁ ବାଧ ହୋଇ ପଳାୟନ କରିବାକୁ ହେଲା ।

ସେତେବେଳେ ଓରଛାର ଦେଓ୍ୱାନ ନଥେଖାନ୍ ଆଷ୍ଟୋନରେ ହିଁ ଥିଲେ । ତାନ୍ତିଆ ଟୋପେ ଛାଡ଼ିଯାଇଥିବା ଜିନିଷପତ୍ର ଭିତରୁ ଗୋଟିଏ ଗଣ୍ଠିଲି ନଥେଖାନ୍ଙ୍କ ସୈନିକଙ୍କୁ ମିଳିଥିଲା । ସେ ତାକୁ ଆଣି ନଥେଖାନ୍ଙ୍କୁ ଅର୍ପଣ କରିଥିଲେ । ସେହି ଗଣ୍ଠିଲିରେ ଗୋଟିଏ କାଠର ସିନ୍ଦୁକ ମଧ୍ୟ ଥିଲା । ସେଥିରେ କିଛି କାଗଜପତ୍ର ଥିଲା, ଗୋଟିଏ ତରବାରି ଥିଲା ଏବଂ ଗୋଟିଏ ବହୁମୂଲ୍ୟ ଗୁପ୍ତି ମଧ୍ୟ ଥିଲା । ଚତୁର୍ଦ୍ଦିଗରେ ଯୁଦ୍ଧର ଘନଘଟା ଛାଇ ଯାଇଥିଲା । ସେଥିଯୋଗୁଁ ନଥେଖାନ୍ ସେହି ସିନ୍ଦୁକକୁ ଗୋଟିଏ କଣକୁ ରଖିଦେଲେ । ତାଙ୍କର ମୃତ୍ୟୁ ପରେ ତାଙ୍କର ପୂରା ରାଜ୍ୟ ତାଙ୍କ ଜ୍ୱାଇଁଙ୍କୁ ମିଳିଥିଲା । ନଥେଖାନ୍ ଏବଂ ତାଙ୍କ ଜ୍ୱାଇଁଙ୍କର ଯେହେତୁ କୌଣସି ସନ୍ତାନ ନ ଥିଲେ ତେଣୁ ପରେ ଉତ୍ତରାଧିକାର ସୂତ୍ରରେ ତାଙ୍କର

ସମସ୍ତ ସଂପତ୍ତି ଓ ଜିନିଷପତ୍ର ଖାଇଁଙ୍କର ଖାଇଁ ଅବଦୁଲ ମଜୀଦ୍‌ଙ୍କୁ ମିଳିଲା । ଅବଦୁଲ ମଜୀଦ୍ ଟିକମଗଡ଼ର ଅଧିବାସୀ ଥିଲେ ଏବଂ ସେଇଠି ସେ ଫୌଜଦାର ଥିଲେ ।

ଭାରତ ସ୍ୱାଧୀନ ହେବା ପରେ ୧୯୬୬ରେ ଟୀକମଗଢ଼ର ମହାରାଜା, ରାଜା ନରେନ୍ଦ୍ରସିଂହ ଜୁଦେବଙ୍କୁ ଅବଦୁଲ ମଜୀଦ୍‌ଙ୍କ ପାଖରେ ଥିବା ସିନ୍ଦୁକର ସୂଚନା ମିଳିଲା । ସେତେବେଳେ ନରେନ୍ଦ୍ରସିଂହ ଜୁଦେବ ମଧ୍ୟପ୍ରଦେଶ ସରକାରରେ ଜଣେ ମନ୍ତ୍ରୀ ଥିଲେ । ସେ ସେହି ସିନ୍ଦୁକରେ ଥିବା କାଗଜପତ୍ରର ଐତିହାସିକ ମହତ୍ତ୍ୱକୁ ବୁଝିପାରିଥିଲେ । ସେ ଅବଦୁଲ ମଜୀଦ୍‌ଙ୍କ ପାଖରୁ ସେହି ସିନ୍ଦୁକକୁ ମାଗିନେଲେ ଏବଂ ଏହା ପରେ ଉକ୍ତ ସିନ୍ଦୁକକୁ ନରେନ୍ଦ୍ରସିଂହ ଜୁଦେବଙ୍କ ପାଖରେ ପହଞ୍ଚାଇ ଦିଆଗଲା । ସେହି ସିନ୍ଦୁକକୁ ମଧ୍ୟପ୍ରଦେଶର ପୁରାତତ୍ତ୍ୱ ବିଭାଗକୁ ସମର୍ପି ଦିଆଗଲା । ସିନ୍ଦୁକରେ ଥିବା କାଗଜପତ୍ରର ପ୍ରାମାଣିକତାକୁ ପରୀକ୍ଷା କରିବା ନିମନ୍ତେ ପୁନେର ଇତିହାସ ବିଶେଷଜ୍ଞ ଦତ୍ତୋ ବାମନ ପୋତଦାରଙ୍କୁ ବିଶେଷ ଭାବରେ ଡକାଇ ପଠାଗଲା । ସେ ସମସ୍ତ କାଗଜପତ୍ର ଓ ଦସ୍ତାବିଜକୁ ପରୀକ୍ଷା ନିରୀକ୍ଷା କରି ନିର୍ଣ୍ଣୟ ଦେଲେ ଯେ ଏହିସବୁ କାଗଜପତ୍ର ଅସଲି ଅଟେ ଏବଂ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଦସ୍ତାବିଜ ଅଟେ । ସେହି ସିନ୍ଦୁକରେ ରଖା ହୋଇଥିବା ତରବାରି ଓ ଗୁପ୍ତିର କାରିଗରୀ ଅତି ସୁନ୍ଦର ଥିଲା ଓ ଏହା ଅତି ମୂଲ୍ୟବାନ୍ ହୀରା, ମୋତି, ରତ୍ନରେ ଜଡ଼ିତ ହୋଇଥିଲା । ତରବାରିର କୋଷ ଉପରେ ସୁବର୍ଣ୍ଣର ଲତାପତ୍ର ଖୋଦେଇ ହୋଇଥିଲା । ଗୁପ୍ତିର ମୁଠା ସୁନାର ଥିଲା ଏବଂ ସେଥିରେ ଅତର ରଖିବା ପାଇଁ ଗୋଟିଏ ଅତି କ୍ଷୁଦ୍ର ଫରୁଆ ତିଆରି କରା ହୋଇଥିଲା । ଏତେ ମୂଲ୍ୟବାନ୍ ଏବଂ ସୁନ୍ଦର ବସ୍ତୁ ତାନ୍ତିଆ ଟୋପେଙ୍କ ବ୍ୟତୀତ ଅନ୍ୟ କାହାର ହୋଇ ନ ପାରେ । ଦତ୍ତୋବାମନ ପୋତଦାର ନିଜ ରିପୋର୍ଟରେ ଏହି କଥା ବିଶେଷ ଭାବରେ ଉଲ୍ଲେଖ କରିଥିଲେ । ସେହି ସିନ୍ଦୁକରୁ ସବୁ ମିଶି ୨୫୫ ଖଣ୍ଡ ପତ୍ର ମିଳିଥିଲା । ସେଥିରୁ ୧୨୫ ଖଣ୍ଡ ଦେବନାଗରୀ ଲିପିରେ ଲେଖା ହୋଇଥିଲା । ତା'ର ଭାଷା ବୁନ୍ଦେଲ ଥିଲା । ୧୩୦ ଖଣ୍ଡ ପତ୍ର ଉର୍ଦ୍ଦୁ ଭାଷାରେ ଲେଖା ହୋଇଥିଲା । ସେହିସବୁ ଚିଠି ଭିତରେ ରାଣୀ ଲକ୍ଷ୍ମୀବାଈ, ଦତିଆର ରାଣୀ ଲଡ଼ଈ ଦୁଲେୟା, ଚରଖାରୀର ରାଜା ବଖ୍‌ତଅଲ୍ଲୀ, ବାଣପୁରର ରାଜା ମର୍ଦ୍ଦାନସିଂହଙ୍କ ବ୍ୟତୀତ ରାଜା ରତନସିଂହ, ଅନ୍ୟ ଥାନେଦାର, କନିଷ୍ଠ ସରଦାର, ସୁବେଦାର, ତହସିଲଦାର ଇତ୍ୟାଦି ଲୋକମାନଙ୍କର ତାନ୍ତିଆ ଟୋପେଙ୍କୁ ଲେଖିଥିବା ଚିଠି ଥିଲା । କେତେକ ଚିଠି ତ ସର୍ବସାଧାରଣ ଲୋକେ, ଚାଷୀମାନେ, ସାଧାରଣ ସିପାହିମାନେ ଲେଖିଥିଲେ । ଏହିସବୁ ଚିଠିରେ ଇଂରେଜ ସୈନିକମାନଙ୍କର ଗତିବିଧି, ନିଜ ପକ୍ଷର ସୈନିକମାନଙ୍କର ଗତିବିଧି, ଇଂରେଜ ଫଉଜଙ୍କର ଶକ୍ତି, ନିଜ ଫଉଜର ଶକ୍ତି, ସେମାନଙ୍କର ଯୋଜନା, ନିଜର ଯୋଜନା, ଟଙ୍କାପଇସା, ଅସ୍ତ୍ରଶସ୍ତ୍ରର ଆଦାନ–ପ୍ରଦାନର ବିବରଣୀ ମଧ୍ୟ ଦିଆଯାଇଥିଲା । କେତେକ ପତ୍ର ଏପରି ଅଛି ଯେଉଁଥିରେ ଆଶ୍ୱାସନା ଦିଆଯାଇଛି, ବିଚାର–ପରାମର୍ଶ ଦିଆଯାଇଛି, ସାହାଯ୍ୟ ମଗାଯାଇଛି । କେତେକ ପତ୍ରରେ ଅନୁନୟ ବିନୟ ମଧ୍ୟ କରାଯାଇଛି । ଏଥିମଧ୍ୟରୁ ଅଧିକାଂଶ ପତ୍ର ତାନ୍ତିଆ ଟୋପେଙ୍କ

ପାଖକୁ ପଠାଯାଇଛି । ରାଣୀ ଲକ୍ଷ୍ମୀବାଈ, ଓରଛାର ରାଣୀ ଲଡ଼ଈ ଦୁଲେୟାଙ୍କୁ ଲେଖିଥିବା ଚିଠିରେ ଲେଖିଛନ୍ତି "ଆମ ଦୁହିଁଙ୍କ ରାଜ୍ୟ ଭିତରେ ପୂର୍ବ ପରମ୍ପରାଗତ ମୈତ୍ରୀପୂର୍ଣ୍ଣ ସୁସଂପର୍କର ପରମ୍ପରା ରହିଆସିଅଛି । ସେଥିପାଇଁ ଆମେ ପରସ୍ପର ଉପରେ ଆକ୍ରମଣ ନ କରିବାକୁ ଧ୍ୟାନ ରଖି ନିଜର ପାରସ୍ପରିକ ବନ୍ଧୁତ୍ୱ ବଜାୟ ରଖିବା" । ବାଣପୁରର ରାଜା ମର୍ଦାନସିଂହ ତାନ୍ତିଆ ଟୋପେଙ୍କୁ ସୂଚନା ଦେଇଛନ୍ତି ଯେ– "ଇଂରେଜ ଫଉଜ ବାଣପୁର ଶାହଗଡ଼, ଝାନ୍‌ସୀ ଉପରେ ଆକ୍ରମଣ କରିବାର ଅଛି । ତେଣୁ ଆପଣ ସୈନ୍ୟବଳ ସହିତ ତୁରନ୍ତ ସାହାଯ୍ୟ କରିବାକୁ ଆସିଯାନ୍ତୁ ।" ଆଶ୍ଚର୍ଯ୍ୟ କଥା ଏହା ଯେ ୭ ଜୁନ୍ ୧୮୫୭ରେ ଯେତେବେଳେ ରାଣୀ ଲକ୍ଷ୍ମୀବାଈ ପୁନରାୟ କିଲ୍ଲାର ରାଜମହଲରେ ରହିବାକୁ ଆସିଲାବେଳେ ଯେଉଁ ନଥେଖାନ୍ ନିଜର ସୈନ୍ୟମାନଙ୍କ ସହିତ ଜୋର୍‌ଦାର ଆକ୍ରମଣ କରିଥିଲେ, ସେହି ନଥେଖାନ୍ ପୁଣି ରାଣୀଙ୍କୁ ପତ୍ର ଲେଖି ଇଂରେଜ ସୈନ୍ୟଙ୍କର ଆସିବାର ସୂଚନା ଦେବା ସହିତ ସୈନ୍ୟସଜ୍ଜା କରି ଯୁଦ୍ଧର ପ୍ରସ୍ତୁତି ନିମନ୍ତେ ପରାମର୍ଶ ମଧ୍ୟ ଦେଇଥିଲେ । ଏପରି କରିବାର ଗୋଟିଏ କାରଣ ହୋଇପାରେ ଯେ ରାଣୀଙ୍କ ଉପରେ କରିଥିବା ଆକ୍ରମଣକୁ ନେଇ ନଥେଖାନ୍ ଅନୁତାପ କରୁଥିଲେ କିମ୍ବା ରାଣୀଙ୍କୁ ସାବଧାନ କରିଦେବା ପାଇଁ ନଥେଖାନ୍ ଏହି ସୂଚନା ଦେଇଥିଲେ କିମ୍ବା ଏ ସଂଭାବନା ବି ହୋଇପାରେ ଯେ ଯେଉଁ ଲକ୍ଷ୍ମୀବାଈଙ୍କ ହାତରେ ତାଙ୍କୁ କରୁଣ ପରାଜୟ ବରଣ କରିବାକୁ ପଡ଼ିଥିଲା, ସେହି ଲକ୍ଷ୍ମୀବାଈଙ୍କ ଉପରେ ଆକ୍ରମଣ କରିବାପାଇଁ ବର୍ତ୍ତମାନ ସଂଗଠିତ ଏବଂ ଶକ୍ତିଶାଳୀ ଇଂରେଜ ସୈନ୍ୟ ଆସୁଛନ୍ତି । ଏଥର ଲକ୍ଷ୍ମୀବାଈଙ୍କ ପରାଜୟ ଅଟଳ ଅଟେ– ଏ କଥା ଜାଣିବା ପରେ ସେ ହୁଏତ ନିଜର ଖୁସିକୁ ପରିପ୍ରକାଶ କରୁଥିଲେ । ଏହି ଦୁଇ ଉଦ୍ଦେଶ୍ୟ ଭିତରୁ ଯେକୌଣସି ଗୋଟିକର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । କୌଣସି ଏକ ପଣ୍ଡିତ ମୋହନଲାଲ ଜ୍ୟୋତିଷୀ–ଇଂରେଜଙ୍କ ବିରୋଧରେ ବିଜୟପ୍ରାପ୍ତି ନିମନ୍ତେ ନିଜ ମନ୍ତ୍ରବଳରେ ଏକ ତାବିଜ ମନ୍ତୁରେଇ ରାଣୀଙ୍କ ପାଖକୁ ପଠାଇଥିଲେ ଏବଂ କହିଥିଲେ ଯେ ସେହି ତାବିଜକୁ ବାହୁରେ ବାନ୍ଧିଲେ ତାଙ୍କର କୌଣସି ପ୍ରକାର କ୍ଷତି ହେବ ନାହିଁ ଏବଂ ଯୁଦ୍ଧରେ ନିଶ୍ଚୟ ଜୟଲାଭ କରିବେ– ଏହିପରି ସୂଚନା ଦେଇଥିଲେ । ଏପରି କେତେକ ପତ୍ର ମଧ୍ୟ ଥିଲା ଯେଉଁଥିରେ ବିଦ୍ରୋହୀ ସୈନ୍ୟମାନଙ୍କ ଯିବାଆସିବା ମାର୍ଗରେ ରହୁଥିବା ଲୋକମାନେ ନିଜ ନିଜର ସାମର୍ଥ୍ୟ ଅନୁଯାୟୀ ନିଜ ସୈନ୍ୟମାନଙ୍କୁ ସାହାଯ୍ୟ କରିବା ଓ ପ୍ରତିଶ୍ରୁତି ଦେବାର କଥା କୁହାଯାଇଥିଲା । (ସ୍ୱଦେଶ, ୧୫ ଅଗଷ୍ଟ ୧୯୯୯ରେ ପ୍ରକାଶିତ ପ୍ରମୋଦ ଭାର୍ଗବଙ୍କ ପ୍ରବନ୍ଧ ଉପରେ ଆଧାରିତ ।)

ଏହି ପତ୍ରମାନଙ୍କରୁ ଏକ ମଜାଦାର କଥା ଆଗକୁ ଆସେ ଯେ ସେ ସମୟରେ କେବଳ ରାଜା–ମହାରାଜା, ସୁବେଦାର, ସରଦାର ଏବଂ ଛୋଟବଡ଼ ଅଧିକାରୀ ନୁହନ୍ତି, ବରଂ ସାଧାରଣ ଜନତା ମଧ୍ୟ ପରସ୍ପର ସହିତ ସଂପର୍କ ରଖୁଥିଲେ । ବିଚାର ବିନିମୟ କରୁଥିଲେ, ଉପଦେଶ–ପରାମର୍ଶ ନେଉଥିଲେ । ବିଚାରର ଆଦାନ–ପ୍ରଦାନ କରୁଥିଲେ ।

ଜଣେ ଆଉ ଜଣଙ୍କୁ ସାହାଯ୍ୟ କରିବାପାଇଁ ତତ୍ପର ରହୁଥିଲେ ଏବଂ ତାନ୍ତିଆ ଟୋପେ ଏ ସବୁର କେନ୍ଦ୍ରବିନ୍ଦୁ ଥିଲେ । ଏହି ସଂପର୍କ କେବଳ ପତ୍ର ମାଧ୍ୟମରେ ହିଁ ହେଉଥିଲା । ଏହା ସତ୍ୟ ହେଲେ ହେଁ ଗୁପ୍ତଚରମାନଙ୍କ ଜରିଆରେ ମଧ୍ୟ ସେ ଦିନମାନଙ୍କରେ ବାର୍ତ୍ତା ବିନିମୟର ମାର୍ଗକୁ ଆପଣେଇ ନିଆଯାଇଥିଲା । ଏହିସବୁ ପୃଷ୍ଠଭୂମିର ଏକମାତ୍ର ଉଦ୍ଦେଶ୍ୟ ଥିଲା ବିଧର୍ମୀ ଫିରିଙ୍ଗିମାନଙ୍କର ଶାସନକୁ ପରିବର୍ତ୍ତନ କରି ନିଜର ସ୍ୱତନ୍ତ୍ର ସତ୍ତା ଏବଂ ହରାଇଥିବା ରାଜ୍ୟକୁ ପୁନଶ୍ଚ ହସ୍ତଗତ କରିବା । ସେଥିପାଇଁ ସମସ୍ତେ ନିଜ ନିଜର ଶକ୍ତିମତେ ସେମାନଙ୍କର ସାମ୍ନା କରିଥିଲେ । ରାଣୀ ଲକ୍ଷ୍ମୀବାଈଙ୍କ ଉପରେ ବୁନ୍ଦେଲଖଣ୍ଡୀ ଭାଷାରେ ଦୁଇଟି ଦୀର୍ଘ ବୀରଗାଥା ରଚନା କରାଯାଇଥିଲା । ସେଥିମଧ୍ୟରୁ 'ଲକ୍ଷ୍ମୀବାଈ ରାସୋ' ନାମକ ଗୋଟିଏ ଗୀତ ଆଜି ମଧ୍ୟ ଶୁଣିବାକୁ ମିଳେ । ଏହା ବ୍ୟତୀତ ବୁନ୍ଦେଲଖଣ୍ଡୀ ଭାଷାରେ ଲେଖା ହୋଇଥିବା କବିତାମାନଙ୍କରେ ଅନେକ ଛୋଟ-ବଡ଼ ରାଜା, ମହାରାଜା, ସୁବେଦାର ଏବଂ ସରଦାରମାନଙ୍କର ବୀରଗାଥାର ବର୍ଣ୍ଣନା ମିଳିଥାଏ । ଏ ସବୁ ପାଠକଲେ ଲୋକଙ୍କ ମନରେ ଇଂରେଜଙ୍କ ପ୍ରତି ତିରସ୍କାର ଓ ବିଦ୍ୱେଷର ଭାବନା କେତେ ତୀବ୍ର ଥିଲା ତାହା ଅନୁଭବ କରିହୁଏ । ଲୋକଙ୍କ ଭିତରେ ସ୍ୱତନ୍ତ୍ରତାର ଆଶା କେତେ ଜୋର୍‌ରେ ପ୍ରଜ୍ୱଳିତ ହେଉଥିଲା, ଲୋକଙ୍କ ଭିତରେ ଇଂରେଜଙ୍କୁ ତଡ଼ିଦେବା ଏବଂ ସ୍ୱତନ୍ତ୍ର ବାତାବରଣ ଭିତରେ ରହିବାର ଭାବନା କିପରି ସେମାନଙ୍କ ହୃଦୟରେ ବସା ବାନ୍ଧିଥିଲା, ତାହା ଅନୁମାନ କରିହୁଏ । ଏହି ଭାବନା ସମାଜରେ ମଧ୍ୟ ସର୍ବତ୍ର ବ୍ୟାପକ ଭାବରେ ପ୍ରସାର ଲାଭ କରିଥିଲା ।

# ଅଧ୍ୟାୟ–୪

# ସ୍ୱତନ୍ତ୍ରତା ପାଇଁ ପ୍ରତିବଦ୍ଧତା

ଗଙ୍ଗାଧର ରାଓ ବଞ୍ଚିଥିବାବେଳେ ରାଣୀ ଲକ୍ଷ୍ମୀବାଈଙ୍କର ରାଜ୍ୟ ଶାସନ ବିଷୟରେ କୌଣସି ଅଭିଜ୍ଞତା ନ ଥିଲା । ଅଚାନକ ଶାସନଭାର ମିଳିଯିବା କାରଣରୁ ତାଙ୍କୁ ଅନେକ ସମସ୍ୟା ସାମ୍ନା କରିବାକୁ ପଡ଼ିଲା । ସିପାହିମାନଙ୍କ ବିଦ୍ରୋହ କାରଣରୁ ସବୁ ଇଂରେଜ ଅଧିକାରୀ, ମୁନ୍‌ସୀ ଓ ଅନ୍ୟ ଲୋକମାନଙ୍କୁ ମାରି ଦିଆଯାଇଥିଲା । ତାଙ୍କ ସ୍ଥାନରେ ନୂଆ ନିଯୁକ୍ତି କରିବା ଅତି ଆବଶ୍ୟକ ଥିଲା । ଝାନ୍‌ସୀର ରାଜ୍ୟ ଖାଲି ହୋଇଯାଇଥିଲା । ସେହି କାରଣରୁ ଅସୁରକ୍ଷା, ଅନିଶ୍ଚିତ ଭବିଷ୍ୟତ୍‌ର ଭୟ, ବିପର୍ଯ୍ୟସ୍ତ ଦୈନନ୍ଦିନ ଜୀବନ ଓ ପ୍ରଶାସନିକ ଅଧିକାରୀଙ୍କ ଅଭାବରେ ବିଶୃଙ୍ଖଳା ଆଦିର ସମ୍ଭାବନା ଥିଲା । ଯେତେବେଳେ ଇଂରେଜ ରାଜ୍ୟ ଅଧିକାର କରିଥିଲେ ସେତେବେଳେ ରାଜ୍ୟର ସବୁ ଅଧିକାରୀ, କର୍ମଚାରୀମାନଙ୍କୁ କମ୍ପାନୀ–ସରକାର ଛୁଟି ଦେଇ ଦେଇଥିଲା, ସେହି କାରଣରୁ ରାଜାଙ୍କ ପାଖରେ ଶାସନ ବ୍ୟବସ୍ଥା କରିବାପାଇଁ ଜନଶକ୍ତିର ଅଭାବ ଥିଲା । ରାଜ୍ୟର ଭଣ୍ଡାର ପୂରାପୂରି ଖାଲି ହୋଇ ଯାଇଥିଲା । ରାଜ୍ୟର ଏଭଳି ବିଶୃଙ୍ଖଳାରୁ ସୁବିଧା ଉଠାଇବାକୁ, ରାଜ୍ୟକୁ ଟିକିଟିକି କରି ଖାଇବାକୁ ଆଖପାଖର ଠାକୁର ଛୋଟ ଛୋଟ ରାଜ୍ୟର ଶାସକ, ସୁବେଦାର ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଥିଲେ । ରାଣୀଙ୍କ ଆଖପାଖରେ ଘେରି ରହିଥିବା ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ନିଜ ସ୍ୱାର୍ଥ ହାସଲ କରିବା ପ୍ରଚେଷ୍ଟାରେ ଥିଲେ । ଏମିତି ଏକ ପରିସ୍ଥିତିରେ କାହାକୁ ବିଶ୍ୱାସ କରିବା ଉଚିତ, କିଏ ଦଗାବାଜୀ କରିପାରେ ଏକଥା କହିବା ଅତ୍ୟନ୍ତ ଦୁଷ୍କର କାର୍ଯ୍ୟ ଥିଲା ।

ଏହି ପରିସ୍ଥିତିରେ ରାଣୀ ପୂରା ଦୃଢ଼ ନିଶ୍ଚୟ ସହ, ଅତ୍ୟନ୍ତ ସାବଧାନତା ସହ ଗଣି ଗଣି ପାଦ ପକାଉଥିଲେ । ସେ ସର୍ବପ୍ରଥମେ ଯେଉଁ କାମ କଲେ ତାହା ହେଲା ନିଜର ପୁରୁଣା ଅନୁଭବୀ କର୍ମଚାରୀମାନଙ୍କୁ, ଅଧିକାରୀମାନଙ୍କୁ ପୁଣିଥରେ ଡକେଇ ନେଲେ । ପୁରୁଣା ପ୍ରଧାନମନ୍ତ୍ରୀ ଦିଓ୍ୱାନ ଲକ୍ଷ୍ମଣ ରାଓ ରାଣୀଙ୍କର ଅତି ବିଶ୍ୱସ୍ତ ଥିଲେ । ନିଜର ପିତା ମୋରୋପନ୍ତ ତାଂବେଙ୍କୁ ରାଣୀ ରାଜ୍ୟର କୋଷାଧ୍ୟକ୍ଷ ଭାବେ ନିଯୁକ୍ତ କଲେ । ଅନୁଭବୀ ପୁରୁଣା ଜଣାଶୁଣା ପ୍ରଧାନ ନ୍ୟାୟାଧୀଶ ପ୍ରତିଷ୍ଠିତ ନାନା ଭୋପଟକରଙ୍କୁ ତାଙ୍କ ପୁରାତନ ପଦବୀରେ ନିଯୁକ୍ତ କରିଦେଲେ ଓ ପ୍ରମୁଖ ସେନାପତି ପଦ ଜବାହର ସିଂହଙ୍କୁ ଦେଲେ ।

ଏହାଛଡ଼ା ଦିୱାନ ଲକ୍ଷ୍ମଣ ରାଓଙ୍କ ସାନଭାଇ ନାନାସାହେବ, ଲକ୍ଷ୍ମଣ ରାଓଙ୍କ ପୁଅ ଗଙ୍ଗାଧର ରାଓ, କାଶୀନାଥ ହର୍ଷେ, ମୁନ୍‌ସଫ୍ ଭୋଲାନାଥ ଓ ପ୍ରସିଦ୍ଧ ତୋପଚାଳକ ଖୁଦାବକ୍ସଙ୍କ ସେନାକୁ ହାତହତିଆର ସଂଗ୍ରହ କରିବାପାଇଁ ନିଯୁକ୍ତ କରାଗଲା । ପ୍ରମୁଖ ଠାକୁରମାନଙ୍କୁ ବୁଝାଇ ତାଙ୍କର ମନ ପରିବର୍ତ୍ତନ କରାଇ ନିଜ ପକ୍ଷରେ ସାମିଲ କରିନେଲେ ଓ ସେମାନଙ୍କୁ ନିଜ ପରାମର୍ଶଦାତା ମଣ୍ଡଳୀରେ ସ୍ଥାନ ଦେଲେ । ଏହି ଠାକୁରମାନେ ଝାନ୍‌ସୀ ବିରୋଧରେ ବାରମ୍ବାର ବିଦ୍ରୋହ କରିଥିଲେ । ରାଣୀ ତାଙ୍କ ସହ ଭଲ ବ୍ୟବହାର କଲେ । 'ପରଧର୍ମୀ, ପରଶତ୍ରୁମାନଙ୍କଠାରୁ ବାସ୍ତବିକ୍ ଡର ଥିବାବେଳେ , ନିଜ ନିଜ ଭିତରେ ଲଢ଼ିବା କ'ଣ ଆମକୁ ଶୋଭା ଦେଉଛି । ଏଥିରେ ଆମର ନିଜର କ୍ଷତି ହେଉ ନାହିଁ କି ? ଏହିଭଳି ତର୍କ ପ୍ରସ୍ତୁତ କରି ସେ ଠାକୁରମାନଙ୍କୁ ନିଜ ପକ୍ଷଭୁକ୍ତ କରିନେଲେ । ଏଥିରୁ ରାଣୀଙ୍କ ଦୂରଦର୍ଶିତା, ନୀତିକୁଶଳତା ଓ ଚତୁରତା ସ୍ପଷ୍ଟ ହୋଇଯାଏ ।

ଅନ୍ୟ ବିଶ୍ୱସ୍ତ ଲୋକମାନଙ୍କୁ ଅଧିକାରୀ ପଦରେ ନିଯୁକ୍ତି ଦିଆଗଲା । ଚାରି–ଆଠ ଦିନ ମନୁଷ୍ୟ ଶୂନ୍ୟ ହେଇ ପଡ଼ିଥିବା ରାଜ୍ୟରେ ବନ୍ଦ ହୋଇଯାଇଥିବା ରାଜକାର୍ଯ୍ୟ ପୁଣିଥରେ ଶୀଘ୍ର ଆରମ୍ଭ କରାଯିବ ଏହାହିଁ ମୁଖ୍ୟ ଉଦ୍ଦେଶ୍ୟ ଥିଲା । କିନ୍ତୁ ନିଯୁକ୍ତି ପାଇଥିବା ଲୋକଙ୍କ ଭିତରେ ରାଜକାର୍ଯ୍ୟରେ ନିପୁଣ, ବୁଦ୍ଧିମାନ୍, ହିମ୍ମତବାଲା ଅନୁଭବୀ କେତେଜଣ ମାତ୍ର ଥିଲେ । ଅନ୍ୟମାନେ ଅଭିଜ୍ଞତାହୀନ, ସବୁବେଳେ ସଂଭ୍ରମ ସହ ରହିବା ଲୋକ ଥିଲେ ।

ଲକ୍ଷ୍ମୀବାଈଙ୍କ ହାତକୁ କ୍ଷମତା ଗଲା କ୍ଷଣି ସର୍ବପ୍ରଥମେ ସେ କିଲ୍ଲାରେ ପହଞ୍ଚି କିଲ୍ଲାରେ ଥିବା ରୁପା ବାସନ ତରଳାଇ ରାଜକୋଷ ପାଇଁ ଟଙ୍କା ପଇସା ବନ୍ଦୋବସ୍ତ କଲେ । ଇଂରେଜମାନେ କିଲ୍ଲାରେ ଥିବା ସବୁ ୨୨ଟିଯାକ ତୋପକୁ ଅକାମୀ କରି ମାଟିରେ ଗାତ ଖୋଳି ପୋତି ଦେଇଥିଲେ । ରାଣୀ ସେହି ତୋପଗୁଡ଼ିକୁ ବାହାରକୁ ବାହାର କରି ତା'ର ମରାମତି କରାଇଲେ । ତୋପଖାନା ଆରମ୍ଭ କରାଇ, ତୋପ–ଗୋଳା ତିଆରି କରାଇବା ଆରମ୍ଭ କଲେ । ସେନାବାହିନୀକୁ ମଜଭୁତ ଓ ସଂଗଠିତ କରିବାପାଇଁ ସେ ପଦାତିକ ଓ ଘୋଡ଼ସବାର ସୈନିକଙ୍କୁ ପୁଣି ଥରେ ଡକାଇଲେ ଓ ତାଙ୍କୁ ନିଯୁକ୍ତି ଦେଲେ; ଯେଉଁମାନଙ୍କୁ ଇଂରେଜମାନେ ଛୁଟି ଦେଇ ଜବରଦସ୍ତି ଘରେ ବସାଇ ଦେଇଥିଲେ । କେବଳ ଏତିକି ନୁହେଁ, ଝାନ୍‌ସୀର ଯେଉଁ ସିପାହିମାନେ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ କରିଥିଲେ ଓ ଦିଲ୍ଲୀ ଫେରି ନ ଯାଇ ଝାନ୍‌ସୀରେ ରହିଯାଇଥିଲେ, ସେମାନେ ଯେତେବେଳେ ରାଣୀଙ୍କ ପାଖକୁ ଆସିଲେ ରାଣୀ ତାଙ୍କୁ ବି ନିଜ ସେନାବାହିନୀରେ ଗ୍ରହଣ କରିନେଲେ । ସେହିପରି ପଡ଼ୋଶୀ ମହୀଦପୁରର ପାଖାପାଖି ଦେଢ଼ଶହ ବିଦ୍ରୋହୀ ସିପାହିଙ୍କୁ ମଧ୍ୟ ନିଜ ସେନାବିଭାଗରେ ନିଯୁକ୍ତି ଦେଇଦେଲେ । ଜୋଖନବାଗରେ ଇଂରେଜଙ୍କ ନରସଂହାର କଲାବାଲାଙ୍କ ସହ ଯାହାର ସଂପର୍କ ଥିଲା ସେଇ ଜେଲ ଦାରୋଗା ବକ୍ସୀଅଲ୍ଲୀକୁ ତା'ର ୫୦ ସୈନିକଙ୍କ ସହ ରାଣୀ ନିଜର ସୁରକ୍ଷାପାଇଁ ନିଜ ଅଙ୍ଗରକ୍ଷୀ ସୈନିକଙ୍କ ସହ ନିଯୁକ୍ତି ଦେଇଦେଲେ ।

ରାଣୀ ପ୍ରାରମ୍ଭରୁ ହିଁ ବିଦ୍ରୋହୀ ସିପାହିମାନଙ୍କ ସହ ସଂପର୍କ ରଖି ଆସୁଥିଲେ । ସେହି କାରଣରୁ କମ୍ପାନୀ ସରକାର ଭାବୁଥିଲା ଜୋଖନବାଗରେ ସଂଘଟିତ ହୋଇଥିବା ସମୂହ ଇଂରେଜ ହତ୍ୟାକାଣ୍ଡରେ ରାଣୀଙ୍କର ହାତ ଥିଲା । କିନ୍ତୁ ରାଣୀଙ୍କର ସିପାହିମାନଙ୍କ ସହ କୌଣସି ସଂପର୍କ ନ ଥିଲା । ଓଲଟା ରାଣୀ ବ୍ରିଟିଶରମାନଙ୍କ ସହ ମିତ୍ରତାପୂର୍ଣ୍ଣ ସଂପର୍କ ରଖିଥିଲେ । ଏହାର ପ୍ରତିଶ୍ରୁତି ପ୍ରଥମରୁ ସେ ବ୍ରିଟିଶ୍ ଅଧିକାରୀମାନଙ୍କୁ ଦେଇଥିଲେ ।

ଏହି ପ୍ରସ୍ତୁତି ଚାଲିଥିଲାବେଳେ ସଦାଶିବ ରାଓ ଚୁପ୍‌ଚାପ୍ ବସି ନ ଥିଲେ । ସେ ନିଜର ଗତିବିଧି ଜାରି ରଖିଲେ । ଗଙ୍ଗାଧର ରାଓଙ୍କ ମୃତ୍ୟୁ ପରେ ସେ ତୁରନ୍ତ ଝାନ୍‌ସୀର ରାଜଗାଦୀ ଉପରେ ନିଜର ଦାବି ସାବ୍ୟସ୍ତ କଲେ । କିନ୍ତୁ ଇଂରେଜମାନେ ତାଙ୍କର ଦାବିକୁ ତୁରନ୍ତ ଅସ୍ୱୀକାର କରି ଦେଇଥିଲେ । ବିଦ୍ରୋହୀମାନେ ଥରେ ରାଣୀଙ୍କୁ ଧମକ ଦେଇ ସଦାଶିବ ରାଓଙ୍କୁ ରାଜଗାଦିରେ ବସାଇବା କଥା କହିଥିଲେ । କିନ୍ତୁ ଲକ୍ଷ୍ମୀବାଈ ସିପାହିମାନଙ୍କର ସବୁ ସର୍ତ୍ତ ମାନିନେଇ ସଦାଶିବ ରାଓ ସଂବଧିତ ଧମକକୁ ନିରସ୍ତ କରି ଦେଇଥିଲେ । କିନ୍ତୁ ରାଣୀର ଅସ୍ତିତ୍ୱ ଦୁର୍ବଳ ହୋଇଯିବା ଦେଖି, ଯେମିତି ସେ କିଲ୍ଲାରେ ରହିବାକୁ ଆସିଲେ, ସଦାଶିବ ରାଓ ଝାନ୍‌ସୀକୁ ପୁଣି ଥରେ କବ୍‌ଜା କରିବାକୁ ଯୋଜନା ବନାଇଲେ । ନିଜ ସହ ଦୁଇଶହ/ତିନିଶହ ସିପାହି ନେଇ ସେ ଝାନ୍‌ସୀଠାରୁ ତିରିଶ କିଲୋମିଟର ଦୂରରେ ଝାନ୍‌ସୀ ରାଜ୍ୟ ସ୍ୱାମିତ୍ୱରେ ଥିବା କରେରା ଦୁର୍ଗ ଉପରେ ଆକ୍ରମଣ କରିଦେଲେ ଓ ସେହି ଦୁର୍ଗକୁ ନିଜ ଅଧୀନକୁ ନେଇଗଲେ । ଝାନ୍‌ସୀ ପ୍ରତି ଶତ୍ରୁତା ଭାବ ରଖିଥିବା ଠାକୁରମାନେ ସଦାଶିବ ରାଓଙ୍କ ସହ ମିଳାମିଶା ବଢ଼ାଇବା ଆରମ୍ଭ କରିଦେଲେ । ସଦାଶିବ ରାଓ ବ୍ରିଟିଶ୍‌ଦ୍ୱାରା ନିଯୁକ୍ତ ହିନ୍ଦୁସ୍ଥାନୀ ଅଧିକାରୀମାନଙ୍କୁ ଚାକିରିରୁ ହଟେଇ ଦେଲେ । ସେମାନଙ୍କ ସ୍ଥାନରେ ନିଜର ବିଶ୍ୱସ୍ତ ଲୋକମାନଙ୍କୁ ନିଯୁକ୍ତ କରିଦେଇ ନିଜକୁ ଝାନ୍‌ସୀର ରାଜା ବୋଲି ଘୋଷଣା କରିଦେଲେ । ସେ ନିଜର ନାମ ଅର୍ଥାତ୍ ସଦାଶିବ ନାରାୟଣଙ୍କ ହସ୍ତାକ୍ଷର ଥାଇ ଓ ମୋହର ଲଗାଇ ଆଦେଶପତ୍ର ଜାରି କରିଦେଲେ । ଅଲଗା-ଅଲଗା ଥାନାଦାରମାନଙ୍କୁ କର ଆଦାୟ କାମରେ ଲଗାଇ ଦେଲେ । ତା'ପରେ ସଙ୍ଗେ ସଙ୍ଗେ ଝାନ୍‌ସୀ ଓ ତା'ର ଆଖପାଖ ଇଲାକାରେ ଜୋରଜବରଦସ୍ତି ରାଜସ୍ୱ ଆଦାୟ କାମ ସେ ଆରମ୍ଭ କରିଦେଲେ ।

ରାଣୀ ଲକ୍ଷ୍ମୀବାଈ ଏଭଳି ସଂକଟ ସମୟରେ ବି ଦୃଢ଼ ରହି ତା'ର ସାମନା କଲେ । ରାଣୀଙ୍କର ଏକହଜାର ସୈନିକ କରେରା ଦୁର୍ଗକୁ ଚାରିପାଖରୁ ଘେରି ନେଲେ ଓ ଅଧିକ ରକ୍ତପାତ ନ କରି ଦୁର୍ଗକୁ ପୁଣି ଥରେ ଅଧିକାର କରି ନେଲେ । ସଦାଶିବ ରାଓ ସିନ୍ଧେର ସୀମା କ୍ଷେତ୍ର ନଗର ଗାଁ ଆଡ଼କୁ ପଳାଇଲେ । ସେଠାରେ ପହଞ୍ଚି ବି ସେ ଚୁପ୍‌ଚାପ୍ ବସିଲେ ନାହିଁ । ନିଜର ଗତିବିଧି ଜାରି ରଖିଲେ । ସେ ପୁଣିଥରେ ସୈନିକ ଏକାଠି କରିବା କାମ ଆରମ୍ଭ କରିଦେଲେ । ଝାନ୍‌ସୀକୁ ପୁଣି ଅଧିକାର କରିବାକୁ ପ୍ରୟାସ ଜାରି ରଖିଲେ । ଏହି ଖବର ମିଳିଲାକ୍ଷଣି ରାଣୀ ପୁଣି ଥରେ ନିଜର ସୈନିକ ପଠାଇଲେ ।

ରାଣୀଙ୍କ ସୈନିକମାନେ ସଦାଶିବ ରାଓଙ୍କୁ ବନ୍ଦୀ କରି ଝାନ୍‌ସୀ ନେଇଆସିଲେ । ବହୁତ ବର୍ଷଯାଏ ସେ ଝାନ୍‌ସୀ ଦୁର୍ଗରେ ନଜରବନ୍ଦୀ ହେଇ ରହିଲେ । ୧୮୬୦ ମସିହାରେ ସରକାର ତାଙ୍କୁ ଆଣ୍ଡାମାନ ପଠାଇ ଦେଲେ । ୧୮୭୭ରେ ତାଙ୍କର ଅପରାଧ କ୍ଷମା କରି ଦିଆଗଲା । ସେ ନିଜର ମୂଳ ଗାଁ ପରୌଳା ଫେରିଆସିଲେ । ୧୮୮୮ରେ ତାଙ୍କର ମୃତ୍ୟୁ ହୋଇଗଲା ।

ଝାନ୍‌ସୀର ସତ୍ତା ଗ୍ରହଣ କଲା ପରେ ତତ୍କାଳ ଉପସ୍ଥିତ ଏହି ସଂକଟକୁ ରାଣୀ ଲକ୍ଷ୍ମୀବାଈ ଅତ୍ୟନ୍ତ କୁଶଳତାର ସହ ସମାଧାନ କରିଥିଲେ । ଏହି କାରଣରୁ ସଦାଶିବ ରାଓଙ୍କୁ ଗୋଟିଏ ଶିକ୍ଷା ମିଳିଲା ଯେ, ଯେଉଁମାନେ ଝାନ୍‌ସୀ ଉପରେ ବକ୍ରଦୃଷ୍ଟି ପକାଇ, ନିଜର ସ୍ୱାର୍ଥସିଦ୍ଧି ପାଇଁ ଆଶା କରି ପ୍ରତୀକ୍ଷା କରୁଥିଲେ ସେହି ବୁନ୍ଦେଲର ଠାକୁରମାନଙ୍କୁ ଏହି ଘଟଣା ଫଳରେ ଏକ ମସ୍ତ ଧକ୍କା ଲାଗିଲା । ପରିଣାମସ୍ୱରୂପ ତାଙ୍କ ଉପଦ୍ରବ ଓ ଲଗାମଛଡ଼ା ବ୍ୟବହାର ବନ୍ଦ ହୋଇଗଲା ।

## ନଥେଖାନ୍‌ଙ୍କ ସହ ଯୁଦ୍ଧ

ରାଣୀ ଗୋଟିଏ ସଂକଟକୁ ବାହାରିଛନ୍ତି କି ନାହିଁ ଆଉ ଗୋଟିଏ ସଂକଟ ମୁହଁ ଖୋଲି ତାଙ୍କ ଆଗରେ ଉପସ୍ଥିତ ହୋଇଗଲା । ସେ ବିପଦଟି ନଥେଖାନ୍ ରୂପରେ ଆସିଲା ।

ନଥେଖାନ୍ ଓରଛା ରାଜ୍ୟର ରାଣୀ ଲଡ଼ଈ ଦୁଲୈୟାଙ୍କର ଦିୱାନ ଥିଲା । ଓରଛାବାସୀ ପ୍ରଥମରୁ ଝାନ୍‌ସୀ ଉପରେ ଖାର ଖାଇ ରହିଥିଲେ । ମୂଳ ରୂପରେ ଝାନ୍‌ସୀ ସହର ଓ ତା'ର ଆଖପାଖ ଅଞ୍ଚଳରେ ଓରଛାର ସ୍ୱାମିତ୍ୱ ଥିଲା । ପରେ ଛତ୍ରସାଳର ରାଜା ଝାନ୍‌ସୀ ଓ ତା' ଆଖପାଖର ଇଲାକା ବାଜିରାଓ ପ୍ରଥମଙ୍କୁ ସମର୍ପି ଦେଇଥିଲେ । ସେବେଠାରୁ ଏହି ସଂପୂର୍ଣ୍ଣ ପରିସର ମରାଠାମାନଙ୍କ ଅଧୀନକୁ ଆସିଯାଇଥିଲା । ସେବେଠାରୁ ଓରଛାବାସୀ ଝାନ୍‌ସୀବାସୀଙ୍କ ଉପରେ ଅସନ୍ତୁଷ୍ଟ ଥିଲେ । ଯେତେବେଳେ ଓରଛାବାଲା ଦେଖିଲେ ଯେ ଜଣେ ବିଧବା, ଅବଳା ନାରୀ କାହାରି ସମର୍ଥନ ବିନା ଝାନ୍‌ସୀ ରାଜ୍ୟର ରାଣୀ ହୋଇଗଲା, ତା'ହେଲେ ଝାନ୍‌ସୀକୁ ପୁଣି ଥରେ ନିଜ ଅଧୀନକୁ ଆଣିବାପାଇଁ ଏହାଠାରୁ ଭଲ ସୁଯୋଗ ଆଉ କେବେ ମିଳିବ ନାହିଁ । ସେମାନେ ଏହି ପରିସ୍ଥିତିରେ ଫାଇଦା ଉଠାଇବାକୁ ବିଚାର କଲେ । ଶ୍ରାବଣ ମାସରେ ଝାନ୍‌ସୀ ସହରର ପ୍ରସିଦ୍ଧ ମୁରଲୀ ମନୋହର ମନ୍ଦିରରେ ଉତ୍ସବର ଆୟୋଜନ କରାଯାଏ । ଝାନ୍‌ସୀବାସୀ ରଙ୍ଗବେରଙ୍ଗର ବସ୍ତ୍ର ପିନ୍ଧି ବଡ଼ ଉତ୍ସାହର ସହ ଏହି ଉତ୍ସବରେ ସମ୍ମିଳିତ ହୁଅନ୍ତି । ରାଣୀ ଲକ୍ଷ୍ମୀବାଈ ମଧ୍ୟ ଭଗବାନ୍‌ଙ୍କ ଦର୍ଶନ କରିବାକୁ ଏଠାକୁ ଆସୁଥିଲେ । ଦିନେ ସୁଯୋଗ ଉଣ୍ଡି ନଥେଖାନ୍ ନିଜ ହାତୀ ପିଠିରେ ବସି ଭିଡ଼ ଭିତରକୁ ମାଡ଼ିଆସିଲେ । ଅଚାନକ ତାଙ୍କୁ ମାଡ଼ି ଆସୁଥିବାର ଦେଖି ଲୋକେ ହଡ଼ବଡ଼େଇ ଯାଇ ଇଆଡ଼େ ସିଆଡ଼େ ଦଉଡ଼ିବାରେ ଲାଗିଲେ । ଉତ୍ସବରେ ଏକ ବିଘ୍ନ ଉପସ୍ଥିତ ହୋଇଗଲା । ପରିସ୍ଥିତିକୁ ବୁଝିପାରି ରାଣୀ ହାତୀ ଉପରେ ବସିଥିବା ନଥେଖାନ୍‌ଙ୍କ ଉପରେ

ଆକ୍ରମଣ କରିଦେଲେ । ନଥେଖାନ୍‌ଙ୍କୁ ଖଣ୍ଡିଆ-ଖାବରା କରି ତାଙ୍କୁ ସହର ବାହାରକୁ ଘଉଡ଼ାଇ ଦେଲେ । ନଥେଖାନ୍ ନିଜର ଏହି ଅପମାନକୁ ସହିପାରିଲା ନାହିଁ ଓ ଓରଛାର ରାଣୀଙ୍କ ସହମତିରେ ୨୦ ହଜାର ସୈନିକ ଧରି ଝାନ୍ସୀ ଉପରେ ଆକ୍ରମଣ କରିବାକୁ ବାହାରି ପଡ଼ିଲା । ଗୋଟିଏ ଗୋଟିଏ ବସ୍ତି ଗାଁ ହସ୍ତଗତ କରି-କରି ଝାନ୍ସୀ ସହରଠାରୁ ଛ ମାଇଲ ଦୂର ବେତଓ୍ୱା (ବେତ୍ରବତୀ) ନଦୀ କୂଳରେ ପହଞ୍ଚି ଶିବିର ପକାଇଲା ।

ଲକ୍ଷ୍ମୀବାଈଙ୍କୁ ଏହାର ସୂଚନା ମିଳିବାମାତ୍ରେ ହିଁ ସେ ଚିନ୍ତିତ ହୋଇଗଲେ । ତାଙ୍କୁ ଲାଗିଲା ତାଙ୍କର ଛୋଟ ସେନାବାହିନୀ ୨୦ ହଜାର ସୈନିକଙ୍କ ମୁକାବିଲା କେମିତି କରିବ ? ନଥେଖାନ୍ ତରଫରୁ ତା'ର ଏକ ଦୂତ ରାଣୀଙ୍କ ନାମରେ ଏକ ପତ୍ର ନେଇ ଆସିଲା । ପତ୍ରରେ ନଥେଖାନ୍ ଲେଖିଥିଲେ "ଝାନ୍ସୀର କିଲ୍ଲା, ସହର ମୂଳତଃ ଓରଛା ରାଜାଙ୍କର ଅଧୀନସ୍ଥ ଥିଲା । ଏଣୁ ଏଗୁଡ଼ିକ ଆପଣ ତୁରନ୍ତ ଆମକୁ ଅର୍ପଣ କରିଦିଅନ୍ତୁ । ଏହାର କ୍ଷତିପୂରଣସ୍ୱରୂପ ଆମେ ଆପଣଙ୍କ ଆଜୀବିକା ପାଇଁ ଇଂରେଜମାନଙ୍କଦ୍ୱାରା ଦିଆଯାଉଥିବା ଦରମା ଅନୁଯାୟୀ ଦରମା ପ୍ରଦାନ କରିବୁ ।"

ପତ୍ର ପଢ଼ି ରାଣୀ ନିଜକୁ ଅପମାନିତ ମଣିଲେ । ସେ ତୁରନ୍ତ ନିଜର ବ୍ୟବସ୍ଥାପକ, ଅଧିକାରୀମାନଙ୍କର ଓ ପରାମର୍ଶଦାତାମାନଙ୍କର ଏକ ବୈଠକ ଡାକିଲେ । ବୈଠକରେ ଉପସ୍ଥିତ ସମସ୍ୟା ସଂପର୍କରେ ବିଚାର ବିମର୍ଶ କରାଗଲା । ବୈଠକରେ ଅନେକେ କହିଲେ ୨୦ ହଜାର ସୈନିକ ଓ ୨୮ଟି ତୋପ ନେଇ ଆସୁଥିବା ନଥେଖାନ୍‌ର ମୁକାବିଲା କରିବା ଆମ ପାଇଁ ବହୁତ କଷ୍ଟଦାୟକ ହେବ । ଏଥିପାଇଁ ଯଦି ଓରଛାର ରାଣୀ ଆମକୁ ପୂରା ଦରମା ଦେଇଦିଅନ୍ତି, ତା'ହେଲେ ତାଙ୍କ ସହ ଯୁଦ୍ଧ ନ କରିବା ହିଁ ଭଲ ହେବ । ଦରମା ନେଇ ଆମେମାନେ ଶାନ୍ତିରେ ଜୀବନ ବିତାଇବା, ବୈଠକରେ ଏମିତି ଅନେକ ଲୋକଙ୍କର ମତ ଥିଲା ।

କିନ୍ତୁ ରାଣୀଙ୍କୁ ପରାମର୍ଶଦାତାମାନଙ୍କର ମତାମତ ପସନ୍ଦ ହେଲା ନାହିଁ । ତାଙ୍କ ମତରେ ହରାଇଥିବା ଝାନ୍ସୀ ଆମକୁ ମିଳିଛି । ପୁଣି ତାକୁ ଦରମା ବଦଳରେ ହରାଇବା କେବଳ ଅପମାନଜନକ ଯେ ହେବ ସେ କଥା ନୁହେଁ କଷ୍ଟଦାୟକ ମଧ ପ୍ରମାଣିତ ହେବ । ବହୁତ ଭାବିଚିନ୍ତି ସେ ନିଜର ନିର୍ଣ୍ଣୟ ବୈଠକରେ ଉପସ୍ଥିତ ଲୋକଙ୍କ ସମ୍ମୁଖରେ ଉପସ୍ଥାପିତ କଲେ । ସେ ନିଜର ନିଷ୍ପତ୍ତି ଶୁଣାଇଲେ ଯେ ଆମେ ଆମର ସମସ୍ତ ଶକ୍ତି-ସାମର୍ଥ୍ୟ ପ୍ରୟୋଗ କରି ନଥେଖାନ୍‌ର ଆକ୍ରମଣକୁ ପ୍ରତିହତ କରିବା ଓ ତାକୁ ଘଉଡ଼ାଇ ଦେବା । ଆମକୁ ତା' ସହ ଯୁଦ୍ଧ କରିବାକୁ ପଡ଼ିବ । ସେ ନିଜର ଏହି ନିର୍ଣ୍ଣୟ ନଥେଖାନ୍ ପାଖକୁ ପହଞ୍ଚାଇ ଦେଲେ । ପତ୍ରରେ ଲେଖିଲେ- "ମୁଁ ଶିବରାମ ରାଓଙ୍କର ପୁତ୍ରବଧୂ । ଆପଣଙ୍କ ପରି ବୁନ୍ଦେଲଖଣ୍ଡର ଲୋକମାନଙ୍କ ହାତରେ ଚୁଡ଼ି ପିନ୍ଧାଇବାର ସାମର୍ଥ୍ୟ ମୋ ପାଖରେ ଅଛି, ଏଥିପାଇଁ ଦୂରଦର୍ଶିତାର ବିଚାର ଆପଣଙ୍କୁ କରିବାର ଅଛି । ଭାବିଚିନ୍ତି ଯୁଦ୍ଧ କରିବା ନିଷ୍ପତ୍ତି ନିଅନ୍ତୁ (ପାରସନିସ୍, ଝାନ୍ସୀ କି ରାନୀ-୧୮୯୪, ଦ୍ୱିତୀୟ ସଂସ୍କରଣ, ୧୯୯୬, ପୃଷ୍ଠା ୯୨)

ଏହି ଖବରଟି ନଥେଖାନ୍ ପାଇଁ ନିଆଁରେ ଘିଅ ପକାଇବା ପରି କାମ କଲା । କ୍ରୋଧରେ ଜଳିଉଠି ସେ ଝାନ୍‌ସୀ ଉପରେ ଆକ୍ରମଣ କରିଦେଲେ । ଦୁର୍ଗକୁ ଚାରିପାଖରୁ ଘେରିଯାଇ ୩ ସେପ୍ଟେମ୍ବର ୧୮୫୭ରେ ସେ ସୈନ୍ୟଛାଉଣୀ କରି ଯୁଦ୍ଧ ପାଇଁ ଡାକରା ଦେଲା ।

ଲକ୍ଷ୍ମୀବାଈ ମଧ୍ୟ ଯୁଦ୍ଧ ପାଇଁ ନିଜର ପ୍ରସ୍ତୁତି ଆରମ୍ଭ କରି ଦେଇଥିଲେ । ନୂଆ ଲୋକଙ୍କୁ ସୈନ୍ୟବିଭାଗରେ ଭର୍ତ୍ତି କରି ନିଜର ସୈନ୍ୟସଂଖ୍ୟା ପାଞ୍ଚହଜାର ପର୍ଯ୍ୟନ୍ତ ପହଞ୍ଚାଇ ଦେଲେ । କିଲ୍ଲା ଉପରେ ଉପଯୁକ୍ତ ସ୍ଥାନରେ ତୋପ, ବନ୍ଧୁକ ଆଦି ଲଗାଇ ଦେଲେ । ସବୁଠାରୁ ବଡ଼ 'କଡ଼କ ବିଜୁଲୀ ତୋପ' କିଲ୍ଲାର ବୁର୍ଜ ଉପରେ ଲଗାଇ ଦେଲେ । ତୋପ ଚଳାଇବାବାଲା ନିଯୁକ୍ତ କରି ଉପଯୁକ୍ତ ସମୟରେ ତୋପ ଚଳାଇବା ବ୍ୟବସ୍ଥା ପକ୍କା କରିଦେଲେ । ସହରରେ, କିଲ୍ଲା କଡ଼ରେ ବୁର୍ଜ (ଗମ୍ବୁଜ) ଉପରେ ସୈନିକମାନଙ୍କୁ ସଜାଇ ଦେଲେ । ମୁଖ୍ୟ ଗମ୍ବୁଜ ଉପରେ ପେଶୱାମାନଙ୍କର ଅମଳର ଝାନ୍‌ସୀର ପତାକା ଉଡ଼ିଲା । ତା' କଡ଼ରେ ଇଂରେଜମାନଙ୍କ ୟୁନିୟନ ଜ୍ୟାକ୍ ବି ଉଡ଼ିବାରେ ଲାଗିଲା । ତା'ପରେ ରାଣୀ ସବୁ ଘଟଣାର ବୃତ୍ତାନ୍ତ ପତ୍ରରେ ଲେଖି ଜବଲପୁର, ଆଗରା ଓ ଗ୍ୱାଲିୟରର ଇଂରେଜ ଅଧିକାରୀମାନଙ୍କୁ ସୂଚିତ କରିଦେଲେ । ସାହାଯ୍ୟ ପ୍ରାର୍ଥନା କଲେ, ମାତ୍ର ସାହାଯ୍ୟ ମିଳିଲା ନାହିଁ ।

ରାଣୀ ଲକ୍ଷ୍ମୀବାଈ ସ୍ୱୟଂ ପଠାନ୍‌ମାନଙ୍କ ପରି ପୁରୁଷ ପୋଷାକରେ କିଲ୍ଲା ଉପରେ ସୈନ୍ୟଦଳ ସହ ସାମିଲ ହୋଇଗଲେ । ପିଲାଦିନରୁ କସରତ କରିବା, ଘୋଡ଼ା ଚଢ଼ିବା ଓ ତରବାରି ଚାଳନା କରିବା ହେତୁ ଏହି ତିନି ବିଦ୍ୟାରେ ସେ ବିଚକ୍ଷଣ ଥିଲେ । କିନ୍ତୁ ପ୍ରତ୍ୟକ୍ଷଭାବେ ଯୁଦ୍ଧକୁଣ୍ଡରେ ଓହ୍ଲାଇବା ଏହା ପ୍ରଥମ ଅବସର ଥିଲା । ଏକ ନିପୁଣ ସେନାପତି ପରି ସେ ସଂପୂର୍ଣ୍ଣ ଚତୁରତାର ସହ ପରିସ୍ଥିତି ଉପରେ ନଜର ରଖିଥିଲେ । ନିଜ ସିପାହିମାନଙ୍କୁ ପ୍ରୋତ୍ସାହିତ କରୁଥିଲେ, ତାଙ୍କ ସୁବିଧା ଅସୁବିଧା ବୁଝୁଥିଲେ ଓ ସିପାହିଙ୍କ ଭିତରେ ହିଁ ଘୂରି ବୁଲୁଥିଲେ । ଶତ୍ରୁପକ୍ଷରୁ ଗୋଳାବର୍ଷଣ ଆରମ୍ଭ ହେଲାକ୍ଷଣି ହିଁ 'ଘନଗର୍ଜ', 'ଭବାନୀ ଶଙ୍କର', 'କଡ଼କ ବିଜଲୀ' ନାମକ ତୋପଗୁଡ଼ିକ ବି ଦୃଢ଼ଭାବରେ ଠିକଣା ଜବାବ ଦେବା ଆରମ୍ଭ କରିଦେଲେ । ଗୌସଖାନ ତୋପଚାଳକ ପ୍ରଥମଥରରେ ହିଁ ନଥେଖାନ୍‌କୁ ଲକ୍ଷ୍ୟକରି ତା'ର ହାତୀକୁ ଆହତ କରିଦେଲା । ହାତୀ ଟିକିଏ ପଛକୁ ହଟିଯାଇ ଦଉଡ଼ିବାକୁ ଲାଗିଲା । ଏହା ଭିତରେ ଗୋଳାବାରୁଦ ଭୟଙ୍କର ଭାବରେ ବର୍ଷଣ ହେବାରୁ ନଥେଖାନ୍‌ର ସେନା ବି ପଛକୁ ହଟିବାକୁ ଲାଗିଲେ । ଯାଉ-ଯାଉ ମାରକାଟ ଆରମ୍ଭ ହୋଇ ଭୟଙ୍କର ଲଢ଼େଇ ହେଲା । ତରବାରି, ଧନୁଶର, ବନ୍ଧୁକ ଓ ତୋପ ସାହାଯ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଏତେ ବିରାଟ ସେନାବାହିନୀ ସାଙ୍ଗରେ ଆଣିଥିବା ସତ୍ତ୍ୱେ ବି ଲକ୍ଷ୍ମୀବାଈଙ୍କର ମୁଷ୍ଟିମେୟ ସେନା ପ୍ରତିଉତ୍ତରରେ ତାଙ୍କୁ ସଂପୂର୍ଣ୍ଣ ପରାସ୍ତ କରିଦେଲେ । ତାଙ୍କୁ ଯୁଦ୍ଧକ୍ଷେତ୍ରରୁ ପଛକୁ ହଟିବାକୁ ପଡ଼ିଲା । ରାଣୀ ନିଜ ସେନାବାହିନୀର ସାହସୀ ବୀରମାନଙ୍କୁ ସୁନା-ରୁପା ଉପହାର ଦେଇ ତାଙ୍କୁ ପ୍ରୋତ୍ସାହିତ କଲେ ଓ ତାଙ୍କର ସମ୍ମାନ ବଢ଼ାଇଲେ ।

ଏହି ଲଢ଼େଇ ପରେ ବୁନ୍ଦେଲଖଣ୍ଡରେ ଏକ ଢଗ ପ୍ରଚଳିତ ହୋଇଗଲା । ‘‘ନଥେଖାନ୍‌ର ମୁଛ ଢଳିଗଲା, ବାଈସାହିବାଙ୍କ ଗୁଳିରେ ।’’ ଦତିୟାର କବି କଲ୍ୟାଣ ସିଂହ କୁଡ଼ରା ଏହି ଯୁଦ୍ଧର ପୃଷ୍ଠଭୂମି ଉପରେ ‘ଲକ୍ଷ୍ମୀବାଈ ରାସୋ’ ନାମକ ଏକ ଦୀର୍ଘକାବ୍ୟ ଲେଖିଲେ । କୁଡ଼ରା ରାଣୀ ଲକ୍ଷ୍ମୀବାଈଙ୍କର ସାମସମୟିକ ଥିଲେ । ଝାନ୍ସୀ ଯୁଦ୍ଧର ସତ୍ୟ ଘଟଣା ତାଙ୍କୁ ଯାହାଠାରୁ ଶୁଣିବାକୁ ମିଳିଥିଲା ହୁଏତ ସିଏ ଯୁଦ୍ଧକୁ ପ୍ରତ୍ୟକ୍ଷ ଭାବେ ଦେଖିଥିଲେ । ଅଥବା ଯୁଦ୍ଧରେ ପ୍ରତ୍ୟକ୍ଷରୂପେ ଭାଗ ନେଇଥିଲେ । କିନ୍ତୁ ସବୁଠାରୁ ମଜାଦାର ଘଟଣା ହେଉଛି କୁଡ଼ରା ନିଜ ସମୟରେ ହେଇଥିବା ଲକ୍ଷ୍ମୀବାଈ ଓ ନଥେଖାନ୍ ଭିତରେ ହୋଇଥିବା ଯୁଦ୍ଧର ବୃତ୍ତାନ୍ତ ନିଜ କାବ୍ୟରେ ବର୍ଣ୍ଣନା କରିଛନ୍ତି । ପ୍ରକୃତରେ ଏହି ଯୁଦ୍ଧ ଏତେ ମହତ୍ତ୍ୱପୂର୍ଣ୍ଣ ନ ଥିଲା ବରଂ ଇଂରେଜ ଓ ଲକ୍ଷ୍ମୀବାଈଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧ ବେଶି ମହତ୍ତ୍ୱପୂର୍ଣ୍ଣ ଥିଲା । ଦୁଇମାସ ଭିତରେ ଏହି ଯୁଦ୍ଧ ସରିଯାଇଥିଲା । କିନ୍ତୁ କାବ୍ୟର ବିଷୟଭୂମି ଇଂରେଜମାନଙ୍କ ସହ ହୋଇଥିବା ଯୁଦ୍ଧ ଉପରେ ଅଧିକ ଆଧାରିତ ଥିଲା । କାବ୍ୟ ପଢ଼ିଲେ ସେମିତି ଜଣାପଡୁଥିଲା । ଏହି କାବ୍ୟ ୧୮୬୯ରେ ପ୍ରକାଶିତ କରାଗଲା । ଅର୍ଥାତ୍ ୧୮୫୭ ଯୁଦ୍ଧ ପରେ ଇଂରେଜମାନଙ୍କ ଦମନଲୀଳା, ଅତ୍ୟାଚାରର ସ୍ଥିତିକୁ ସତେଜ ରଖିଲା ଭଳି ସମୟ ଥିଲା । ସେହି ସମୟରେ ଇଂରେଜଙ୍କ ସାଙ୍ଗରେ ହେଇଥିବା ଯୁଦ୍ଧର ବର୍ଣ୍ଣନା କରି ରାଣୀ ଲକ୍ଷ୍ମୀବାଈଙ୍କ ଗୌରବଗାଥା ଲେଖିବା କୁଡ଼ରା ଦ୍ୱାରା ସମ୍ଭବ ନ ଥିଲା । ସେମିତି କରିଥିଲେ ତାଙ୍କ ଜୀବନ ଯିବାର ସମ୍ଭାବନା ଥିଲା । ସେହି କାରଣରୁ ହ୍ୟୁରୋଜଙ୍କ ସହ ହୋଇଥିବା ଯୁଦ୍ଧ ବଦଳରେ ନଥେଖାନ୍ ସହ ହୋଇଥିବା ଯୁଦ୍ଧ ବିଷୟରେ ଲେଖିବାକୁ କୁଡ଼ରା ଭାବିଥିବେ । ଏଭଳି ଭାବରେ କୁଡ଼ରା ଚିତ୍ର ରେଖାଙ୍କିତ କଲେ ନଥେଖାନ୍ ସହ ଯୁଦ୍ଧର, ମାତ୍ର ନିଜ ଲେଖନୀଦ୍ୱାରା ଏଥିରେ ରଙ୍ଗ ଭରିଲେ ହ୍ୟୁରୋଜ ସହ ହୋଇଥିବା ଯୁଦ୍ଧର । ସେହି ସମୟରେ ରାଣୀ ନଥେଖାନ୍‌ଙ୍କୁ ପଠାଇଥିବା ପତ୍ରର ବି ଉଲ୍ଲେଖ କରାଯାଇଛି । ଗୋଟିଏ ସ୍ଥାନରେ ରାଣୀ କହିଛନ୍ତି– ‘‘ହେ ଈଶ୍ୱର ! ଯେମିତି ପାଣ୍ଡବଙ୍କ ପତ୍ନୀ ଦ୍ରୌପଦୀ ଉପରେ କୃପା ଦୃଷ୍ଟି ପକାଇ ଆପଣ ତାଙ୍କୁ ବିକଟ ସମସ୍ୟାରୁ ଉଦ୍ଧାର କରିଥିଲେ, ଠିକ୍ ସେମିତି ମୋତେ ରକ୍ଷା କରନ୍ତୁ । ଧନ–ଦୌଲତ ହରାଇବା ପାଇଁ ମୋର ଦୁଃଖ ନାହିଁ, ମୃତ୍ୟୁକୁ ମଧ୍ୟ ମୁଁ ଆଦୌ ଭୟ କରୁ ନାହିଁ । ମତେ କେବଳ ନିଜ ଆତ୍ମସମ୍ମାନର ଚିନ୍ତା, ମୋ ଇଜ୍ଜତର ଚିନ୍ତା ଅତିଷ୍ଠ କରୁଛି । ହେ ପରମେଶ୍ୱର ! ମୋର ସମ୍ମାନ ରକ୍ଷା କର ।’’ ଏବେ ଯେଉଁ ବର୍ଣ୍ଣନା ଏଥିରୁ ମିଳୁଛି ତା’ ହ୍ୟୁରୋଜ ସହ ହୋଇଥିବା ଯୁଦ୍ଧର ଶେଷ ସମୟର କଥା । ସେଥିରେ ଲକ୍ଷ୍ମୀବାଈଙ୍କର ମାନସିକ ସ୍ଥିତି ବିଷୟରେ ବର୍ଣ୍ଣନା କରାଯାଇଛି । ନଥେଖାନ୍ ସହ ହେଇଥିବା ଯୁଦ୍ଧ ସମୟରେ ରାଣୀ ଏତେ ଚିନ୍ତିତ ନ ଥିଲେ । କାବ୍ୟର ଶେଷ ଭାଗରେ କୁଡ଼ରା ଲେଖିଛନ୍ତି – ‘‘ଶୂରବୀରଙ୍କ ପ୍ରତି ଆଦର ଭାବ ରଖିଲାବାଲୀ, ବୀରଙ୍କ ପ୍ରଶଂସା କଲାବାଲୀ, ଗୁଣବାନ୍‌ଙ୍କ ଚରିତ୍ର ବଖାଣିବାବାଲୀ ମହାରାଣୀ ଲକ୍ଷ୍ମୀବାଈଙ୍କ ବୀରତ୍ୱର ତାଙ୍କ ଅସୀମ ଧୈର୍ଯ୍ୟର ସ୍ତବ ଗାନ କରୁଛି । ସଂପୂର୍ଣ୍ଣ

ବିଶ୍ୱରେ ତାଙ୍କ ଖ୍ୟାତି ବ୍ୟାପ୍ତ ହୋଇଛି ।'' ଏହି କଥା ହ୍ୟୁରୋଜ ସହ ହୋଇଥିବା ଯୁଦ୍ଧ ସନ୍ଦର୍ଭରେ ବି କୁହାଯାଇପାରେ ।

ନଥେଖାନ୍ ପରାଜିତ ହୋଇ ଫେରିଯିବା ପରେ ଓରଛାର ରାଣୀ ଲକ୍ଷ୍ମୀବାଈଙ୍କ ଆଗରେ ଏକ ସନ୍ଧି ପ୍ରସ୍ତାବ ଉପସ୍ଥାପିତ କଲେ । ଲକ୍ଷ୍ମୀବାଈ ଯୁଦ୍ଧର ସମସ୍ତ ଖର୍ଚ୍ଚ ରାଣୀ ଲଡ଼ଈ ଦୁଲୈୟାଠାରୁ ଆଦାୟ କରି ମିତ୍ରତା ଚୁକ୍ତିପତ୍ର କରିଦେଲେ । ଏହି ବୁଝାମଣା ପାଇଁ ବାଣପୁରର ରାଜା ମର୍ଦ୍ଦାନସିଂହ ଓ କଲିଞ୍ଜରର ନାମାଙ୍କିତ ସରଦାର ଚୌବେ ମଧ୍ୟସ୍ଥତା କରିଥିଲେ । ଏହି ଚୁକ୍ତିପତ୍ର ପରେ ରାଣୀ ଲକ୍ଷ୍ମୀବାଈ ଓ ଓରଛାର ରାଣୀ ଲଡ଼ଈ ଦୁଲୈୟାଙ୍କ ଭିତରେ ଭଉଣୀ ଭଉଣୀ ସଂପର୍କ ସ୍ଥାପିତ ହୋଇଗଲା । (ପାରସନିସ୍, ପୃଷ୍ଠା ୯୫)

ନଥେଖାନ୍ ସହ ଯୁଦ୍ଧ, ତାକୁ ସଂପୂର୍ଣ୍ଣ ପରାଜିତ କରିବା, ଝାନ୍ସୀବାସୀଙ୍କ ଦୃଷ୍ଟିରେ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା ଥିଲା । ଏହି ବିଜୟ କାରଣରୁ ରାଣୀ ଲକ୍ଷ୍ମୀବାଈଙ୍କ ଆତ୍ମବିଶ୍ୱାସ ଅଧିକ ମଜଭୂତ ହେଲା । ନିଜର ସେନାବାହିନୀ ଉପରେ ତାଙ୍କର ବିଶ୍ୱାସ ବଢ଼ିଲା । ସିପାହିମାନଙ୍କର ବି ଆତ୍ମବିଶ୍ୱାସ ବଢ଼ିଲା । ତାଙ୍କ ଭିତରେ ଏକ ନୂଆ ଉତ୍ସାହ ଜାତ ହେଲା । ସେନାବାହିନୀଙ୍କ ମନରେ ରାଣୀ ଲକ୍ଷ୍ମୀବାଈଙ୍କ ନେତୃତ୍ୱ ପ୍ରତି ବିଶ୍ୱାସ ଦୃଢ଼ ହେଲା । ରାଣୀ, ତାଙ୍କ ସେନାବାହିନୀ ଓ ଝାନ୍ସୀର ସାଧାରଣ ଜନତା ଭିତରେ ଏକାତ୍ମକତା ସ୍ଥାପିତ ହୋଇଗଲା ।

## ଇଂରେଜମାନଙ୍କ ସହ ପତ୍ର ବ୍ୟବହାର

ରାଣୀ ଲକ୍ଷ୍ମୀବାଈ ଚାହୁଁଥିଲେ ଏବେବି ଇଂରେଜମାନଙ୍କ ସହ ମିତ୍ରତାର ବ୍ୟବହାର ରହୁ । ସେଥିପାଇଁ ସେ ବିଭିନ୍ନ ସ୍ଥାନରେ ନିଯୁକ୍ତ ଇଂରେଜ ଅଧିକାରୀମାନଙ୍କୁ ବାରମ୍ବାର ପତ୍ର ଲେଖି ଝାନ୍ସୀର ଘଟଣା ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରୁଥିଲେ । ବାରମ୍ବାର ସାହାଯ୍ୟ ଭିକ୍ଷା ବି କରୁଥିଲେ । ନଥେଖାନ୍‌କୁ ପରାଜିତ କଲା ପରେ ରାଣୀ ଇନ୍ଦୋରର କମ୍ପାନୀ ସରକାରଙ୍କ ଏଜେଣ୍ଟ ସର ରବର୍ଟ ହେମିଲ୍ଟନଙ୍କୁ ଏକ ପତ୍ର ଲେଖିଥିଲେ । ଯାହାର ବିଷୟ ଏହିପରି-

''ନମସ୍କାର,

୧. ହିନ୍ଦୁସ୍ଥାନରେ ଆପଣଙ୍କ ଅନୁପସ୍ଥିତି ସମୟରେ ଏଠି ଯେଉଁ ଆଶ୍ଚର୍ଯ୍ୟଜନକ ଓ ଅପ୍ରତ୍ୟାଶିତ ଘଟଣା ଘଟିଯାଇଛି ସେ ସଂପର୍କରେ କହିବାକୁ ମତେ ଅତ୍ୟନ୍ତ କଷ୍ଟ ହେଉଛି । ଏହି ସମୟରେ ମତେ ଯେଉଁ କଷ୍ଟ, ଦୁଃଖ ଓ ଅସୁବିଧା ଭୋଗ କରିବାକୁ ପଡ଼ିଛି ତା'ର ବର୍ଣ୍ଣନା ମୁଁ କରିପାରିବି ନାହିଁ । ଆପଣ ହିନ୍ଦୁସ୍ଥାନ ଫେରିଆସିଲେ ସତେଯେମିତି ମତେ ଜୀବନଦାନ ମିଳିଗଲା । ମୁଁ ସତ ଘଟଣା ସବୁ ସଂକ୍ଷେପରେ ବତାଇବାକୁ ଯାଉଛି । ଯେତେବେଳେ ବ୍ରିଟିଶ୍ ଫୌଜ ବିଦ୍ରୋହ କରି ମତେ ଧମକାଇଲେ ମୋର ଧନ-ଦୌଲତ ଲୁଟି ନେଲେ ଓ ଓରଛା ଏବଂ

ଦତିୟାର ରାଜାମାନେ ବି ମତେ ଧମକ ଦେଲେ ଓ ଲୁଟପାଟ କଲେ, ସେତେବେଳେ ମୁଁ ସାଙ୍ଗେ ସାଙ୍ଗେ ବିଭିନ୍ନ ସ୍ଥାନର ବ୍ରିଟିଶ୍ ଅଧିକାରୀମାନଙ୍କୁ ଚିଠି ପଠାଇଲି (ସେଥିରେ ଜବଲପୁର କମିଶନର, ଗଭର୍ଣ୍ଣର ଜେନେରାଲ୍‌ଙ୍କର ଆଗର ସ୍ଥିତ ଏଜେଣ୍ଟ, ଲେଫ୍ଟନାଣ୍ଟ ଗଭର୍ଣ୍ଣର ଜାଲୌନଙ୍କ ଡେପୁଟି କମିଶନର, ଗ୍ୱାଲିୟରର ପଲିଟିକାଲ ଏଜେଣ୍ଟ ମେଜର ଏଲିସ୍‌ଙ୍କ ନାମ ଉଲ୍ଲେଖ କରାଯାଇଛି ।) ପତ୍ର ଦ୍ୱାରା ମୁଁ ସମସ୍ତ ସତ୍ୟ ଘଟଣା ମୁଁ ସମୟ ସମୟରେ ଲେଖି ଅବଗତ କରାଇଛି । କିନ୍ତୁ ଏହି ପତ୍ରବାହକମାନଙ୍କ ଭିତରୁ କିଛି ଲୋକ ହଜିଗଲେ, କିଛି ଲୋକଙ୍କୁ ମଝି ରାସ୍ତାରେ ହିଁ କେହି ଆକ୍ରମଣ କରି ଦେବାରୁ ତାଙ୍କୁ ଝାନ୍ସୀ ଫେରିଆସିବାକୁ ପଡ଼ିଲା । ଯେଉଁମାନେ କୌଣସି ପ୍ରକାରେ ଆଗ୍ରା ଦୁର୍ଗରେ ପହଞ୍ଚିଲେ, ସେମାନେ କହିଲେ ଯେ ସେ ପତ୍ରଟିକୁ ଗୋଟିଏ ପାଣି ଭରିଲାବାଲା ହାତରେ ଅଧିକାରୀମାନଙ୍କୁ ପହଞ୍ଚାଇ ଦେଇଥିଲେ । ନିଜ ଜୀବନ ପ୍ରତି ବିପଦ ଦେଖି ସେମାନେ ଉତ୍ତର ପାଇଁ ପ୍ରତୀକ୍ଷା ନ କରି ଫେରିଆସିଲେ । ମେଜର ଏଲିସ୍ ମତେ ଜଣାଇଲେ ଯେ ମୋ ପତ୍ର କ୍ୟାପ୍‌ଟେନ୍ ସ୍କୀନଙ୍କ ପାଖକୁ ଆସିଥିଲା । ଅଧିକାରୀମାନଙ୍କ ବିଚାର ପାଇଁ ପଠାଇ ଦିଆଯାଇଛି । ୨୩ ଜୁନ୍‌ରେ ଗୁରସରାୟର ଅଧିକାରୀଙ୍କ ଜରିଆରେ କମିଶନର ସାହେବଙ୍କର ଏକ ପତ୍ର ମତେ ମିଳିଲା । ସେଥିରେ ଲେଖା ଥିଲା ଯେ ମୁଁ ଝାନ୍ସୀର ପ୍ରଶାସନ ଦାୟିତ୍ୱ ନେବି । ମୋର ତିନୋଟି ପତ୍ରର ଉତ୍ତରରେ ୧୦ ଜୁଲାଇରେ ସେହି ଅଧିକାରୀଙ୍କଠାରୁ ଆଉ ଏକ ପତ୍ର ମତେ ମିଳିଲା । ସେଥିରେ କୁହାଯାଇଥିଲା ଯେ ଜିଲ୍ଲା ଶାସନ ମୁଁ ସମ୍ଭାଳିବା ସମ୍ବନ୍ଧିତ ଘୋଷଣାପତ୍ର ଏହି ପତ୍ର ସହ ସଂଲଗ୍ନ କରାଯାଇଛି । ୨୩ ଜୁଲାଇରେ ମୁଁ ସେ ପତ୍ରର ଉତ୍ତରରେ ତାଙ୍କୁ ସୂଚିତ କଲି ଯେ ସେହି ଘୋଷଣାପତ୍ର ମତେ ମିଳି ନାହିଁ ।

୨. ଏହି ପ୍ରଦେଶର ବର୍ତ୍ତମାନର ବିଗିଡ଼ି ଯାଇଥିବା ପରିସ୍ଥିତିର ଫାଇଦା ଉଠାଇ ଦତିୟା ଏବଂ ଓରଛାର ରାଜାମାନେ ପୂର୍ବ-ପଶ୍ଚିମ ଦୁଇ ରାଜ୍ୟର ସୀମା ସହ ଯୋଡ଼ି ହୋଇଥିବା ଝାନ୍ସୀ ପ୍ରଦେଶକୁ ଜବରଦସ୍ତି ଦଖଲ କରିନେଲେ ।

୩. ସେପ୍ଟେମ୍ବରରେ ଏହି ଦୁଇ ରାଜ୍ୟ ନିଜ ଭିତରେ ବୁଝାମଣା କରି ଓରଛା ସହ ସଂବଧିତ ଓ ବିଦ୍ରୋହୀ ଠାକୁରମାନଙ୍କ ସେନା ଝାନ୍ସୀ ଉପରେ ଆକ୍ରମଣ କରି ଦେଲେ । ଓରଛାର ୪୦ ହଜାର ସୈନିକ ଓ ତାଙ୍କ ପାଖରେ ୨୮ଟି ତୋପ ଥିଲା । ସେମାନେ ବଡ଼ ଚତୁରତାର ସହ ଅନ୍ୟ ରାଜାମାନଙ୍କୁ ବି ନିଜ ପକ୍ଷଭୁକ୍ତ କରି ,ନେଇଥିଲେ । ଝାନ୍ସୀର ପ୍ରଶାସନ ସମ୍ଭାଳିବା ସଂବଧିତ କମିଶନର ସାହେବଙ୍କର ପତ୍ର ମତେ ଏଠାରୁ ମିଳିଥିଲା । ସେ ପତ୍ରଟିକୁ ପଢ଼ିବାକୁ ମୁଁ ନଥେଖାନ୍ ପାଖକୁ ପଠାଇଥିଲି, କିନ୍ତୁ ସେ ଗମ୍ଭୀରତାର ସହ ସେହି ପତ୍ରଟିକୁ ପଢ଼ି ନ ଥିଲା । ସେଥିପାଇଁ ମୁଁ ପୁଣି ଥରେ ୧୯ ଅକ୍ଟୋବରରେ କମିଶନର ସାହେବଙ୍କୁ ଆଉ

ଏକ ପତ୍ର ଲେଖିଲି । ସେହି ପତ୍ରର ଉତ୍ତରରେ ସେ ମତେ ସୂଚିତ କଲେ କି ଜବଲପୁରରେ ବ୍ରିଟିଶ ସେନାଙ୍କୁ ଏକାଠି କରାଯାଉଛି ଓ କମିଶନର ସ୍ୱୟଂ ଝାନ୍ସୀ ଆସିବେ ଓ ଏଠାକାର ସବୁ ଛୋଟ-ବଡ଼ ଲୋକଙ୍କର ଗତିବିଧି ଉପରେ ବିଚାର କରି ପରିସ୍ଥିତି ଅନୁଧ୍ୟାନ କଲା ପରେ ନିଜର ନିର୍ଣ୍ଣୟ ଦେବେ । ଏହା ଭିତରେ ବି ମୁଁ ନିଜର ବ୍ୟକ୍ତିଗତ ସମ୍ପତ୍ତି ବିକ୍ରି କରି ଓ ଧାରକରଜ କରି ସେନାବାହିନୀକୁ ସଂଗଠିତ କଲି । ନଥେଖାନ୍ ଦ୍ୱାରା କରାଯାଇଥିବା ଆକ୍ରମଣର ମୁକାବିଲା କରି ମୁଁ ସହରକୁ ରକ୍ଷା କରିବାକୁ ଚେଷ୍ଟା କଲି । ଶତ୍ରୁମାନେ ବନ୍ଧୁକରୁ ଗୁଳି ବର୍ଷା କଲେ । ତୋପ ଫୁଟାଇଲେ ଓ ଅନ୍ୟ ପ୍ରକାର ଲଢ଼ାଇ କରି ଆମର ହଜାର ହଜାର ଲୋକଙ୍କୁ ମାରିଦେଲେ । ମୋ ପାଖରେ ଯାହା ବି ସାଧନ ସାମଗ୍ରୀ ଥିଲା ତାହା ଶେଷ ହେବାରେ ଲାଗିଲା । ସେଥିପାଇଁ ମୁଁ ୨୦ ସେପ୍ଟେମ୍ବର ଓ ୧୯ ଅକ୍ଟୋବରରେ ସାହାଯ୍ୟ ଭିକ୍ଷା କରି ପତ୍ର ପଠାଇଥିଲି । ଦୁଇମାସ ପରେ ଓରଛାରୁ ତିନି ମାଇଲ ଦୂର 'କୋମା' ନାମକ ଗାଁକୁ ଚାରିପାଖରୁ ଘେରାଉ କରାଗଲା । ସେମାନେ ଜବରଦସ୍ତି ଆମର କିଛି ଅଞ୍ଚଳ ଦଖଲ କରିନେଲେ । ସେହିପରି ରାଣୀ ବି ଜୋରଜବରଦସ୍ତି ଆମର କିଛି ଇଲାକା ଛଡ଼େଇ ନେଲେ; ଯାହା ଏବେବି ତାଙ୍କ ଅଧୀନରେ ଅଛି । ଓରଛା ଓ ଦତିଆନିବାସୀ ଆମ ଇଲାକାଗୁଡ଼ିକୁ ଫେରାଉ ନାହାନ୍ତି । ତାକୁ ଫେରାଇ ଆଣିବାକୁ ମୁଁ ଯେତେବେଳେ ବି ସୈନ୍ୟବାହିନୀ ପଠାଇଲି ସେମାନେ ସେତେବେଳେ ତା'ର ବିରୋଧ କଲେ ।

୪. ଧନଗର ଓ ଅନ୍ୟ ଜାତିର ଲୋକମାନେ ପୂର୍ବପରି ଏହିସବୁ ଇଲାକାରେ ଲୁଟ୍‌ପାଟ୍, ମରାମରି କରି ନଷ୍ଟ କରି ଚାଲିଛନ୍ତି ।

୫. ଏହିସବୁ ପରିସ୍ଥିତିରେ ବ୍ରିଟିଶ୍ ସରକାରର ବିନା ସାହାଯ୍ୟରେ ଶତ୍ରୁକୁ ସାଧ କରିହେବ ମତେ କାହିଁକି ଲାଗୁ ନାହିଁ । ମୁଁ ଋଣମୁକ୍ତ କେବେ ହେଇପାରିବି ସେମିତି ବି ଜଣାପଡୁ ନାହିଁ ।

୬. ୯ ନଭେମ୍ବର ଦିନ କମିଶନର ମୋ ପାଖକୁ ପଠାଇଥିବା ପତ୍ରରେ ଲେଖିଥିଲେ ଯେ ଏବେ ଏହି ସମୟରେ ବ୍ରିଟିଶ୍ ସୈନିକ ଆମର ବି ନିହାତି ଆବଶ୍ୟକ । ସେହି କାରଣରୁ ମତେ ତାଙ୍କ ପାଖରୁ କିଛି ସାହାଯ୍ୟ ମିଳିବ ସେପରି କିଛି ସମ୍ଭାବନା ଦେଖାଯାଉ ନାହିଁ ।

ବ୍ରିଟିଶରମାନଙ୍କ ମହତଗୁଣ ଓ ଶ୍ରେଷ୍ଠତ୍ୱ ଏଠିକାର ସ୍ୱାର୍ଥପର ଲୋକମାନେ କେବେ ହେଲେ ଚିହ୍ନିପାରିଲେ ନାହିଁ । ଏହି ଲୋକମାନେ ମୋର ଓ ସଂପୂର୍ଣ୍ଣ ଦେଶର ସତ୍ୟାନାଶ କରିବାପାଇଁ ଯେକୌଣସି ସ୍ତର ପର୍ଯ୍ୟନ୍ତ ଯାଇପାରନ୍ତି । ଆପଣଙ୍କ ଦ୍ୱାରା ଯେତିକି ସମ୍ଭବ ମତେ ସାହାଯ୍ୟ କରନ୍ତୁ । ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି । ଶତ୍ରୁର ମୁକାବିଲା ମୁଁ ଏକା

କରିପାରିବା ଅସମ୍ଭବ । ମୋ ପରି ଅସହାୟ ଲୋକମାନଙ୍କୁ, ଖାସ୍‌କରି ମତେ, ଯଦି ଆପଣଙ୍କ ସାହାଯ୍ୟ ମିଳିଯାଏ ତା'ହେଲେ ନିଜକୁ ଶତ୍ରୁ କବଳରୁ ରକ୍ଷା କରିପାରିବି ।

କିନ୍ତୁ ଏହି ପତ୍ରର କୌଣସି ଉତ୍ତର ରାଣୀଙ୍କୁ ମିଳିଲା ନାହିଁ । ଖାଲି ଏତିକି ଜଣାପଡ଼ିଲା ଯେ ଜବଲପୁରର କମିଶନର ସେନା ନେଇ ଝାନ୍ସୀ ଆସୁଛନ୍ତି । ଝାନ୍ସୀ ଆସି ସେ ଏଠିକାର ପରିସ୍ଥିତି ଅନୁଧ୍ୟାନ କରିବେ । ଶ୍ରେଷ୍ଠ ଓ କନିଷ୍ଠ ଲୋକଙ୍କ ବ୍ୟବହାର ପ୍ରତ୍ୟକ୍ଷରୂପେ ଯାଞ୍ଚ କରି ନିର୍ଣ୍ଣୟ ଦେବେ । ଏହି କଥା ଯେତେବେଳେ ଜଣାପଡ଼ିଲା, ଲକ୍ଷ୍ମୀବାଈଙ୍କର ଚିନ୍ତା ଅଧିକ ବଢ଼ିଗଲା । ଏହାର ଅର୍ଥ ହେଲା କି କମିଶନର ରାଣୀଙ୍କର ଗତିବିଧି ଅନୁଧ୍ୟାନ କରିବାକୁ ଝାନ୍ସୀ ଆସୁଛନ୍ତି ।

ଅଲଗା ଅଲଗା ସ୍ଥାନରେ କାର୍ଯ୍ୟରତ ଇଂରେଜ ଅଧିକାରୀମାନଙ୍କ ପାଖକୁ ଲକ୍ଷ୍ମୀବାଈଙ୍କର ଚିଠି ନେଇ ଯାଉଥିବା ପତ୍ରବାହକମାନଙ୍କୁ ମଝିରେ ଅଟକାଇ ନଥେଖାନ୍ ସେମାନଙ୍କଠାରୁ ଚିଠିଗୁଡ଼ିକ ନେଇ ଯାଉଥିଲା । ସେ ଏକ ଭ୍ରମ ଧାରଣା ପ୍ରଚାର କରିବାରେ ଲାଗିଲା କି ଲକ୍ଷ୍ମୀବାଈ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ କରୁଛନ୍ତି । ଆଉ ସେଇଥିପାଇଁ ଇଂରେଜମାନଙ୍କୁ ସମର୍ଥନ କରି ଇଂରେଜଙ୍କ ତରଫରୁ ସେ ତାଙ୍କ ସାଙ୍ଗରେ ଯୁଦ୍ଧ କରୁଛନ୍ତି । ନଥେଖାନ୍ ଏହି ମର୍ମରେ ପତ୍ର ଲେଖି ଅଲଗା ଅଲଗା ଇଂରେଜ ଅଧିକାରୀମାନଙ୍କୁ ପଠାଇଥିଲେ । ଏହିସବୁର ବର୍ଣ୍ଣନ କିଛି ଇତିହାସକାରଙ୍କ ବହିମାନଙ୍କରେ ଦେଖିବାକୁ ମିଳେ ।

ସେ ସମୟରେ ବ୍ରିଟିଶରମାନଙ୍କ ବିଭିନ୍ନ କ୍ୟାମ୍ପରୁ ଯେଉଁ ଗୋପନୀୟ ତଥ୍ୟ ମିଳିଥିଲା, ସେଥିରେ ମଧ ରାଣୀଙ୍କ ଗତିବିଧି ବିଷୟରେ ଚର୍ଚ୍ଚା କରାଯାଇଥିବା ଦେଖିବାକୁ ମିଳେ । ଅଧିକାଂଶ ରିପୋର୍ଟରେ କୁହାଯାଇଛି ଯେ ରାଣୀଙ୍କର ବ୍ରିଟିଶ୍‌ମାନଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ରଖିବା ହିଁ ଉଦ୍ଦେଶ୍ୟ ଥିଲା । ୮ ଜାନୁୟାରୀ ୧୮୫୮ର ରିପୋର୍ଟରେ କୁହାଯାଇଛି ଯେ "ଝାନ୍ସୀର ଜେଲର ଦାରୋଗା ବକ୍ସିଅଲ୍ଲୀ ରାଣୀଙ୍କୁ ଦେଖା କରିବାକୁ ଯାଇଥିଲା । ସେ ରାଣୀଙ୍କୁ ପଚାରିଲା କି ସେ ଇଂରେଜ ସେନା ବିରୋଧରେ ଯୁଦ୍ଧ କରିବାକୁ ପ୍ରସ୍ତୁତ କି ନାହିଁ ? ଉତ୍ତରରେ ରାଣୀ କହିଥିଲେ ଯେ ସେ ଇଂରେଜମାନଙ୍କ ବିରୋଧରେ ଲଢ଼ିବେ ନାହିଁ । ବ୍ରିଟିଶ୍ ଅଧିକାରୀ ଯଦି ଝାନ୍ସୀ ଆସିବେ ତେବେ ସେ ତାଙ୍କ ଅଧୀନସ୍ଥ ଇଲାକାଗୁଡ଼ିକୁ ଇଂରେଜମାନଙ୍କୁ ଫେରାଇ ଦେବେ । ରାଣୀଙ୍କର ଏପରି କଥା ଶୁଣି ଦାରୋଗା ରାଣୀଙ୍କ ଦେଇଥିବା ଚାକିରି ଅସ୍ୱୀକାର କରିଦେଲେ ।" ୨୫ ଜାନୁୟାରୀ ୧୮୫୮ ମସିହାରେ ଆଉ ଏକ ରିପୋର୍ଟରେ କୁହାଯାଇଛି ଯେ "ଯଦି ତାଙ୍କର ଦୂତ (ରାଣୀ ପଠାଇଥିବା) ସହ ଉଚିତ ଓ ଭଲ ବ୍ୟବହାର କରାଯିବ ତ ରାଣୀ ଇଂରେଜମାନଙ୍କର କୌଣସି ପ୍ରକାର କାର୍ଯ୍ୟର ବିରୋଧ କରିବ ନାହିଁ । ବ୍ରିଟିଶ୍ ସରକାରଙ୍କର ଆଦେଶ ମାନି ରହିବେ ଓ ତାଙ୍କ ଅଧିକାରରେ ଯେଉଁ ଇଲାକା ଅଛି ତାକୁ ବି ସେ ଫେରାଇ ଦେବେ । ଏତେ ସବୁ ପରେ ଯଦି ବ୍ରିଟିଶ୍ ଅଧିକାରୀମାନେ ଅସନ୍ତୁଷ୍ଟ ହୋଇ ବିରୋଧ ପ୍ରଦର୍ଶନ କରିବେ ତା'ହେଲେ ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ସେ ଯୁଦ୍ଧ କରିବେ । ୪ ଫେବୃୟାରୀ ୧୮୫୮ରେ ଏକ

ଅନ୍ୟ ରିପୋର୍ଟରେ କୁହାଗଲା ଯେ ଇଂରେଜମାନଙ୍କ ସହ ଲଢ଼ିବାର ରାଣୀଙ୍କର ଉଦ୍ଦେଶ୍ୟ ନ ଥିଲା । ଏଭଳି ସାଧାରଣରେ ଚର୍ଚ୍ଚା ହୁଏ, ଭୈୟାଦିୱାନଙ୍କୁ ରାଣୀ ସାଗରସ୍ଥିତ ଇଂରେଜ ଅଧିକାରୀଙ୍କ ପାଖକୁ ପଠାଇଛନ୍ତି, କିନ୍ତୁ ସାଂପ୍ରତିକ ଘମାଘୋଟ ଲଢ଼େଇରୁ ଯେଉଁମାନଙ୍କୁ ଲାଭ ମିଳିଥିଲା, ସେମିତି କିଛି ଠାକୁର ଓ ପଣ୍ଡିତ ତାଙ୍କୁ ବିପରୀତ ବୁଦ୍ଧି ଦେଉଛନ୍ତି ।''(Rani Laxmibai of Jhansi, ଏସ୍.ଏନ୍. ସିହ୍ନା, ୧୯୮୦, ପୃଷ୍ଠା–୬୪–୬୫)

୧୧ ଫେବୃୟାରୀ ୧୮୫୮ରେ ଲର୍ଡ଼ ଡେଲହାଉସୀଙ୍କ ସ୍ଥାନରେ ନିଯୁକ୍ତ ଗଭର୍ଣ୍ଣର ଜେନେରାଲ ଲର୍ଡ଼ କ୍ୟାନିଂ ସାର ରବର୍ଟ ହେମିଲ୍ଟନଙ୍କୁ ପତ୍ର ଲେଖି ସୂଚିତ କରିଥିଲେ ଯେ ''ଯଦି ଝାନ୍‌ସୀର ରାଣୀ ବ୍ରିଟିଶ୍ ସୈନିକମାନଙ୍କ ଦ୍ୱାରା ବନ୍ଦୀ ହେବେ ତା'ହେଲେ ତାଙ୍କ ଉପରେ ମକଦ୍ଦମା ଚାଲିବ । ଦରକାର ହେଲେ ତାଙ୍କର କୋର୍ଟ ମାର୍ଶଲ କରାଯିବା ଉଚିତ । ଯଦି ଏମିତି କରିବା ସମ୍ଭବ ନୁହେଁ, ତା'ହେଲେ ବିଶେଷ କମିଶନ ବସାଇ ତାଙ୍କ ଉପରେ ମକଦ୍ଦମା ଚଳାଇବା ଉଚିତ ହେବ ।''

ଯଦି କୌଣସି କାରଣରୁ ତୁରନ୍ତ ତାଙ୍କ ଉପରେ ମକଦ୍ଦମା ଚଳାଇବା ସମ୍ଭବ ହେବ ନାହିଁ ଓ ଯଦି ଝାନ୍‌ସୀର ଆଖପାଖରେ ତାଙ୍କୁ ନଜରବନ୍ଦୀ ରଖିବା ବି ସମ୍ଭବ ହେବ ନାହିଁ ତା'ହେଲେ ତାଙ୍କୁ ଆମ ପାଖକୁ ପଠାଇଦେବା ଉଚିତ ହେବ । ତାଙ୍କ ଉପରେ ମକଦ୍ଦମା ଚଳାଇବା ପାଇଁ ଆମ ପାଖରେ ପର୍ଯ୍ୟାପ୍ତ ପ୍ରମାଣ ରହିଛି କି ନାହିଁ ସେ ସଂପର୍କୀୟ ଗତିବିଧିର ପୂର୍ଣ୍ଣ ସମୀକ୍ଷା ତାଙ୍କୁ ଏଠିକୁ ପଠାଯିବା ପୂର୍ବରୁ କରାଯିବା ଉଚିତ । ତାଙ୍କ ଗତିବିଧି ପୂର୍ଣ୍ଣ ଅନୁଧ୍ୟାନ କଲା ପରେ ତାଙ୍କ ଉପରେ ମକଦ୍ଦମା ଚଳାଇବା ସମ୍ଭବ କି ନାହିଁ ଯଦି ସେ ସଂପର୍କରେ ତିଳେମାତ୍ର ସନ୍ଦେହ ଥାଏ, ତା'ହେଲେ ତାଙ୍କୁ ଏଠାକୁ ପଠାଇବା ଉଚିତ ହେବ ନାହିଁ । ଯଥାସ୍ଥାନ ସେଇଠି ହିଁ ପରୀକ୍ଷା ନିରୀକ୍ଷା କରି ତଦନ୍ତ କରି ତାଙ୍କୁ ଉତ୍ତର ମାଗି ସେଇଠାରେହିଁ ନିର୍ଣ୍ଣୟ କରିଦେବା ଉଚିତ । ଆପଣ ଆବଶ୍ୟକ ପ୍ରମାଣ ଯୋଗାଡ଼ କରିବାକୁ ଚେଷ୍ଟା କରିବେ, ଏହାହିଁ ଆଶା କରୁଛି । ତା'ପରେ ତାଙ୍କ ସଂପର୍କରେ କ'ଣ ନିର୍ଣ୍ଣୟ ନିଆଯିବ ? ତାଙ୍କୁ କି ପ୍ରକାର ଦଣ୍ଡ ଦିଆଯିବ, ତା' ଉପରେ ହିଁ ଆଗକୁ ସବୁକିଛି ନିର୍ଭର କରେ ।

ଏହି ପତ୍ର ବିଷୟରେ ରାଣୀଙ୍କୁ କିଛି ସୁରାକ ମିଳିଥିଲା କି ନାହିଁ, ସେ ବିଷୟ କିଛି ଜଣାପଡ଼ିଲା ନାହିଁ । କିନ୍ତୁ ଜବଲପୁରର କମିଶନର ସେନାବାହିନୀ ସମେତ ତଦନ୍ତ କରିବାକୁ ଆସୁଛନ୍ତି । ଏ ଖବର ମିଳିଲା ପରେ ଭବିଷ୍ୟତ୍‌ରେ କ'ଣ କାର୍ଯ୍ୟପନ୍ଥା ଗ୍ରହଣ କରାଯିବ, ସେ ବିଷୟରେ ସେ ନିଶ୍ଚିତରୂପେ କଳ୍ପନା କରି ସାରିଥିଲେ ।

ବାତାବରଣରେ ଏହିପରି ଅସ୍ପଷ୍ଟତା, ଅବିଶ୍ୱାସ, ଅନିଶ୍ଚିତତା ଓ ଅସନ୍ତୋଷର ଭାବନା ପ୍ରବାହିତ ହେଉଥିବାବେଳେ ରାଣୀଙ୍କୁ ଇଂରେଜମାନଙ୍କ ତରଫରୁ କୌଣସି ପ୍ରକାରର ସାହାଯ୍ୟ ମିଳୁ ନ ଥିଲା । କୌଣସି ପ୍ରକାରର ଆଶ୍ୱାସନା ମିଳୁ ନ ଥିଲା । ଏଭଳି ପରିସ୍ଥିତି ମଧ୍ୟରେ ସାର୍ ହ୍ୟୁରୋଜ ନିଜର ବିଶାଳ ସେନା ସହ ଝାନ୍‌ସୀ ଦିଗକୁ ଅଗ୍ରସର ହୋଇସାରିଥିଲେ । ଏ ଖବର ବି ଝାନ୍‌ସୀରେ ପହଞ୍ଚିଗଲା ।

୧୪ ମାର୍ଚ୍ଚ ୧୮୫୮ରେ ରାଣୀ ନିଜର ସବୁ ସରଦାର ଅଧିକାରୀ, ପ୍ରଶାସକ ତଥା ଦରବାରୀମାନଙ୍କର ଏକ ଜରୁରିକାଳୀନ ବୈଠକ ଡକାଇଲେ । ବୈଠକରେ ରାଣୀ କହିଲେ ଯେ ଇଂରେଜ ଝାନ୍‌ସୀଆଡ଼କୁ ପ୍ରସ୍ଥାନ କରି ସାରିଛନ୍ତି । ଚନ୍ଦେରୀ, ଚରଖାରୀ ପର୍ଯ୍ୟନ୍ତ ସେମାନେ ପହଞ୍ଚିଗଲେଣି । ଗୋଟିଏ ଗୋଟିଏ ଇଲାକା ଅଧିକାର କରି କରି ସେମାନେ ଆଜି ନ ହେଲେ କାଲି ଝାନ୍‌ସୀ ଉପରେ ନିଜର ଡେରା ଜମାଇଦେବେ । ଇଂରେଜ ସେନା ସହ ଯୁଦ୍ଧ କରାଯିବ ନା ତାଙ୍କ ଆଗରେ ଆତ୍ମସମର୍ପଣ କରାଯିବ ଏହି ବିଷୟଟି ବିଚାରାଧୀନ ଥିଲା । କେତେ ଲୋକ କହୁଥିଲେ କି ଇଂରେଜମାନଙ୍କ ପାଖରେ ହ୍ୟୁରୋଜ, ବୀଟଲାକଙ୍କ ପରି ନିପୁଣ ଓ ୟୁରୋପରେ ଅନେକ ଯୁଦ୍ଧ ଜୟ କରିଥିବା ବୀର ସୈନିକ ଅଛନ୍ତି । ସାର୍ ରବର୍ଟ ହେମିଲ୍‌ଟନ୍ ପରି କୁଶଳ ରାଜନୀତିଜ୍ଞ ତାଙ୍କ ପାଖରେ ଅଛନ୍ତି । ତାଙ୍କର ବିଶାଳ ସେନାବାହିନୀ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ । ଗୋଟିଏ ପରେ ଗୋଟିଏ ବିଜୟ ହାସଲ କରି ଇଂରେଜ ସୈନିକ ଝାନ୍‌ସୀ ଦିଗକୁ ମାଡ଼ିଆସୁଛନ୍ତି । ଏମିତି ସୈନିକମାନଙ୍କ ସହ ଯୁଦ୍ଧ କରିବା ପାଗଳାମୀ ହେବ । ଇଂରେଜମାନଙ୍କୁ ବିରୋଧ କରିବାର ଅର୍ଥ ନିଜ ଗୋଡ଼ରେ ନିଜେ କୁରାଢ଼ି ମାରିଲାପରି ହେବ ।

ସଭାରେ କିଛି ଲୋକ ଏମିତି ବି କହୁଥିଲେ କି ଝାନ୍‌ସୀ ବହୁତ ପୁରୁଣା ସ୍ୱାଧୀନ ରାଜ୍ୟ । ଏହାର ନିଜର ପରମ୍ପରା ଅତି ଉଜ୍ଜ୍ୱଳ, ଇଂରେଜମାନେ ଥରେ ଏହାକୁ ନିଜ ଅଧୀନକୁ ନେଇ ଅନ୍ୟାୟ କରିଥିଲେ । ବହୁତ କଷ୍ଟରେ ସାହସ କରି ଆମେ ଏହାକୁ ପୁନର୍ବାର ହାସଲ କରିଛୁ । ଠାକୁର, ଗୋସାଇଁ, ସଦାଶିବ ରାଓ, ନଥେଖାନ୍ ଆଦିଙ୍କ ଦ୍ୱାରା ହୋଇଥିବା ଗୋଟିଏ ପରେ ଗୋଟିଏ ଆକ୍ରମଣରୁ ଆମେ ଝାନ୍‌ସୀକୁ ସୁରକ୍ଷିତ ରଖିଛୁ । ଏହାର ସ୍ୱତନ୍ତ୍ର ଅସ୍ତିତ୍ୱକୁ ବଞ୍ଚାଇ ରଖିଛୁ, ତା' ସହ ଆମେ ଇଂରେଜମାନଙ୍କ ସହିତ ଭଲ ସଂପର୍କ ବି ରଖିଛୁ । ଏ ସବୁ ସତ୍ତ୍ୱେ ଯଦି ଇଂରେଜ ସରକାର ଆମ ଉପରେ ଚଢ଼ଉ କରେ, ତା'ହେଲେ ତା'ର ପ୍ରତିକାର ନ କରି ତା'ର ଶରଣାଗତ ସ୍ୱୀକାର କରିବା ଆମ ପାଇଁ ଲଜ୍ଜାଜନକ ହେବ ଓ ଲାଞ୍ଛନୀୟ ହେବ । ଏବେ ଝାନ୍‌ସୀକୁ ଆମେ ଆମ ହାତରୁ ଯିବାକୁ ଦେବୁ ନାହିଁ । ଇଂରେଜମାନଙ୍କ ସହ କଡ଼ା ମୁକାବିଲା କରିବା କଥା ।

ରାଣୀ ଲକ୍ଷ୍ମୀବାଈଙ୍କ ମନକୁ ଏହି ପରାମର୍ଶ ନିଶ୍ଚୟ ପସନ୍ଦ ଆସିଥିବ । ଇଂରେଜମାନଙ୍କ ପାଖରେ ପୁଣି ଥରେ ଆତ୍ମସମର୍ପଣ କରିବାର ଅର୍ଥ ପୁଣି ଥରେ ପୂର୍ବ ସ୍ଥିତିକୁ ଫେରିଯିବାକୁ ପଡ଼ିବ । ପୁଣି ଥରେ ଅପମାନିତ ଓ ପରାଜିତ ଜୀବନ ବିତାଇବାକୁ ପଡ଼ିବ । ଛୋଟ ଛୋଟ କଥା ପାଇଁ ପୁଣି ଥରେ କଂପାନୀ ସରକାରର ମୁହଁକୁ ଅନେଇ ବସିବାକୁ ପଡ଼ିବ । ହାତଯୋଡ଼ି ଅନୁନୟ ବିନୟ କରିବାକୁ ପଡ଼ିବ । ସବୁଥର ପରି ନକାରାତ୍ମକ ଉତ୍ତର ଶୁଣିବାକୁ ପଡ଼ିବ । ଏଥରକ ତ ବିଦ୍ରୋହୀ ଓ ଇଂରେଜଙ୍କୁ ହତ୍ୟା କରିଥିବା ଝାନ୍‌ସୀ ଉପରେ ପ୍ରତିଶୋଧର ଭାବନା ସହ ଇଂରେଜମାନେ ଆକ୍ରମଣ କରିବାକୁ ଆସୁଛନ୍ତି । ଏମିତି ସମୟରେ ଯଦି ଆମେ ଆତ୍ମସମର୍ପଣ କରିଦେବା ତା'ହେଲେ ଝାନ୍‌ସୀର

ସମ୍ମାନରେ କଳାଦାଗ ଲାଗିଯିବ । ଲୋକମାନଙ୍କ ସାମନାରେ ଏକ ଭୟାନକ ଚିତ୍ର ଉପସ୍ଥିତ ହୋଇଯିବ । ତା'ଠାରୁ ଭଲ ହେବ କି ଇଂରେଜଙ୍କ ସହ ଯୁଦ୍ଧ କରାଯାଉ ଏହି ଶ୍ରେୟସ୍କର ଓ ଏଥିରେ ଆତ୍ମସମ୍ମାନ, ସ୍ୱାଭିମାନ ଅଛି । ବିଜୟ ମିଳିବ ତ ଜୀବନ ସାର୍ଥକ ହୋଇଯିବ, ପରାଜୟ ହେବ ତ ଯୁଦ୍ଧଭୂମିରେ ମରିବାର ସୌଭାଗ୍ୟ ମିଳିବ । ଶହୀଦ ଜୀବନର ସାର୍ଥକତା ମିଳିବ । ଏହିସବୁ କଥା ଭାବି ରାଣୀ ଯୁଦ୍ଧର ସାମନା କରିବାକୁ ନିର୍ଣ୍ଣୟ ନେଲେ । ଏପର୍ଯ୍ୟନ୍ତ ହୃଦୟ ଭିତରେ ଯେଉଁ ସ୍ୱପ୍ନକୁ ସାଇତି ରଖିଥିଲେ ବର୍ତ୍ତମାନ ତାହା ପ୍ରତ୍ୟକ୍ଷ ଭାବରେ କ୍ରିୟାନ୍ୱିତ କରିବାର ସୁଅବସର ନିଜେ ନିଜେ ଆସିଛି । ତାକୁ ହରାଇବା ଉଚିତ ହେବ ନାହିଁ । ଏକାଥରେ ଏଭଳି ନିର୍ଣ୍ଣୟ ନେଇ ନେଲା ପରେ ଏକାଗ୍ର ମନରେ ରାଣୀ ଯୁଦ୍ଧର ସବୁପ୍ରକାର ପ୍ରସ୍ତୁତି ଆରମ୍ଭ କରିଦେଲେ । ସଂପୂର୍ଣ୍ଣ ଦକ୍ଷତା ଓ ହିମ୍ମତର ସହ ରାଣୀ ଅଣ୍ଟା ଭିଡ଼ି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଇଗଲେ ।

ବିଷ୍ଣୁଭଟ୍ଟ ଗୋଡ୍‌ସେ 'ମାଝାପ୍ରବାସ'ରେ ଲେଖିଛନ୍ତି "ଶତ୍ରୁର ନାଶ ହେଉ, ରାଜ୍ୟର ପ୍ରଶାସନ ଉଚିତ ଢଙ୍ଗରେ ଚାଲିଥାଉ, ଏଥିପାଇଁ ରାଣୀ ନୂଆ ନୂଆ ପୂଜା ଅନୁଷ୍ଠାନ ଆରମ୍ଭ କରିଦେଲେ । ମହାଲକ୍ଷ୍ମୀ ମନ୍ଦିରରେ ପ୍ରତିଦିନ ନବଚଣ୍ଡୀ ପାଠର ବ୍ୟବସ୍ଥା କରାଗଲା । ଗ୍ରହଶାନ୍ତି ପାଇଁ ଜପ-ତପ ଓ ଦାନ ଦେବା ବ୍ୟବସ୍ଥା କରାଗଲା । ଗଣେଶ ମନ୍ଦିରରେ ରୋଜ ଅଭିଷେକର ଆୟୋଜନ କରାଗଲା ।"

ବିଷ୍ଣୁଭଟ୍ଟ ଆହୁରି ଲେଖିଛନ୍ତି "ଏବେ ଏଠାରେ ଲଢ଼େଇ ହେବାର ଅଛି, ସେଥିପାଇଁ ଯୁଦ୍ଧ ପ୍ରସ୍ତୁତିରେ ସମସ୍ତେ ଲାଗିଗଲେ । ଗୋଳା-ବାରୁଦ ନୂଆ ଉପାୟରେ ତିଆରି କରିବାପାଇଁ ଲାଲୁ ବକ୍ସୀଙ୍କୁ ନିଯୁକ୍ତ କରାଗଲା । ସେବକ ମଧ ସେତିକି ନିଯୁକ୍ତି ପାଇଲେ ଯେତିକି ସଂଖ୍ୟାରେ ସେନାବାହିନୀରେ ଲୋକ ଭର୍ତ୍ତି କରାଯାଇଥିଲା ।"

ଏହାର ଅର୍ଥ ହେଲା ସବୁ ତରଫରୁ ଯୁଦ୍ଧ ପ୍ରସ୍ତୁତି ଆରମ୍ଭ ହୋଇ ଯାଇଥିଲା । କୌଣସି ଦିଗରୁ ଯେମିତି କିଛି ବି ଊଣା ନ ହୁଏ, ସେଥିପାଇଁ ବହୁତ ସତର୍କତା ଅବଲମ୍ୱନ କରାଗଲା । ଦିଲ୍ଲୀ, କାନପୁର, ଲକ୍ଷ୍ନୌ, କାଲ୍ପୀ, ବିଠୁରର ଗତିବିଧିର ସମାଚାର ବରାବର ମିଳୁଥିଲା । ଇଂରେଜମାନେ ବିଦେଶରୁ ସୈନ୍ୟ ମଗେଇ ମୁମ୍ବଇରେ ଆଣି ରଖି ଦେଇଥିଲେ । ସିନ୍ଧେ, ହୋଲକର, ଗାୟକୱାଡ଼, ଘୋରପଡ଼େ ଆଦି ସରଦାରମାନଙ୍କ ସାହାଯ୍ୟ ଇଂରେଜମାନେ ନେଇଥିଲେ । ମୁମ୍ବଇରୁ କ୍ୟାପ୍‌ଟେନ୍ ସାହେବ ଗୋରା ପଲଟଣ ନେଇ ଆନଦେଶ, ସାତପୁଡ଼ା ହୋଇ ଉଗ୍ରବାଦୀ ଭିଲ୍‌ଙ୍କ ବନ୍ଦୋବସ୍ତ କରି, ତାଙ୍କ ଉପରେ ବିଜୟ ପ୍ରାପ୍ତ କରି ମହୁ, ଇନ୍ଦୋରଯାଏ ପହଁଚି ଗଲେଣି; ଏ ଖବର ବି ରାଣୀଙ୍କ ପର୍ଯ୍ୟନ୍ତ ପହଞ୍ଚି ସାରିଥିଲା ।

## ଗୋଟିଏ ଝଡ଼ର ଆରମ୍ଭ

ଝାନ୍‌ସୀର ପଶ୍ଚିମ କ୍ଷେତ୍ରରେ ବେତୱା (ବେତ୍ରବତୀ) ନଦୀ ନିକଟରେ ଅବସ୍ଥିତ ବାଣପୁର ଏକ ଛୋଟ ରାଜ୍ୟ । ସେଠାକାର ରାଜା ମର୍ଦାନ ସିଂହ ଇଂରେଜମାନଙ୍କର ଶତ୍ରୁ ଥିଲେ ।

ସେ ବିଦ୍ରୋହୀ ସିପାହିମାନଙ୍କୁ ନିଜ ରାଜ୍ୟରେ ଆଶ୍ରୟ ଦେଇଥିଲେ । ଯଥେଷ୍ଟ ପରିମାଣରେ ହତିଆର ବି ଜମା କରି ରଖିଥିଲେ । ମର୍ଦାନ ସିଂହ ବୁଝିପାରୁଥିଲେ ଦିନେ ନା ଦିନେ ଇଂରେଜମାନଙ୍କ ସହ ଯୁଦ୍ଧ ହେବାର ସମ୍ଭାବନା ଅଛି । ଏହି ଯୁଦ୍ଧ ସମୟରେ ଗାଁର ଲୋକମାନଙ୍କୁ ନରସଂହାରରୁ ରକ୍ଷା କରିବାକୁ ସେ ଗାଁବାଲାଙ୍କୁ ପରିବାର ସହ ଅନ୍ୟ କେଉଁଠିକୁ ଚାଲିଯିବାକୁ ହୁକୁମ ଦେଲେ । ସେ ଗାଁବାଲାଙ୍କୁ କହିଲେ ଏଠି ଯୁଦ୍ଧ ନିଶ୍ଚୟ ହେବ, ସେଥିପାଇଁ ସେମାନେ ବାଣପୁରରେ ନ ରହିବା ଭଲ । ସେ ନିଜେ ପରିବାର ସହ ଆବଶ୍ୟକ ଧନସମ୍ପତ୍ତି ନେଇ ଝାନ୍ସୀ ପଳେଇ ଆସିଲେ । ମର୍ଦାନ ସିଂହ ଲକ୍ଷ୍ମୀବାଈଙ୍କ ସହ ଦେଖାକଲେ । ଝାନ୍ସୀରେ ଏକ ଉଆସରେ ସବୁ ବନ୍ଦୋବସ୍ତ କରିଦେଇ ନିଜ ପରିବାରର ଲୋକଙ୍କୁ ନିରାପଦରେ ରଖାଇ ଦେଇ ସେ ପୁଣି ବାଣପୁର ଫେରିଗଲେ । ସେ ଲକ୍ଷ୍ମୀବାଈଙ୍କୁ ନିଜ ସାନଭଉଣୀ ଭାବୁଥିଲେ । ରାଣୀ ତାଙ୍କୁ ନିଜ ଭାଇ ପରି ଭାବୁଥିଲେ ।

ମର୍ଦାନ ସିଂହଙ୍କ ଅନୁମାନ ସତ ହେଲା । ଇଂରେଜ ସେନା ବାଣପୁରରେ ପହଞ୍ଚିଗଲେ । ସାତଦିନଯାଏ ଘମାଘୋଟ ଲଢ଼ାଇ ହେଲା । ଶେଷରେ ମର୍ଦାନ ସିଂହଙ୍କୁ ଇଂରେଜଙ୍କ ବିଶାଳ ସେନାବାହିନୀ ଆଗରେ ପରାଜୟ ସ୍ୱୀକାର କରିବାକୁ ପଡ଼ିଲା ।

ଏହି ସମୟରେ ମର୍ଦାନ ସିଂହ ଓ ରାଣୀ ଲକ୍ଷ୍ମୀବାଈଙ୍କ ଭିତରେ ଲଗାତାର ପତ୍ରାଳାପ ଚାଲିଥିଲା । ଦୁଇଜଣଙ୍କ ଭିତରେ ବିଚାର-ବିମର୍ଶ ଚାଲିଥିଲା । ପରସ୍ପର ସହ ଖବରର ଆଦାନ ପ୍ରଦାନ ବି ଚାଲିଥିଲା । ଲକ୍ଷ୍ମୀବାଈଙ୍କର ଗୋଟିଏ ଚିଠି ଗ୍ୱାଲିୟରର ବସ୍ତୁ ସଂଗ୍ରହାଳୟରେ ପଢ଼ିବାକୁ ମିଳିଥିଲା । କିନ୍ତୁ ଆଉ ଚିଠି ସଂଯୋଗବଶତଃ ମିଳି ଯାଇଥିଲା ।*

---

*ରାଣୀ ଲକ୍ଷ୍ମୀବାଈଙ୍କର କିଛି ପତ୍ର ବାଣପୁରର ବଂଶଜମାନଙ୍କ ପାଖରେ ଅଛି । ଏହି ଖବର ପାଇବାକ୍ଷଣି କିଛି ବର୍ଷ ପୂର୍ବରୁ ଝାନ୍ସୀ ବସ୍ତୁ ସଂଗ୍ରହାଳୟର ସଂଚାଳିକା ଶ୍ରୀମତୀ ପୁଷ୍ପା ଠକୁରେଲ ସଂଗ୍ରହାଳୟ ପାଇଁ ଏହି ଚିଠିଗୁଡ଼ିକୁ ପାଇବା ପାଇଁ ସବୁପ୍ରକାର ଚେଷ୍ଟା କଲେ । କିନ୍ତୁ ବାଣପୁର ରାଜା ସେହି ପତ୍ରଗୁଡ଼ିକୁ ଶ୍ରୀମତୀ ଠକୁରେଲଙ୍କୁ ଦେବାକୁ ମନା କରିଦେଲେ । ସେହି ଚିଠିଗୁଡ଼ିକୁ ଲକ୍ଷେ ଟଙ୍କା ଦେଇ କିଣିବା ପାଇଁ ମଧ୍ୟ କୁହାଗଲା । ସେହି ପ୍ରସ୍ତାବକୁ ମଧ୍ୟ ସେ ନାମଞ୍ଜୁର କରିଦେଲେ । ଏବେବି ସେହି ପତ୍ର ବାଣପୁରର ଟ୍ରେଜେରୀରେ ରଖାଯାଇଛି । ମତେ ଚିନ୍ତା ହେଲା କି କେମିତି ସେଇ ଚିଠିଗୁଡ଼ିକୁ ମୁଁ ପାଇବି । ସବୁ କିଛି ବାଣପୁର ରାଜାସାହେବଙ୍କ ଇଚ୍ଛା ଉପରେ ନିର୍ଭର କରୁଛି । କିନ୍ତୁ ସୌଭାଗ୍ୟବଶତଃ ଝାନ୍ସୀର ପ୍ରସିଦ୍ଧ ପତ୍ରକାର ଓ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଜାନକୀଶରଣ ବର୍ମାଙ୍କ ସହ ମୋର ଦେଖା ହୋଇଗଲା ଓ ସେ ଦୟାକରି ସେହି ଚିଠିଗୁଡ଼ିକର ପ୍ରତିଲିପି କରାଇ ମତେ ଦେଲେ । ଦତିଆର ବଂଶଧରଙ୍କ ପାଖରେ ଗଙ୍ଗାଧର ରାଓ ଓ ଲକ୍ଷ୍ମୀବାଈଙ୍କର ବିବାହ ନିମନ୍ତ୍ରଣପତ୍ର ବି ସୁରକ୍ଷିତ ଅଛି । ତାହାକୁ କେହି ଦେଖିବାକୁ ପାଆନ୍ତି ନାହିଁ । ତା'ର ଏକ ପ୍ରତିଲିପି ମଧ୍ୟ ମତେ ଶ୍ରୀଯୁକ୍ତ ବର୍ମା ଉପଲବ୍ଧ କରାଇଦେଲେ । ମୁଁ ତାଙ୍କର ଏହି ଋଣ କେବେ ଶୁଝିପାରିବି ନାହିଁ କି ଭୁଲିପାରିବି ନାହିଁ । ମୋ ଜାଣିବା ଅନୁସାରେ ଏହି ପତ୍ର ମରାଠୀ ଭାଷାରେ ପ୍ରଥମଥର ପାଇଁ ପ୍ରକାଶିତ ହେଉଛି ।

ପାଇଥିବା ୪ଟି ପତ୍ର ଆଧାରରେ କେତେଗୁଡ଼ିଏ ମହତ୍ତ୍ୱପୂର୍ଣ୍ଣ କଥା ସାମନାକୁ ଆସିଲା । ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କଥା ହେଲା ୫ ଜୁନ ୧୮୫୭ର ବିଦ୍ରୋହ ପରେ ଲକ୍ଷ୍ମୀବାଈ ଇଂରେଜମାନଙ୍କୁ ନିରନ୍ତର ପତ୍ର ପଠାଇ ତାଙ୍କୁ ଶ୍ରେଷ୍ଠତା ପ୍ରଦାନ କରି ନିଜକୁ କନିଷ୍ଠ ଭୂମିକାରେ ରଖୁଥିଲେ । ତାଙ୍କଠାରୁ ବାରମ୍ବାର ପଇସା ଓ ସୈନ୍ୟ ସାହାଯ୍ୟ ବି ମାଗୁଥିଲେ । ସେହି ସମୟରେ ସେ ବରାବର ବାଣପୁର ରାଜାଙ୍କ ସହ ବି ସଂପର୍କ ରଖୁଥିଲେ । ଏହି ପତ୍ରରେ ଗୋଟିଏ କଥା ସ୍ପଷ୍ଟ ହୁଏ ଯେ ତାଙ୍କ ମନରେ ଇଂରେଜମାନଙ୍କ ବିରୋଧରେ ଯୁଦ୍ଧ କରିବା ନିର୍ଣ୍ଣୟ ଦୃଢ଼ ଥିଲା । ମୋ ବିଚାରରେ ଭାରତରେ ବିଦେଶୀମାନଙ୍କ ଶାସନ ହେବା ଉଚିତ ନୁହେଁ । ଆମେ, ଆପଣ, ଶାହଗଡ଼ର ରାଜା, ନାନାସାହେବ ଓ ତାନ୍ତ୍ୟା ଟୋପେ ଆମେ ସମସ୍ତେ ଏହି ନିର୍ଣ୍ଣୟ ନେଇଛୁ ଯେ ସ୍ୱରାଜ ଆସିବା ଉଚିତ । ଭାରତ ଆମର ଦେଶ । ବିଦେଶୀମାନଙ୍କ ଗୋଲାମୀ କରିବା ଉଚିତ ନୁହେଁ । ସେଥିପାଇଁ ସେମାନଙ୍କ ସହ ଯୁଦ୍ଧ କରିବା ହିଁ ଠିକ୍ ହେବ । ଏହି ଶବ୍ଦରୁ ରାଣୀର ମାନସିକତା ଓ

---

ରାଣୀ ଲକ୍ଷ୍ମୀବାଈଙ୍କର ପତ୍ର ଯେତେବେଳେ ମତେ ମିଳିଲା ମୁଁ ବହୁତ ଖୁସି ହୋଇଗଲି ଓ ମନ ସନ୍ତୋଷ ହୋଇଗଲା । ମତେ ଏମିତି ଲାଗିଲା ଯେମିତିକି କେଉଁ ଅଦ୍‌ଭୁତ ପୋତାଧନ ମତେ ମିଳିଗଲା । ତା' ସତ୍ତ୍ୱେ ବି ଗୋଟିଏ ସନ୍ଦେହ ମନରେ ଦେଖାଦେଲା । ଏସବୁ ପତ୍ର ଅସଲି ତ ? କିନ୍ତୁ ଜଣେ ଦାୟିତ୍ୱସଂପନ୍ନ ବ୍ୟକ୍ତି ମତେ ଏହି ପତ୍ର ଦେଇଥିବାରୁ ତାଙ୍କ ବିଶ୍ୱସ୍ତତା ଉପରେ ପ୍ରଶ୍ନ ଉଠାଇବା ଉଚିତ ହେବ ନାହିଁ । ଏଇଆ ଭାବି ମୁଁ ତା' ଉପରେ ଆଉ ଅଧିକ ଚର୍ଚ୍ଚା କଲି ନାହିଁ । କିନ୍ତୁ ଟିକିଏ ଯାଞ୍ଚ କଲା ପରେ ମୁଁ ଦେଖିଲି ଯେ ପତ୍ରରେ ଲେଖାଯାଇଥିବା ଭାଷା ଗ୍ୱାଲିୟର ବସ୍ତୁ ସଂଗ୍ରହାଳୟରେ ରଖାଯାଇଥିବା ପତ୍ରର ଭାଷା ସହ ମିଶିଯାଉଛି । କେବଳ ଗୋଟିଏ ଶବ୍ଦ ପାଖରେ ମୋ ମନରେ ଟିକିଏ ଖଟ୍‌କା ଲାଗିଥିଲା । ସେ ଶବ୍ଦଟି ଥିଲା ଭାରତ । ସେହି ସମୟର ଅଫିସରେ, ଚିଠିପତ୍ରରେ ହିନ୍ଦୋସ୍ଥା, ହିନ୍ଦୋସ୍ଥାନ ଆଦି ଶବ୍ଦ ସାଧାରଣ ଭାବେ ପ୍ରୟୋଗ କରାଯାଉଥିଲା । ତା' ହେଲେ ଲକ୍ଷ୍ମୀବାଈ 'ଭାରତ' ଶବ୍ଦର ପ୍ରୟୋଗ କାହିଁକି କରିଛନ୍ତି, ଏହି ପତ୍ରଟିକୁ ଆଉ କେହି ପରେ ଲେଖି ରଖିଦେଇନି ତ ? ଏମିତି ଏକ ସନ୍ଦେହ ମନରେ ଉଙ୍କି ମାରିଲା । କିନ୍ତୁ ପରେ ଲାଗିଲା କି ଏହି ପତ୍ର ଉର୍ଦ୍ଦୁରେ ନ ହେଇ ବୁନ୍ଦେଲଖଣ୍ଡି ଭାଷାରେ ଅଛି । ତା'ଛଡ଼ା 'ହିନ୍ଦୋସ୍ଥାନ' ଶବ୍ଦର ପ୍ରୟୋଗ ନିଶ୍ଚିତରୂପେ ନର୍ମଦା ନଦୀର ଉତ୍ତର ଦିଗକୁ ଇଲାକାଗୁଡ଼ିକ ପାଇଁ କରାଯାଉଥିଲା । ନର୍ମଦା ନଦୀର ଦକ୍ଷିଣ ଦିଗରେ ଥିବା କ୍ଷେତ୍ରକୁ 'ଦକ୍କନ' କୁହାଯାଇଥିଲା । ଲକ୍ଷ୍ମୀବାଈଙ୍କ ପତ୍ରରୁ ଜଣାପଡୁଥିଲା କି ଦକ୍ଷିଣର ଲୋକମାନଙ୍କ ସହ ବି ନାନାସାହେବଙ୍କର ବରାବର ସଂପର୍କ ଥିଲା ଓ ଉତ୍ତରର ଲୋକମାନଙ୍କ ପରି ଦକ୍ଷିଣର ଲୋକମାନେ ବି ବିଦେଶୀମାନଙ୍କୁ ଦୂର କରିବାର ନିର୍ଣ୍ଣୟ ନେଇ ସାରିଥିଲେ । ସେଥିପାଇଁ 'ଭାରତ' ଶବ୍ଦର ପ୍ରୟୋଗ ସଂପୂର୍ଣ୍ଣ ଦେଶପାଇଁ ପ୍ରାଚୀନ କାଳରେ ପ୍ରୟୋଗ କରାଯାଉଥିବା ଶବ୍ଦକୁ ଲକ୍ଷ୍ମୀବାଈ ବି ପ୍ରୟୋଗ କରିଥିଲେ । ତା'ଛଡ଼ା ଇଂରେଜମାନଙ୍କ ପାଇଁ ପ୍ରୟୋଗ ହେଉଥିବା ରୂଢ଼ ଶବ୍ଦ 'ଫିରଙ୍ଗୀ' ବଦଳରେ 'ବିଦେଶୀୟ' ଶବ୍ଦର ପ୍ରୟୋଗ କରିଛନ୍ତି ।

ଦୃଢ଼ସଂକଳ୍ପ ବିଷୟରେ ଜଣାଯାଏ । ଏହି ଯୁଦ୍ଧର ପ୍ରସ୍ତୁତି ସେ ସ୍ୱୟଂ ନିଜ ଦେଖାରଖାରେ କରୁଥିଲେ । ସିଆଡ଼େ ବାଣପୁରର ରାଜା ବି ତୋପ, ଗୋଳାବାରୁଦ ପ୍ରସ୍ତୁତ କରୁଥିଲେ । ସେନାବାହିନୀର ପ୍ରସ୍ତୁତିର ଖବର ବିଦେଶୀମାନଙ୍କ ପାଖରେ ନ ପହଞ୍ଚୁ ସେଥିପ୍ରତି ସତର୍କ ଦୃଷ୍ଟି ରଖିବାକୁ ରାଣୀ ଜୋର ଦେଉଥିଲେ । ଏହାଛଡ଼ା ବାଣପୁରର ରାଜାଙ୍କ ସହ ଶାହଗଡ଼ର ରାଜା, ନାନାସାହେବ ପେଶୱା, ତାନ୍ତ୍ୟା ଟୋପେ ଏ ସମସ୍ତେ ଏକାଠି ହୋଇ ନିଜ ନିଜ ଭିତରେ ବିଚାର ବିମର୍ଶ କରିଥିଲେ । ଏହି କଥା ବି ପତ୍ରରୁ ପ୍ରକଟ ହୁଏ ।

କିନ୍ତୁ ଏହି ସମସ୍ତ ଚେଷ୍ଟା ଅଧା ରହିଗଲା । ବାଣପୁର ରାଜାଙ୍କର ପରାଜୟ ହେବା ପରେ ରାଜା ବେତୱା ନଦୀ କୂଳରେ ଲାଗିଥିବା ପାହାଡ଼ ଉପରେ ଯାଇ ରହିଲେ । ରାଣୀଙ୍କୁ ନିଜ ଭବିଷ୍ୟତ୍ ଚିନ୍ତା ଖାଇବାରେ ଲାଗିଲା । ସେ ବୁଝି ସାରିଥିଲେ ଭବିଷ୍ୟତ୍‌ରେ ତାଙ୍କୁ କ'ଣ ପରଖାଯିବ । ସେହି ଅନୁସାରେ ଯୁଦ୍ଧ ସାମଗ୍ରୀର ସମସ୍ତ ବନ୍ଦୋବସ୍ତ, ବିଜୟ ପାଇଁ ମନ୍ଦିରରେ ପୂଜାଅର୍ଚ୍ଚନା, ସିପାହିମାନଙ୍କ ସହ ଗରିବଙ୍କ ପାଇଁ ଭୋଜନ ବ୍ୟବସ୍ଥା, ଖର୍ଚ୍ଚ କରିବାକୁ ଧନସମ୍ପତ୍ତିର କମ ନ ହେଉ ସେଥିପାଇଁ ରାଣୀ ରାଜମହଲର ସୁନାରୁପା ବାସନ ବିକିଦେଲେ ଓ ସେଥିରୁ ଯେଉଁ ରାଶି ମିଳିଲା, ତାକୁ ସରକାରୀ ଭଣ୍ଡାରରେ ଜମା କରିଦେଲେ । ଅର୍ଥାତ୍ ସବୁପ୍ରକାର ପ୍ରସ୍ତୁତି ଆରମ୍ଭ କରିଦେଲେ ।

ଏହି ସମୟରେ ବାଣପୁରର ରାଜା ପାହାଡ଼ ପର୍ବତରେ ଘୁରି ବୁଲୁଥିଲେ । ସେତିକିବେଳେ ଝାନ୍‌ସୀରୁ ଗ୍ୱାଲିୟର ଯାଉଥିବା ପତ୍ରବାହକ ସାଙ୍ଗରେ ଦେଖା ହୋଇଗଲା । ମର୍ଦାନ ସିଂହ ବଡ଼ ଚାଲାକିରେ ସେ ଲୋକଠାରୁ ଚିଠି ନେଇଗଲେ । ସେହି ଚିଠି ପଢ଼ିବା ପରେ ତାଙ୍କୁ ଜଣାପଡ଼ିଲା ଯେ ଝାନ୍‌ସୀର ଜଣେ ସରଦାର ଗ୍ୱାଲିୟରର ଜଣେ ସରଦାରଙ୍କୁ ଝାନ୍‌ସୀ ଦୁର୍ଗକୁ ଅଧିକାର କରିବା କେମିତି ସମ୍ଭବ ହେବ ତାହାର ଗୁପ୍ତ ସୂଚନା ପଠାଇଛି । ଏହାର ଅର୍ଥ ହେଲା ଏକ ବିଶ୍ୱାସଘାତୀ କାରଣରୁ ଝାନ୍‌ସୀ ଶତ୍ରୁ ହାତରେ ପଡ଼ିଥାନ୍ତା । ସେହି ଚିଠିକୁ ନେଇ ମର୍ଦାନସିଂହ ଝାନ୍‌ସୀ ଗଲେ ଓ ଲକ୍ଷ୍ମୀବାଈଙ୍କୁ ପତ୍ର ଦେଖାଇ ପରାମର୍ଶ ଦେଲେ । ଯୁଦ୍ଧ ଏବେ ଅଟଳ ନିଶ୍ଚୟ । ଏଥିପାଇଁ ଏହି ପତ୍ରର ଖୋଳତାଡ଼ କରିବସିବା

---

ସେହି କାରଣରୁ 'ହିନ୍ଦୋସ୍ଥା' ଜାଗାରେ ସେ 'ଭାରତ' ଶବ୍ଦର ପ୍ରୟୋଗ କରିଥିବେ । ଏହି କଥାର ପ୍ରମାଣ ବି ମିଳିଯାଉଛି । ବାଣପୁର ଅଫିସରୁ ଯେଉଁ ପତ୍ର ପ୍ରକାଶ କରାଯାଇଛି ତାହା ମଧ୍ୟ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ । ବାଁଦା, ଶାହଗଡ଼, ଜଗଦୀଶପୁର, ଦତିଆ, ଓରଛା, ଚାରଖାରୀ, ଚନ୍ଦେରୀ, ଲଳିତପୁର ପରି ରାଜ୍ୟରେ ଏହି ପତ୍ରକୁ ଖୋଜିବା ଆବଶ୍ୟକ । ଅନ୍ୟ ସରଦାର ଜାଗିରଦାରମାନଙ୍କ କଚେରି (ଅଫିସ୍)ରେ ବି ଏଗୁଡ଼ିକୁ ଖୋଜିବା ଉଚିତ । ସେଠାରେ ବି କେତେ କାଗଜପତ୍ର ବନ୍ଧା ହୋଇ ରଖା ହୋଇଥିବ । ଯଦି ସେହି ପତ୍ର ମିଳିଯିବ, ତା'ହେଲେ ସେଥିରୁ ୧୮୫୭ ଯୁଦ୍ଧ ସଂପର୍କରେ ଅନେକ ଉପଯୋଗୀ ସାମଗ୍ରୀ ମିଳିପାରିବ ଓ ଗୋଟିଏ ସ୍ପଷ୍ଟ ଚିତ୍ର ସାମନାକୁ ଆସିପାରିବ । କିନ୍ତୁ ସେଥିପାଇଁ ପରିଶ୍ରମ ଓ ଅନୁସନ୍ଧାନ ଆବଶ୍ୟକ ।

ଅପେକ୍ଷା ନିଜର ସମସ୍ତ ଧନସମ୍ପତ୍ତି ଓ ସୈନିକ ଧରି ଶ୍ରୀମାନ ପେଶୱାଙ୍କ ପାଖକୁ କାଲ୍ପୀ ଯିବା ହିଁ ଉପଯୁକ୍ତ ହେବ ।*

ରାଣୀ ଲକ୍ଷ୍ମୀବାଈଙ୍କୁ ତାଙ୍କ ପରାମର୍ଶ ଭଲ ଲାଗିଲା ନାହିଁ । ତାଙ୍କ କହିବା କଥା ଏବେଯାଏ ଯୁଦ୍ଧ ହେବ ନାହିଁ ଭାବି ଆମେ ପ୍ରସ୍ତୁତି କରୁଥିଲେ । ଏ ସଂପର୍କରେ ଆମେ ପେଶୱାମାନଙ୍କ ସହ କୌଣସି କଥାବାର୍ତ୍ତା ବା ଚିଠିପତ୍ର ଦେବାନେବା କରି ନାହୁଁ । ମୁଁ କାହାର ଝିଅ, କାହାର ବୋହୂ ଏକଥା ବିଚାର ନ କରି କାଲ୍ପୀ ଯିବା ଏକପ୍ରକାର ଜୀବନ ଭୟରେ ଆତ୍ମସମର୍ପଣ କରିବା ପରି ଲାଗିବ । ସେଥିପାଇଁ ସେଠାକୁ ଯିବାକୁ ମତେ ଉଚିତ ଲାଗୁ ନାହିଁ । ଦ୍ୱିତୀୟ କଥା ହେଲା ସେଠାରେ ସବୁ ପୁରୁଷ ଲୋକ ଅଛନ୍ତି । ବରଂ ମୁଁ ଏଇଆ ଭାବୁଛି ଯେ ସବୁ ଲୋକଙ୍କୁ ଓ ଅଧିକାରୀମାନଙ୍କୁ ଏଠାକୁ ଡକାଇ ସଭା କରି ଏହି ପତ୍ର ଉପରେ ବିଚାର କରି ଏ ସଂପର୍କରେ ଲୋକଙ୍କଠାରୁ ଶପଥ ନେବାକୁ କହିବା ଓ ପୁଣି ଯାହା କରିବାକୁ ହେବ ସେମିତି ନିର୍ଣ୍ଣୟ ନେବା । (ମାଝାପ୍ରବାସ, ପୃଷ୍ଠା ୧୭୯)

ଏହା ଉପରେ ମର୍ଦାନ ସିଂହଙ୍କର କହିବାର ଥିଲା ଯେ "ଯିଏ ଧୋକାବାଜୀ କରିଛି ସିଏ ସହଜରେ ଏହି କଥା ସ୍ୱୀକାର କରିବ ନାହିଁ । ଭବିଷ୍ୟତ୍‌ରେ ଆପଣଙ୍କୁ ମୋ କଥା ମନେପଡ଼ିବ । ଭବିଷ୍ୟତ୍‌ରେ ଯାହା ଘଟିବାର ଅଛି ତାକୁ ବ୍ରହ୍ମଦେବ ବି ଟାଳି ପାରିବେ ନାହିଁ । ମୁଁ ନିଜ ପରିବାରକୁ ନେଇ ଯାଉଛି ।" ଏ କଥା ଶୁଣି ରାଣୀ କହିଲେ, "ଆପଣ ପରିବାର ନେଇ ଯାଇପାରନ୍ତି, କିନ୍ତୁ ତା' ପୂର୍ବରୁ ସବୁ ସରଦାରକୁ ଡାକି ଶିବଲିଙ୍ଗ ଉପରେ ରଖା ହେଇଥିବା ବେଲପତ୍ର ହାତରେ ଧରି ନିୟମ କରିବାକୁ କହିବି । ସେତେବେଳଯାଏ ଆପଣ ରହିଯାଆନ୍ତୁ ।" ନିଜ କଥା କହିସାରିଲା ପରେ ରାଣୀ ସମସ୍ତ ସରଦାର, ପଲଟଣର ଅଧିକାରୀ, ସୁବେଦାର ଓ ଅନ୍ୟ ସରକାରୀ ଅଧିକାରୀମାନଙ୍କୁ କିଲ୍ଲାରେ ଉପସ୍ଥିତ ହେବାକୁ ଆଦେଶ ଦେଲେ । ସମସ୍ତେ ନିଜ ନିଜ ପଦବୀ ଅନୁସାରେ ସେଠାରେ ଆସି ଉପସ୍ଥିତ ହେଲେ । ସହରର କିଲ୍ଲାର ରାସ୍ତା ପର୍ଯ୍ୟନ୍ତ ମଶାଲ ଜଳାଇ ଆଲୋକିତ କରାଗଲା । ବିଷ୍ଣୁଭଟ୍ଟ ଇତ୍ୟାଦି ଆଶ୍ରିତ ଲୋକେ କିଲ୍ଲାର ଗମ୍ବୁଜ ଉପରେ ବସି ତାମସା ଦେଖୁଥିଲେ । ସମସ୍ତେ ଆସି ଦରବାରରେ ବସିଲା ପରେ ଶିବଲିଙ୍ଗ ଆଣି ସଭା ମଝିରେ ରଖାହେଲା । ଶିବଲିଙ୍ଗ ଉପରେ ବେଲପତ୍ର ବି ରଖା ହୋଇଥିଲା । ମର୍ଦାନ ସିଂହ ପାଇଥିବା ପତ୍ରକୁ ସମସ୍ତଙ୍କୁ ପଢ଼ି ଶୁଣାଇଲେ ଓ କହିଲେ ଏଥିରୁ ସ୍ପଷ୍ଟ ଜଣାପଡୁଛି ଯେ ଆମମାନଙ୍କ ଭିତରୁ କେହି ଦଗାବାଜୀ କରିଛି । ତା' ସହ ସେ ପରାମର୍ଶ ଦେଲେ

---

*୧୫ ଡିସେମ୍ବର ୧୮୫୭ ଦିନ ବିଠୁର ଲଢ଼ାଇରେ ଇଂରେଜମାନେ ବିଠୁରକୁ ପୂରାପୂରି ଧ୍ୱସ୍ତ କରି ଦେଇଥିଲେ । ସେହି ସମୟରେ ନାନାସାହେବ ପେଶୱା ନିଜ ପରିବାର ସହ ବିଠୁର ଛାଡ଼ି ଗଙ୍ଗାପୁର ଚାଲିଯାଇଥିଲେ । ତା'ପରେ ନାନାସାହେବ ନେପାଳ ଚାଲିଗଲେ । ରାଓସାହେବ ଓ ତାନ୍ତ୍ୟା ଟୋପେ କାଲ୍ପୀ ଚାଲି ଯାଇଥିଲେ । ପେଶୱା ଯିବା ପରେ ଇଂରେଜମାନେ ଉଆସକୁ ସଂପୂର୍ଣ୍ଣ ଲୁଟି ନେଇଥିଲେ ଓ ପୁଣି ତାକୁ ଧ୍ୱଂସ କରି ଦେଇଥିଲେ ।

ଏବେ ସବୁ ସୈନିକ ଓ ସାମଗ୍ରୀ ନେଇ ପେଶୱାମାନଙ୍କ ପାଖକୁ କାଲ୍ପୀ ଅଭିମୁଖେ ପ୍ରସ୍ଥାନ କରନ୍ତୁ । ଏକଥା ଶୁଣି ଲାଲୁ ବକ୍ସୀ ଓ ଦୁଲାଜୀ ସିଂହ ସରଦାର କହିଲେ ଯେ ଝାନ୍ସୀ ରାଜ୍ୟ ବହୁତ ପ୍ରାଚୀନ । କିଲ୍ଲା ବି ବହୁତ ମଜବୁତ୍, ଲଢ଼ାଇ ପାଇଁ ପ୍ରସ୍ତୁତ । ଏଣୁ ଏହାକୁ ଛାଡ଼ି ପେଶୱାମାନଙ୍କ ଶରଣାଗତ ହେବା ଠିକ୍ ଲାଗୁ ନାହିଁ । ଯଦି ଆମମାନଙ୍କ ଭିତରୁ କେହି ସରଦାର ଦଗାବାଜ ତା'ହେଲେ ସେ ଆଗକୁ ଆସି ସବୁ କଥା ସ୍ୱୀକାର କରିବା ଉଚିତ । ତାକୁ ଜୀବନଦାନ ମିଳିବ । ଭବିଷ୍ୟତ୍‌ରେ ସେ ଏପରି ଦଗାବାଜୀ ଆଉ କରିବ ନାହିଁ, ଏମିତି ଶପଥ ତାକୁ କରିବାକୁ ହେବ । ତା'ହେଲେ କାହା ମନରେ ଆଉ କୌଣସି ସନ୍ଦେହ ରହିବ ନାହିଁ ।

ଦିୱାନ ଲକ୍ଷ୍ମଣ ରାଓ କହିଲେ "ଏପରି ଦଗାବାଜୀ କରି ନିଜର ସ୍ୱାର୍ଥ ସିଦ୍ଧି ତ କରାଯାଇପାରେ କିନ୍ତୁ ଏଥିରେ ଅନ୍ୟମାନଙ୍କର ବହୁତ କ୍ଷତି ହେବ ଓ ଜୀବନ ବି ଯିବ । ସେଥିପାଇଁ ଏମିତି ଅବାଟ ତ୍ୟାଗ କରିବାପାଇଁ ଶପଥ କରିବା ଉଚିତ । ତା'ହେଲେ ସମସ୍ତଙ୍କ ମନ ସ୍ୱଚ୍ଛ ଓ ନିର୍ମଳ ହେଇପାରିବ ।" ତାହା ପରେ ରାଣୀ ଲକ୍ଷ୍ମୀବାଈ ସମସ୍ତଙ୍କୁ ସଂବୋଧିତ କରି କହିଲେ, "ମୁଁ ଏକ ନାରୀ, ତା' ପରେ ଏକ ବିଧବା, ପୂରାପୂରି ପ୍ରୌଢ଼ା ଓ ମୁଁ କାହାର ବୋହୂ ଏ ବିଚାର ବି ମନକୁ ଆଣିବା ଜରୁରି । ଏବେ ଆମେ ଏଠାରୁ ବାହାରି କାଲ୍ପୀରେ ପୁରୁଷମଣ୍ଡଳୀର ଶରଣ ପଶିବା ଅପେକ୍ଷା ବରଂ ଭଲ ହେବ ଆମେ ଏଇଠି ରହିବା, ପରିଣାମ ଯାହା ହେଉଛି ହେଉ । ଏବେ ପେଶୱା ଆମର ଯଜମାନ । ତେଣୁ ତାଙ୍କ ପାଖକୁ ଦୂତ ପଠାଇ ଆମେ ତାଙ୍କର ସାହାଯ୍ୟ ମାଗିପାରିବା । ତା'ହେଲେ ଇଂରେଜମାନଙ୍କ ଉଦ୍ଦେଶ୍ୟକୁ ସଫଳ ହେବାକୁ ଦେବା ନାହିଁ । ଏମିତି ସୂଚନା ଆମକୁ ପଠାଇବାର ଅଛି । ଏଠି ଯୁଦ୍ଧ ଆରମ୍ଭ ହେଇଗଲେ ସେମାନେ ଯୁଦ୍ଧ ପାଇଁ ସ୍ୱତନ୍ତ୍ର ଭାବରେ ଆସିବା ହିଁ ଉଚିତ ହେବ । ଏମିତି ଉପାୟ ଦିୱାନଜୀଙ୍କୁ କରିବାକୁ ହେବ । ଏହି ଅବସରରେ ଯଦି କାହା ମନରେ କପଟ ଅଛି ତ ତାକୁ ଦୂର କରିବାକୁ ନିର୍ମଳ ଭାବରେ ଏହି ଶିବଲିଙ୍ଗ ଉପରେ ହାତ ରଖି ବେଲପତ୍ରକୁ ସ୍ପର୍ଶ କରିବା ଉଚିତ ।" ରାଣୀଙ୍କ କଥା ଶୁଣିଲା ପରେ ସବୁ ନୂଆ ପୁରୁଣା ସରଦାର, ସୁବେଦାର ବେଲପତ୍ର ସ୍ପର୍ଶ କରି ଶପଥ କଲେ । ସେହି ସମୟରେ ଦୁଲାଜୀ ସିଂହ ସରଦାର ବି ରାଣୀସାହେବାଙ୍କ ସାମନାରେ ବେଲପତ୍ର ସ୍ପର୍ଶ କରି ଶପଥ ନେଲେ ଓ ନିଜ ସ୍ଥାନରେ ଆସି ବସିଗଲେ । ତା'ପରେ ସଭା ବିସର୍ଜିତ କରି ଦିଆଗଲା । ପରେ ବାଣପୁରର ରାଜା ନିଜ ପରିବାର ନେଇ ଝାନ୍ସୀ ଛାଡ଼ି ଚାଲିଗଲେ । (ମାଝାପ୍ରବାସ, ପୃଷ୍ଠା–୮୧)

ବିଷ୍ଣୁଭଟ୍ଟ ଯେଉଁ ଦୁଲାଜୀ ସିଂହ କଥା ଉଲ୍ଲେଖ କରିଛନ୍ତି, ସେହି ଦୁଲାଜୀ ସିଂହ ହିଁ ବିଶ୍ୱାସଘାତକତା କଲା । ସେହି ହିଁ ଝାନ୍ସୀ ସହରର ସୀମା ଦୁଆର ଖୋଲି ହ୍ୟୁରୋଜର ସୈନିକଙ୍କୁ ଭିତରେ ପ୍ରବେଶ କରିବାର ସୁଯୋଗ ଦେଲା । ବସ୍ତାରେ ତୋପ ପାଇଁ ଆବଶ୍ୟକ ଗୋଳାବାରୁଦ ବଦଳରେ କୁଣ୍ଡା ଭରି ଦିଆଯାଇଥିଲା । ସେଥିରେ ବି ଦୁଲାଜୀର ହାତ ଥିଲା ବୋଲି କୁହାଯାଏ ।

ରାଣୀଙ୍କ ଆଗରେ ଏକ ଗମ୍ଭୀର ସମସ୍ୟା ଦେଖା ଦେଇଥିଲା । ଯୁଦ୍ଧର ଆରମ୍ଭରେ ହିଁ ନିଜ ସୈନିକମାନଙ୍କ ଭିତରୁ କେହି ବିଶ୍ୱାସଘାତୀ, ସେ ସମସ୍ୟାର ସାମନା କରିବାର ଥିଲା । କିନ୍ତୁ ତାକୁ ଟାଳିବା ପାଇଁ ସେହି ସ୍ୱାଭିମାନୀ ସ୍ତ୍ରୀକୁ କାହ୍ମୀର ସବୁ ପୁରୁଷବର୍ଗ ସାମନାରେ ଜୀବନ ବିକଳରେ ଶରଣ ପଶିବାକୁ ଇଚ୍ଛା ନ ଥିଲା । ସେଥିପାଇଁ ସେ ନିଜ ଲୋକମାନଙ୍କୁ ଭଲ ବ୍ୟବହାର କରିବାକୁ ଅପିଲ୍ କଲେ, ତାଙ୍କ ଉପରେ ବିଶ୍ୱାସ ରଖିଲେ । ସନ୍ଦେହ ଥିବା ବ୍ୟକ୍ତିକୁ ମାରିଦେବା ରାସ୍ତା ବି ତାଙ୍କୁ ପସନ୍ଦ ନ ଥିଲା ଓ ସେହିଁ ତାଙ୍କର ଦୁଃଖର କାରଣ ହେଲା । ଏସବୁ ସମୟରେ ରାଜ୍ୟକର୍ତ୍ତାକୁ କଠୋର ହେବାକୁ ପଡ଼େ, ଦଗାବାଜକୁ ଦଣ୍ଡ ଦେବାକୁ ହିଁ ରାଜଧର୍ମ କୁହାଯାଏ । ମାତ୍ର ରାଣୀ ଏଠି ଦୁର୍ବଳ ପଡ଼ିଗଲେ ।

୨୧ ମାର୍ଚ୍ଚ ୧୮୫୮ର ସକାଳେ ହ୍ୟୁରୋଜ ନିଜ ସେନା ସହ ଝାନ୍‌ସୀ ସହରର ପଶ୍ଚିମରେ ଦେଢ଼କୋଶ ଦୂରରେ ପହଞ୍ଚି ଡେରା ପକାଇ ଦେଲେ । ସେ ଏକ ଘୋଡ଼ସବାର ହାତରେ ରାଣୀଙ୍କୁ ଗୋଟିଏ ପତ୍ର ପଠାଇଲେ । ସେତେବେଳେ ଲକ୍ଷ୍ମୀବାଈ ପାଞ୍ଚ–ଛଅଜଣ ପରାମର୍ଶଦାତାଙ୍କୁ ଡକାଇଦେଲେ ଓ ପତ୍ର ପଢ଼ି ତା' ଉପରେ ବିଚାର ବିମର୍ଶ କଲେ । ହ୍ୟୁରୋଜ ପତ୍ରରେ ଲେଖିଥିଲେ କି ସ୍ୱୟଂ ରାଣୀ ଲକ୍ଷ୍ମୀବାଈ ଦିୱାନ ଲକ୍ଷ୍ମଣ ରାଓ, ଲାଲୁବକ୍ସୀ, ମୋରୋପନ୍ତ ତାଂବେ ଆଦି ଆଠଜଣଙ୍କୁ ସାଙ୍ଗରେ ନେଇ, ହାତହତିଆର ସାଙ୍ଗରେ ନ ଆଣି ମତେ ଦେଖାକରନ୍ତୁ । ଅନ୍ୟଥା ଯୁଦ୍ଧ ପାଇଁ ପ୍ରସ୍ତୁତ ରହନ୍ତୁ ।

ସେଥିପାଇଁ ଦୁଇଦିନ ସମୟ ଦିଆଯାଇଥିଲା । ସେହି ପତ୍ର ଉପରେ ବିଚାର ବିନିମୟ କରି ରାଣୀ ଜବାବ ପଠାଇଦେଲେ । ପତ୍ରର ଉତ୍ତରରେ ଲେଖିଲେ ''ରାଜ୍ୟର ପ୍ରଥା ଅନୁସାରେ ହତିଆର ଧରିଥିବା ସିପାହିଙ୍କ ସହ ହିଁ ଦିୱାନଜୀ ଆଦି ଦେଖା କରିବାକୁ ଆସିବେ । ମୁଁ ସ୍ତ୍ରୀଲୋକ, ତେଣୁ ଆସିପାରିବି ନାହିଁ । ଏହି ରାଜ୍ୟ ଓ ଅନ୍ୟ କିଛି ଇଲାକା ଦୟାକୁ ଗାର୍ଡ଼ନ ସାହେବ ଆମ ଅଧିକାରରେ ଦେଇଛନ୍ତି । ତା' ସଂପର୍କୀୟ କାଗଜପତ୍ର ମଧ ଆମକୁ ପ୍ରଦାନ କରିଛନ୍ତି । ସମସ୍ତ ଇଲାକାର ବନ୍ଦୋବସ୍ତ ପାଇଁ କିଛି ସୈନିକ ରଖିବାକୁ ପଡ଼ିଲା ଓ ନୂଆ ଗୋଳାବାରୁଦ ବି ତିଆରି କରିବାକୁ ପଡ଼ିଲା । ଚାରି–ପାଞ୍ଚଟି ତୋପ ବି କରାଯାଇଛି । ସରକାରଙ୍କ ସହ ଆମର ଯୁଦ୍ଧ ହେଉ, ଏଭଳି ଇଚ୍ଛା ଆମ ରାଜ୍ୟର ଲୋକମାନଙ୍କ ମନରେ ବିଲକୁଲ ନାହିଁ । ଆପଣଙ୍କୁ କିଏ କ'ଣ ବତାଉଛି ଆମେ ଜାଣି ନାହୁଁ । (ମାଝାପ୍ରବାସ, ପୃଷ୍ଠା ୮୧)

ଏହି ଚିଠି ମିଳିବା କ୍ଷଣି ହିଁ ଦତିଆ ରାଜାକୁ ନିଜ ସେନା ନେଇ ଝାନ୍‌ସୀ ଆସି ଡକାଇ ଦେଲା ଓ ନିଜେ ନିଜର କିଛି ସେନା କାଲ୍ପୀଆଡ଼କୁ ପଠାଇ ଦେଲା । ତା'ହେଲେ ରାଓସାହେବ, ତାନ୍ତ୍ୟା ଟୋପେ ତାଙ୍କ ସେନା ନେଇ ଝାନ୍‌ସୀ ରାଣୀଙ୍କୁ ସାହାଯ୍ୟ କରିବାପାଇଁ ଆସିବା ସମୟରେ ତାଙ୍କୁ ରାସ୍ତାରେ ହିଁ ଅଟକାଇ ହେବ ।

ଇଆଡ଼େ ରାଣୀ ଲକ୍ଷ୍ମୀବାଈ କାଲ୍ପୀ ଏକ ପତ୍ର ପଠାଇ ସୂଚିତ କରିଦେଲେ ''ଆମେ ଆପଣଙ୍କ ଭରସାରେ ହିଁ ଇଂରେଜଙ୍କ ସହ ଯୁଦ୍ଧ କରିବାକୁ ଯାଉଛୁ । ଏଣୁ, ସାହାଯ୍ୟ କରିବାପାଇଁ ଆପଣ ଏଠାରେ ପହଞ୍ଚନ୍ତୁ । ଆମେ ତ ଯୁଦ୍ଧ କରିବୁ, ଆପଣ ଅନ୍ୟ ପଟରୁ

ଇଂରେଜଙ୍କ ଉପରେ ଆକ୍ରମଣ କରିଦିଅନ୍ତୁ । ତେବେ ଯାଇ ଆମେ ବିଜୟୀ ହେବା ।'' ରାଣୀଙ୍କ ପରାମର୍ଶ ରାଓସାହେବ ଓ ତାନ୍ତ୍ୟା ଟୋପେଙ୍କୁ ପସନ୍ଦ ଆସିଗଲା ।

ହ୍ୟୁରୋଜ ଆଖପାଖର ପ୍ରଦେଶର ଗାଁ ଗାଁରେ ଘୋଷଣାପତ୍ର ଜାରି କରିଦେଲା ଓ ଲୋକମାନଙ୍କୁ ବାରମ୍ବାର ବତାଇବାର ଚେଷ୍ଟା କଲା ଯେ ''ଏବେ ଝାନ୍‌ସୀ ସହ ଯୁଦ୍ଧ ହେବାର ଅଛି । ଏଣୁ ଲୋକମାନଙ୍କର ଝାନ୍‌ସୀ ସହରକୁ ଆସିବାର ଆବଶ୍ୟକତା ନାହିଁ । କାରଣ ଝାନ୍‌ସୀ ସହରକୁ ନିଜ ଅଧୀନକୁ ନେଲା ପରେ ତିନିଦିନ ପର୍ଯ୍ୟନ୍ତ 'ବିଜନ' ('ବିଜନ'ର ଅର୍ଥ ମନୁଷ୍ୟହୀନ କରିବା–ଲୋକଙ୍କୁ ମାରିଦେବା) କରାଯିବ । ଇଂରେଜ ବାହାଦୁରଙ୍କର ଆଦେଶ ଯେ ୫ ବର୍ଷରୁ ୮୦ ବର୍ଷଯାଏ ପୁରୁଷଙ୍କୁ ମାରି ଦିଆଯିବ ।''

ଏହାର ଅର୍ଥ ହେଲା ଯେ 'ବିଜନ' କରିବାର ନିର୍ଣ୍ଣୟ ଇଂରେଜ ଯୁଦ୍ଧ କରିବା ପୂର୍ବରୁ ହିଁ ନେଇ ସାରିଥିଲେ ଓ ଘୋଷଣା ବି କରି ଦେଇଥିଲେ । ଯୁଦ୍ଧ ଚାଲିଥିବା ସମୟରେ ଶତ୍ରୁପକ୍ଷର ଦୁଇ ତରଫର ଲୋକଙ୍କୁ ମାରିବାକୁ ପଡ଼େ । କିନ୍ତୁ ଯୁଦ୍ଧ ସରିଗଲା ପରେ ଯୁଦ୍ଧ ସହ ଯାହାଙ୍କର କିଛି ସଂପର୍କ ନାହିଁ, ସହରର ସାଧାରଣ ନାଗରିକ ପାଞ୍ଚବର୍ଷରୁ ଅଶୀବର୍ଷ ପର୍ଯ୍ୟନ୍ତ ପୁରୁଷଙ୍କୁ ମାରିଦେବା ନିଷ୍ପତ୍ତି ଇଂରେଜମାନଙ୍କର ପ୍ରତିଶୋଧ ବୁଦ୍ଧିର ସଂକେତ ଦିଏ ।

ବିଷ୍ଣୁଭଟ୍ଟ କହନ୍ତି ଯେ, ''ଏସବୁ କଥା ବୁଝିବିଚାରି ଓ ଯୁଦ୍ଧର ବାତାବରଣ ଦେଖି, ଇଂରେଜମାନଙ୍କ ଘୋଷଣାପତ୍ର ପ୍ରକାଶିତ ହେବା ପରେ ଝାନ୍‌ସୀ ସହରର ମାରୱାଡ଼ୀ ଓ ସାହୁକାର ଯଥାସମ୍ଭବ ପଇସା ଓ ନିଜ ପରିବାରକୁ ଗ୍ୱାଲିୟର ପଠାଇଦେଲେ ।'' ବିଷ୍ଣୁ ଭଟ୍ଟ କିଲ୍ଲାର ବୁର୍ଜ ଉପରେ ଥାଇ ସମସ୍ତ ଦୃଶ୍ୟ ଦେଖିଲେ । ଦୂର–ଦୂର ଯାଏ ଦୃଷ୍ଟି ପକାଇଲେ ତାଙ୍କୁ ଇଂରେଜମାନଙ୍କର ହଜାର, ହଜାର ଛୋଟବଡ଼ ତମ୍ବୁ ଦେଖାଯାଉଥିଲା । ଜାଗା, ଜାଗା ନିଆଁ ଓ ଚୁଲି ଜଳୁଥିଲା । ଇଂରେଜଙ୍କର ସମୁଦାୟ ପାଖାପାଖି ୬୦ ହଜାର ସୈନିକ ହେବେ ଓ ଅନ୍ୟ ସବୁ ବାଜାବାଲା ଓ ଇଆଡ଼ୁ ସିଆଡ଼ୁଙ୍କ ସଂଖ୍ୟା ୩୦–୩୫ ହଜାର ପାଖାପାଖି ହେବେ ଏଭଳି ଅନୁମାନ ସେ ବ୍ୟକ୍ତ କରିଥିଲେ ।

## ସାର୍ ହ୍ୟୁରୋଜ

ସାର୍ ହ୍ୟୁରୋଜ ଏକ ଶ୍ରେଷ୍ଠ ସେନାଧକ୍ଷ ତ ଥିଲେ, ତା' ସହ ବିଦେଶ ନୀତିର ଏକ କୁଶଳ ଅଧିକାରୀ ବି ଥିଲେ । ୧୮୨୦ରେ ନିଜ ଯୁବକ ଅବସ୍ଥାରେ ସେ ସୈନିକର ପେସା ଆପଣାଇ ଥିଲେ । ୧୮୫୪ରେ ମେଜର ଜେନେରାଲ ପଦରେ ପହଞ୍ଚି ଯାଇଥିଲେ । ସେ ପ୍ରଥମେ ସିରିୟା ଓ କ୍ରୀମିୟନ ଯୁଦ୍ଧରେ ସେନାପତି ଭାବରେ ନିଜର କୌଶଳ ଓ ଶୌର୍ଯ୍ୟ ଦୁଇଟିଯାକ ପ୍ରମାଣିତ କରି ଦେଖାଇଥିଲେ । କନ୍‌ଷ୍ଟାଣ୍ଟିନୋପଲର ବ୍ରିଟିଶ ଦୂତାବାସରେ ସେ ଉଚ୍ଚପଦସ୍ଥ ଅଧିକାରୀର ଦାୟିତ୍ୱ ମଧ୍ୟ ସୁଚାରୁରୂପେ ସମ୍ଭାଳି ଥିଲେ ।

ତାଙ୍କର ଏହି ୩୭ ବର୍ଷର ସେବାକୁ ବହୁତ ପ୍ରଶଂସା କରାଯାଇଥିଲା । ଏକ ଉତ୍ତମ ସେନାପତି ଓ କୁଶଳ ରାଜନୀତିଜ୍ଞ ଭାବରେ ତାଙ୍କର ନିଜର ଏକ ସ୍ୱତନ୍ତ୍ର ପରିଚୟ ଥିଲା । ବ୍ରିଟିଶ୍ ସରକାର ତାଙ୍କୁ 'ସାର୍' ଉପାଧି ଓ ଅନ୍ୟ ପୁରସ୍କାର ପ୍ରଦାନ କରି ସମ୍ମାନିତ ବି କରିଥିଲା ।

ଏମିତି ଏକ ଅଭିଜ୍ଞ, କୁଶଳ ସେନାପତି ୧୮୫୭ରେ ବିଶେଷରୂପେ ହିନ୍ଦୁସ୍ଥାନରେ ନିଯୁକ୍ତି ପାଇଥିଲେ । ବମ୍ବେ ଆର୍ମିର ପୁନେ ଡିଭିଜନ ତାଙ୍କ ଅଧୀନରେ ଥିଲା । ୧୯ ସେପ୍ଟେମ୍ବର ୧୮୫୭ରେ ତାଙ୍କ ଜାହାଜ ମୁମ୍ବଇ ବନ୍ଦରରେ ପହଞ୍ଚିଥିଲା । ତା' ପରଦିନ ଦିଲ୍ଲୀର ବାଦଶାହ ବାହାଦୁରଶାହ ଜାଫର ବ୍ରିଟିଶ୍ ପାଖରେ ଆତ୍ମସମର୍ପଣ କରିଦେଲା । ଠିକ୍ ସେହି ସମୟରେ ଝାନ୍ସୀରେ ରାଣୀ ଲକ୍ଷ୍ମୀବାଈ ଇଂରେଜମାନଙ୍କ କହିବା ଅନୁସାରେ ଝାନ୍ସୀର ପ୍ରଶାସନ ଦେଖୁଥିଲେ । ଚାରିମାସ ବିତି ଯାଇଥିଲା । ସଦାଶିବ ରାଓ, ନଥେଖାନ୍ ଆଦିଙ୍କୁ ପରାଜିତ କରି ସେ ନିଜର ଗାଦି ମଜଭୁତ୍ କରି ନେଇଥିଲେ । ହେଁବଲୋକ, ଔଟ୍ରମ, ନୀଲ, କୈମ୍ବଲ ଏହି ସେନାପତିମାନେ କାନପୁର, ବିଠୁର, ଲକ୍ଷ୍ନୌରେ ଉପଦ୍ରବ କରୁଥିଲେ ଓ ନାନାସାହେବ ପେଶୱା, ତାନ୍ତ୍ୟା ଟୋପେ ଲକ୍ଷ୍ନୌର ନବାବଙ୍କୁ ଘୋଷାଡ଼ି କରି ନେଇ ଯାଉଥିଲେ ।

ପାଖାପାଖି ଅଧିକାଂଶ ବୁନ୍ଦେଲଖଣ୍ଡ ଏବେବି ଇଂରେଜମାନଙ୍କ ବିରୋଧ କରୁଥିଲେ । ଝାନ୍ସୀ ଉପରେ ଇଂରେଜମାନଙ୍କର ଆଦୌ ବିଶ୍ୱାସ ନ ଥିଲା । ରାଣୀଙ୍କୁ ବି ସନ୍ଦେହ ଦୃଷ୍ଟିରେ ଦେଖାଯାଉଥିଲା । ତା' ସହ ତାଙ୍କ ପ୍ରତି ଇଂରେଜମାନଙ୍କର ଭୟ ମଧ୍ୟ ଥିଲା । ଝାନ୍ସୀର କିଲ୍ଲା ବହୁତ ମଜଭୁତ ଥିଲା । ରାଣୀଙ୍କ ପ୍ରତି ଲୋକଙ୍କର ପ୍ରଚୁର ସମର୍ଥନ ଥିଲା, ସେଠାକାର ସିପାହିମାନେ ଗୋରା ଲୋକଙ୍କୁ ହତ୍ୟା କରି ଝାନ୍ସୀ ପ୍ରତି ଇଂରେଜମାନଙ୍କ ମନରେ ବିତୃଷ୍ଣା ଭାବ ଜାଗ୍ରତ କରାଇ ଦେଇଥିଲା ।

ହ୍ୟୁରୋଜଙ୍କୁ ବୁନ୍ଦେଲଖଣ୍ଡକୁ ବିଶେଷ କାର୍ଯ୍ୟରେ ପଠା ଯାଇଥିଲା । ତାଙ୍କ ଅଧୀନରେ ଦୁଇଟି ଦଳ ସୈନିକ ଥିଲେ । ପ୍ରଥମ ଦଳ ବ୍ରିଗେଡ଼ିୟର ଷ୍ଟୁଆର୍ଟ କବ୍ଜାରେ ଥିଲା ତ ଦ୍ୱିତୀୟ ଦଳ ବ୍ରିଗେଡ଼ିୟର ଷ୍ଟୁଆର୍ଟଙ୍କ ଅଧୀନରେ ଥିଲା । ହ୍ୟୁରୋଜଙ୍କ ସେନାବାହିନୀରେ ଯେଉଁମାନେ ସାମିଲ ଥିଲେ, ସେମାନଙ୍କ ମଧ୍ୟରେ ମୁମ୍ବଇର ପଦାତିକ ସେନା, ଘୋଡ଼ସବାର, ତୋପଖାନା ଥିଲା । ଏହା ଛଡ଼ା ହାଇଦ୍ରାବାଦ ନିଜାମଙ୍କ ସେନାଙ୍କ ଘୋଡ଼ସବାର ଦଳ ଦୁଇଟି ବି ଥିଲା ।

୧୬ ଡିସେମ୍ବରରେ ହ୍ୟୁରୋଜ ମୁମ୍ବଇରୁ ବାହାରି ଇନ୍ଦୋର ପହଞ୍ଚିଲେ । ପରେ ନିକଟସ୍ଥ ମହୁ ସୈନିକ ଛାଉଣୀକୁ ଗଲେ । ସେଠାରେ ସେ କ୍ରିସ୍‌ମାସ୍ ପର୍ବ ମନେଇଲେ । ପୁଣି ପ୍ରଥମ ଦଳ ମହୁ ଆଡ଼କୁ ଓ ଦ୍ୱିତୀୟ ଦଳ ସିରୋହରୁ ଝାନ୍ସୀ ଦିଗକୁ ପ୍ରସ୍ଥାନ କଲା ।

ହ୍ୟୁରୋଜ ଗୋଟିଏ ପରେ ଗୋଟିଏ ଲକ୍ଷ୍ୟ ହାସଲ କରି ଆଗକୁ ବଢ଼ିବାରେ ଲାଗିଲେ । ଯେଉଁସବୁ ରାସ୍ତା ବାଟେ ସେ ଯାତ୍ରା କରୁଥିଲେ, ତାହା ଅତ୍ୟନ୍ତ କଷ୍ଟଦାୟକ ଥିଲା । ଏହି ପ୍ରଦେଶ ଡାକୁ ଓ ଲୁଟେରାଙ୍କ ଆଡ୍‌ଡା ସ୍ଥଳୀ ଥିଲା । ମଝି–ମଝିରେ ଛୋଟ ବଡ଼ ଖାଇ ଓ ଦୁର୍ଗ ରାସ୍ତାରେ ବାଧା ସୃଷ୍ଟି କରୁଥିଲେ । କୋଉଠି କୋଉଠି ଇଲାକା ଏକଦମ୍ ଶୂନ୍‌ଶାନ୍ ଥିଲା । କେଉଁଠି ପ୍ରବଳ ପବନରେ ଉଡ଼ୁଥିବା ଧୂଳିରେ ଭର୍ତ୍ତି ହୋଇଥିଲା । ପାଣିର ତ ଅକାଳ ପଡ଼ିଥିଲା । ଯଦି କୋଉଠି ନଦୀ ମିଳି ବି ଯାଉଥିଲା ତ ତା' କୂଳରେ ଛୋଟ ଛୋଟ ଘନ ଜଙ୍ଗଲ ଘେରି ରହିଥିଲା । ଏହାଛଡ଼ା ସବୁ ଦିଗରୁ ଇଂରେଜମାନଙ୍କର ବିରୋଧ ବି ହେଉଥିଲା ।

ହ୍ୟୁରୋଜର ପ୍ରଥମ ସାମନା ହେଲା ରାହତଗଡ଼ର ନବାବ ମୋହମ୍ମଦ ଫଜୀଲଖାନ ସହ ସେ ଭୋପାଳ ବେଗମଙ୍କର ବନ୍ଧୁବାନ୍ଧବ ଥିଲେ । ରାହତଗଡ଼ର ଦୁର୍ଗ ବହୁତ ମଜବୁତ୍ ଥିଲା । ଫଜୀଲଖାନ୍‌କୁ ସାହାଯ୍ୟ କରିବାପାଇଁ ବାଣପୁର ରାଜା ମର୍ଦାନସିଂହ ବି ଆସି ଯାଇଥିଲେ । କିନ୍ତୁ କିଛି ଲାଭ ହେଲା ନାହିଁ । ସଂଘର୍ଷ ହେଲା ଓ ବ୍ରିଟିଶରମାନେ ନବାବଙ୍କୁ ଧରି ତା'ର ଦୁଇଶହ ସାଥିଙ୍କ ସହ କିଲ୍ଲାର ମୁଖ୍ୟ ଦୁଆର ନିକଟରେ ଫାଶୀରେ ଝୁଲାଇଦେଲେ । ରାହତଗଡ଼କୁ ଭୋପାଳର ବେଗମକୁ ସମର୍ପି ଦେଇ ହ୍ୟୁରୋଜ ଆଗକୁ ବଢ଼ି ଚାଲିଲେ । ସାର୍ ହ୍ୟୁରୋଜଙ୍କୁ ଭୋପାଳ ବେଗମ ତରଫରୁ ଓ ଗ୍ୱାଲିୟରର ସିନ୍ଧେଙ୍କ ତରଫରୁ କିଛି ସାହାଯ୍ୟ ନ ମିଳୁ, ସେଥିପାଇଁ ରାସ୍ତାରେ ହିଁ ଅଟକାଇବା ପାଇଁ ବାଣପୁର ରାଜା ମଝିରେ ହିଁ ହ୍ୟୁରୋଜର ସେନା ଉପରେ ଆକ୍ରମଣ କରିଦେଲେ । ଏହି କଥା ରାଣୀ ଲକ୍ଷ୍ମୀବାଈଙ୍କର ମର୍ଦାନସିଂହକୁ ପଠାଇଥିବା ପତ୍ରରୁ ଜଣାଯାଏ । କାରଣ ଏମିତି କରିବାକୁ ରାଣୀ ହିଁ ପରାମର୍ଶ ଦେଇଥିଲେ । କିନ୍ତୁ ଆହତ ମର୍ଦାନ ସିଂହଙ୍କୁ ପଛକୁ ହଟିବାକୁ ପଡ଼ିଲା ।

ତା'ପରେ ସନୋଦା, ଶାହଗଡ଼, ଗହକୋଟା, ମୁରୋବରାର କିଲ୍ଲା, ଗଡ଼ଗୁଡ଼ିକୁ ନିଜେ ଅଧିକାର କରି ସେଠାକାର ବିଦ୍ରୋହୀ ରାଜା ଓ ସୈନିକଙ୍କୁ ହରାଇ ହ୍ୟୁରୋଜ ଆଗକୁ ଆଗକୁ ବଢ଼ିଚାଲିଲେ । ତାଙ୍କ ପାଖରେ ଯାହା ଯୁଦ୍ଧସାମଗ୍ରୀ ବା ଗୁଳିଗୋଳା ଥିଲା, ତା' ପ୍ରାୟ ସରି ସରି ଆସୁଥିଲା । ସେଥିପାଇଁ ସେ ପୁଣି ସାଗରସ୍ଥିତ ବ୍ରିଟିଶଚୌକି ଆଡ଼କୁ ଚାଲିଗଲେ । ସେଠାରୁ ବୁନ୍ଦେଲଖଣ୍ଡକୁ ଯାଉଥିବା ରାସ୍ତା ଅଧିକ କଠିନ ଥିଲା । ଗୋଟିଏ ପଟେ ରାସ୍ତାରେ ତେଢ଼ାମେଢ଼ା ଘାଟି ଥିଲା ତ ଅନ୍ୟ ପଟେ ମଦନପୁର ଓ ଧାମୋଦୀ ହେଇ ଯାଇଥିବା ଗାଁର ରାସ୍ତା ଅତ୍ୟନ୍ତ ସଂକୀର୍ଣ୍ଣ ଓ ଯିବାପାଇଁ କଷ୍ଟଦାୟକ ଥିଲା । ଏମିତି ଏକ ସ୍ଥାନରେ ହ୍ୟୁରୋଜଙ୍କୁ ରୋକିବା ସଂପର୍କରେ ଏକ ପତ୍ର ଲକ୍ଷ୍ମୀବାଈ ମର୍ଦାନସିଂହକୁ ଲେଖିଥିଲେ । ମର୍ଦାନସିଂହ ଆଉ ଥରେ ପୁଣି ନରୁତ ଗାଁ ପାଖରେ ନିଜର ୧୦ ହଜାର ସୈନିକ ସହ ବ୍ରିଟିଶ୍ ଫଉଜ ଉପରେ ଆକ୍ରମଣ କରିଦେଲା । ମଦନପୁର ଗାଁରେ ଶାମଗଢ଼ର ରାଜା ସାତହଜାର ବୁନ୍ଦେଲ ସୈନ୍ୟଙ୍କ ସହ ଜଗି ବସିଥିଲେ । ହ୍ୟୁରୋଜ ଦୁହିଁଙ୍କ ସହ ଅଲଗା–ଅଲଗା ଯୁଦ୍ଧ କରି ସେ ଦୁଇପଟର ସୈନିକଙ୍କୁ ପରସ୍ପର ସହ ମିଶିବାକୁ

ହିଁ ଦେଲେ ନାହିଁ । ଦୁଇପଟରୁ ବହୁତ ଗୋଳାବାରୁଦ ମାଡ଼ ହେଲା । ହ୍ୟୁରୋଜ ଯେଉଁ ଘୋଡ଼ା ଉପରେ ବସିଥିଲେ ସେହି ଘୋଡ଼ା ଦେହରେ ଗୁଳି ବାଜିବାରୁ ସେ ଟଳି ପଡ଼ିଲା । କିଛି ସମୟ ପାଇଁ ତାଙ୍କୁ ପଛକୁ ହଟିବାକୁ ପଡ଼ିଲା । ପୁଣି ଫେରିଆସି ସେ ଜୋର୍‌ଦାର ଆକ୍ରମଣ କରିଦେଲେ ଓ ବାଣପୁରର ମର୍ଦାନସିଂହଙ୍କୁ ପଛକୁ ହଟିବାକୁ ପଡ଼ିଲା । ହ୍ୟୁରୋଜ ବିଜୟୀ ହେଲେ । ଏବେ ସିଧା ଝାନ୍‌ସୀ ପର୍ଯ୍ୟନ୍ତ ପହଞ୍ଚିବାକୁ ତାଙ୍କର ରାସ୍ତା ଖୋଲା ହୋଇଗଲା । ତା'ପରେ ଚାରିଦିନରେ ସେ ସେରାଇ, ଶାହଗଡ଼, ମୁରୋବରା ଅଧିକାର କରିନେଲେ । ୧୧ ମାର୍ଚ୍ଚ ୧୮୫୮ରେ ସେ ବାଣପୁର ପହଞ୍ଚିଲେ । ରାଜମହଲରେ ଲୁଟପାଟ କରିସାରି ରାଜମହଲରେ ନିଆଁ ଲଗାଇ ଦେଲେ ।

ଏପର୍ଯ୍ୟନ୍ତ ବେତୱା ନଦୀର ଡାହାଣପଟକୁ ଲାଗିଥିବା ଚନ୍ଦେରୀ ରାଜ୍ୟ ସୁରକ୍ଷିତ ଥିଲା । ବିଦ୍ରୋହୀ ସୈନିକମାନଙ୍କର ଏହା ଏକ ମଜବୁତ୍ ଗଡ଼ ଥିଲା । ସେମାନେ ଜୋରଦାର ପ୍ରସ୍ତୁତି କରିଥିଲେ । ଚନ୍ଦେରୀକୁ ଅଧିକାର ନ କରି ହ୍ୟୁରୋଜଙ୍କର ଝାନ୍‌ସୀ ଆଡ଼କୁ ପ୍ରସ୍ଥାନ କରିବା ରାସ୍ତା ପୂରା ଅସୁରକ୍ଷିତ ଥିଲା । ଚନ୍ଦେରୀ ହ୍ୟୁରୋଜଙ୍କର ଆଖିର କଣ୍ଟା ଥିଲା । ଚନ୍ଦେରୀ ରାଜମହଲ ଓ ଦୁର୍ଗ ଅତି ସୁନ୍ଦର, କଳାତ୍ମକ ଓ ମଜବୁତ୍ ଭାବରେ ତିଆରି ହୋଇଥିଲା । ଆଖପାଖରେ ଘନ ଜଙ୍ଗଲ ବି ଥିଲା । ହ୍ୟୁରୋଜ ଯେତେବେଳେ ବାଣପୁରରେ ଥିଲେ, ସେତେବେଳେ ବ୍ରିଗେଡ଼ିୟର ଷ୍ଟୁଆର୍ଟ ୮ ମାର୍ଚ୍ଚକୁ ଚନ୍ଦେରୀ କିଲ୍ଲା ଉପରେ ଗୋଳାମାଡ଼ ଆରମ୍ଭ କରି ଦେଇଥିଲେ । କିଲ୍ଲା ଉପରେ ବି ଜୋରଦାର ଆକ୍ରମଣ ଆରମ୍ଭ ହୋଇଗଲା । ପ୍ରତି ଆକ୍ରମଣ ବି ଚାଲିଲା । ଦଶଦିନ ଯାଏ ଘମାଘୋଟ ଲଢ଼େଇ ଚାଲିଲା । ୧୭ ମାର୍ଚ୍ଚରେ କିଲ୍ଲାରେ ଫାଟ ଦେଖାଗଲା । ସିପାହିମାନେ ଜୀବନ ମୂର୍ଚ୍ଛା ପ୍ରତି ଆକ୍ରମଣ କଲେ । ଶେଷରେ ବିଦ୍ରୋହୀମାନଙ୍କୁ ପଛକୁ ହଟିବାକୁ ପଡ଼ିଲା । ସୈନିକ କିଲ୍ଲାର ପଛପଟୁ କିଲ୍ଲା ଛାଡ଼ି ପଳାଇଲେ । ତା'ପରେ ଇଂରେଜ ସୈନିକ କିଲ୍ଲା ଭିତରେ ପ୍ରବେଶ କଲେ । ତା' ଭିତରୁ ଅନେକ ପରିମାଣରେ ହତିଆର, ତୋପ ଓ ଗୋଳା ବାରୁଦ ମିଳିଲା । ତା' ସହ ଭଣ୍ଡାରର ଅମାପ ସଂପତ୍ତି ବି ଇଂରେଜଙ୍କୁ ମିଳିଲା । ଚନ୍ଦେରୀ କିଲ୍ଲାର ସୈନିକମାନେ ଇଂରେଜମାନଙ୍କୁ କ୍ଲାନ୍ତ କରି ଦେଇଥିଲେ । ସେମାନେ କିଲ୍ଲାରେ ଭଙ୍ଗାରୁଜା କଲେ ଓ ରାଜମହଲରେ ନିଆଁ ଲଗାଇ ଦେଲେ । ରାଜମହଲର କବାଟ, ଝରକା, ସିଡ଼ି ଚନ୍ଦନକାଠରେ ତିଆରି ହୋଇଥିଲା । ସେଗୁଡ଼ିକ ଜଳିବାରୁ ଚନ୍ଦନ ବାସ୍ନା ଦୂରଦୂରାନ୍ତ ପର୍ଯ୍ୟନ୍ତ ଅନେକ ଦିନଯାଏ ମହକୁଥିଲା ।

୧୮ ମାର୍ଚ୍ଚରେ ହ୍ୟୁରୋଜଙ୍କୁ ଚନ୍ଦେରୀର ବିଜୟ ଖବର ମିଳିଲା । ୧୯ ମାର୍ଚ୍ଚରେ ସେ ଝାନ୍‌ସୀ ଆଡ଼କୁ ପ୍ରସ୍ଥାନ କଲେ । ଝାନ୍‌ସୀଠାରୁ ୨୦ ମାଇଲ ଦୂର ଚନ୍ଦନପୁରରେ ସେ ୨୦ ମାର୍ଚ୍ଚରେ ପହଞ୍ଚି ସେଠାରେ ଡେରା ପକାଇ ଦେଲେ । ସୈନିକମାନେ ବି ସେଇଠାରେ ହିଁ ଡେରା ପକାଇଲେ । ଝାନ୍‌ସୀକୁ ହରାଇବା କମ୍ପାନୀ ସରକାର ଦୃଷ୍ଟିରେ ଏକ ମହତ୍ତ୍ୱପୂର୍ଣ୍ଣ କଥା ଥିଲା । ପ୍ରତିଷ୍ଠାର ପ୍ରଶ୍ନ ଥିଲା କିନ୍ତୁ ଏ ବିଷୟରେ ସେ ଶୀଘ୍ର

କୌଣସ ନିଷ୍ପତ୍ତି ନେବାକୁ ଚାହୁଁ ନ ଥିଲେ । ଗଭର୍ଣ୍ଣର ଜେନେରାଲଙ୍କ ନିକଟରୁ ବାରମ୍ବାର ଖବର ଆସୁଥିଲା କି ଝାନ୍‌ସୀ ଉପରେ ବିଜୟ ହାସଲ କରିବା ଦରକାର । ଏହାପାଇଁ କୌଣସି ପ୍ରକାରର ଚାପରେ ହଡ଼ବଡ଼େଇ ଯାଇ କିଛି କରିବା ଅପେକ୍ଷା ସାବଧାନତାର ସହ କାର୍ଯ୍ୟକ୍ରମ ସ୍ଥିର କରିବା ଉଚିତ । ପ୍ରଥମେ ଗୁପ୍ତଚର ପଠାଇ ସେଠାରୁ ଯେତେ ସମ୍ଭବ ପରିସ୍ଥିତି ଅନୁଧ୍ୟାନ କରି ଖବର ନେବା ଦରକାର । ଝାନ୍‌ସୀର କେଉଁ ଭାଗ ମଜଭୁତ୍, କେଉଁ ଭାଗ ଦୁର୍ବଳ, କେଉଁଠି ଫାଟ ସୃଷ୍ଟି ହେଇପାରିବ, ଏହିସବୁ କଥାର ପୂରା ବିବରଣୀ ସଂଗ୍ରହ କଲା ପରେ ଓ ତା' ଉପରେ ପୂରା ବିଶ୍ୱାସ ହେଇଗଲା ପରେ ହିଁ ଯାଇ ଝାନ୍‌ସୀ ଆଡ଼କୁ ବଢ଼ିବା ଉଚିତ । ଯଦି ତୁରନ୍ତ ଆକ୍ରମଣ କରିବା ସମ୍ଭବ ନୁହେଁ, ତା'ହେଲେ ଏ ଭିତରେ ଚରଖାରୀ ରାସ୍ତାରେ କାଲ୍ପୀ ଆଡ଼କୁ ସୈନ୍ୟ ନେଇଯିବା ବା ବାନ୍ଦା ଆଡ଼କୁ ପ୍ରସ୍ଥାନ କରିବା ଉଚିତ । ଏଥିରୁ ଜଣାଯାଏ ଯେ କଂପାନୀ ସରକାର ଝାନ୍‌ସୀକୁ କେତେ ମହତ୍ତ୍ୱ ଦେଉଥିଲେ ।

କିନ୍ତୁ ହ୍ୟୁରୋଜ ଏବେଯାଏ ସବୁଥିରେ ବିଜୟ ହାସଲ କରିଥିବା କାରଣରୁ ଝାନ୍‌ସୀ ଆଡ଼କୁ ପାଦ ବଢ଼େଇଲେ ଓ ଚନ୍ଦନପୁରରେ ଡେରା ପକାଇ ଦେଲେ । ଝାନ୍‌ସୀ ଉପରେ ଆକ୍ରମଣର ପ୍ରସ୍ତୁତି ଆରମ୍ଭ କରିଦେଲେ । ସେହି ସମୟରେ ଗଭର୍ଣ୍ଣର ଜେନେରାଲଙ୍କ ତରଫରୁ ପଲିଟିକାଲ ଏଜେଣ୍ଟ ସାର୍ ରବର୍ଟ ହ୍ୟାମିଲ୍‌ଟନ ଓ ସ୍ୱୟଂ ହ୍ୟୁରୋଜଙ୍କୁ ପତ୍ର ମିଳିଲା । ଦୁଇଟିଯାକ ପତ୍ରର ବିଷୟବସ୍ତୁ ସମାନ ଥିଲା । ଚରଖାରୀର ରାଜାଙ୍କୁ ତାନ୍ତ୍ୟା ଟୋପେ ଘେରାଉ କରିଥିଲେ । ସେଥିପାଇଁ ରାଜାଙ୍କୁ ଛଡ଼େଇବାକୁ ହ୍ୟୁରୋଜଙ୍କୁ ଚନ୍ଦନପୁରରୁ ଚରଖାରୀ ଯିବା ଉଚିତ । ଚନ୍ଦନପୁରରୁ ଝାନ୍‌ସୀ ଚଉଦ କିଲୋମିଟର ଦୂର ତ ଚରଖାରୀ ୮୦ କିଲୋମିଟର ଦୂର । ହ୍ୟୁରୋଜ ଭାବିଲେ କି ମୁଁ ଚରଖାରୀ ନ ଯାଇ ଯଦି ଝାନ୍‌ସୀ ଉପରେ ଆକ୍ରମଣ କରିଦେବି ତା'ହେଲେ ତାନ୍ତ୍ୟା ଚରଖାରୀରୁ ଡେରା ଉଠାଇ ଝାନ୍‌ସୀକୁ ସାହାଯ୍ୟ କରିବାକୁ ଚାଲିଆସିବେ । ଅନ୍ୟପଟେ ଗଭର୍ଣ୍ଣର ଜେନେରାଲଙ୍କ ଆଦେଶ ପାଳନ କରିବା ବି ଜରୁରି ଥିଲା । ରବର୍ଟ ହ୍ୟାମିଲ୍‌ଟନ ଭାବିଲେ କି ଝାନ୍‌ସୀର ଏତେ ପାଖରେ ପହଞ୍ଚି ଆକ୍ରମଣ ନ କରି ଚରଖାରୀ ଆଡ଼କୁ ସୈନ୍ୟ ଚାଳନା କଲେ ଖୁବ୍ ବଡ଼ ଭୁଲ ହେବ । ଏହାଛଡ଼ା ଇଂରେଜ ସେନା ପଛକୁ ହଟିଗଲେ ଏମିତିବି ଭ୍ରମାତ୍ମକ ଅର୍ଥ ବି ବାହାର କରାଯାଇପାରେ ଓ ତାହାର ଖରାପ ପ୍ରଭାବ ଇଂରେଜ ସେନା ଉପରେ ବି ପଡ଼ିବ । ଶତ୍ରୁ ସୈନିକମାନଙ୍କର ମାନସିକ ବଳ ବଢ଼ିବ । ହ୍ୟାମିଲଟନ ଏମିତି ଧୋକାର ଶିକାର ହେବାକୁ ପ୍ରସ୍ତୁତ ନ ଥିଲେ । ହ୍ୟାମିଲଟନ ଗଭର୍ଣ୍ଣର ଜେନେରାଲଙ୍କୁ ନିଜର ବିଚାରପତ୍ର ଦ୍ୱାରା ସୂଚିତ କରିଦେଲେ ଓ ନିଜେ ଦାୟିତ୍ୱ ନେଇ ହ୍ୟୁରୋଜଙ୍କୁ ଝାନ୍‌ସୀ ଆଡ଼କୁ ଆଗେଇବାକୁ କହିଲେ ।

ହ୍ୟୁରୋଜ ୨୧ ମାର୍ଚ୍ଚ ଭୋରରେ ହିଁ ନିଜ ବିଶାଳ ସେନା ନେଇ ଝାନ୍‌ସୀ ପାଖରେ ପହଞ୍ଚିଗଲେ । ସେଠି ପହଞ୍ଚି ପରିସ୍ଥିତି ନିରୀକ୍ଷଣ କରିବା ଦୃଷ୍ଟିରୁ ଏକ ପାହାଡ଼ ଉପରେ

ଗୋଟିଏ ଖମ୍ବ ତିଆରି କଲେ । ତା' ଉପରେ କିଛି ଯନ୍ତ୍ର ଲଗାଇଲେ । ଏକ ଶକ୍ତିଶାଳୀ ଏମିତି ଦୂରବୀକ୍ଷଣ ଯନ୍ତ୍ର ଲଗାଇଲେ ଯାହାଦ୍ୱାରା ଦୂର-ଦୂରଯାଏ ଦେଖିହେବ । ଦୂରବୀକ୍ଷଣରେ ତାଙ୍କୁ ସମଗ୍ର ଝାନ୍ସୀ ଦେଖାଗଲା । ତାଙ୍କ ଦୃଷ୍ଟି ଝାନ୍ସୀ ସହର ବାହାରେ ତମ୍ବୁ ପକାଇଥିବା ଇଂରେଜ ସୈନ୍ୟ ଛାଉଣୀ ପର୍ଯ୍ୟନ୍ତ ପହଞ୍ଚିଗଲା । ଦଶ ମାସ ପୂର୍ବରୁ ସେଠାରେ ହୋଇଥିବା ଘମାଘୋଟ ଯୁଦ୍ଧର ଚିହ୍ନ ବି ଦେଖା ଯାଉଥିଲା । ଷ୍ଟାରଫୋର୍ଟର ପାଚିରି ଭାଙ୍ଗି ଯାଇଥିବା ବି ଦେଖା ଯାଉଥିଲା । ଅଧା-ଅଧା ଜଳି ଯାଇଥିବା ବଙ୍ଗଳା ବି ଦେଖା ଯାଉଥିଲା । ସେପଟେ ଉତ୍ତର ଆଡ଼କୁ ସହରକୁ ଆହୁରି ପାଖରୁ ସେ ଦୂରବୀକ୍ଷଣରେ ଦେଖିଲେ ତ ସହରର ମଝିଆଁ ମଝି ପଥରର ଏକ ବିଶାଳ ଉଂଚା ପାହାଡ଼ ତାଙ୍କୁ ଦେଖାଗଲା । ସେହି ପାହାଡ଼ ଉପରେ ସକାଳର ସୁନେଲି ସୂର୍ଯ୍ୟକିରଣରେ ଆଚ୍ଛାଦିତ ବିଶାଳ କିଲ୍ଲାର ସୁନ୍ଦର ପାଚେରି, ବଡ଼-ବଡ଼ ସ୍ତମ୍ଭ ଦେଖାଯାଉଥିଲା । ଦୂରବୀକ୍ଷଣ ଦ୍ୱାରା ସେ କିଲ୍ଲା କେତେ ମଜଭୁତ୍ ହୋଇଥିବ ଅନୁମାନ କରୁଥିଲେ । କିଲ୍ଲାର ଗୋଟିଏ ଅଂଶ ଷୋଳଫୁଟ ଚୌଡ଼ା ଥିଲା ତ କୋଉଠି କୋଡ଼ିଏ ଫୁଟ ଚୌଡ଼ା ଦେଖାଯାଉଥିଲା ।

ବୁର୍ଜ ବି ଯଥେଷ୍ଟ ଲମ୍ୱା ଚୌଡ଼ା ଥିଲା । ବୁର୍ଜ (ଗମ୍ବୁଜ) କାନ୍ଥରେ ବନ୍ଧୁକ ରଖିବା ପାଇଁ ମଝି-ମଝିରେ ଝରକା ତିଆରି ହୋଇଥିଲା । ଗମ୍ବୁଜ ଉପରେ ବଡ଼-ବଡ଼ ବିଶାଳ ତୋପ ଲଗାଯାଇଥିବା ଦେଖା ଯାଉଥିଲା ।

ସେହି ଛୋଟ ପାହାଡ଼ ଉପରୁ ଝାନ୍ସୀ ସହର ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ଭଲଭାବରେ ଦେଖି ହେଉଥିଲା । କିଲ୍ଲାର ଦକ୍ଷିଣ, ଉତ୍ତର, ପୂର୍ବ ଦିଗରେ ଝାନ୍ସୀ ସହର ବିସ୍ତୃତ ଥିଲା । ସହର ଚାରିପାଖରେ ପଥରର ୨୫ ଫୁଟ ଉଚ୍ଚ ପାଚେରି ତିଆରି ହୋଇଥିଲା । ସେଥିରେ ମଝି ମଝିରେ ଝରକା ଥିଲା ଓ କେତେ ଜାଗାରେ ଗମ୍ବୁଜ ତିଆରି ହୋଇଥିଲା । ତା' ଉପରେ ଛୋଟ ତୋପ ରଖାଯାଇଥିଲା । କିଲ୍ଲାର ପଶ୍ଚିମ ଆଡ଼କୁ ଗୋଟିଏ ଅଖଣ୍ଡ ପଥରର ସବୁଠାରୁ ଉଞ୍ଚା ତୀଖ ପାହାଡ଼ ଶିଖର ଦେଖା ଯାଉଥିଲା । ସେ ପଟରୁ ଝାନ୍ସୀ ଭିତରକୁ ପ୍ରବେଶ କରିବା ଅସମ୍ଭବ ଥିଲା । ସହରର ଉତ୍ତର-ପୂର୍ବ ଇଲାକା ଦକ୍ଷିଣତଟକୁ ଲାଗିଥିଲା । ସହରର ଆଖପାଖରେ ଛୋଟବଡ଼ ସୁନ୍ଦର ଜଳାଶୟ, ବାଗ-ବଗିଚା, ଭବ୍ୟ-ମନ୍ଦିର ଦେଖା ଯାଉଥିଲା । ଉତ୍ତର ଓ ପୂର୍ବ ଦିଗରେ ପାହାଡ଼ ଶ୍ରେଣୀ ଦେଖା ଯାଉଥିଲା । ସେହିଠାରୁ କାଲ୍ପୀଆଡ଼କୁ ଯିବାକୁ ରାସ୍ତା ଥିଲା । ଆଖପାଖରେ ଦିଗନ୍ତ ପର୍ଯ୍ୟନ୍ତ ବିସ୍ତୃତ ଶୂନ୍‌ଶାନ୍ ପ୍ରଦେଶ ଦେଖାଯାଉଥିଲା ।

ହ୍ୟୁରୋଜ ବୁଝିପାରିଲେ ଝାନ୍ସୀ କିଲ୍ଲାକୁ ଅତି ସହଜରେ ଜିତିବା ଅସମ୍ଭବ । ତା'ର ଗୋଳାବାରୁଦ ଦ୍ୱାରା କିଲ୍ଲା ଉପରେ କୌଣସି ପ୍ରଭାବ ପଡ଼ିବ ନାହିଁ, ସେକଥା ବି ତାଙ୍କୁ ସ୍ପଷ୍ଟ ଦେଖାଯାଉଥିଲା । କିଲ୍ଲା ଉପରେ ସିଧା ଚଢ଼ାଉ କଲେ କିଲ୍ଲା ଭିତରୁ ଗୋଳାବାରୁଦ ଦ୍ୱାରା ଆକ୍ରମଣ ହେବାର ସମ୍ଭାବନା ଥିଲା । ଝାନ୍ସୀ ଉପରେ ବିଜୟ ପାଇବା ପାଇଁ ଅଲଗା ନୀତି ବନାଇବାର ଆବଶ୍ୟକତା ଥିଲା । ହ୍ୟୁରୋଜ ସ୍ଥିର କଲେ,

କି କିଲ୍ଲାକୁ ଲାଗିଥିବା ସହରର ଦକ୍ଷିଣ ଦିଗରୁ ଆଗକୁ ଯାଇ ପ୍ରଥମେ ସହରକୁ ଘେରାଉ କରିବାକୁ ହେବ । ଏହି ଯୁଦ୍ଧ ବହୁତ ଦିନ ଯାଏ ଚାଲିବ, ଏ କଥା ବି ତାଙ୍କୁ ଜଣା ଥିଲା । ସବାଆଗେ ଦକ୍ଷିଣପଟରୁ ଏକ ଛୋଟ ପାହାଡ଼କୁ ଅଧିକାର କରିବା ଆବଶ୍ୟକ ଥିଲା । ତା' ପରେ ସେଇ ପାହାଡ଼ ଉପରେ ତୋପ ଚଢ଼ାଇ କିଲ୍ଲା ଉପରେ ସହଜରେ ଗୋଳାବର୍ଷଣ କରାଯାଇପାରିବ । ଏମିତି କରିବା ଅଧିକ ସହଜ ଥିଲା । କାରଣ ସେ ଜାଗାଟି ସବୁଠାରୁ ଅଧିକ ନିକଟ ଥିଲା ।

ହ୍ୟୁରୋଜ ନିଜର ଗତିବିଧି ବଢ଼େଇ ଥିଲେ । ରାତାରାତି ସେ କାମାକ୍ଷୀ ପାହାଡ଼, ଜାର ପାହାଡ଼, ଜୀବନ ସହାୟ ପାହାଡ଼କୁ ଝାନ୍ସୀ ସୈନିକଙ୍କ ସହ ଯୁଦ୍ଧ କରି ଅଧିକାର କରିନେଲେ ଓ ତା' ଉପରେ ତୋପ ଲଗାଇଦେଲେ ଓ ଦ୍ୱିତୀୟ ଦିନରୁ ହିଁ ସେ ଝାନ୍ସୀ କିଲ୍ଲା ଉପରେ, ସହର ଉପରେ ତୋପରୁ ଗୋଳାବର୍ଷଣ କରିବା ଆରମ୍ଭ କରିଦେଲେ । ତୋପ ଗୋଳାସବୁ ସହରର ଘର ଉପରେ, କିଲ୍ଲାର ପାଚେରି ଉପରେ, ଗମ୍ବୁଜମାନଙ୍କ ଉପରେ, କିଲ୍ଲାର କୋଠାବାଡ଼ି ଉପରେ ପଡ଼ିବାକୁ ଲାଗିଲା ।

ରାଣୀ ଲକ୍ଷ୍ମୀବାଈ ବି ଯୁଦ୍ଧ ପାଇଁ ପ୍ରସ୍ତୁତ ଥିଲେ । କିଲ୍ଲା ଓ ସହରର ଚାରିପଟରେ ସେ ସ୍ଥାନେ ସ୍ଥାନେ ସୈନ୍ୟ ସଜାଇ ରଖିଥିଲେ । ରାଣୀଙ୍କ ପାଖରେ ଦଶହଜାର ବୁନ୍ଦେଲ ଓ ଆଫଗାନର ସ୍ଥାୟୀ ସେନା, ପଦାତିକ ବାହିନୀର ୧୫୦୦ ସିପାହି, ଚାରିଶହ ଅଶ୍ୱାରୋହୀ ସେନା ବିଭିନ୍ନ ସଂବେଦନଶୀଳ ସ୍ଥାନମାନଙ୍କରେ ପହରା ଦେଉଥିଲେ । ଘୋସଖାନ, ଖୁଦାବକ୍ସ ଓ ମୋତିବାଈ କିଲ୍ଲା ଉପରେ 'ଘନଗର୍ଜ, ଭବାନୀଶଙ୍କର ଓ କଡ଼କ ବିଜଲୀ' ଏହି ବିଶାଳ ତୋପରୁ ଗୋଳା ବାରୁଦ ଛାଡୁଥିଲେ । ସେଥିରୁ ବାହାରୁଥିବା ତୋପର ଗୋଳା ସିଧା ଇଂରେଜସେନାଙ୍କୁ ଆଘାତ କରୁଥିଲା । ଇଂରେଜ ସେନାବାହିନୀର ସିପାହି ମରୁଥିଲେ, ଆହତ ହେଉଥିଲେ । ଇଂରେଜ ସେନାକୁ ଧ୍ୱସ୍ତବିଧ୍ୱସ୍ତ କରି ଦେଇଥିଲେ । ସେମାନଙ୍କ ମଧ୍ୟରେ ବିଶୃଙ୍ଖଳା ସ୍ପଷ୍ଟ ହୋଇଯାଇଥିଲା । ସେମାନେ ପଛକୁ ହଟିବାରେ ଲାଗିଥିଲେ ଓ ପୁଣି ନିଜକୁ ସଂଗଠିତ କରି ଆଗକୁ ଯିବାକୁ ଚେଷ୍ଟା କରୁଥିଲେ । ଏହା ସହ ଇଂରେଜ ତରଫରୁ ସହର ଉପରେ, କିଲ୍ଲା ଉପରେ ଗୋଳାବର୍ଷଣ ଚାଲିଥିଲା । ହ୍ୟୁରୋଜ ସ୍ଥିର କରିଥିଲେ କି ସହରରେ ଯେଉଁ ଘେରାଉ ହୋଇଥିଲା, ତାହା କୌଣସି ପ୍ରକାର ଢିଲା ନ ହେବା ଉଚିତ ।

## ଯୁଦ୍ଧର ଦିନ

ବିଷ୍ଣୁଭଟ୍ଟ ଲଢ଼ାଇର 'ମଜା' କିଲ୍ଲା ପାଚେରି ଉପରୁ, ଗମ୍ବୁଜ ଉପରୁ, ସହର ରାସ୍ତାରୁ ଯିବା-ଆସିବା ସମୟରେ ଉଠାଇଲେ, ଅନୁଭବ ବି କଲେ । ଏକ ପ୍ରତ୍ୟକ୍ଷଦର୍ଶୀ ଭାବରେ ସେ ସବୁର ବର୍ଣ୍ଣନ 'ମାଝାପ୍ରବାସ'ରେ କରିଛନ୍ତି । ସେ ଲେଖିଛନ୍ତି 'ଇଂରେଜ ଫଉଜ'ଙ୍କୁ ତୋପର ସୀମା କ୍ଷେତ୍ର ଭିତରକୁ ଆସିବା କ୍ଷଣି ହିଁ ରାଣୀ ଲକ୍ଷ୍ମୀବାଈ ସର୍ବପ୍ରଥମେ ତୋପ ମୁହାଁଇ

ପ୍ରଥମ ତୋପ ଗୋଳା ଯେତେବେଳେ ଛାଡ଼ିଲେ ସେତେବେଳେ ସନ୍ଧ୍ୟା ସମୟ ଥିଲା । ଯୁଦ୍ଧ ଆରମ୍ଭ ହୋଇଗଲା । କିଲ୍ଲା ଉପରୁ ଜୋରଦାର ଗୋଳାବର୍ଷଣ ଆରମ୍ଭ ହୋଇଗଲା । ସହରର ଚାରିପଟେ ଇଂରେଜଙ୍କୁ ସୈନିକ ସଜ୍ଜା କରିବାକୁ ଅସୁବିଧା ହେଲା । ଏମିତି ଦୁଇ ଦିନ ବିତିଗଲା । ଏହା ଭିତରେ ହ୍ୟୁରୋଜ ନିଜ ସୈନିକ ଛାଉଣୀ ଓ କିଲ୍ଲା ମଧ୍ୟରେ ଥିବା ଜାରପାହାଡ଼, କାମାକ୍ଷୀ ପାହାଡ଼ର ଶିଖର ଉପରେ ନିଜର ତୋପ ଲଗାଇ ଦେଲେ ଓ କିଲ୍ଲା ଉପରେ, ସହର ଉପରେ ଗୋଳାବର୍ଷଣ ଆରମ୍ଭ କରିଦେଲେ । ଇଂରେଜଙ୍କ ତୋପରୁ ବାହାରୁଥିବା ଗୋଳା ବହୁତ ଓଜନଦାର ଥିଲା । ଯେଉଁଠି ବି ପଡୁଥିଲା ସେଠି ଘର ନଷ୍ଟ ହେଇ ଯାଉଥିଲା । ନିଆଁ ଲାଗି ଯାଉଥିଲା । ଲୋକ ମରିବାକୁ ଲାଗିଲେ, ଆହତ ହେବାରେ ଲାଗିଲେ । ଗୋଳା ଫୁଟିଲାକ୍ଷଣି ତା' ଭିତରେ ଥିବା ବାରୁଦ, କଣ୍ଟା ଉଡ଼ି ଲୋକଙ୍କ ଦେହରେ ଫୁଟି ତାଙ୍କୁ ଆହତ କରି ଦେଉଥିଲା । କିଲ୍ଲାର ଛାତ ଉପରେ ଗୋଳା ପଡ଼ିଲାକ୍ଷଣି ଆଖପାଖର ଲୋକଙ୍କୁ ଆହତ କରି, ମାରି, ଛାତ ଭାଙ୍ଗି, ତଳ ମହଲାରେ ଆସି ପଡୁଥିଲା ଓ ଲୋକଙ୍କ ଭିତରେ ହାହାକାର ପଡ଼ିଯାଉଥିଲା । ଗୋଟିଏ ଗୋଟିଏ ତୋପ ଗୋଳା ଦୁଇ-ତିନି ମହଲା କୋଠାଘର ଭାଙ୍ଗି ଦେଉଥିଲା, ଧ୍ୱଂସ କରି ଦେଉଥିଲା । ପୁଣି ମାଟି ଭିତରକୁ ଯାଇ ଫୁଟି ଯାଉଥିଲା । ଲୋକଙ୍କ ଭିତରେ ଆତଙ୍କର ପରିବେଶ ସୃଷ୍ଟି ହୋଇ ଯାଇଥିଲା ।

ପ୍ରଥମ ତିନିଦିନ ଯାଏ ରାଣୀଙ୍କୁ କୌଣସି ଅସୁବିଧା ହେଲା ନାହିଁ । କେହି ତୋପ ଚଳାଇବାବାଲା ଯଦି ଇଂରେଜଙ୍କ କୁଶଳୀ ତୋପ ଚଳାଇଲାବାଲାକୁ ମାରି ଗଡ଼େଇଦିଏ, ତୋପକୁ ବନ୍ଦ କରେଇଦିଏ ତ ରାଣୀସାହେବା ତା ଗୋଡ଼ରେ ଚାନ୍ଦିର କଡ଼ା ପିନ୍ଧାଇ ତାକୁ ଉପହାର ଦେଇ ସମ୍ମାନିତ କରନ୍ତି । କିଲ୍ଲାରେ ଏପଟ-ସେପଟ, ସହରର ଆଖପାଖରେ ବୁଲି ସେ ସିପାହିମାନଙ୍କ ଉତ୍ସାହ ବଢ଼ାଉଥିଲେ । ଗମ୍ବୁଜ ଉପରୁ ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ଶତ୍ରୁମାନଙ୍କର ଗତିବିଧିର ପୂରା ଖବର ସଂଗ୍ରହ କରୁଥିଲେ । 'ଘନଗର୍ଜ, ଭବାନୀଶଙ୍କର, କଡ଼କ ବିଜଲୀ' ଏସବୁ ତୋପ ଏତେ ଶକ୍ତିଶାଳୀ ଥିଲା ଯେ ସେଥିରୁ ବାହାରୁଥିବା ଗୋଳା ଦୁଇରୁ ଅଢ଼େଇ କୋଶଯାଏ ମାଡ଼ କରୁଥିଲା । ଯେମିତି ନାଁ ତୋପମାନଙ୍କର ଥିଲା, ସେମିତି କୀର୍ତ୍ତି ବି ଥିଲା । ସେହି ତୋପମାନଙ୍କରୁ ବାହାରୁଥିବା ଗୋଳା ସିଧା ସହର ସୀମାର ବାହାରେ ଅବସ୍ଥିତ ଗୋସାଇଁଙ୍କ ଦୁଇଟି ଶିବମନ୍ଦିରରୁ ବି ଆସୁଥିଲା । ସେଥିପାଇଁ ଗୋସାଇଁ ରାଣୀଙ୍କୁ ଏ ବିଷୟରେ ଅଭିଯୋଗ ବି କରିଥିଲେ । ଯଦି ଗୋଳା ଟିକେ ବି ଏପଟ ସେପଟ ହେଇ ପଡ଼ିବ ତା' ହେଲେ ଶିବମନ୍ଦିର ନଷ୍ଟ ହେଇଯିବ । ରାଣୀ ବି ଚିନ୍ତାରେ ପଡ଼ିଗଲେ । ଗୋସାଇଁଙ୍କର ଚିନ୍ତାର ବି ଯଥାର୍ଥତା ଥିଲା । ତାଙ୍କୁ ଅସନ୍ତୁଷ୍ଟ କରିବାବି ଉଚିତ ନ ଥିଲା । ଶିବମନ୍ଦିର ଶିଳ୍ପକଳା ଦୃଷ୍ଟିରୁ ବହୁତ ସୁନ୍ଦର ଥିଲା ଓ ଲୋକଙ୍କ ଦୃଷ୍ଟିରେ ସେହି ମନ୍ଦିରର ନିଜର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଥିଲା । ରାଣୀ ବି ଧାର୍ମିକ ପ୍ରବୃତ୍ତିର ଥିଲେ । ତୋପ ଚଳାଇବାବାଲା ଗୋସଖାନ କିନ୍ତୁ ଏହି ସମସ୍ୟାର ସମାଧାନ ଖୋଜି

ଦେଲେ । ସେ ରାଣୀଙ୍କୁ ଓ ଗୋସାଇଁଙ୍କୁ କଥା ଦେଲେ ସେ ଯେତେବେଳେ ବି ଗୋଳାବର୍ଷଣ କରିବେ, ଦୃଷ୍ଟି ଦେବେ ଯେମିତିକି ମନ୍ଦିରରୁ ଟିକିଏ ବି କ୍ଷତି ନ ହୁଏ । ସେ ନିଜର ଦେଇଥିବା କଥାକୁ ସତ୍ୟ ବୋଲି ପ୍ରମାଣିତ ବି କଲେ । ସେ ତୋପର ମୁହଁକୁ ଟିକିଏ ବଦଳେଇ ଦେଲେ । ତା' ଫଳରେ ତୋପରୁ ଗୋଳା ମନ୍ଦିର କଡ଼ଦେଇ ଦୁଇଟି ମନ୍ଦିରର ମଝିବାଟ ଦେଇ ଇଂରେଜ ଫଉଜଙ୍କ ଉପରେ ପଡୁଥିଲା । କିନ୍ତୁ ମନ୍ଦିରର ସାମାନ୍ୟତମ କ୍ଷତି ହେଉ ନ ଥିଲା । ଆଜି ବି ଏହି ସୁନ୍ଦର ଦର୍ଶନୀୟ ମନ୍ଦିର ଝାନ୍‌ସୀରେ ଅଛି । ସେଠାରେ ପ୍ରତିଦିନ ପୂଜା ଆରତି ହେଉଛି । ସେହି ମନ୍ଦିରକୁ ଦେଖି ଆଜି ବି ଝାନ୍‌ସୀର ଲୋକେ ଗୋସଖାନର କୁଶଳତା ମନେପକାନ୍ତି ।

ଦୁଇ ଦିନ ପରେ ଯୁଦ୍ଧର ସ୍ୱରୂପ ବହୁତ ଗମ୍ଭୀର ହୋଇଗଲା । ଲକ୍ଷ୍ମୀବାଈ ସହରର ଗଣେଶ ମନ୍ଦିରରେ ମରାଠୀ ଲୋକଙ୍କ ପାଇଁ ଲଙ୍ଗର ଆରମ୍ଭ କରିଦେଲେ । ଅନ୍ୟ ଲୋକଙ୍କ ପାଇଁ ବି ଖାଇବା ପିଇବା ବ୍ୟବସ୍ଥା କରିଦେଲେ । ଏହାଛଡ଼ା ଯଦି ଘେରାଉ ବହୁତ ଲମ୍ବା ସମୟଯାଏ ରହିବ ଓ ଖାଇବା ପିଇବାର ଅଭାବ ଅନୁଭୂତ ହେବ ସେଥିପାଇଁ ଲୋକଙ୍କ ସୁବିଧା ପାଇଁ ବହୁତ ପରିମାଣରେ ଚଣା ଓ ମୁଢ଼ି ବି ରଖାହୋଇଥିଲା ।

ଆହତ ସିପାହିମାନଙ୍କ ଉପଚାର ପାଇଁ ଡାକ୍ତରମାନଙ୍କୁ ଡ୍ୟୁଟିରେ ବି ଲଗାଇ ଦିଆଯାଇଥିଲା । ରାତିଦିନ ଦୁଇ ପଟରୁ ଗୋଳାବର୍ଷଣ ଚାଲିଥିଲା । ଗମ୍ବୁଜ ଉପରେ ବସି ଯୁଦ୍ଧର ମଜା ନେଉଥିବା ବିଷ୍ଣୁଭଟ୍ଟ ପରି ଲୋକଙ୍କୁ ରାତିରେ ନାଲି ଗୋଳା ବଲ୍ (ପେଣ୍ଡୁ) ଭଳି ଦେଖାଯାଉଥିଲା । କେତେବେଳେ ରାଣୀଙ୍କ ଜୟଜୟକାର ଶୁଣାଯାଉଥିଲା ତ କେତେବେଳେ ଇଂରେଜମାନଙ୍କ ଜୟଜୟକାର ଶୁଣା ଯାଉଥିଲା । ବହୁତ ସମୟ ଯାଏ ଏହି କ୍ରମ ଜାରି ରହିଥିଲା ।

ଯୁଦ୍ଧର ପଞ୍ଚମ ଦିନ କିଲ୍ଲାର ପଶ୍ଚିମପଟରେ ଇଂରେଜମାନଙ୍କର ଯେଉଁ ତୋପ ଲାଗିଥିଲା, ତାକୁ ସେମାନେ ସୂର୍ଯ୍ୟାସ୍ତ ପରେ ବନ୍ଦ କରି ଦେଲେ ଓ କିଲ୍ଲା ଉପରେ ତୋପରୁ ଗୋଳାବର୍ଷଣ ଜାରି ରଖିଲେ । ସେପଟର କାନ୍ଥରେ ଫାଟ ସୃଷ୍ଟି ହୋଇଯାଇଥିଲା । ରାଣୀ ରାତାରାତି ରାଜମିସ୍ତ୍ରି ଡାକି ମଶାଲ ଆଲୁଅରେ ସେହି ଫାଟକୁ ମରାମତି କରିଦେଲେ । ମଶାଲ ଆଲୁଅରେ ଶତ୍ରୁମାନେ ରାଜମିସ୍ତ୍ରିମାନଙ୍କୁ ଦେଖି ନ ପାରନ୍ତୁ, ତାଙ୍କ ଉପରେ ଗୋଳାବର୍ଷଣ ନ କରନ୍ତୁ, ସେଥିପାଇଁ ସଂପୂର୍ଣ୍ଣ ସତର୍କତା ଅବଲମ୍ବନ କରାଗଲା । ରାଜମିସ୍ତ୍ରିମାନେ ପେଟେଇ ପେଟେଇ ଯିବାଆସିବା କରୁଥିଲେ ଓ ମାଟି ଉପରେ ବଙ୍କା, ତେଢ଼ା ଶୋଇ କାନ୍ଥର ଫାଟ ମରାମତି କଲେ । ପଥର, ଇଟା, ଚୂନ-ସିମେଣ୍ଟ ଆଦି ଦେବାନେବା କାମରେ ଝାନ୍‌ସୀର ସ୍ତ୍ରୀଲୋକମାନେ ରାଜମିସ୍ତ୍ରିମାନଙ୍କୁ ସାହାଯ୍ୟ କରୁଥିଲେ । ମହିଳାମାନେ କେବଳ ରାଜମିସ୍ତ୍ରିଙ୍କୁ ନୁହେଁ, ସେମାନେ ତୋପ ଚଳାଇଲାବାଲାଙ୍କୁ ମଧ୍ୟ ସାହାଯ୍ୟ କରୁଥିଲେ । ତୋପଗୋଳାଗୁଡ଼ିକୁ ନେବା ଆଣିବା କରିବା, ତୋପଗୋଳାକୁ ତୋପ ଭିତରେ ଭରିବା କାମ ବି ମହିଳାମାନେ କରୁଥିଲେ । ମୋତିବାଈକୁ ଜଣେ ଭଲ

ତୋପ ଚଳାଇଲାବାଲୀ ଭାବରେ ସମସ୍ତେ ଜାଣିଥିଲେ । ସାର ହ୍ୟୁରୋଜ ଯେତେବେଳେ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ମହିଳାମାନଙ୍କୁ ଏସବୁ କାମ କରୁଥିବାର ଦେଖିପାରିଲେ ତ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । "ଜଣେ ମହିଳା ଏମିତି ଉତ୍ତମ ଭାବେ ତୋପ ଚଳାଇ ପାରୁଛି ଓ ଅନ୍ୟ ସ୍ତ୍ରୀଲୋକମାନେ, କିଲ୍ଲା ଉପରେ ସେନାବାହିନୀରେ କାର୍ଯ୍ୟରତ ଥିଲେ ।" ଏହି କଥାର ବୃତ୍ତାନ୍ତ ସେ ନିଜ ଡାଏରୀରେ ଲେଖିକରି ରଖିଛନ୍ତି ।

ଯୁଦ୍ଧର ସପ୍ତମ ଦିନ ସକାଳୁ ହିଁ ଶଙ୍କର କିଲ୍ଲା ଉପରେ ଇଂରେଜମାନେ ତୋପ ଗୋଳାର ଜୋରଦାର ଯୁଦ୍ଧ ଆରମ୍ଭ କରିଦେଲେ । କାରଣ ସାତଦିନ ବିତି ସାରିଥିଲା, କିନ୍ତୁ କୌଣସି ପ୍ରଗତିଶୀଳ ସଫଳତା ଇଂରେଜମାନଙ୍କ ହାତକୁ ଆସି ନ ଥିଲା । ଏହି କାରଣରୁ ହ୍ୟୁରୋଜ ଚିନ୍ତାରେ ଥିଲେ । ଆଖପାଖର ଛୋଟ ଛୋଟ ରାଜ୍ୟମାନଙ୍କୁ ସେ ଫଟାଫଟ୍ ତିନି ଚାରି ଦିନରେ ଜିତି ପାରିଥିଲେ । କିନ୍ତୁ ଝାନ୍ସୀ ସଂପର୍କରେ ତାଙ୍କ ଆତ୍ମବିଶ୍ୱାସ ଦୋହଲିଗଲା । ସେ ନିଜର ଗୁପ୍ତଚରମାନଙ୍କୁ ସହରକୁ, କିଲ୍ଲା ଭିତରକୁ କୌଣସି ଭେଦ ଜାଣିବାକୁ ପଠାଇଦେଲେ । ତାଙ୍କୁ ଏହି ଚେଷ୍ଟାରେ ସଫଳତା ବି ମିଳିଗଲା । ଶଙ୍କର କିଲ୍ଲାରେ ସବୁଠାରୁ ବଡ଼ କୂଅ କେଉଁଠି ତିଆରି ହୋଇଥିଲା ସେ ଜାଗା ବିଷୟରେ ସେ ଜାଣିଗଲେ । କୌଣସି ଏକ ନୂଆ କୂଅରୁ କିଲ୍ଲାକୁ ପାଣି ଯୋଗାଇ ଦିଆଯାଉଥିଲା । ଏହି ଖବର ଖୁବ୍ ମହତ୍ତ୍ୱପୂର୍ଣ୍ଣ ଥିଲା । ସେହି କୂଅ ଉପରେ ଗୋଳାବର୍ଷଣ କଲେ ପୂରା କିଲ୍ଲାର ପାଣି ଯୋଗାଣ ବନ୍ଦ କରାଯାଇପାରିବ ।

ସେହିପରି କିଲ୍ଲା ମଧ୍ୟ ଭାଗରେ ଥିବା ତେନ୍ତୁଳି ବଗିଚା ଭିତରେ ତୋପଖାନା ତିଆରି ହେଇଥିଲା । ସେଠାରେ ବହୁ ସଂଖ୍ୟାରେ ଗୋଳାବାରୁଦ ତିଆରି କରାଯାଉଥିଲା । ତୋପ ଗୋଳା ବି ତିଆରି ହେଉଥିଲା । ସେଠାରୁ ଗମ୍ବୁଜ ଭିତରେ ଥିବା ମାଟିତଳ ଘରେ ସେସବୁ ଜମା କରି ରଖାଯାଉଥିଲା । ଏହି ଗୁପ୍ତ ସ୍ଥାନ ବିଷୟରେ ଜଣା ପଡ଼ିଗଲା । ଏହି ଖବର ବି ବହୁତ ମହତ୍ତ୍ୱପୂର୍ଣ୍ଣ ଥିଲା । ପ୍ରାପ୍ତ ସୂଚନା ଅନୁସାରେ ଇଂରେଜମାନେ କୂଅ ଓ ତୋପଖାନାକୁ ଠିକ୍ ଲକ୍ଷ୍ୟ କରି ତୋପ ଚଳାଇଲେ । କୂଅକୁ ନଷ୍ଟ କରିଦେଲେ । ପାଣି ଭରିବାକୁ ଆସିଥିବା ଦଶପନ୍ଦର ଜଣ ଲୋକ ସେହିଠାରେ ହିଁ ମୃତ୍ୟୁବରଣ କଲେ ।

କୂଅର ପାଣି ଚାରିଆଡ଼େ ବୋହିବାରେ ଲାଗିଲା । ଚାରିଆଡ଼େ ଖାଲି କାଦୁଅ ହୋଇଗଲା, ଖସଡ଼ା ହୋଇଗଲା । ସେବାଟେ ତୋପ ଚଳାଇଲାବାଲାଙ୍କୁ ଯିବାଆସିବା କରିବାରେ ଅସୁବିଧା ହେଲା । ମୁଖ୍ୟ ସମସ୍ୟା ଦେଖାଦେଲା ଯେ କିଲ୍ଲାରେ ରହୁଥିବା ଲୋକଙ୍କୁ କେମିତି ପାଣି ଯୋଗାଇ ଦିଆଯିବ । ଏହି ଅସୁବିଧା ତୋପଖାନାରେ ବି ଥିଲା । ତା' ଉପରେ ଇଂରେଜମାନଙ୍କ ତୋପ ଗୋଳା ପଡ଼ିବା କ୍ଷଣି ସେଠାରେ ଥିବା ଗୋଳାବାରୁଦରେ ଭୟଙ୍କର ନିଆଁ ଲାଗିଗଲା । ଜ୍ୱାଳାମୁଖୀ ପରି ନିଆଁ ଜଳିବାରେ ଲାଗିଲା । ନିଆଁ ଧାସ, ଧୂଆଁ ଓ ଧୂଳିରେ ସଂପୂର୍ଣ୍ଣ ଇଲାକା ଭରିଗଲା । କେତେ ଲୋକଙ୍କର ଶରୀର ଖଣ୍ଡବିଖଣ୍ଡିତ ହୋଇଗଲା । ଆଖପାଖର ଲୋକ ମରିଗଲେ । ବହୁତ ଲୋକ ଆହତ

ହେଲେ । ମୁଖ୍ୟ କଥା ହେଲା, ଯେତେବେଳଯାଏ ତୋପଖାନାର ମରାମତି ନ ହେଇ ପାରିବ, ସେତେବେଳଯାଏ ତୋପ ଗୋଳା ନିର୍ମାଣ ହେଇପାରିବ ନାହିଁ । ଏହି ଘଟଣା ଫଳରେ କିଲ୍ଲା ଓ ସହରରେ ଦୁଃଖ ଓ ନିରାଶା ଛାଇଗଲା । ଲକ୍ଷ୍ମୀବାଈ ରାତାରାତି ଲୋକଙ୍କୁ କାମରେ ଲଗାଇ ଚାରିଆଡ଼େ ମରାମତି କାମ ଆରମ୍ଭ କରିଦେଲେ । ରାତିସାରା କାମ ଚାଲିଲା, ଦ୍ୱିତୀୟ ଦିନ ବି କାମ ଜାରି ରହିଲା । ଇଂରେଜମାନଙ୍କ ତରଫରୁ ଗୋଳାବର୍ଷଣ ମାତ୍ରା ଏବେ ବହୁତ ବଢ଼ି ଯାଇଥିଲା ।

ରାଣୀ ଲକ୍ଷ୍ମୀବାଈ ଚିନ୍ତିତ ହୋଇଗଲେ । କିଂକର୍ତ୍ତବ୍ୟବିମୂଢ଼ ହୋଇ ସେ ଭାବୀ ଯୋଜନା ବିଷୟରେ ଭାବିବାରେ ଲାଗିଲେ । ପୁଣି ଆଉ ଥରେ ଦିୱାନ ଲକ୍ଷ୍ମଣ ରାଓ, ନାନା ଭୋପଟକର ଆଦି ବ୍ୟକ୍ତିମାନଙ୍କ ସହ ବିଚାର-ବିମର୍ଶ କଲେ । ଆଉ ଥରେ ପୁଣି କାଲ୍ପୀର ରାଓସାହେବଙ୍କୁ ଚିଠି ଲେଖି ଏଠିକାର ପରିସ୍ଥିତି ଜଣାଇ ସାହାଯ୍ୟ ମାଗିବା ପାଇଁ ଅପିଲ କରିବାକୁ ନିଷ୍ପତ୍ତି ନିଆଗଲା । ପେଶୱାଙ୍କ ସୈନିକ ଆସିଗଲେ । ସେମାନେ ଇଂରେଜ ସେନାଙ୍କ ଉପରେ ପଛରୁ ଆକ୍ରମଣ କରିବେ ତ ଆମେମାନେ ସାମନାରୁ ଆକ୍ରମଣ କରିବା । ଏମିତି ହେଲେ ଇଂରେଜ ସେନାଙ୍କୁ ନଷ୍ଟ କରିବାକୁ ବେଶି ସମୟ ଲାଗିବ ନାହିଁ । ନିଷ୍ପତ୍ତି ଅନୁସାରେ ସେ ନିଜ ଦୂତ ଦ୍ୱାରା ପେଶୱାଙ୍କ ପାଖକୁ ପତ୍ର ପଠାଇଦେଲେ । ପେଶୱାଙ୍କ ପାଖରୁ ସାଙ୍ଗେ ସାଙ୍ଗେ ସାହାଯ୍ୟ ମିଳିଯାଉ ମାନସିକ କରି ଗଣେଶ ମନ୍ଦିରରେ ବ୍ରାହ୍ମଣମାନଙ୍କ ଦ୍ୱାରା ପୂଜା ଅର୍ଚ୍ଚନା ବି କରାଇଲେ । ଲକ୍ଷ୍ମୀବାଈ ବହୁତ ବିଚଳିତ ହୋଇ ଯାଇଥିଲେ ।

ସେହି ରାତିରେ ଲକ୍ଷ୍ମୀବାଈ ହାଲ୍କା ନିଦରେ ଶୋଇଥିବାବେଳେ ଏକ ସ୍ୱପ୍ନ ଦେଖିଲେ । ସ୍ୱପ୍ନରେ ତାଙ୍କୁ ଜଣେ ଅତି ସୁନ୍ଦରୀ, ଗୋରୀ ବହୁତ ଆଭୂଷଣ ପିନ୍ଧିଥିବା ଏକ ସଧବାନାରୀ ଦେଖାଗଲେ । ସ୍ତ୍ରୀଲୋକଜଣକ ମଧ୍ୟବୟସୀ ଥିଲେ । ସେ ଧଳା ସିଲ୍କ କପଡ଼ାର ବ୍ଲାଉଜ୍ ଓ ଲାଲ୍ ରଙ୍ଗର ଶାଢ଼ି ପିନ୍ଧି ଅଣ୍ଟାରେ କାନି ଗୁଡ଼ାଇ କିଲ୍ଲାର ଗମ୍ବୁଜ ଉପରେ ଛିଡ଼ା ହୋଇଥିଲେ ଓ ତୀବ୍ର ଗତି ଆସୁଥିବା ତୋପଗୋଳାଗୁଡ଼ିକୁ ଦୁଇ ହାତରେ ରୋକୁଥିଲେ । ତାଙ୍କର ଦୁଇହାତ ପାପୁଲି କଳା ପଡ଼ି ଯାଇଥିଲା । ରାଣୀଙ୍କୁ ହାତ ଦେଖାଇ ସେ ସ୍ତ୍ରୀଲୋକଜଣକ ଲକ୍ଷ୍ମୀବାଈଙ୍କୁ କହିଲେ, ''ମୁଁ ହିଁ ଏହି ଗୋଳାଗୁଡ଼ିକୁ ରୋକୁଛି'' ଏତିକିରେ ରାଣୀଙ୍କ ନିଦ ଭାଙ୍ଗିଗଲା ।

ରାଣୀ ନିଜର ଏହି ସ୍ୱପ୍ନ ବିଷୟରେ ପାଖ ଲୋକମାନଙ୍କୁ ଜଣାଇଲେ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଏହି ସ୍ୱପ୍ନର ଅର୍ଥ ବି ଲୋକେ ବୁଝିଗଲେ । ବଂଶର କୁଳଦେବୀ ପ୍ରତ୍ୟକ୍ଷ ମହାଲକ୍ଷ୍ମୀ, ରାଣୀ ଲକ୍ଷ୍ମୀବାଈଙ୍କ ପକ୍ଷରେ ଆଶୀର୍ବାଦ ଦେବାକୁ ଛିଡ଼ା ହେଇଥିଲେ । ରାଣୀଙ୍କ ଉପରକୁ ମାଡ଼ିଆସୁଥିବା ସଂକଟକୁ ସ୍ୱୟଂ ମହାଲକ୍ଷ୍ମୀ ନିଜ ହାତରେ ରୋକୁଥିଲେ । ହାତରେ କଳାକଳା ଦାଗ ପଡ଼ିଯାଇଥିଲା । ଆଜିର ବିଜ୍ଞାନ ଯୁଗରେ ବି ସ୍ୱପ୍ନର ଗୂଢ଼ ରହସ୍ୟକୁ ଜାଣିବା, ତା'ର ଅର୍ଥ ବାହାର କରିବାକୁ ଲୋକଙ୍କ ମନରେ ଉତ୍ସୁକତା ରହେ,

ଆକର୍ଷଣ ରହେ । ମନୁଷ୍ୟ ଦେଖୁଥିବା ସ୍ୱପ୍ନ ମନୁଷ୍ୟର ମାନସିକତା ଦର୍ଶାଏ । ସେହି ପ୍ରକାର ସ୍ୱପ୍ନ ମନୁଷ୍ୟର ମାନସିକତା ଉପରେ ପ୍ରଭାବ ବି ପକାଏ । ସ୍ୱପ୍ନ ଭବିଷ୍ୟତ୍‌ର ସୂଚନା ଦିଏ । ଏକଥା ସାଧାରଣତଃ ବିଶ୍ୱାସ କରାଯାଏ । ଯେଉଁ ଯୁଗରେ ସାମାଜିକ ଜୀବନ ଉପରେ ପୂଜାପାଠର ପୂରା ପ୍ରଭାବ ଥିଲା ସେହି ଯୁଗରେ ଏଭଳି ସ୍ୱପ୍ନର ପ୍ରଭାବ କେବଳ ସାମାଜିକ ଜୀବନ ଉପରେ ନୁହେଁ, ସ୍ୱୟଂ ଲକ୍ଷ୍ମୀବାଈଙ୍କ ଉପରେ ବି ପଡ଼ିଥିବ । ପ୍ରତ୍ୟକ୍ଷ କୁଳସ୍ୱାମିନୀ ଦେବୀ ମହାଲକ୍ଷ୍ମୀ ହିଁ ରାଣୀଙ୍କର, ଝାନ୍‌ସୀର କିଲ୍ଲାର ରକ୍ଷା ପାଇଁ ଗମ୍ବୁଜ ଉପରେ ଠିଆ ହୋଇଥିଲେ । ନିଜ ହାତରେ ସେ ଶତ୍ରୁଙ୍କର ତୋପଗୋଳାର ଆଘାତ ସହୁଥିଲେ । ସେଥିରେ ପୁଣି ସେ ତୋପଗୋଳା ଧାସରେ ନିଜ ହାତକୁ କଳା କରି ଦେଇଥିଲେ । ପୁଣି ବି ଏହି ସ୍ୱପ୍ନ ଲକ୍ଷ୍ମୀବାଈଙ୍କ ଭିତରେ ଓ ସବୁ ଲୋକଙ୍କ ମନରେ ଏକ ନୂଆ ବିଶ୍ୱାସ ଜନ୍ମାଇଲା । ଏକ ନୂଆ ଉତ୍ସାହ ଜାଗ୍ରତ କଲା । ପୁଣି ଆଉ ଥରେ ଘମାଘୋଟ ଲଢ଼େଇ ଆରମ୍ଭ ହୋଇଗଲା ।

୩୧ ମାର୍ଚ୍ଚ ସନ୍ଧ୍ୟା ସମୟରେ ତାନ୍ତ୍ୟା ଟୋପେ ୨୨ ହଜାର ପଦାତିକ ସିପାହି, ଅଶ୍ୱାରୋହୀ ସୈନିକ, ଅନେକ ହାତୀ ଓ ଅଠେଇଶଟି ତୋପ ଧରି ବେତୱା ନଦୀ ପାର ହେଲେ ଓ ବ୍ରିଟିଶ୍ ସୈନ୍ୟ ଛାଉଣୀ ପଛରେ ହିଁ ଡେରା ପକାଇଲେ । ରାତିର ଅନ୍ଧାର ହେବା କ୍ଷଣି ସେଠାର ଏକ ପାହାଡ଼ ଉପରେ ହୋଲୀ ଜଳାଇ ଦେବେ । ନିଜ ଆଗମନର ଖବର ଝାନ୍‌ସୀବାସୀଙ୍କୁ ଜଣାଇ ଦେବାପାଇଁ ସେ ଏମିତି କଲେ । ଝାନ୍‌ସୀ କିଲ୍ଲାରୁ ହୋଲୀର ନିଆଁ ଦେଖି ସମସ୍ତେ ଆନନ୍ଦିତ ହୋଇଗଲେ । ପେଶୱାମାନେ ନିଜ ସେନା ପଠାଇଦେଲେ । ତାନ୍ତ୍ୟା ଟୋପେ ରାଣୀ ଲକ୍ଷ୍ମୀବାଈଙ୍କ ସାହାଯ୍ୟ ପାଇଁ ପହଞ୍ଚି ଯାଇଥିଲେ । ଇଂରେଜମାନଙ୍କ ବିରୋଧରେ ଲଢ଼ିବା ପାଇଁ ଉତ୍ସାହ ଦୁଇଗୁଣ ହୋଇଗଲା । ଏବେ ବିଜୟ ବେଶି ଦୂରରେ ନାହିଁ, ଏଭଳି ବିଶ୍ୱାସ ମନରେ ଜାଗିଲା । ରାଣୀଙ୍କ ଜୟଜୟକାରରେ ସାରା ବାତାବରଣ କମ୍ପିଗଲା ।

ହ୍ୟୁରୋଜ ବହୁତ ଚିନ୍ତିତ ହୋଇଗଲେ । ତାଙ୍କ ଆଗରେ ଏକ ପ୍ରଶ୍ନ ଉପସ୍ଥିତ ହୋଇଗଲା । ସାମ୍‌ନାରୁ ଝାନ୍‌ସୀ ସହରକୁ ଘେରିରହିଥିବା ସୈନିକଙ୍କୁ ଉଠାଇ ନେଇ ପଛରେ ପ୍ରସ୍ତୁତ ହୋଇଥିବା ତାନ୍ତ୍ୟାଙ୍କ ବିଶାଳ ସେନାଙ୍କ ମୁକାବିଲା କରାଯିବ ନା ଘେରାକୁ ଯେମିତି ଥିଲା ସେମିତି ରଖି ଅଳ୍ପ ସୈନିକ ନେଇ ତାନ୍ତ୍ୟା ଟୋପେଙ୍କ ସାମନା କରାଯିବ । ହ୍ୟୁରୋଜ ଦ୍ୱିତୀୟ ରାସ୍ତାଟି ଆପଣାଇଲେ । ସେ ଝାନ୍‌ସୀର ଘେରାଉ ଯେମିତି ସେମିତି ରହିବାକୁ ଦେଲେ ଓ ପନ୍ଦରଶହ ସିପାହିଙ୍କୁ ସାଙ୍ଗରେ ନେଇ ତାନ୍ତ୍ୟା ଟୋପେଙ୍କ ସହ ଲଢ଼ିବାକୁ ପ୍ରସ୍ତୁତି ଆରମ୍ଭ କଲେ । ସେହି ପନ୍ଦରଶହ ସିପାହି ଭିତରୁ ପାଞ୍ଚଶହ ଇଂରେଜ ସିପାହି ଥିଲେ ଓ ଏକହଜାର ହିନ୍ଦୁସ୍ଥାନୀ ସିପାହି ।

୧ ଏପ୍ରିଲ ୧୮୫୮ ଦିନ ସକାଳୁ ତାନ୍ତ୍ୟା ଟୋପେ ନିଜ ସେନା ନେଇ, ଇଂରେଜମାନେ କରୁଥିବା ଗୋଳା ବର୍ଷଣରୁ ନିଜକୁ ବଞ୍ଚାଇ, ସାମ୍‌ନାରୁ ଆସୁଥିବା ଇଂରେଜ

ସେନା ଉପରେ ତୀବ୍ର ଆକ୍ରମଣ କରିଦେଲେ । ତାନ୍ତ୍ୟାଙ୍କ ପାଖରେ ବିଶାଳ ସେନାବାହିନୀ ଥିଲା । ହ୍ୟୁରୋଜ ନିଜ ଅଶ୍ବାରୋହୀକୁ ଦୁଇଭାଗ କରି ଡାହାଣ ଓ ବାଁ ଦୁଇ ଦିଗରୁ ତାନ୍ତ୍ୟାଙ୍କ ସେନା ଉପରେ ଆକ୍ରମଣ କରିଦେଲେ । ସେହି ସମୟରେ ପଦାତିକ ସିପାହିମାନେ ସାମ୍‌ନାରୁ ଆକ୍ରମଣ କରିଦେଲେ ଓ ତାନ୍ତ୍ୟାଙ୍କ ସେନାଙ୍କୁ ତିନି ଦିଗରୁ ଘେରିଗଲେ । ତାନ୍ତ୍ୟା ଟୋପେଙ୍କ ସେନାର ପ୍ରଥମ ଧାଡ଼ିର ସୈନିକ ହଡ଼ବଡ଼େଇ ଗଲେ ଓ ପଳାଇଲେ । ସେଥିରେ ବି ବହୁତ ଲୋକ ମରିଲେ, ତୁରନ୍ତ ଦ୍ୱିତୀୟ ଧାଡ଼ିର ସୈନିକ ଆଗକୁ ବଢ଼ିଲେ । ସ୍ୱୟଂ ତାନ୍ତ୍ୟା ଟୋପେ ତାଙ୍କର ନେତୃତ୍ୱ ନେଉଥିଲେ । ଗୋଟେ ପଟେ ଜଙ୍ଗଲ ଥିଲା, ପଛପଟେ ବେତଓ୍ୱା ନଦୀ । ଇଂରେଜ ସୈନିକ ତିନି ପଟରୁ ମାରକାଟ କରିକରି ଆଗକୁ ଆଗକୁ ଚାଲିଥିଲେ । ଏବେ ଡରିବା ପାଳି ଥିଲା ତାନ୍ତ୍ୟା ଟୋପେଙ୍କର । ନିଜ ସୈନ୍ୟଙ୍କୁ ବଞ୍ଚାଇବାକୁ ତାନ୍ତ୍ୟା ଟୋପେ ପଛକୁ ହଟିଲେ । କିନ୍ତୁ ନଦୀ କୂଳରେ ବାଲିକାଦୁଅ କାରଣରୁ ଶୀଘ୍ର ବଡ଼ ବଡ଼ ତୋପଗୁଡ଼ାକୁ ନେଇଯିବା ତ ସମ୍ଭବ ନ ଥିଲା, ସିପାହିମାନଙ୍କ ପାଇଁ ଦଉଡ଼ିବା ବି କଠିନ ଥିଲା । ପଛରୁ ଇଂରେଜ ସେନା ଯେମିତି ଆସି ନ ପାରିବେ, ସେଥିପାଇଁ ସେମାନେ ଆଖପାଖ ଜଙ୍ଗଲରେ ନିଆଁ ଲଗାଇଦେଲେ । ପୁଣି ବି ପଛରେ ଆସୁଥିବା ସୈନିକମାନଙ୍କୁ ଦଉଡ଼ାଇବାବେଳେ ତାନ୍ତ୍ୟାଙ୍କ ସୈନ୍ୟ ଏପଟସେପଟ ହେଇଗଲେ । ଏହି ଲଢ଼ାଇରେ ତାନ୍ତ୍ୟାଙ୍କ ଦେଢ଼ଶହ ସିପାହି ମୃତ୍ୟୁମୁଖରେ ପଡ଼ିଲେ । ଅବଶିଷ୍ଟ ସିପାହିମାନଙ୍କ ଭିତରୁ କିଛି ଲୋକ ତାନ୍ତ୍ୟାଙ୍କ ସହ କାଲ୍ପୀ ଫେରିଗଲେ ତ କିଛି ଲୋକ ମୌନୀପୁର ଦିଗରେ ଚାଲିଗଲେ । ତାନ୍ତ୍ୟାଙ୍କର ୧୮ଟି ତୋପ ଓ ବହୁ ପରିମାଣର ଗୋଳାବାରୁଦ ହ୍ୟୁରୋଜଙ୍କ ହାତକୁ ଆସିଗଲା । ସେଠାରେ ଯୁଦ୍ଧ ତ ହେଲା, ହେଲେ ବେଶି ଦିନ ଚାଲିଲା ନାହିଁ । ଦ୍ୱିତୀୟ ଦିନ ସକାଳେ ହ୍ୟୁରୋଜ ବିଜୟୀ ହୋଇ ଝାନ୍‌ସୀ ଆଡ଼କୁ ଚାଲିଲେ ।

ସେହି ରାତିରେ ଯୁଦ୍ଧ ଚାଲୁଥିବା ସମୟରେ ସାମ୍‌ନାସାମନି ଠିଆ ହୋଇଥିବା ତାନ୍ତ୍ୟା ଟୋପେଙ୍କ ସିପାହି, ହ୍ୟୁରୋଜ ସେନାବାହିନୀରେ କାର୍ଯ୍ୟରତ ହିନ୍ଦୁସ୍ଥାନୀ ସିପାହିଙ୍କୁ ଖୁଣ୍ଟା ଦେଲେ, ଗାଳି ଦେବାରେ ଲାଗିଲେ । କହିଲେ, ନିଜ ଧର୍ମ ପାଇଁ ଲଢ଼ିବା ବଦଳରେ ଫିରିଙ୍ଗିମାନଙ୍କ ପକ୍ଷରେ ଲଢୁଛ, ନର୍କକୁ ଯିବ । ଏମିତି ଅଭିଶାପ ଦେଲେ । କିନ୍ତୁ ଇଂରେଜ ପକ୍ଷରୁ ଲଢୁଥିବା ହିନ୍ଦୁସ୍ଥାନୀ ସିପାହି, ବିଜୟ ଉତ୍ସବ ମନାଇବାରେ ବ୍ୟସ୍ତ ଥିଲେ । ସେ ଖୁସୀରେ ହଲ୍ଲାଗୁଲ୍ଲା କୋଳାକୋଳି କରୁଥିଲେ । (The Sepoy Revolt, It's causes and it's consequences : Henry Mead, 1857 page 512)

ଝାନ୍‌ସୀ କିଲ୍ଲା ଉପରୁ ଦୂର ବେତଓ୍ୱା ନଦୀ କୂଳରେ ହେଉଥିବା ଏହି ଯୁଦ୍ଧ ଛୋଟ ଦେଖାଯାଉଥିଲା । ଧୂଆଁର ଗୋଳାସବୁ ଆକାଶକୁ ଯାଉଥିବାର ଦେଖାଯାଉଥିଲା । ତୋପ ଗୋଳାର ଶବ୍ଦ ଚାରିଆଡ଼େ ଶୁଣା ଯାଉଥିଲା ।

ସେହି ସମୟରେ ଲକ୍ଷ୍ମୀବାଈ କିଲ୍ଲା ଚାରି ପାଖରେ ଘେରାଉ କରିଥିବା ଇଂରେଜ ସୈନିକମାନଙ୍କ ଉପରେ ଆକ୍ରମଣ କାହିଁକି କଲେ ନାହିଁ ? ରାଣୀଙ୍କ ତୋପ ଚଳେଇଲାବାଲାମାନେ ଇଂରେଜ ସେନା ଉପରେ ତୋପ ଗୋଳା ବର୍ଷଣ କାହିଁକି କଲେ ନାହିଁ ? ପ୍ରଥମେ ପ୍ରଥମେ ଏହି କଥା ସ୍ଥିର ହେଇଥିଲା । ଲକ୍ଷ୍ମୀବାଈ ପେଶୱାମାନଙ୍କୁ ଲେଖିଥିବା ଚିଠିରେ ଏହି କଥା ହିଁ ଲେଖିଥିଲେ । ଯଦି ଏମିତି ଆକ୍ରମଣ କରାଯାଇଥାଆନ୍ତା, ତା'ହେଲେ ହ୍ୟୁରୋଜଙ୍କୁ ଦୁଇ ପଟରେ ଯୁଦ୍ଧ କରିବାକୁ କଷ୍ଟ ହେଇଥାଆନ୍ତା । ସମ୍ଭବତଃ କଠିନ ପରିସ୍ଥିତିର ସାମନା କରିଥିବା ହ୍ୟୁରୋଜ ସେନା ଭିତରେ ଫାଟ ସୃଷ୍ଟି କରି ତାନ୍ତ୍ୟା ଟୋପେ ଝାନ୍ସୀ ସହର ପର୍ଯ୍ୟନ୍ତ ପହଞ୍ଚି ଯାଇପାରିଥାନ୍ତେ ଓ ରୋଜଙ୍କ ସୈନ୍ୟଙ୍କୁ ବିଲ, ବାଡ଼ି ଜଙ୍ଗଲ ବାଟ ଦେଇ ଇଆଡ଼େ ସିଆଡ଼େ ଦଉଡ଼ିବାକୁ ପଡ଼ିଥାନ୍ତା । ଯୁଦ୍ଧର ପୂରା ସ୍ୱରୂପ ବଦଳି ଯାଇଥାନ୍ତା । କିନ୍ତୁ ନିୟତି ଏମିତି ଚାହୁଁ ନ ଥିଲା । ସେହି ସମୟରେ ଝାନ୍ସୀ କିଲ୍ଲା ଉପରୁ ହ୍ୟୁରୋଜର ସେନାବାହିନୀ ଉପରେ ଗୋଳାବର୍ଷଣ ହେଲା ନାହିଁ; ବହୁତ ଇଂରେଜ ଲେଖକ ଏ ସଂପର୍କରେ ଆଶ୍ଚର୍ଯ୍ୟ ପ୍ରକଟ କରିଛନ୍ତି । ସେମାନେ ଲେଖିଛନ୍ତି ଏମିତି ଆକ୍ରମଣ ହେଲା ହିଁ ନାହିଁ । ସେଥିପାଇଁ ଇଂରେଜମାନଙ୍କ ପାଇଁ ଯୁଦ୍ଧ ଜିତିବା ସହଜ ହୋଇଗଲା ।

ପରେ ଯେତେବେଳେ ରାଣୀ ଲକ୍ଷ୍ମୀବାଈ ଓ ତାନ୍ତ୍ୟା ଟୋପେ କାଲ୍ପୀରେ ଦେଖାହେଲେ ଦୁହିଁଙ୍କର ଏ ବିଷୟରେ କଥାବାର୍ତ୍ତା ବି ହେଲା । ସେହି ସମୟରେ ତାନ୍ତ୍ୟା ଟୋପେ ରାଣୀଙ୍କୁ କହିଲେ, 'ଲାଲତାବାଦ' ନାମକ ଏକ ବିଶ୍ୱାସୀ ପରାମର୍ଶଦାତା ତାଙ୍କୁ ହ୍ୟୁରୋଜର ସେନା ଉପରେ ଆକ୍ରମଣ ନ କରିବାକୁ ପରାମର୍ଶ ଦେଇଥିଲା । ଜାଣିଶୁଣି ତାଙ୍କୁ ଭୁଲ୍ ବାଟ ଦେଖାଇଥିଲା । ସେହି ସମୟରେ 'ଲାଲତାବାଦ' ଇଂରେଜମାନଙ୍କ ପାଇଁ କାମ କରିବା ଆରମ୍ଭ କରି ଦେଇଥିଲା । କିନ୍ତୁ ବହୁତ ପରେ ଏହି କଥା ଜଣାପଡ଼ିଲା । (ରାନୀ ଅଫ୍ ଝାନ୍ସୀ, ଡୀ.ବୀ. ତାହ୍ମଣକର, ପୃଷ୍ଠା ୧୧୮)

ସହରକୁ ଘେରି ରହିଥିବା ଇଂରେଜ ସେନାକୁ ବହୁତଥର ପଛକୁ ହଟିବାକୁ ପଡ଼ିଥିଲା । ସେହି କାରଣରୁ ବେତୱା ନଦୀ କୂଳରେ ତାନ୍ତ୍ୟା ଟୋପେଙ୍କୁ ହରାଇ, ସେମାନେ ହଟିଯିବା ପରେ ଇଂରେଜ ସେନାଙ୍କ ଭିତରେ ଉତ୍ସାହ ବଢ଼ିଯାଇଥିଲା । କିନ୍ତୁ ଲକ୍ଷ୍ମୀବାଈଙ୍କ ସେନାଙ୍କ ଭିତରେ ନିରାଶା ଛାଇ ଯାଇଥିଲା । ବହୁତ ସାହସର ସହିତ ସେ ପରିସ୍ଥିତିରୁ ତୁରନ୍ତ ବାହାରି ଲକ୍ଷ୍ମୀବାଈ ନିଜ ସେନାବାହିନୀର ସବୁ ଅଧିକାରୀ ତୋପ ଚଳେଇଲାବାଲା ସରଦାରମାନଙ୍କୁ ଡକାଇଲେ । ସେ ସେମାନଙ୍କୁ କହିଲେ ତାନ୍ତ୍ୟା ଆମ ସାହାଯ୍ୟ ପାଇଁ ଆସିଥିଲେ । କିନ୍ତୁ ଆମର ଓ ତାଙ୍କର ଦୁର୍ଭାଗ୍ୟ କାରଣରୁ ତାଙ୍କୁ ପରାଜୟର ସାମ୍ନା କରିବାକୁ ପଡ଼ିଲା । ତାଙ୍କୁ ଯୁଦ୍ଧଭୂମିରୁ ପଛକୁ ହଟି ଫେରିଯିବାକୁ ପଡ଼ିଲା । ଝାନ୍ସୀ ଦୃଷ୍ଟିରୁ ଏ ଘଟଣା ବି ଭଲ ହେଲା ନାହିଁ । କିନ୍ତୁ ସେହି କାରଣରୁ ନିରାଶ ହେବା ଉଚିତ ନୁହେଁ । ବିଗତ ଦଶ-ବାର ଦିନ ଆମେ ବିନା କାହାର ସାହାଯ୍ୟରେ ସଂପୂର୍ଣ୍ଣ ଦାୟିତ୍ୱର

ସହ ସାହସପୂର୍ବକ ଲଢ଼ି ଆସୁଛେ । ଇଂରେଜମାନଙ୍କର କେତେଥର ଅବସ୍ଥା ଢିଲା କରି ସାରିଛେ । ଏବେବି ଶତ୍ରୁକୁ ସହରରେ ପଶିବାକୁ ଦେଇନେ ।

ଆଗକୁ ବି ଆମକୁ ସାହସର ସହ ଲଢ଼ିବାର ଅଛି । ଆପଣମାନେ ସମସ୍ତେ ସାହସୀ, ଶୂରବୀର ଓ ଧୈର୍ଯ୍ୟବାନ୍ ଅଟନ୍ତି । ଆପଣମାନଙ୍କ ଭରସାରେ ହିଁ ଆମେ ଇଂରେଜମାନଙ୍କ ଉପରେ ବିଜୟ ପ୍ରାପ୍ତ କରିବା, ଏଠାରୁ ଆମେ ତାଙ୍କୁ ମାରି ଘଉଡ଼ାଇ ଦେବା, ଏମିତି ବିଶ୍ୱାସ ମୋର ଅଛି । ଯଦି ଆପଣ ଯୁଦ୍ଧରେ ଶହୀଦ ହେବେ ତ ଆପଣଙ୍କୁ ସ୍ୱର୍ଗପ୍ରାପ୍ତି ହେବ । ଦୁର୍ଭାଗ୍ୟରୁ ଯଦି ଏମିତି ହେଇ ବି ଗଲା ତା'ହେଲେ ଆପଣଙ୍କ ପରେ ଆପଣଙ୍କ ପରିବାରର ଭରଣପୋଷଣ ଦାୟିତ୍ୱ ମୁଁ ନେବି । ଏମିତି ଆଶ୍ୱାସନା ମୁଁ ଆପଣମାନଙ୍କୁ ଦେଉଛି । ଏହିପରି ଭାବରେ ନିଜ ସେନାବାହିନୀର ଉତ୍ସାହ ବଢ଼ାଇବାକୁ ସେ ଚେଷ୍ଟା କଲେ ଓ ନିଜ ଅଧିକାରୀ ଓ ତୋପ ଚଳାଇଲାବାଲାଙ୍କୁ ସୁନା, ରୁପାର କଡ଼ା ଓ ବସ୍ତ୍ର ପ୍ରଦାନ କଲେ । ସେନାବାହିନୀ ଭିତରେ ରାଣୀଙ୍କର ଏପରି ବ୍ୟବହାର କାରଣରୁ ପୁଣି ଥରେ ସେମାନଙ୍କର ଆତ୍ମବିଶ୍ୱାସ ଫେରିଆସିଲା ଓ ଉତ୍ସାହ ବଢ଼ିଗଲା । ଗୌସଖାନ, ଖୁଦାବକ୍ସ, ମୋତୀବାଈ ପୁଣି ନୂଆ ଉତ୍ସାହର ସହ ଭବାନୀଶଙ୍କର, କଡ଼କ ବିଜଲୀ, ଘନଗର୍ଜ ଏହି ବିଶାଳକାୟ ତୋପମାନଙ୍କୁ ପୁଣି ଥରେ ସଜାଇଲେ । କିଲ୍ଲା ଓ ସହରର ପାଚେରି ଉପରେ, ବୁର୍ଜ ଉପରେ ତୋପ ଓ ବନ୍ଧୁକଗୁଡ଼ିକୁ ପୁଣି ଥରେ ଦୃଢ଼ତାର ସହ ସଜାଇଲେ । ତୋପଖାନାରେ ତୋପ ତିଆରି କାମ ପୁଣି ଥରେ ଜୋରସୋରରେ ଆରମ୍ଭ କରିଦେଲେ । ସେନାବାହିନୀର ଲୋକମାନଙ୍କୁ ନୂଆ ନୂଆ ସ୍ଥାନରେ ସଜାଇ ଦେଲେ । ବିଭିନ୍ନ ସ୍ଥାନରେ ଜଗୁଆଳି ଓ ଗୁପ୍ତଚରଙ୍କ ପାଇଁ ସୁରକ୍ଷା ବ୍ୟବସ୍ଥା ଅଧିକ କଡ଼ାକଡ଼ି କରି ଦେଲେ । ଲକ୍ଷ୍ମୀବାଈ କେତେବେଳେ ଘୋଡ଼ା ଚଢ଼ି ତ କେତେବେଳେ ପାଲିଙ୍କିରେ ବସି ଚାରିଆଡ଼େ ଘୂରିବୁଲୁଥିଲେ । ପ୍ରତ୍ୟେକ ବ୍ୟକ୍ତିର ଛୋଟ-ଛୋଟ ଆବଶ୍ୟକତା ପ୍ରତି ବି ଧ୍ୟାନ ଦେଉଥିଲେ ।

କିଲ୍ଲା ଓ ସହର ଉପରେ ଗୋଳାବର୍ଷଣ ଚାଲିଥିଲା । କିଲ୍ଲାର ସୁରକ୍ଷା ପାଇଁ ମୁଖ୍ୟ ପ୍ରବେଶ ଦ୍ୱାର, ପାଚେରି ଉପରେ ଥିବା ଖୁଦାବକ୍ସ ଓ ତୋପଖାନାର ପ୍ରମୁଖ ଗୌସଖାନ ଏ ଦୁଇଜଣ ଇଂରେଜମାନଙ୍କ ତରଫରୁ ହେଇଥିବା ଗୋଳାବର୍ଷଣରେ ମୃତ୍ୟୁମୁଖରେ ପଡ଼ିଲେ । ଏହି ଖବର ପାଇଁ ଲକ୍ଷ୍ମୀବାଈଙ୍କର ଆଉ ସାହସ ରହିଲା ନାହିଁ । ସେ ଭାଙ୍ଗିପଡ଼ିଲେ । ତାଙ୍କ ମନ ବ୍ୟଥିତ ହେଲା । ଏହି ଦୁଇଜଣ ହିଁ ଇଂରେଜ ସେନା ଉପରେ ସଠିକ ଗୋଳାବର୍ଷଣ କରିପାରିଲାଭଳି କୁଶଳୀ ତୋପ ଚଳାଇଲାବାଲା ଥିଲେ । ଲକ୍ଷ୍ମୀବାଈଙ୍କର ଏ ଦୁଇଜଣ ବାମ ଡାହାଣ ହାତ ଥିଲେ । ସେମାନଙ୍କ ମୃତ୍ୟୁ ପରେ ଯେମିତି ରାଣୀଙ୍କର ଦୁଇ ହାତ କଟିଗଲା, ଏବେ ରାଣୀଙ୍କୁ ଲାଗିଲା ଏବେ କିଛି କରିପାରିବା ଅସମ୍ଭବ । କିଲ୍ଲା ଭିତରେ ନିଜ ପାଞ୍ଚମହଲାବିଶିଷ୍ଟ ନିବାସସ୍ଥାନ ରାଜମହଲ ସାମ୍ନାରେ ଖୋଲା ପଡ଼ିଆରେ ଏକ ଘନ ଜଙ୍ଗଲ ଛାଇ ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରାଣୀ ଏ ଦୁଇଜଣଙ୍କୁ କବର ଦେଲେ । ଏବେବି ସିମେଣ୍ଟର ଏକ ଛୋଟ ଚଉତରା ସେଠାରେ ଅଛି ।

ଏ ସମସ୍ତ ଘଟଣା ହ୍ୟୁରୋଜ ପକ୍ଷରେ ଉତ୍ସାହ ବଢ଼ାଇଲା ଭଳି ଥିଲା । ସହରର ପାଚେରିରେ କୋଉଠି ସିନ୍ଧି କରିହେବ । ସହର ଭିତରକୁ କୋଉ ରାସ୍ତାବାଟ ଦେଇ ପଶିବା ସମ୍ଭବ ହେବ, ସେସବୁ ତଥ୍ୟ ଗୁପ୍ତଚରମାନେ, ବିଶ୍ୱାସଘାତକମାନେ ହ୍ୟୁରୋଜଙ୍କୁ ଦେଲେ । ତାଙ୍କ ଅନୁସାରେ ହ୍ୟୁରୋଜ ଦ୍ୱିତୀୟ ଦିନ ଅର୍ଥାତ୍ ଏପ୍ରିଲ୍ ୩ ତାରିଖ ସକାଳ ତିନିଟାରେ ନିଜ ସେନା ପଠାଇଦେଲେ । ସେନାର ଗୋଟିଏ ଭାଗ ସହରର ପାଚେରିର ପଶ୍ଚିମପଟରୁ ଆକ୍ରମଣ କରିଦେବେ । ରାଣୀଙ୍କ ସେନା ସେ ପଟେ ଲଢ଼ିବାରେ ବ୍ୟସ୍ତ ରହିବେ । ଏହି ସମୟରେ ଅନ୍ୟପଟରୁ, ଆଉ ଦଳେ ଇଂରେଜ ସୈନ୍ୟ ପାଚେରି ଉପରେ ଶିଢ଼ି ଲଗାଇ ସେଠାରୁ କାନ୍ଥରେ ଚଢ଼ି ସହର ଭିତରେ ପଶିବେ ଓ ସେହି ସମୟରେ ବିଶ୍ୱାସଘାତକମାନେ ସହରର ଓରଛା କବାଟ ଖୋଲି ରଖିଥିବେ ଓ ସେଇ ବାଟେ ହ୍ୟୁରୋଜ ସହର ଭିତରେ ପଶିବ । ଏହିଭଳି ଯୋଜନା ପ୍ରସ୍ତୁତ କରାଗଲା ଓ ସେଇ ଅନୁସାରେ ନିଜର ସୈନ୍ୟ ଓ ସୈନିକ ଅଧିକାରୀମାନଙ୍କୁ ତାଙ୍କ ପାଇଁ ନିଶ୍ଚିତ କରାଯାଇଥିବା ସ୍ଥାନରେ ଉପସ୍ଥିତ ରହିବାକୁ କହିଲା ।

ରାତିରେ ଚନ୍ଦ୍ରକିରଣରେ ଆସୁଥିବା, ଇଂରେଜ ସୈନ୍ୟମାନଙ୍କ ହାତରେ ଥିବା ହତିଆରର ଶବ୍ଦ ପାଚେରିର ଆଖପାଖରେ ପହରା ଦେଉଥିବା ସିପାହିଙ୍କୁ ଶୁଣାଗଲା । ସେମାନେ ରଣଦୁନ୍ଦୁଭି ବଜାଇ ଶତ୍ରୁ ଆସିବାର ଖବର ଦେଇଦେଲେ। ପାଚେରି ଉପରୁ ବନ୍ଧୁକରୁ ଗୁଳିଚାଲିବା ଆରମ୍ଭ ହୋଇଗଲା । ଇଂରେଜସେନା ଏ ବିଷୟରେ ଅନଭିଜ୍ଞ ହୋଇଥିବାରୁ ଡରିଗଲେ, ଛିନ୍ନଛତ୍ର ହେଇଗଲେ । ପଛପଟକୁ ଫେରିବାରେ ଲାଗିଲେ । ପୁଣି ଅଚାନକ ଏକାଠି ହେଇ କୂଳ ଆଡ଼କୁ ଦଉଡ଼ି ଦଉଡ଼ି ଆସିବାରେ ଲାଗିଲେ । ପାଚେରିରେ ଶିଢ଼ି ଲଗାଇ ସିପାହି ଉପରକୁ ଚଢ଼ିବାରେ ଲାଗିଲେ । ପାଚେରି ଉପରେ ପହରା ଦେଉଥିବା ରାଣୀଙ୍କ ସିପାହିମାନେ ସିଢ଼ିଗୁଡ଼ିକୁ ପେଲି ତଳକୁ ପକାଇ ଦେଲେ, ଯେଉଁ ସିପାହିମାନେ ଶିଢ଼ି ଚଢ଼ି ଉପରେ ପହଞ୍ଚି ସାରିଥିଲେ ତାଙ୍କୁ ମାରିଦେଲେ । ଏଥିରେ ବହୁତ ଇଂରେଜ ଓ ହିନ୍ଦୁସ୍ଥାନୀ ସିପାହି ମଲେ । ଶିଢ଼ି ଚଢ଼ି ଉପରକୁ ଆସୁଥିବା ସିପାହିମାନଙ୍କ ଭିଡ଼କୁ ରୋକିବାକୁ ଚାହିଁ ବି ରୋକି ହେଉ ନ ଥିଲା । ଇଂରେଜ ସିପାହି ଘାସଗଦାକୁ ଗୋଟିଏ ଉପରେ ଗୋଟିଏ ରଖି ଚଢ଼ିବାକୁ ଚେଷ୍ଟା କରିବାରେ ଲାଗିଲେ । ସେହି ସମୟରେ ଅନ୍ୟପଟରୁ ହେଉଥିବା ଆକ୍ରମଣର ସାମ୍ନା ବି ସେମାନଙ୍କୁ କରିବାକୁ ପଡୁଥିଲା । ସହରର ଦକ୍ଷିଣ ଦିଗରୁ ସରଦାର ଦୁଲାଜୀ ପରଦେଶୀ ନିଜର ଚାରିହଜାର ସୈନିକଙ୍କୁ ସାଙ୍ଗରେ ନେଇ ଲଢୁଥିଲେ । କିନ୍ତୁ ତାଙ୍କ ପାଖରେ ଯେଉଁ ବନ୍ଧୁକ ଥିଲା, ତା' ପାଇଁ ବସ୍ତାରେ ଥିବା ଗୋଳା-ବାରୁଦ ଜାଗାରେ କୁଣ୍ଡା ଭର୍ତ୍ତି ହୋଇଥିଲା । ଏକଥା ଜଣାପଡ଼ିବାକ୍ଷଣି ସିପାହିମାନଙ୍କ ହାତଗୋଡ଼

ଥରିବାରେ ଲାଗିଲା । ଜଣେ ସରଦାର ନିଶ୍ଚିତ ଭାବରେ ଇଂରେଜମାନଙ୍କୁ ଭେଦ ବତାଉଛି, ବାଣପୁର ରାଜାଙ୍କର ଏହି ସନ୍ଦେହ ସତ ହେଲା ।*

ସେଠାରୁ ବନ୍ଧୁକରୁ ଗୁଳି ଚଳାଇବା ଅସମ୍ଭବ ହୋଇଗଲା । ସେଠାକାର ସିପାହି ଲଢ଼ିବା ବଦଳରେ କିଲ୍ଲା ଆଡ଼କୁ ଫେରି ଚାଲିଲେ ।

ଇଂରେଜ ସେନା ନିଜ ଯୋଜନା ଅନୁସାରେ ମହା ଥାଟବାଟରେ ଆଗକୁ ବଢ଼ି ଚାଲିଥିଲେ । ରାଣୀଙ୍କ ସେନାଙ୍କ ଶକ୍ତି ଇଂରେଜ ସେନାଙ୍କ ଆଗରେ ତିଷ୍ଠିପାରିଲା ନାହିଁ । ପାଚେରି ଉପରେ ଚଢ଼ି ଇଂରେଜ ସେନା ସହର ଭିତରେ ଓହ୍ଲାଇଲେ । ସେହି ସମୟରେ ଓରଛା ଦୁଆରବାଟେ ହ୍ୟୁରୋଜ ନିଜ ସୈନିକ ନେଇ ବିଜୟ ଘୋଷଣା କରି ସହର ଭିତରେ ପଶିଲେ । ବିଶ୍ୱାସଘାତକ ଦୁଲାଜୀ ସିଂହ କବାଟ ଖୋଲି ରଖିଥିଲେ । ରାଣୀଙ୍କ ସୈନିକ ହାତରେ ତଲୱାର ନେଇ ଶତ୍ରୁ ଉପରେ କୁଦି ପଡ଼ିଲେ ।

ଝାନ୍ସୀ ସହରର ପ୍ରତ୍ୟେକ ରାସ୍ତାରେ ଏବେ ମାରକାଟ ଆରମ୍ଭ ହୋଇଗଲା । ଇଂରେଜ ସୈନିକ ରାଜମହଲ ଆଡ଼କୁ ଓ କିଲ୍ଲା ଆଡ଼କୁ ଯିବା ରାସ୍ତା ଦିଗରେ ମୁହାଁଇଲେ । ଘରୁ ଘରୁ ଲୋକ ବାହାରି ଯାହା ହତିଆର ହାତରେ ପଡ଼ିଲା ତାକୁ ନେଇ, ଏମିତିକି ବାଡ଼ି ହାତରେ ଧରି ଶତ୍ରୁର ମୁକାବିଲା କରିବାରେ ଲାଗିଲେ । ଲୋକମାନଙ୍କ ଉଗ୍ର ଆଚରଣ ଦେଖି ଇଂରେଜ ସିପାହି ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହୋଇଗଲେ । ଶିଲ୍‌ବେଷ୍ଟର ଏହିପରି ଲେଖିଛନ୍ତି । ପ୍ରତି ପଦକ୍ଷେପରେ ହଣାକଟା ଚାଲିଥିଲା । କିନ୍ତୁ ଏଇ ଲଢ଼େଇ ସମସ୍କନ୍ଧ ଲୋକଙ୍କ ଭିତରେ ହେଇ ନ ଥିଲା । ରାସ୍ତାରେ ଯିବାଆସିବା କରୁଥିବା ପ୍ରତ୍ୟେକ ବ୍ୟକ୍ତିକୁ ଆହତ କରି ମାର-କାଟ କରି କରି ଇଂରେଜମାନେ ଆଗକୁ ବଢ଼ି ଚାଲିଥିଲେ । ଘର ଭିତରେ ପଶି ଲୋକଙ୍କୁ ମାରିବାରେ ଲାଗିଲେ । ପୁରୁଷମାନଙ୍କୁ ମାରି ଦେଉଥିଲେ । କିନ୍ତୁ ଘରର ସ୍ତ୍ରୀଲୋକମାନେ ଇଂରେଜମାନଙ୍କ ଅତ୍ୟାଚାର ଡରରେ ଘର ଭିତରେ ଥିବା କୂଅକୁ ଡେଇଁ ପ୍ରାଣ ଦେଇଦେଲେ । ଛୋଟ ଛୋଟ ପିଲାମାନେ ଦୟନୀୟ ଅବସ୍ଥାରେ ଚିତ୍କାର

---

*ଯୁଦ୍ଧ ସମାପ୍ତ ହେଲାକ୍ଷଣି ଇଂରେଜ ଶାସନ ଆରମ୍ଭ ହୋଇଗଲା ପରେ ଝାନ୍ସୀର କମିଶନର ଦୁଲାଜୀ ସିଂହ ପରଦେଶୀକୁ ଡକାଇଲେ । ତା' ବିଷୟରେ ଓ ତା' ବଂଶ ବିଷୟରେ ପଚରାପଚରି କଲେ । ତା' ବଂଶ କେତେ ପିଢ଼ିରୁ ଝାନ୍ସୀର ସେବାରେ ନିଯୁକ୍ତ ଥିଲେ । ଯାହାର ଲୁଣ ଖାଇଥିଲା ତା' ସାଙ୍ଗରେ ବେଇମାନି କଲାବାଲା, ଆମ ସହ ବି ବେଇମାନି କରିପାରେ ଏମିତି ମନୁଷ୍ୟ ପୃଥିବୀରେ ବଞ୍ଚିବା ଉଚିତ ନୁହେଁ, ଏମିତି କହି ଦୁଲାଜୀର ଭାଇମାନଙ୍କୁ ଗୁଳି କରି ମାରିଦେଲେ ଓ ଦୁଲାଜୀର ମୁଣ୍ଡ ତରବାରି ଦ୍ୱାରା କାଟି ଅଲଗା କରିଦେଲେ । (ମାଝାପ୍ରବାସ, ପୃଷ୍ଠା-୯୩)

ପାରସନିସ୍ ମାତ୍ର ତାଙ୍କ ପୁସ୍ତକ 'ଝାନ୍ସୀ କି ରାଣୀ'ରେ ଲେଖିଛନ୍ତି କି 'ଏହି ଅପୂର୍ବ ସହାୟତା ପାଇଁ ପରମ ରାଜନିଷ୍ଠ ଦୁଲାଜୀ ଠାକୁରଙ୍କୁ ଇଂରେଜ ସରକାର ଦୁଇଟି ଗାଁ ଭେଟି ଦେଇଥିଲେ । ଏମିତି ଶୁଣିବାକୁ ମିଳେ ।

କରି କରି ଇଆଡ଼େ ସିଆଡ଼େ ଦଉଡୁଥିଲେ । ଦେଖୁ ଦେଖୁ ରାସ୍ତା ଉପରେ ଆହତଙ୍କର, ମୃତବ୍ୟକ୍ତିଙ୍କର ଶବ ଗଦା ହୋଇଗଲା । ଚିତ୍କାର କରିବାର, କାନ୍ଦିବାର ସ୍ୱର ଚାରିଆଡୁ ଶୁଣାଯାଉଥିଲା । ସମଗ୍ର ରାସ୍ତାରେ ରକ୍ତନଦୀ ବୋହି ଚାଲିଥିଲା । ଇଂରେଜ ସିପାହି ରାସ୍ତା ଦୁଇ କଡ଼ରେ ଥିବା ଘରମାନଙ୍କରେ ନିଆଁ ଲଗାଇ ଦେଉଥିଲେ । ହଲୱାଇପୁର, ସରାଫା ପରି ଧନୀ ଲୋକଙ୍କ ବସ୍ତିରେ ବି ନିଆଁ ଲଗେଇ ଦେଇ ତାକୁ ପୂରାପୂରି ନଷ୍ଟଭ୍ରଷ୍ଟ କରିଦେଲେ । ଇଂରେଜସେନା ଆଗକୁ ବଢ଼ିଚାଲିଲେ । କିଛି ସମୟ ପରେ ଇଂରେଜ ସିପାହି ସହରସ୍ଥିତ ରାଜମହଲ ନିକଟରେ ପହଞ୍ଚିଗଲେ । ସର୍ବପ୍ରଥମେ ରାଜମହଲ ସାମନାରେ ନିର୍ମାଣ କରାଯାଇଥିବା ଭବ୍ୟ ଗ୍ରନ୍ଥାଳୟ ଆଡ଼କୁ ମାଡ଼ିଗଲେ । ଭିତରେ ରଖାଯାଇଥିବା ହଜାର ହଜାର ବହି କାଢ଼ି ସେଥିରେ ନିଆଁ ଲଗାଇଦେଲେ ଓ ଶେଷରେ ଗ୍ରନ୍ଥାଳୟଟିକୁ ଜଳାଇ ଦେଲେ । ପାଖରେ ଗୋଟିଏ ଅଶ୍ୱଶାଳା ଥିଲା । ସେଠାରେ ସେତେବେଳେ ମାତ୍ର ୫୦ ଜଣ ଅଶ୍ୱାରୋହୀ ଥିଲେ । ନିଜ ଜୀବନକୁ ବାଜି ଲଗେଇ ସେମାନେ ଇଂରେଜ ସିପାହିମାନଙ୍କୁ ଅଟକାଇବାକୁ ଚେଷ୍ଟା କଲେ । କିନ୍ତୁ ତାଙ୍କର ଚେଷ୍ଟା ସଫଳ ହେଲା ନାହିଁ । ଇଂରେଜ ସିପାହିମାନେ ସମସ୍ତଙ୍କୁ ମାରିଦେଲେ । ଅଶ୍ୱଶାଳା ନଷ୍ଟକରି ଦେଲେ ଓ ସେମାନେ ରାଜମହଲର ପ୍ରବେଶଦ୍ୱାର ଯାଏ ପହଞ୍ଚିଗଲେ ।

ରାଜମହଲରେ ପହରା ଦେବାକୁ ଚାଳିଶଜଣ ସିପାହି ଥିଲେ । ସେମାନେ ବି ପ୍ରାଣପଣେ ଇଂରେଜଙ୍କ ବିରୋଧ କଲେ । ତରବାରି ଦ୍ୱାରା ତାଙ୍କର ମୁକାବିଲା କଲେ । କିନ୍ତୁ ଇଂରେଜଙ୍କ ସଂଖ୍ୟା ବଢ଼ିଚାଲିଲା । ଚାରିପଟରୁ ସେମାନେ ଘେରାଉ କରି ସାରିଥିଲେ । ପ୍ରଚଣ୍ଡ ଖରା ହେଉଥିଲା । ଆଖପାଖ ଇଲାକାରେ ଲାଗିଥିବା ନିଆଁ କାରଣରୁ, ଧୂଆଁ ଓ ଗରମପବନର ଲହରି ତୀବ୍ର ହେଇ ଯାଇଥିଲା । ନିଃଶ୍ୱାସ ନେବା କଷ୍ଟ ହେଇ ଯାଇଥିଲା । ଦେଖୁ ଦେଖୁ ସେହି ୪୦ ଜଣ ସିପାହିଙ୍କୁ ମାରି ଇଂରେଜ ସିପାହି ରାଜମହଲ ଭିତରକୁ ପଶିଗଲେ । ମହଲର ସୌନ୍ଦର୍ଯ୍ୟ ସେଠାକାର ରଙ୍ଗବେରଙ୍ଗ କଳାକୃତି ଓ ବୈଭବ ଦେଖି ଇଂରାଜୀ ସିପାହି ବିଜୟ ଖୁସୀରେ ଲୁଟ୍‌ପାଟ୍ ଆଶାରେ ଉତ୍ପାତ କରିବା ଆରମ୍ଭ କରିଦେଲେ । ଏବେ ଲଢ଼େଇ ଭୁଲିଯାଇ ସମସ୍ତେ ଲୁଟ୍‌ପାଟ୍‌ରେ ବ୍ୟସ୍ତ ହେଇଗଲେ । ଯାହା ହାତରେ ଯାହା ପଡୁଥିଲା ସେ ନିଜ ପକେଟରେ କି ଥଳିରେ ଭରିବାରେ ଲାଗିଥିଲା । ସେଠି କେବଳ ବହୁମୂଲ୍ୟ ବସ୍ତୁ ନୁହେଁ, ବରଂ ଯାହା ଜିନିଷ ଆଖିକୁ ଦିଶୁଥିଲା ଲୁଟି ନେଉଥିଲେ । ଦରି, ଚାଦର, ତକିଆ, ଗଦି ଏପରିକି ଢୋଲ, ନାଗରା ବି ଲୁଟି ନେଇଗଲେ । ପରେ ମହାଲକ୍ଷ୍ମୀ ମନ୍ଦିରକୁ ବି ସଂପୂର୍ଣ୍ଣ ଲୁଟି ନେଲେ । ରାଣୀମହଲରେ ଝାନ୍‌ସୀର ପୂର୍ବ ସୁବେଦାର ରାମଚନ୍ଦ୍ର ରାଓଙ୍କୁ ଲର୍ଡ୍ ୱିଲିୟମ୍ ବେଣ୍ଟିଙ୍କ୍ ଯେଉଁ ବ୍ରିଟିଶ୍ ୟୁନିୟନ ଜ୍ୟାକ୍ ଦେଇଥିଲେ ତାହା ମିଳିଗଲା । ତୁରନ୍ତ ରାଜମହଲର ଦର୍ଶନୀ ଦ୍ୱାର ଉପରୁ ରାଣୀଙ୍କର ପେଶୱାଇ ପତାକା କାଢ଼ି ତା’ ଜାଗାରେ ୟୁନିୟନ ଜ୍ୟାକ୍ ଉଡ଼ିବାରେ ଲାଗିଲା ।

ଅଧରାତିରୁ ହିଁ ଯୁଦ୍ଧର ଖବର କିଲ୍ଲାରେ ପହଞ୍ଚୁଥିଲା । ଇଂରେଜ ଫୌଜକୁ ସହର ଭିତରେ ପଶିବାର ଦେଖିବା ଯାତନାଦାୟକ ଥିଲା । କିଲ୍ଲା ଉପରେ ସଂକଟର ବାଦଲ ଘେରି ରହିଥିଲା । ରାଣୀ ଲକ୍ଷ୍ମୀବାଈ କିଲ୍ଲା ପାଚେରି ଉପରୁ ସହର ଉପରେ ଦୃଷ୍ଟି ପକାଇଲେ । ଜାଗା ଜାଗାରେ ନିଆଁ ଉଠୁଥିବା ଦେଖାଯାଉଥିଲା । ଜୀବନକୁ ବାଜି ଲଗାଇଥିବା ଇଂରେଜଙ୍କ ସହ ପ୍ରାଣପଣେ ମୁକାବିଲା କରିଥିବା ଆହତ ବୀର ସିପାହିମାନେ ଦେଖାଯାଉଥିଲେ । ଚାରିଆଡ଼େ ବିକଳ କାନ୍ଦଣା, ଚିତ୍କାର, ପାଟିତୁଣ୍ଡ, ବନ୍ଧୁକ ଫୁଟିବାର ଶବ୍ଦ ବାତାବରଣକୁ ଅଣନିଃଶ୍ୱାସୀ କରି ଦେଇଥିଲା । ତୋପର ଶବ୍ଦ ଶାନ୍ତ ହୋଇ ସାରିଥିଲା । ହାତୀ, ଘୋଡ଼ା, ବଳଦ, ଗାଈ, ମଇଁଷି, ଗଧ, କୁକୁର ଅନାଥ ଭଳି ଚିଲ୍ଲେଇ-ଭୁକି ଇଆଡ଼େ ସିଆଡ଼େ ଦଉଡୁଥିଲେ । ସୁନ୍ଦର, ଭବ୍ୟ, ଶାନ୍ତ ସହର ଶୂନ୍‌ଶାନ୍ ଓ ଭୟଙ୍କର ପ୍ରତୀତ ହେଉଥିଲା । ସାରା ସହରଟା ଯେମିତି ଶ୍ମଶାନ ପାଲଟିଯାଇଛି ସେମିତି ଲାଗୁଥିଲା । ରାଣୀଙ୍କ ହୃଦୟ ଏହିସବୁ ଦୃଶ୍ୟକୁ ଦେଖି ଆହତ ଓ ବ୍ୟଥିତ ହେଲା ।

ନିଜର ପ୍ରିୟ ଝାନ୍ସୀ ସହରର ଏଭଳି କରୁଣ ଅବସ୍ଥା, ତାଙ୍କ ପ୍ରତି ପ୍ରେମ ପ୍ରଦର୍ଶନ କରୁଥିବା ପ୍ରଜାମାନଙ୍କର ଏଭଳି ଯାତନା ଲକ୍ଷ୍ମୀବାଈଙ୍କ ପାଇଁ ଅସହ୍ୟ ହୋଇଗଲା । ଏହି ପରିସ୍ଥିତିରେ ଚିନ୍ତିତ ହୋଇ ରାଣୀ ସ୍ୱୟଂ ନିଜ ହାତରେ ତରବାରି ଉଠାଇନେଲେ । ଘୋଡ଼ା ଉପରେ ଚଢ଼ି ପବନ ଗତିରେ କିଲ୍ଲା ଉପରୁ ତଳକୁ ଓହ୍ଲାଇ ସହର ଭିତରକୁ ଆସିଲେ ଓ ଭିଡ଼ ଭିତରେ ପଶିଗଲେ । ପାଖାପାଖି ପନ୍ଦରଶହ ଏକନିଷ୍ଠ ସୈନିକ ବି ତାଙ୍କ ପଛେ ପଛେ ଭିଡ଼ ଭିତରକୁ ପଶିଗଲେ ତାଙ୍କୁ ସୁରକ୍ଷା ଦେବାକୁ ଓ ତାଙ୍କ ସହ ମିଶି ଇଂରେଜ ବିରୋଧରେ ଯୁଦ୍ଧ କରିବାକୁ । ଲକ୍ଷ୍ମୀବାଈ ବିଜୁଳି ବେଗରେ ଇଂରେଜମାନଙ୍କ ଉପରେ ଆକ୍ରମଣ କରିଦେଲେ । ବାଁ-ଡାହାଣରେ, ସାମ୍ନାସାମ୍ନି, ଏପଟେ-ସେପଟେ ଯେଉଁଠି ବି ଇଂରେଜ ଦେଖାଯାଉଥିଲେ, ରାଣୀ ନିଜ ତରବାରି ଚଳାଇ ତାକୁ ଆହତ କରି ଦେଉଥିଲେ । ନ ହେଲେ ଜୀବନରୁ ମାରି ଦେଉଥିଲେ । ତାଙ୍କର ଏଇ କ୍ରୋଧଭରା ଆବେଗ, ସାହସ, ଜୋଶ, ଶୌର୍ଯ୍ୟ, ତରବାରି ଚାଳନା ତାଙ୍କ ସୁନ୍ଦର ଚେହେରାରେ କ୍ରୋଧର ରକ୍ତିମ ଆଭା ଦେଖି ହ୍ୟୁରୋଜଙ୍କର ହାତ ଅଚାନକ ଅଟକିଗଲା । ସ୍ତମ୍ଭିତ ରହିଗଲେ ହ୍ୟୁରୋଜ । ଇଂରେଜ ସିପାହି ପଛକୁ ହଟିଗଲେ । ଘର ଓ ମହଲ ପଛରେ ଲୁଚି ଗୁଳି ଚଳାଇଲେ । କୌଣସି ଏକ ଗୁଳି ଅଚାନକ ଯାଇ ରାଣୀଙ୍କୁ ଲାଗିବାର ସମ୍ଭାବନା ବି ଥିଲା ।

କିନ୍ତୁ ରାଣୀ ନିଜ ଜୀବନକୁ ଏମିତି ବିପଦରେ ପକାଇବା ଉଚିତ ନୁହେଁ ବୋଲି ତାଙ୍କର ଜଣେ ବରିଷ୍ଠ, ଅନୁଭବୀ ସରଦାର ତାଙ୍କୁ ପରାମର୍ଶ ଦେଲେ । ସେ ରାଣୀଙ୍କୁ ଅନୁରୋଧ କରି କହିଲେ "ଏମିତି ଭିଡ଼ ଭିତରେ ପଶି ମାର୍‌କାଟ୍ କରି ଲଢ଼ାଇ କରିବା ସମୟରେ କାହାର ବି ଗୋଟିଏ ଗୁଳିବାଜି ମରିବା ବିଧବା ମରିବା ସହ ସମାନ । ଏମିତି ମରିବାକୁ ଏକ ପ୍ରତିଷ୍ଠାପୂର୍ଣ୍ଣ ଶହୀଦର ମୃତ୍ୟୁ କୁହାଯିବ ନାହିଁ । ଭଲ ହେବ ଆପଣ କିଲ୍ଲା

ଭିତରକୁ ଫେରିଯାଆନ୍ତୁ, ଏହା ଆବଶ୍ୟକ । ବିଚାର ବିମର୍ଶ କରି ଈଶ୍ୱର ଯେମିତି ବୁଦ୍ଧି ଦେବେ, ସେମିତି ନିର୍ଣ୍ଣୟ ନେଇ ସେଇ ଉପାୟ କରିବା ଦରକାର । ସେଇଆ ହିଁ ଆମ ପାଇଁ ଭଲ । ସେଥିପାଇଁ ଦୟାକରି କିଲ୍ଲାକୁ ଫେରିଯାଆନ୍ତୁ ।'' (ମାଝାପ୍ରବାସ, ପୃଷ୍ଠା ୯୧)

ନିଜ ବରିଷ୍ଠ ପରାମର୍ଶଦାତାଙ୍କ କଥା ମାନି ସେ କିଲ୍ଲା ଭିତରକୁ ଫେରିଆସିଲେ । ପଛେ-ପଛେ ସିପାହି, ଅନ୍ୟ ସୈନିକ ଘୋଷଣା କରି କରି କିଲ୍ଲା ଭିତରକୁ ଫେରିଗଲେ ।

ସନ୍ଧ୍ୟା ସମୟ ଥିଲା । ଭାବୀ ଯୋଜନା ବନାଇବା ଓ ତା' ଉପରେ ନିର୍ଣ୍ଣୟ ନେବା ବହୁତ ଜରୁରି ଥିଲା । ଏବେ ଭବିଷ୍ୟତ୍‌ର ରାସ୍ତା ବହୁତ୍ କଠିନ ଓ ବାଧାବିଘ୍ନ ଥିବା ମନେ ହେଉଥିଲା । ସହର ଭିତରେ ଇଂରେଜ ଉତ୍ପାତ କରୁଥିଲେ । ''ଯେକୌଣସି ମୁହୂର୍ତ୍ତରେ ଇଂରେଜ କିଲ୍ଲା ଭିତରେ ପ୍ରବେଶ କରିବା ନିମନ୍ତେ କିଲ୍ଲା ଦ୍ୱାର ପାଖରେ ପହଞ୍ଚିପାରନ୍ତି । ଯୁଦ୍ଧ ତ ଆମେ ହାରିସାରିଛେ । ହ୍ୟୁରୋଜ କେତେବେଳେ ବି କିଲ୍ଲା ଅଧିକାର କରି ଆମକୁ ବନ୍ଦୀ ବନାଇପାରେ । ତା'ପରେ ସେ ଆମର କେତେ ଦୁର୍ଗତି ଓ ଆମ ଉପରେ କେତେ ଅନ୍ୟାୟ କରିବ କହିବା କଷ୍ଟ । ଏବେ ଏଇଆ ଉଚିତ ହେବ କି ଏଇ ମହଲରେ ଗୋଳାବାରୁଦ ଭରି, ସେଥିରେ ନିଆଁ ଲଗାଇ, ନିଜ ଶରୀରକୁ ଜଳାଇ ଦେବି ।'' ଦରବାରୀମାନଙ୍କ ସାମନାରେ ନିଜ ଭାବନା ବ୍ୟକ୍ତ କରି ରାଣୀ ଆହୁରି କହିଲେ, ''କିଛି ସମୟ ପରେ ରାତିର ଅନ୍ଧାର ମାଡ଼ିଆସିବ, ଯେଉଁମାନେ ଏଠାରୁ ପଳାୟନ କରିବାକୁ ଚାହାନ୍ତି, ସେମାନେ ଯାଇପାରନ୍ତି, ମୁଁ ତ ମୋର ଅନ୍ତ ନିଶ୍ଚିତ କରିସାରିଚି ।'' ରାଣୀଙ୍କୁ କେବେବି ମୃତ୍ୟୁ ଭୟ ନ ଥିଲା । ''ସେ ଭାବିଲେ ଯଦି ଯୁଦ୍ଧରେ ଲଢୁ ଲଢୁ ସେ ଶହୀଦ ବି ହେଇଯିବେ ତେବେବି ତାଙ୍କର ଏ ନାରୀ ଦେହ ଯେପରି ଶତ୍ରୁ ହାତରେ ନ ପଡ଼େ । ମୋ ଶରୀର ଜୀବିତ ବା ମୃତ ଅବସ୍ଥାରେ ପଡ଼ିଯିବ, ତା'ହେଲେ ସେମାନେ ମୋ ଶରୀରର ଅପମାନ କରିବେ । ଚିଲ, ଶାଗୁଣା ପରି ମତେ ଟାଣିଓଟାରି ଖାଇବେ ।'' ଏମିତି ଏକ ଡର ତାଙ୍କ ମନ ଭିତରେ ଥିଲା । ସେଥିପାଇଁ ସେ ଶରୀରକୁ ଅଗ୍ନି ସମର୍ପଣ କରି ଜୀବନ ସମାପ୍ତ କରିବାକୁ ନିଷ୍ପତ୍ତି ନେଇଥିଲେ ।

କିଛି ଦିନ ପରେ ଇଂରେଜମାନେ ଭାବିଲେ ରାଣୀ ଯେଉଁ ଘୋଷଣା କରିଥିଲେ, ସେଥିରେ ବୋଧେ ତାଙ୍କର ସତୀ ହେବାର ଇଚ୍ଛା ରହିଥିବ । ଡକ୍ଟର ଲୀ ନିଜ ପୁସ୍ତକ ସେଣ୍ଟ୍ରାଲ ଇଣ୍ଡିଆରେ ଲେଖିଛନ୍ତି ''କିଲ୍ଲାରୁ ବାହାରି ପଳାୟନ କରିବା ସମ୍ଭବ ନ ଥିଲା । ସେଥିପାଇଁ ସେ ସତୀ ହେବାର ନିର୍ଣ୍ଣୟ ନେଇଥିଲେ । ଏମିତି ଖବର ଚାରିଆଡ଼େ ବ୍ୟାପି ଯାଇଥିଲା ।'' (ପୃଷ୍ଠା ୨୬୦)

ଲକ୍ଷ୍ମୀବାଈଙ୍କର ଏହି ନିର୍ଣ୍ଣୟ ଶୁଣି ଦରବାରର ଲୋକେ ଭାବପ୍ରବଣ ହୋଇଗଲେ । ସେମାନଙ୍କ ଆଖିରେ ଲୁହ ଆସିଗଲା । ନିଜର ଏଇ ବୁଦ୍ଧିମାନ୍ ରାଣୀଙ୍କୁ ସେମାନେ ବହୁତ ଭଲ ପାଉଥିଲେ । ତାଙ୍କର ଜାଣିବାରପଣିଆ, ଶୌର୍ଯ୍ୟ ଚତୁରତା, ସାହସ ଓ ପ୍ରଜାଙ୍କ ପ୍ରତି ଥିବା ପ୍ରେମ କାରଣରୁ ଲୋକଙ୍କ ମନରେ ନିଜ ରାଣୀଙ୍କ ପ୍ରତି ପରମଆଦର ଭାବ ଥିଲା ।

ଆଜି ନିୟତି ତାଙ୍କ ସହ ଅଦ୍ଭୁତ ଖେଳ ଖେଳୁଛି, ତାଙ୍କ ଉପରେ ବକ୍ର ପକାଉଛି । ଏହି ସମସ୍ୟାର କୌଣସି ନା କୌଣସି ସମାଧାନ ଖୋଜି ବାହାର କରିବାକୁ ପଡ଼ିବ । ଏମିତି ମୃତ୍ୟୁ ଏକ ଶୂରବୀର ପାଇଁ ଉଚିତ ହେବ ନାହିଁ । ଯେଉଁ ଲୋକମାନେ ରାଣୀଙ୍କୁ ସହରରେ ଉପଦ୍ରବରୁ ବାହାର କରି କିଲ୍ଲାରେ ପହଞ୍ଚାଇଥିଲେ, ସେହି ଲୋକମାନେ ଆଜି ତାଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲେ । ନିଜ ଶରୀର ଛିନ୍ନଛତ୍ର ହେବା ଭୟରେ ଚିନ୍ତିତ ଥିବା ରାଣୀଙ୍କୁ ସେମାନେ ବଚନ ଦେଲେ ଯେତେବେଳପର୍ଯ୍ୟନ୍ତ ଆମ ଶରୀରରେ ପ୍ରାଣ ଥିବ, ସେତେବେଳଯାଏ ଆମେ ଆପଣଙ୍କୁ ରକ୍ଷା କରିବୁ ଓ ମୃତ୍ୟୁ ହୋଇଯିବା କ୍ଷେତ୍ରରେ ମୃତ ଶରୀରକୁ ଶତ୍ରୁ ହାତରେ ପଡ଼ିବାକୁ ଦେବୁ ନାହିଁ । ସେମାନଙ୍କ କହିବା ଅନୁସାରେ ଦୁର୍ଭାଗ୍ୟରୁ ଏହି ସଂକଟ ରାଣୀସାହେବାଙ୍କ ଉପରେ ଆସି ପଡ଼ିଛି, ଝାନ୍ସୀ ବି ସୁରକ୍ଷିତ ନୁହେଁ । କିନ୍ତୁ ରାଣୀ ଏଥିପାଇଁ ହତାଶ ହେବା ଉଚିତ ନୁହେଁ । ଆମକୁ କୌଣସି ନା କୌଣସି ରାସ୍ତା ଖୋଜି ବାହାର କରିବାକୁ ପଡ଼ିବ । ଆତ୍ମହତ୍ୟା କରିବା ମହାପାପ । ଶୂରବୀରମାନଙ୍କୁ ତ ଆତ୍ମହତ୍ୟା ବିଷୟରେ ଭାବିବା କଥା ବି ନୁହେଁ । କୌଣସି ଏକ ବିକଳ୍ପ ଖୋଜିବା କଥା । ଏବେ କିଲ୍ଲା ଭିତରେ ରହିବା ନିରାପଦ ନୁହେଁ । ଏଣୁ ରାତି ଅନ୍ଧାରର ଫାଇଦା ଉଠାଇ, କିଲ୍ଲାରୁ ତଳକୁ ଓହ୍ଲାଇ, ଶତ୍ରୁଙ୍କ ଭିଡ଼ ଚିରି ସହର ବାହାରକୁ ଚାଲିଯିବା ହିଁ ଉଚିତ ହେବ । ଏଠାରୁ ଚାଲିଯାଇ ପେଶୱାଙ୍କ ପାଖରେ କାଲ୍ପୀ ପହଞ୍ଚିଲେ ଯାଇ ଆମେ ଭଲରେ ରହିବା ଓ ଆମକୁ ସୁରକ୍ଷା ମିଳିବ । ସେଠାରେ ରାଓସାହେବ, ତାନ୍ତ୍ୟା ଟୋପେ ଅଛନ୍ତି । ତାଙ୍କ ପାଖରେ ବହୁତ ସୈନ୍ୟବଳ, ହତିଆର ଓ ଗୋଳାବାରୁଦ ବି ଅଛି । ସେଠାରେ ସମସ୍ତେ ମିଶି ଭାବିଚିନ୍ତି ଭବିଷ୍ୟତ୍ ଯୋଜନା ପ୍ରସ୍ତୁତ କରିବା । ଆତ୍ମହତ୍ୟା କଥା ଚିନ୍ତା କରିବା ଭୁଲ୍ ଓ ପାପ । ଶୂରବୀରଙ୍କୁ ଏମିତି ମୃତ୍ୟୁ ଶୋଭା ଦିଏ ନାହିଁ । ତାହାଠାରୁ ଭଲ ହେବ ଶତ୍ରୁ ସହ ମୁକାବିଲା କରି ବୀରଗତି ପ୍ରାପ୍ତ କରିବା । ଏମିତି କଲେ ସ୍ୱର୍ଗର ଦ୍ୱାର ଆପେ ଆପେ ଖୋଲିଯାଏ ।

ନିଜର ବରିଷ୍ଠ ଦରବାରୀମାନଙ୍କ କଥା ଶୁଣି ଲକ୍ଷ୍ମୀବାଈଙ୍କ ସାହସ ବଢ଼ିଗଲା । ରାତିରେ ସମସ୍ତେ ମିଳିମିଶି ଭୋଜନ କଲେ । ଆଗାମି ପ୍ରସ୍ତୁତି ପାଇଁ କୁହାଗଲା । ନିଜର ଚାକର-ପୂଜାରୀ, ସେବକ-ସେବିକା, ଆଶ୍ରିତ ଲୋକ ଓ ରାଜମହଲର ନିଜର ନିକଟସ୍ଥ ଲୋକଙ୍କୁ ସେ ଡକାଇଲେ । ପ୍ରତ୍ୟେକକୁ କିଛି ନା କିଛି ଉପହାର ଦେଇ ଗୁପ୍ତ ଦ୍ୱାର ବାଟେ କିଲ୍ଲାରୁ ବାହାରକୁ ଯିବା କଥା କହିଲେ । ରାଣୀସାହେବାଙ୍କ ପାଖରୁ ଏଭଳି ଭାବରେ ବିଦାୟ ନେଲାବେଳେ ସମସ୍ତଙ୍କୁ ବହୁତ ଦୁଃଖ ହେଉଥିଲା । ସେମାନଙ୍କ ଭିତରୁ କିଛି ଲୋକ ରାଣୀସାହେବାଙ୍କ ସହ ଯିବାକୁ ଜିଦି କଲେ ।

‘‘ରାଣୀସାହେବା ସ୍ୱୟଂ ଧଳାଘୋଡ଼ାରେ ବସିଲେ । ଏହି ଘୋଡ଼ା ବହୁତ ପରାକ୍ରମୀ ଓ ସାହସୀ ଥିଲା । ଏହାର ମୂଲ୍ୟ ପାଖାପାଖି ଅଢ଼େଇହଜାର ଟଙ୍କା ଥିଲା । ଶରୀରରେ ପଠାଣ ପୁରୁଷ ପୋଷାକ ଧାରଣ କରି ସେ ଘୋଡ଼ା ପିଠିରେ ବସିଲେ । ସେ ସୈନିକ ବୁଟ

ପିନ୍ଧି ଦେଲେ ଓ କବଚ ପିନ୍ଧିଦେଇ ନିଜ ଶରୀରକୁ ସୁରକ୍ଷିତ କରିନେଲେ । କେବଳ ଗୋଟିଏ ଟଙ୍କା ସେ ନିଜ ଗଣ୍ଠିରେ ବାନ୍ଧିଥିଲେ । ଅଣ୍ଟା ଚାରିପାଖରେ ସେ କଟୁରୀ ଓ ଅନ୍ୟ ଛୋଟ ଛୋଟ ହତିଆର ବାନ୍ଧି ଦେଇଥିଲେ । ସାଙ୍ଗରେ ତରବାରି ଥିଲା ଓ ପିଠିରେ ନିଜର ବାରବର୍ଷର ପୋଷ୍ୟପୁତ୍ରକୁ ରେଶମୀ ଧଡ଼ି ଥିବା ଧୋତିରେ ବାନ୍ଧିଥିଲେ । ଜୟ ଶଙ୍କର କହି, ରାଣୀ କିଲ୍ଲାରୁ ତଳକୁ ଓହ୍ଲାଇଲେ ଓ ସମସ୍ତଙ୍କୁ ସାଙ୍ଗରେ ଧରି ବଜାର ଭିତର ଦେଇ ବାହାରକୁ ଚାଲିଗଲେ । ରାଣୀ ଇଂରେଜ ସେନାଙ୍କ ସହିତ ଲଢୁ ଲଢୁ ସୈନିକମାନଙ୍କ ଭିତରେ ହିଁ ରାସ୍ତା କାଟି ପବନ ଗତିରେ ନିଜ ଘୋଡ଼ାକୁ ଦଉଡ଼ାଇ ନେଇଗଲେ । ତାଙ୍କ ସାଙ୍ଗରେ ଯାଉଥିବା ସବୁ ସୈନିକ ମୃତ୍ୟୁମୁଖରେ ପଡ଼ି ସାରିଥିଲେ । କେବଳ ଗୋଟିଏ ଦାସୀ, ଗୋଟିଏ ଅଶ୍ୱାରୋହୀ ସୈନିକ ଏମିତି ଦୁଇ ଓ ସ୍ୱୟଂ ରାଣୀସାହିବା ଏମିତି ତିନିଜଣ ସିଧା କାଲ୍ପୀ ରାସ୍ତାରେ ତାଙ୍କ ଘୋଡ଼ା ଦଉଡ଼ାଇବାରେ ଲାଗିଲେ ।''*(ମାଝାପ୍ରବାସ)

ଏହି ଘଟଣା ଚାରି ଏପ୍ରିଲ ଅଧରାତିର କଥା । ଯେତେବେଳେ ରାଣୀ ଲକ୍ଷ୍ମୀବାଈ କିଲ୍ଲାରୁ ବାହାରିଥିଲେ, ରାସ୍ତା ଦୁଇ ପାଖର ଲୋକେ ତାଙ୍କୁ ଅଶ୍ରୁପୂର୍ଣ୍ଣ ନେତ୍ରରେ ବିଦାୟ ଦେବାକୁ ଠିଆ ହୋଇଥିଲେ । ରାଣୀ ଉତ୍ତରପଟରେ ଥିବା ଭାଣ୍ଡେର (ଖଣ୍ଡେରାଓ) ଦ୍ୱାର ବାଟେ ତୀବ୍ର ଗତିରେ ବାହାରକୁ ବାହାରିଗଲେ । ତାଙ୍କ ପଛେ ପଛେ ପଚାଶ ଅଶ୍ୱାରୋହୀ ବି ଥିଲେ । କାଶୀ, ସୁନ୍ଦର, ମୁନ୍ଦର ଆଦି ଦାସୀମାନେ ବି ଥିଲେ । ସହରର ପାଚେରି ପାଖରେ ଶତ୍ରୁସେନା ତାଙ୍କ ବାଟ ବନ୍ଦ କରିବାକୁ ଚେଷ୍ଟା କଲେ । ସେତେବେଳେ ସେ ଚତୁରତାର ଆଶ୍ରୟ ନେଲେ । ସେ ଇଂରେଜ ଶତ୍ରୁ ସେନାଙ୍କୁ କହିଲେ କି 'ଆମେମାନେ ଆପଣଙ୍କ ସେନାରେ କାମ କରୁଛୁ । ହ୍ୟୁରୋଜ ଶିବିର ଆଡ଼କୁ ଯାଉଛୁ । ଏମିତି ଭାବରେ ଶତ୍ରୁ ଆଖିରେ ଧୂଳି ଦେଇ ଉପସ୍ଥିତ ବିପଦରୁ ରକ୍ଷା ପାଇଗଲେ । ସହରରୁ ବାହାରକୁ ବାହାରିଲା ପରେ ରାଣୀ କାଲ୍ପୀ ଯିବାପାଇଁ ନିଜ ଘୋଡ଼ାର ଗତି ଆହୁରି ବଢ଼ାଇ ଦେଲେ । କାରଣ ସେ ଜାଣିଥିଲେ ଶତ୍ରୁସୈନ୍ୟ ନିଶ୍ଚୟ ତାଙ୍କ ପଛେ ପଛେ ଆସିବେ ।

କ୍ଲାର୍ଡ଼ ଏହି ଘଟଣା ବିଷୟରେ ବର୍ଣ୍ଣନା କରି ଲେଖିଛନ୍ତି । ଦ୍ୱିତୀୟ ଦିନ, ୪ ଏପ୍ରିଲକୁ ଇଂରେଜ ସେନା ସହର ଅଧିକାର କରିନେଲେ । ସନ୍ଧ୍ୟାରେ ତିନିଶହ ବଛା ବଛା ସୈନିକ ଓ ପଚିଶ ଅଶ୍ୱାରୋହୀଙ୍କୁ ସାଙ୍ଗରେ ନେଇ ରାଣୀ କିଲ୍ଲା ଛାଡ଼ିଦେଲେ ଓ କାଲ୍ପୀ ଆଡ଼କୁ ଲୁଚି ପଳାଇଲେ । ପରେ ଜଣାପଡ଼ିଲା ଯେ କିଲ୍ଲାରୁ ତଳେ ଓହ୍ଲାଇ ତାଙ୍କ ଘୋଡ଼ା ଦ୍ୱାର ପାଖରେ ଅଟକିଗଲା । ସାର୍ ହ୍ୟୁରୋଜ ବାହିନୀରେ କାର୍ଯ୍ୟରତ ଏକ ଦେଶୀ

---

*ପାରସନିସ୍ ଦତ୍ତକ ପୁତ୍ର ବିଷୟରେ ଅଲଗା ଦୃଷ୍ଟାନ୍ତ ଦେଇଛନ୍ତି । ଦାମୋଦର ରାଓ କହିବାନୁସାରେ, ରାଣୀସାହେବାଙ୍କ ପ୍ରଶାସକମାନେ ହତାଶ ହୋଇ ଏମିତି ଦାରୁଣ ପ୍ରାଣ ତ୍ୟାଗ ଯୋଜନା ବନାଇଥିଲେ ଓ ରାଣୀସାହେବା ତାକୁ ନାପସନ୍ଦ କରି ଯୁଦ୍ଧଭୂମିରେ ଶହୀଦ ହେବାର ନିର୍ଣ୍ଣୟ ନେଲେ । (ପାରସନିସ୍ ଝାନ୍ସୀ କି ରାଣୀ, ପୃଷ୍ଠା ୧୫୫) ।

ସିପାହିର ସାହାଯ୍ୟରେ ଏକ ଝରକା ବାଟେ ବାହାରକୁ ବାହାରି ସେ ଘୋଡ଼ା ଉପରେ ଚଢ଼ିଲେ । ତାଙ୍କ କୋଳରେ ତାଙ୍କ ପୁତ୍ର ଥିଲା । ସେହିଠାରୁ ସେ ଆଗକୁ ଚାଲିଲେ ।

କର୍ଣ୍ଣେଲ ମେଡ଼ୋଜ ଟେଲର ନିଜ ବହିରେ ଲେଖିଛନ୍ତି "ବହୁତ ରାତି ବିତି ଯାଇଥିଲା, କିଲ୍ଲାର ଗୋଟିଏ ପଟ ଦ୍ୱାର ଖୋଲାଗଲା ଓ ଦୁଃଖୀ ମନରେ ଏକ ଦଳ ସେଠାରୁ ବାହାରିଲେ । ପଠାଣ ପୁରୁଷ ବେଶରେ ରାଣୀ ଓ ବୋଧହୁଏ ତାଙ୍କର ଭଉଣୀ କି ସଖୀ, କିଛି ଲୋକଙ୍କୁ ସାଙ୍ଗରେ ନେଇ ଚୁପ୍‌ଚାପ୍ ଦ୍ୱାର ବାଟେ ଅନ୍ଧାରରେ ଗାୟବ ହୋଇଗଲେ । ସେହି ସମୟରେ ସେଠାରେ ନା କୌଣସି ଶବ୍ଦ ହେଲା ନା ପାଟିତୁଣ୍ଡ । ଖାଲି ଟିକିଏ ଫୁସ୍‌ଫୁସ୍ କଥାବାର୍ତ୍ତା ଶୁଭିଲା । ଶେଷ ଲୋକଟି ବାହାରିବା ପରେ କବାଟ ବନ୍ଦ କରି ଦିଆଗଲା । ସେଇ ରାତିରେ ଇଂରେଜଙ୍କ ଡ୍ରେଙ୍ଗସ୍‌ଙ୍କ ଚଉଦଭାଗ ଓ ହାଇଦ୍ରାବାଦ ଅଶ୍ୱାରୋହୀଙ୍କ ଏକ ଭାଗ ମଧ୍ୟ ଚାରିଆଡ଼େ ପୂରା ସତର୍କତା ସହ ଗସ୍ତ କରୁଥିଲେ । ତାଙ୍କ ଆଖିରେ ଧୂଳି ପକାଇ ରାଣୀଙ୍କର ବାହାରିବା ଜରୁରି ଥିଲା । ଅନ୍ୟଥା ତାଙ୍କୁ ମୃତ୍ୟୁ ଅଟଳ ଥିଲା । ସେ ଏ କାମ କେମିତି କଲେ, ଏବେଯାଏ ଜଣାପଡ଼ିଲା ନାହିଁ । ତାଙ୍କର ପଥପ୍ରଦର୍ଶକ ଅନୁଭବୀ, ଚତୁର ଓ ନିପୁଣ ଥିଲେ । ରାଣୀ ସ୍ୱୟଂ ସାହସୀ ଓ ଧୈର୍ଯ୍ୟବାନ୍ ଥିଲେ । ଘୋର ଜଙ୍ଗଲ ଓ ଶୂନ୍‌ଶାନ୍ ରାସ୍ତାରେ ସେ ନିଜ ଘୋଡ଼ାକୁ ପବନ ଗତିରେ ବାହାରକୁ ନେଇ ଚାଲିଗଲେ । (ଟେଲର, ସୀତା ଖଣ୍ଡ-୩, ପୃଷ୍ଠା-୨୫୯)

ହ୍ୟୁରୋଜ କିଲ୍ଲା ଉପରେ ଆକ୍ରମଣ କରିବା ଯୋଜନା ବନାଇବାରେ ବ୍ୟସ୍ତ ଥିଲା ଓ ରାଣୀ କାହାକୁ କିଛି ନ ଜଣାଇ ସେଠାରୁ ବାହାରକୁ ଚାଲିଯାଇଥିଲେ । ସହରର କୋଣ-ଅନୁକୋଣରେ ଇଂରେଜ ସେନା ଛାଇଥିବା ସତ୍ତ୍ୱେ ରାଣୀ ସକୁଶଳ ସହରରୁ ବାହାରକୁ କେମିତି ବାହାରିଗଲେ । ଏହା ଏକ ରହସ୍ୟ । ଏହାର ନିଶ୍ଚିତ ସ୍ପଷ୍ଟୀକରଣ ବି ମିଳୁ ନାହିଁ । ବୋଧହୁଏ କୌଣସି ବିଶ୍ୱାସଘାତକ ଏମିତି କାମ କରିବାରେ ରାଣୀଙ୍କୁ ସାହାଯ୍ୟ କରିଥିବ । ଏଭଳି ସମ୍ଭାବନା ଦେଖାଯାଏ ବା ଦିନସାରା ଲଢ଼େଇ ପରେ ଥକି ଯାଇଥିବା ସୈନିକ ରାଣୀଙ୍କ ଦଳକୁ ଦେଖିପାରି ନ ଥିବେ । କାରଣ ଥରେ ବିଜୟୀ ହେଲା ପରେ ଇଂରେଜଙ୍କ ସାଙ୍ଗରେ ଥିବା ସରଦାର, ଠାକୁରମାନଙ୍କ ସୈନିକମାନେ ସହରର ବାହାରେ ଭିତରେ ବୁଲୁଥିଲେ । ରାଣୀଙ୍କ ଦଳ ସେଇମାନଙ୍କ ଭିତରୁ କେହି ହେଇଥିବେ ବୋଲି ସେମାନେ ଭାବିଥିଲେ ।

ରାଣୀଙ୍କ ପଛେ ପଛେ ଆସୁଥିବା ଅଶ୍ୱାରୋହୀଙ୍କ ସାଙ୍ଗରେ ଯେତେବେଳେ ଇଂରେଜମାନଙ୍କର ଯୁଦ୍ଧ ହେଇଥିବ ସେତେବେଳେ ତାଙ୍କୁ ଜଣା ପଡ଼ିଥିବ ସେ ରାଣୀ ପ୍ରଥମରୁ ପଳେଇ ଯାଇଛନ୍ତି । ଏକଥା ଜଣାପଡ଼ିବା ପରେ ହ୍ୟୁରୋଜ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ତାଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ଜାଗାଜାଗାରେ ସୈନିକ ପହରା ଦେଉଥିବା ସତ୍ତ୍ୱେ ବି ରାଣୀ କେମିତି ଲୁଚି ଚାଲିଗଲେ । ସେ· ଲେଫ୍‌ଟନାଣ୍ଟ ଓ୍ୱାକରକୁ ତାଙ୍କ ପିଛା କରିବାକୁ ପଠାଇ ଦେଲେ ।

## ଝାନ୍‌ସୀର ବିଜନ

ଝାନ୍‌ସୀ ସହରରେ ଆରମ୍ଭ ହୋଇଥିବା ମୃତ୍ୟୁର ତାଣ୍ଡବ ଓ ହଙ୍ଗାମା ସାତ ଦିନଯାଏ ଚାଲିଲା । ଖୋଡ଼ସେ ଭଟ୍ଟ ଲେଖିଛନ୍ତି 'ସଂପୂର୍ଣ୍ଣ ସହର ଶ୍ମଶାନଭୂମି ହୋଇ ଯାଇଥିଲା ।'

ହ୍ୟୁରୋଜ ଝାନ୍‌ସୀ ପହଞ୍ଚିବା ପୂର୍ବରୁ ହିଁ ଝାନ୍‌ସୀର ନାଗରିକମାନଙ୍କୁ ଖୋଲାଖୋଲି କହିଦେଇଥିଲେ ଯେ 'ଏଠାରେ ଯୁଦ୍ଧ ହିଁ ହେବ ଓ ସେହି ସମୟରେ ପାଞ୍ଚରୁ ଅଶୀ ବର୍ଷଯାଏ ଲୋକଙ୍କର ବଧ କରି ଦିଆଯିବ । ଏଥିପାଇଁ ଲୋକେ ସହର ଛାଡ଼ି ଚାଲିଯାଆନ୍ତୁ । ଇଂରେଜମାନେ ନିଜ କଥାକୁ ସତ୍ୟ କରି ଦେଖାଇଦେଲେ । ସାରା ସହର ମୁର୍ଦ୍ଦାରରେ ଭରି ଯାଇଥିଲା । ରାସ୍ତା ଉପରେ ଜାଗା ଜାଗାରେ ରକ୍ତନଦୀ ବୋହୁଥିଲା । ହଲୱାଇପୁରା, ଯେଉଁଠି ଧନୀଲୋକ, ସେଠ, ସାହୁକାର, ବେପାରୀ ରହୁଥିଲେ, ସେଥିପାଇଁ ତ କୋଷ୍ଟୀପୁରାରେ ରହିବାବାଲା ତନ୍ତୀ ବୁଣାଳି ଆଦି ଜାତିର ପୁରୁଷଙ୍କ ସହ ସ୍ତ୍ରୀମାନେ ବି କାନ୍ଧରେ କାନ୍ଧ ମିଶାଇ ରାଣୀଙ୍କୁ ସାହାଯ୍ୟ କରୁଥିଲେ । ଯୁଦ୍ଧରେ ପ୍ରତ୍ୟକ୍ଷ ଭାବେ ଭାଗ ନେଇଥିଲେ । ସେଥିପାଇଁ ସେଠାରେ ସବୁଠାରୁ ଅଧିକ ଲୁଟପାଟ ଓ ରକ୍ତପାତ କରାଯାଇଥିଲା । ଗୋଟିଏ-ଗୋଟିଏ ଘରୁ ଲୁଚି ବସିଥିବା ଛୁଆ ଓ ସ୍ତ୍ରୀଲୋକଙ୍କୁ ଖୋଜି ଖୋଜି ମାରି ଦିଆଗଲା । ତିନିଦିନ ଯାଏ ବର୍ବର ନରସଂହାର ଚାଲିଲା ଓ ତା'ପରେ ବନ୍ଦ କରି ଦିଆଗଲା ।

ତା'ପରେ ଲୁଟପାଟ ଆରମ୍ଭ ହୋଇଗଲା । ରାଜମହଲ ହେଉ କି କିଲ୍ଲା, ସରଦାର ଜମିଦାର, ଦରବାରୀ ଦିୱାନ ହେଉ କି ଧନୀ ବେପାରୀ, ତାଙ୍କ ଘରର ପ୍ରତ୍ୟେକ ବହୁମୂଲ୍ୟ ବସ୍ତୁ ସୁନା-ରୁପା । ଟଙ୍କା-ପଇସା, ହୀରାମୋତି ତ ଲୁଟି ନେଲେ ସେମାନେ ସାଧାରଣ ଜନତାଙ୍କୁ ବି ଛାଡ଼ିଲେ ନାହିଁ । ସାଧାରଣ ଲୋକଙ୍କ ଘରେ ଯାହା ପୁରୁଣା-ଚିରା ଲୁଗାପଟା ଏମିତି କି କୁଅ ଦଉଡ଼ି ବି ଲୁଟି ନେଇଗଲେ । ପ୍ରଥମ ଦୁଇଦିନ ଇଂରେଜମାନେ ଲୁଟପାଟ କଲେ । ସୁନାରୁପା, ହୀରା-ମୋତି ଅନ୍ୟ ବହୁମୂଲ୍ୟ ବସ୍ତୁ ସୁନ୍ଦର କାରିଗରୀ ହୋଇଥିବା ଜିନିଷ ଇଂରେଜମାନେ ଲୁଟିନେଲେ । ସୈନିକ ଅଧିକାରୀମାନେ ଜବତ କଲେ ଓ ନିଜ ଭିତରେ ବାଣ୍ଟିନେଲେ । ବଳିଥିବା ଜିନିଷକୁ ଇଂରେଜଙ୍କୁ ସାହାଯ୍ୟ କରୁଥିବା, ରାଜା-ମହାରାଜା ସରଦାର, ଭେଦ ବତାଇଲାବାଲାକୁ ବାଣ୍ଟି ଦେଲେ । ଦୁଇ ଦିନ ପରେ ଇଂରେଜଙ୍କ ପକ୍ଷରେ ଲଢୁଥିବା ହିନ୍ଦୁସ୍ତାନୀ ସିପାହିମାନଙ୍କୁ ଲୁଟପାଟ କରିବାକୁ ଅନୁମତି ଦିଆଗଲା । କଳା ଓ ଗୋରାମାନେ ମିଶି ଝାନ୍‌ସୀ ସହରକୁ ପୂରାପୂରି ଧୋଇଦେଲେ । ଲୋକଙ୍କ ଘରେ ରାନ୍ଧି ଖାଇବାକୁ ଦାନା ଟିକେ ବି ନ ଥିଲା କି ମାଟିର ବାସନ ଖଣ୍ଡେ ବି ନ ଥିଲା ।

ଆଠ ଦିନ ପରେ ଇଂରେଜମାନେ ସହରରେ ଘୋଷଣା କରାଇଲେ ''ସୃଷ୍ଟି ଭଗବାନ୍‌ଙ୍କର, ଦେଶ ବାଦଶାହଙ୍କର, ଶାସନ ଇଂରେଜ ସରକାରର । ପ୍ରାଣ ବଞ୍ଚାଇବା ପାଇଁ ଯେଉଁ ଲୋକମାନେ ଯେଉଁଠି ବି ଲୁଚି କରି ବସିଛନ୍ତି, ସେ ସବୁ ନିର୍ଭୟ ହୋଇ

ନିଜ-ନିଜ ଘରକୁ ଫେରିଯାଇପାରନ୍ତି । ନିଜ ଲୋକଙ୍କ ଶବର ଅନ୍ତିମ ସଂସ୍କାର କରିପାରନ୍ତି ।'' ତା'ପରେ ସରକାର ସହରରେ ଲାଗିଥିବା ନିଆଁ ଲିଭାଇବା ଆରମ୍ଭ କରିଦେଲେ । ରାସ୍ତାରେ ପଡ଼ିଥିବା ଲାଓ୍ୱାରିଶ୍ ଶବ ଓ ପଶୁମାନଙ୍କର ଶବକୁ ଜଳାଇ ରାସ୍ତା ସଫା କଲେ ଓ ଯେଉଁ ଜିନିଷଗୁଡ଼ିକୁ ନେଇଯିବା ସମ୍ଭବ ନ ଥିଲା, ତାକୁ ବିକିବା ପାଇଁ ଦୋକାନ ବସାଇଲେ । ସେହି ଜିନିଷକୁ ଲୁଟ୍‌ର ଶିକାର ହୋଇଥିବା ଲୋକମାନେ ପାଖରେ ଥିବା ଅଳ୍ପ ପଇସାପତ୍ର ଦେଇ କିଣିଲେ । ପୂରା ସହର ଶବର ଦୁର୍ଗନ୍ଧରେ ଭରି ଯାଇଥିଲା । ଯେଉଁ ଲୋକମାନେ ବଞ୍ଚି ଯାଇଥିଲେ ତାଙ୍କୁ ଖୋଜି, ଇଂରେଜମାନଙ୍କ ବିରୋଧରେ ରାଣୀଙ୍କୁ ସାହାଯ୍ୟ କରିବାର ଟିକିଏ ବି ସନ୍ଦେହ ହେଲେ, ତାଙ୍କୁ ସହରର ରାଜମହଲ ସାମନାରେ ଫାଶୀଖୁଣ୍ଟରେ ଝୁଲାଇଦେବା ଆରମ୍ଭ କରିଦେଲେ ।

ଝାନ୍ସୀରେ ଏକପ୍ରକାର ପ୍ରଳୟ ଆସି ଯାଇଥିଲା । ପୁଣି ବି ଗୋଡ଼ସେ ଭଟ୍ଟ ଓ ତାଙ୍କର କକା ବଞ୍ଚି ଯାଇଥିଲେ । ଏହା ଗୋଟିଏ ଅଦ୍ଭୁତ ଘଟଣା ଥିଲା । ଜୀବନ ଭୟରେ ଏଠି ସେଠି ଲୁଚି ଛପି ଖାଇବାକୁ ନ ମିଳିବାରୁ ବି ସ୍ନାନ-ପୂଜା କେମିତି ସମ୍ଭବ ହେଇପାରିବ ବୋଲି ଚିନ୍ତା କରୁଥିବା ଗୋଡ଼ସେ ଭଟ୍ଟ କହିଛନ୍ତି ''ଆମେ ଦୂର ଇଲାକାରୁ ଦକ୍ଷିଣା ପାଇବା ଆଶାରେ ଏଠାକୁ ଆସିଛୁ, ଆମର ଲଢ଼େଇ ସହ କିଛି ଯାଏ ଆସେ ନାହିଁ । ଏମିତି କହି ସେ ନିଜକୁ ବଞ୍ଚାଇଥିଲେ । ଝାନ୍ସୀର ପରିସ୍ଥିତି ବିଷୟରେ ସେ କହିଛନ୍ତି-

''ଅବଳା ଯେଉଁଠି ପ୍ରବଳା, ପାଗଳା (ବାଳୁତ) ରାଜା ନିରକ୍ଷର ମନ୍ତ୍ରୀ
ନାହିଁ ନାହିଁ ସେଠି ଧନ ଆଶା ଜୀବିତ ରହିବା ଆଶା ବି ଦୁର୍ଲଭ ।''

ଝାନ୍ସୀରେ ହେଉଥିବା ଯୁଦ୍ଧର ଐତିହାସିକ ମହତ୍ତ୍ୱକୁ ସେ ବୁଝିପାରିଲେ ନାହିଁ । ଦକ୍ଷିଣା ନେବା ଆଶାରେ ସେ ଯାତ୍ରା କରିବାକୁ ବାହାରିଲେ । ଋଣ ଭାରରେ ନଇଁଥିବା, ଗରିବ ବ୍ରାହ୍ମଣ କହି ସେ ଯେଉଁଠାକୁ ବି ଯାଆନ୍ତି ସେଠି ଅବଳା, ପ୍ରବଳା ଭାବେ ଦେଖାଦିଅନ୍ତି । ରାଜା କମ୍ ବୟସ, ମନ୍ତ୍ରୀ ନିରକ୍ଷର, ସେଠାରେ ଧନର ଆଶା କ'ଣ କରାଯିବ ? ସେଠି ତ ଜୀବନ ଆଶା କରିବା ବି କଷ୍ଟ । ଏମିତି ଏଇ ସର୍ବସାମାନ୍ୟ ବ୍ୟକ୍ତି 'ମାଝାପ୍ରବାସ' ପୁସ୍ତକ ଲେଖିଛନ୍ତି । ସେଇ କାରଣରୁ ପରବର୍ତ୍ତୀ ପିଢ଼ିକୁ ଝାନ୍ସୀ ଯୁଦ୍ଧର ସଂପୂର୍ଣ୍ଣ ବୃତ୍ତାନ୍ତ ଜଣାପଡ଼େ । ସାମାନ୍ୟ ହିନ୍ଦୁସ୍ଥାନୀକୁ ଏହି ଯୁଦ୍ଧ, ସ୍ୱୟଂ ରାଣୀ ଲକ୍ଷ୍ମୀବାଈ କେମିତି ଦେଖାଯାଉଥିଲେ, କେତେ ବୁଝି ହେଉଥିଲେ, ଏ ବିଷୟରେ ବି ଜ୍ଞାନ ହେଇଯାଏ ।

ଇଂରେଜମାନଙ୍କ ଦ୍ୱାରା ଲେଖାଯାଇଥିବା ବହି ଆଧାରରେ ଆମକୁ କେବଳ ଇଂରେଜମାନଙ୍କ ଦୃଷ୍ଟିକୋଣ ବିଷୟରେ ଜଣାପଡ଼େ । ଝାନ୍ସୀର ବିଜୟ ଓ ଅତ୍ୟାଚାରୀ, ଅନ୍ୟାୟୀ ଲୁଟପାଟ ସଂପର୍କରେ ମାଲିସନଙ୍କ ପରି ଇଂରେଜ ଇତିହାସକାର ଗୋଟିଏ ବି ଶବ୍ଦ ଲେଖି ନାହାନ୍ତି । ଯୁଦ୍ଧରେ ଏମିତି ହେବା ସ୍ୱାଭାବିକ କେବଳ ଏତିକି କହିଛନ୍ତି । କିନ୍ତୁ ଡକ୍ଟର ଲୋ ମାର୍ଟିନ୍ ସିଲବେଷ୍ଟର ପରି ଲୋକମାନେ ସେଠାର ହଣାକଟା ଲୁଟପାଟ ବିଷୟରେ ବର୍ଣ୍ଣନା କରିଛନ୍ତି । ରାଜମହଲ, କିଲ୍ଲା, ଉଆସ, କୋଠି ଆଦି ସଂପତ୍ତି ଦେଖି

ଇଂରେଜମାନଙ୍କ ଆଖି ଖୋଷି ହୋଇ ଯାଇଥିଲା । ରତ୍ନଜଡ଼ିତ ସୁନା ସିଂହାସନଠାରୁ ଆରମ୍ଭ କରି ସୁନାରୁପା ରତ୍ନଜଡ଼ିତ ଗୋଲାବଦାନୀ, ଅତରଦାନୀ, ଥାଳି, ହୁକ୍କା, ମଖମଲ ଓ ସୁନାର ତାରରେ ବୁଣା ହେଇଥିବା ରେଶମୀ କପଡ଼ା, ମୋତି ଗୁନ୍ଥା ହେଇଥିବା ରାଜକୀୟ କପଡ଼ା, ପିନ୍ଧାଯାଇଥିବା ଅଳଙ୍କାର, ରୁପାର ଚଉକି, ପୀଢ଼ା, ଦୋଳି, ସୁନାଛାଉଣି ହୋଇଥିବା, ହୀରାମୋତି ଲାଗିଥିବା ଝାଲର ପଡ଼ିଥିବା ତାମ-ଝାମ ନାମକ ପାଲିଙ୍କି, ବଡ଼ ବଡ଼ ଆଇନା, ଝୁମର, ସୁନାମୁଠି ଲାଗିଥିବା ଅଗଣିତ ତରବାରି, ଢାଲ, ବାସନ ଓ ବୈଭବଶାଳୀ ଅତ୍ୟନ୍ତ ସୁନ୍ଦର କଳାକୃତି, ସୁନ୍ଦର ବସ୍ତୁ ଏସବୁ ପ୍ରତ୍ୟକ୍ଷ ଭାବେ ଦେଖି ଡକ୍ଟର ଲୋ ଙ୍କ ଆଖି ନିଶ୍ଚୟ ଝଲସି ଯାଇଥିବ । ଏହି କଥା ତାଙ୍କର ସବିସ୍ତାର ଦୀର୍ଘ ବର୍ଣ୍ଣନାରୁ ଜଣାଯାଏ । ଏ ସମସ୍ତ ଜିନିଷକୁ ଲୁଟିବାର ପ୍ରଥମ ଅଧିକାର ଥିଲା ଗୋରା ଇଂରେଜମାନଙ୍କର । ଯାହା ତାଙ୍କ ହାତକୁ ଆସିଲା ତାକୁ ଲୁଟିନେଲେ । ଯେଉଁ ଜିନିଷ ସାଙ୍ଗରେ ନେଇଯିବା ସମ୍ଭବ ହେଲା ନାହିଁ, ତାକୁ ବିକିବା ପାଇଁ ରାଜମହଲର ଦ୍ୱାର ପାଖରେ ପ୍ରତିଦିନ ବଜାର ବସିଲା, ନିଲାମି କରାଗଲା । ସେହି ସମୟରେ ସିନ୍ଧିଆ ହୋଲକର, ଗାୟକବାଡ଼ ଏହିସବୁ ରାଜ୍ୟର ଏଜେଣ୍ଟଠାରୁ ଆରମ୍ଭ କରି ଆଖ-ପାଖ ଇଲାକାର ଛୋଟବଡ଼ ରାଜା ମହାରାଜା, ସରଦାର, ନବାବ, ସୁବେଦାର, ଜମିଦାର ସେଠାରେ ଆହୁରି ବୋଲି ଲଗାଇ ସେହି ଜିନିଷକୁ କିଣିଲେ । ରାଣୀ ଲକ୍ଷ୍ମୀବାଈଙ୍କର ଯେଉଁ ଦିନ ପୁଅ ହେଇଥିଲା, ସେହି ସମୟରେ ପ୍ରସିଦ୍ଧ ବଢ଼େଇ ଲଲ୍ଲା ଓସ୍ତାଦ୍ ଯେଉଁ ସୁନ୍ଦର କାଠର ଦୋଳି ତିଆରି କରିଥିଲା, ସେହି ଦୋଳିକୁ ଗ୍ୱାଲିୟରର ସିନ୍ଦେ ଏହି ନିଲାମିରେ କିଣିଥିଲେ । ଏମିତି ପ୍ରମାଣ ମିଳେ ।

ଡାକ୍ତର ଲୋ ଏବଂ ମାର୍ଟିନ୍‌ଙ୍କ ଅନୁମାନ ଅନୁସାରେ ଯୁଦ୍ଧରେ ମରିଲାବାଲାଙ୍କ ସଂଖ୍ୟା ଛାଡ଼ି ସହର ଭିତରର ଜନସାଧାରଣ, ନାଗରିକମାନଙ୍କ ଘର ଘର ବୁଲି ଯେଉଁ ହତ୍ୟା କରାଯାଇଥିଲା, ତାହାର ସଂଖ୍ୟା ପାଖାପାଖି ପାଞ୍ଚହଜାର ଥିଲା । ତା'ଛଡ଼ା ଆହତ ହୋଇ ମରିବାବାଲାଙ୍କ ସଂଖ୍ୟା ଖୁବ୍ ଅଧିକ ଥିଲା ।

ଇଂରେଜ ଅଧିକାରୀଙ୍କ ଏହି ଅନୁମାନକୁ ଦୃଷ୍ଟିରେ ରଖି ଏହି ସଂଖ୍ୟା କେତେ ଅଧିକ ହୋଇପାରେ ଏହା ଅନୁଭବ କରାଯାଇପାରେ ।

ଜି.ସି. ଷ୍ଟେଟ୍ ତାଙ୍କ ପୁସ୍ତକ 'ପର୍ସନଲ ଆଡ୍‌ଭେନ୍‌ଚରସ୍ ହ୍ୱାଇଲ୍ ଇନ୍ ଦି ଫୋର୍ଥ (କିଙ୍ଗସ୍) ଲାଇଟ ଡ୍ରେଗନ୍ସ'ରେ ଲେଖିଛନ୍ତି କି ଝାନ୍‌ସୀ ଯୁଦ୍ଧରେ ଅନ୍ୟ ବ୍ରିଟିଶ୍ ସୈନିକଙ୍କ ସଙ୍ଗେ ସଙ୍ଗେ ଷ୍ଟେଟ୍ ସ୍ୱୟଂ ଝାନ୍‌ସୀର ଅସହାୟ ଲୋକଙ୍କର ଜୀବନ ବଞ୍ଚାଇ ଏଠି-ସେଠି ଦଉଡ଼ିବାବାଲା ଲୋକଙ୍କୁ କେମିତି ମାରିଲେ, ଘରେ ଘରେ ପଶି ଲୁଟପାଟ କେମିତି କଲେ, ତାହାର ବିସ୍ତୃତ ବର୍ଣ୍ଣନା କରିଛନ୍ତି । ସେ ସଂପର୍କରେ ତାଙ୍କ ମନରେ ଅପରାଧିକ ଭାବନାର ଅଭିବ୍ୟକ୍ତି କେଉଁଠି ବି ଦୃଷ୍ଟିଗୋଚର ହୁଏ ନାହିଁ । ଏମିତି ଲୋକଙ୍କୁ ଏମିତି ଦଣ୍ଡ ମିଳିବା କଥା, ଏହା ଯୁଦ୍ଧର ସାଧାରଣ କଥା, ଏମିତି ଷ୍ଟେଟ୍ କହିଛନ୍ତି-

ହ୍ୟୁରୋଜଙ୍କ ସେନାବାହିନୀର ସିଲଭ୍ୱେଷ୍ଟର ନିଜ 'କଲେକ୍‌ସନ ଏଣ୍ଡ ରିକଲେକ୍‌ସନ' ନାମକ ପୁସ୍ତକରେ ଝାନ୍‌ସୀଯୁଦ୍ଧ ବିଷୟରେ ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି । ସେଥିରେ ସେ ଅନେକ ଛୋଟ ଛୋଟ କଥା ବର୍ଣ୍ଣନା କରି କହିଛନ୍ତି ।.ରାସ୍ତାରେ କେବଳ ନୁହେଁ ବରଂ ଘରେ ପଶି ଗୋରାମାନଙ୍କଦ୍ୱାରା କରାଯାଇଥିବା ନରସଂହାର, ଲୁଟପାଟର ଚିତ୍ର ଉପସ୍ଥାପିତ କରିଛନ୍ତି । ବର୍ଣ୍ଣନା କରିବା ସମୟରେ ସେ ଇଂରେଜ ସିପାହି, ଇଂରେଜ ସୈନିକଅଧିକାରୀ, ଡାକ୍ତର ଓ ଖ୍ରୀଷ୍ଟିୟାନ୍ ପାଦ୍ରୀଙ୍କ ତ୍ୟାଗ, ଶୌର୍ଯ୍ୟ ବିଷୟରେ ପ୍ରଶଂସା କରିଛନ୍ତି ।' ଝାନ୍‌ସୀ ଯୁଦ୍ଧ ଅତ୍ୟନ୍ତ ସଫଳ ଅଭିଯାନ ଥିଲା ବୋଲି ଲେଖିଛନ୍ତି ।

ଲୁଟପାଟ ସନ୍ଦର୍ଭରେ ସିଲଭ୍ୱେଷ୍ଟର କହନ୍ତି, ''ଯୁଦ୍ଧ କମିଯିବା ପରେ ଇଂରେଜ ଅଧିକାରୀ ଓ ସୈନିକ, ବାଣ୍ଡୋରଷ୍ଟ୍ରିଟ, ଲିଷ୍ଟେଷ୍ଟର ବଜାର (ଇଂଲଣ୍ଡର ଧନୀ ବଜାର)ରେ ଯେପରି ଉତ୍ସୁକତା ଦେଖିବା କଥା, ସେମିତି ଉତ୍ସୁକତାରେ ପ୍ରତ୍ୟେକ ଘରକୁ ଲକ୍ଷ୍ୟକରି ସେଠାରେ ଥିବା ପ୍ରତ୍ୟେକ କୋଣ-ଅନୁକୋଣରେ ଖୋଜି ଖୋଜି ଜିନିଷ ସବୁ ଦେଖୁଥିଲେ । ସେମାନେ ଘରମାନଙ୍କର କାନ୍ଥ ପକେଇ ଦେଲେ, ଜମି ଖୋଳି ଦେଲେ । କେବଳ ଉତ୍ସୁକତା କାରଣରୁ ସେମାନଙ୍କୁ ଲୁଟପାଟ କରିବାର ନ ଥିଲା ।

ତାହାର କାରଣ ଦର୍ଶାଇ ସିଲଭ୍ୱେଷ୍ଟର କହନ୍ତି, 'ଏମିତି କରିବାର କାରଣ ଥିଲା । ଲୁଟପାଟ କରୁଥିବାବାଲାଙ୍କୁ କଠୋର ସଜା ଦେବାର ଥିଲା । ପୁଣି ବି କେତେ ସାବଧାନ ହୋଇ ବ୍ୟବହାର କରା ନ ଯାଉ ନା କାହିଁକି ତେବେବି କିଛି ବିଶେଷ ବସ୍ତୁକୁ ଲୁଟିବା ବି ଦରକାର । ଏମିତି ମତେ ଲାଗିଲା ।-ସେ ସବୁ ବସ୍ତୁ ଥିଲା ଘରର ପୂଜା ଘରେ-ମନ୍ଦିରରେ । ଦେବତାଙ୍କ ମୂର୍ତ୍ତି ଆମେ ବହୁ ପରିମାଣରେ ଏକାଠି କଲୁ । *

ଆଶ୍ଚର୍ଯ୍ୟ କଥା ଏହି ଯେ ପ୍ରତ୍ୟେକ ସୈନିକ ଓ ଅଧିକାରୀ (ଗୋରା) ଖୋଜି ଖୋଜି ମୂର୍ତ୍ତି ଚୋରି କଲେ । ସେଥିରେ ଗଣେଶ, ବିଷ୍ଣୁଙ୍କର ଅଗଣିତ ମୂର୍ତ୍ତି ଥିଲା । କିଛି ମୂର୍ତ୍ତି ଉପରେ ସୁନା-ରୁପାର ଆଭୂଷଣ ଲାଗିଥିଲା ତ କିଛି ମୂର୍ତ୍ତିର ଶରୀରରେ ସୁନା ଚୁଡ଼ି ବି ପିନ୍ଧାଇ ଦିଆଯାଇଥିଲା । କିଛି ମୂର୍ତ୍ତି ଏତେ ଛୋଟ ଓ ସୁନ୍ଦର ଥିଲା ଯେ ତାକୁ ଘଡ଼ିର

---

*ଝାନ୍‌ସୀର ଯେଉଁ ମନ୍ଦିରମାନଙ୍କରେ ମାର୍ବଲର ମୂର୍ତ୍ତି ଥିଲା, ତାକୁ ଉଠାଇବାକୁ ଇଂରେଜମାନଙ୍କୁ କଷ୍ଟ ହେଲା କାରଣ ସେହି ମୂର୍ତ୍ତିମାନଙ୍କୁ ଦେବାଳୟରେ ମାଟିର ବହୁତ ଭିତର ପର୍ଯ୍ୟନ୍ତ ଆରୋପିତ କରି ସ୍ଥାପିତ କରାଯାଇଥିଲା । ସେହି ମୂର୍ତ୍ତିକୁ ପିନ୍ଧାଯାଇଥିବା ଅଳଙ୍କାର, ରୁପାର ପୂଜା ବାସନ, ମନ୍ଦିରର ସମ୍ପତ୍ତି କେବଳ ଲୁଟିପାରିଲେ । ଝାନ୍‌ସୀର କୁଳଦେବୀ ମହାଲକ୍ଷ୍ମୀଙ୍କ ମୂର୍ତ୍ତି ବହୁତ ପୁରୁଣା । ଏମିତି ମନ୍ଦିରର ବ୍ୟବସ୍ଥା ଦେଖୁଥିବା ମହିଳା ମତେ ବତାଇଲେ । ବିଜନ ପରେ ସେହି ମନ୍ଦିରର ପୂଜାରୀ କାମ ବଂଶ ପରମ୍ପରା ଅନୁସାରେ ଲୋକ କରି ଆସୁଥିଲେ । କେତେ ବର୍ଷ ଯାଏ ଲକ୍ଷ୍ମୀମନ୍ଦିର, ତାଙ୍କ ପୂଜା ବାଧାପ୍ରାପ୍ତ ହେଲା । ୨୫ ବର୍ଷ ପରେ ମୂଳ ପୂଜାରୀକୁ ଖୋଜି ତାକୁ ସରକାରୀ ସାହାଯ୍ୟର ଆଶ୍ୱାସନା ଦିଆଯାଇ ଝାନ୍‌ସୀ ଫେରାଇ ଅଣାଗଲା ।

ଫିତା ଉପରେ ବି ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଲଗାଯାଇପାରିଥାନ୍ତା । ବହୁତ ମୂର୍ତ୍ତି ତମ୍ବା, ପିତଳର ତ ଥିଲା, ପାଷାଣର ବି ଥିଲା । ଏ ସମସ୍ତ ମୂର୍ତ୍ତି ଦୁର୍ଲଭ ଓ ସୁନ୍ଦର କଳାକୃତିରେ ନିର୍ମାଣ କରାଯାଇଥିଲା । ସହରରେ ଆମର ଏତେ ବିରୋଧ ହୋଇଥିଲା ଯେ ଫକୀର, ଗୋସାଇଁମାନେ ବି ନିଜ ନିଜ ପବିତ୍ର ନିବାସସ୍ଥାନ ଛାଡ଼ି ଆମ ସହ ଲଢ଼ିବାକୁ ଆସିଥିଲେ । ସବୁଥର ପରି ଏଭଳି ଲୋକଙ୍କୁ ମାରି ଦିଆଗଲା । ଶବମାନଙ୍କର ଭୟାନକ ଦୁର୍ଗନ୍ଧ ଚାରିଆଡ଼େ ବ୍ୟାପିଥିଲା । ହାତୀ, ଘୋଡ଼ା, ବେଶ୍ୟାମାନଙ୍କ ଶବ ବି ରାସ୍ତାରେ ସଢୁଥିଲା । (ପୃଷ୍ଠା-୧୦୮)

ସିଲୱେଷ୍ଟର ଏହା ପରେ ରାଜମହଲ, କିଲ୍ଲା ଭିତରୁ ମିଳିଥିବା ବହୁମୂଲ୍ୟ ବସ୍ତୁ, ସୁନାର ମୋହର, ରୁପା ଟଙ୍କା ଭରିଥିବା ଅଗଣିତ ଥଳିର ବର୍ଣ୍ଣନା କରି କହିଛନ୍ତି-

ଏହି ସମ୍ପତ୍ତିକୁ ରକ୍ଷା କରିବାକୁ ପରେ ଇଂରେଜ ଅଧିକାରୀମାନଙ୍କୁ ନିଯୁକ୍ତ କରାଗଲା । ରାଣୀ ଲକ୍ଷ୍ମୀବାଈ କିଲ୍ଲାରୁ ବାହାରି ଚାଲିଯିବା ପରେ ଇଂରେଜ ସେନାକୁ ସହରରେ ଛୋଟ ଛୋଟ ଲଢ଼ାଇର ସାମ୍ନା କରିବାକୁ ପଡ଼ିଥିଲା । ରାଣୀ ଲୁଚି ପଳେଇବା ଖବର ସକାଳେ ଜଣାପଡ଼ିଥିଲା । କିଲ୍ଲାର ମୁଖ୍ୟ ପ୍ରବେଶ ଦ୍ୱାର ଖୋଲା ଥିଲା । ଇଂରେଜ ସେନା ଧୀରେ ଧୀରେ କିଲ୍ଲା ଭିତରେ ପଶିଲେ ତ ସେଠାରେ ତାଙ୍କୁ ବଡ଼ ବଡ଼ ତୋପ, ବନ୍ଧୁକ, ତଲୱାର ଗଦା ହେଇଥିବା ଦେଖାଗଲା । କିଲ୍ଲା ଏତେ ମଜଭୁତ୍, ପାଚିରି, ଗମ୍ବୁଜ ପୂରାପୂରି ଠିକ୍ ଥିଲା । କିନ୍ତୁ ଭିତରେ ଚାରିଆଡ଼େ ଯେମିତି ପଡ୍ରଝଡ଼ା ଅବସ୍ଥା ଦେଖାଯାଉଥିଲା ଭିତରର ଘର, ବାରଣ୍ଡା ଧ୍ୱସ୍ତ ହୋଇ ଯାଇଥିଲା । ଚାରିଆଡ଼େ ମାଟି ଗଦା ହେଇଥିଲା, ଗମ୍ବୁଜ ଉପରୁ ଦୂରବୀକ୍ଷଣରେ ଦେଖିଲେ ଇଂରେଜଙ୍କ ଛାଉଣୀ ବହୁତ ନିକଟରେ ଥିବା ପରି ଦେଖାଯାଉଥିଲା । ଝାନ୍ସୀ ଅଧିକାର କଲା ପରେ ଆଠ-ନ ମାସ ଯାଏ ବହୁତ ଇଂରେଜ କିଲ୍ଲା ଭିତରେ ରହୁଥିଲେ । ତେବେବି ବହୁତ ଜିନିଷ ଗୋଟିଏ ପଟେ ଖେଳେଇ ହେଇ ପଡ଼ିଥିଲା । କିଲ୍ଲା ଭିତରେ ତମ୍ବା, ପିତଳର ବାସନ ଏତେ ବଡ଼ ବଡ଼ ଥିଲା ଯେ ତା' ଭିତରେ ଗୋଟାଏ ହାତ ପୂରାଇ ବି ରାନ୍ଧି ହେବ, ସିଲ୍‌ୱେଷ୍ଟର ଏମିତି ବର୍ଣ୍ଣନା କରିଛନ୍ତି । ଏହାର ଅର୍ଥ ହେଲା ସୈନିକମାନଙ୍କ ପାଇଁ ଖାଦ୍ୟ ଏହି ବଡ଼ ବଡ଼ ବାସନମାନଙ୍କରେ ରନ୍ଧା ଯାଉଥିବ । ସିଲୱେଷ୍ଟର ଆହୁରି କହିଛନ୍ତି ସହରର ରାଜମହଲରେ ଯେଉଁ ଐଶ୍ୱର୍ଯ୍ୟ ଓ ବୈଭବ ଦେଖାଯାଉଥିଲା, ତା'ଠାରୁ କିଲ୍ଲାର ବୈଭବ ଅପେକ୍ଷାକୃତ କମ୍ ଥିଲା । ସେଠାକାର ପଇସା ବିଦ୍ରୋହୀ ସିପାହିମାନଙ୍କ ପାଇଁ ବୋଧହୁଏ ରାଣୀ ଖର୍ଚ୍ଚ କରିଦେଉଥିଲେ ।

# ଅଧ୍ୟାୟ-୫

## କାଲ୍‌ପୀ ଗୋଆଲିଅର

ଝାନ୍‌ସୀ ସହରର ବାହାରକୁ ବାହାରିବା ପରେ ପରେ ରାତିର ଅନ୍ଧକାର ଭିତରେ ରାଣୀ ଲକ୍ଷ୍ମୀବାଈ ଏବଂ ତାଙ୍କ ପଛେ ପଛେ ଆସୁଥିବା ମୋରୋପନ୍ତ ତାମ୍ବେଙ୍କ ମଧ୍ୟରେ ବ୍ୟବଧାନ ବଢ଼ିବାକୁ ଲାଗିଲା । କିଲ୍ଲାରୁ ବାହାରିବାବେଳେ ଲକ୍ଷ୍ମୀବାଈ ନିଜ ସାଥିରେ ପୋଷ୍ୟପୁତ୍ର ଦାମୋଦର ଓ ତାଙ୍କ ପାଇଁ ଦୁଧ, ପିଇବା ପାଣି ରଖି ଦେଇଥିଲେ । କିନ୍ତୁ ମୋରୋପନ୍ତ ତାମ୍ବେ ଓ ଅନ୍ୟ ଲୋକମାନେ ବାଟରେ ଖର୍ଚ୍ଚ ନିମନ୍ତେ ଅଣ୍ଟାରେ ମୋହର ବାନ୍ଧିଥିଲେ । ଏହାଛଡ଼ା ଗୋଟିଏ ହାତୀ ଉପରେ ଯେତେଦୂର ସମ୍ଭବ ସୁନା, ହୀରା ନୀଳା ଅଳଙ୍କାର ଇତ୍ୟାଦି ମୂଲ୍ୟବାନ୍ ଦ୍ରବ୍ୟ ବାନ୍ଧିଥିଲେ । ହାତୀର ଗତି ଯୋଗୁଁ ମୋରୋପନ୍ତଙ୍କର ରାଣୀଙ୍କ ସାଥିରେ ଯାଇପାରିବା କଷ୍ଟକର ହେଉଥିଲା । ରାଣୀ ପବନ ଗତିରେ ଆଗେଇ ଯାଉଥିଲେ । ମୋରୋପନ୍ତ ଏବଂ ରାଣୀ ଲକ୍ଷ୍ମୀବାଈଙ୍କ ମଧ୍ୟରେ ଗୋଟିଏ ଲମ୍ବା ବ୍ୟବଧାନ ବଢ଼ି ଚାଲିଥିଲା ।

ପଛରୁ ଆସୁଥିବା ଇଂରେଜ ସୈନ୍ୟଙ୍କ ସହିତ ଯେତେବେଳେ ତାଙ୍କର ମୁକାବିଲା ହେଲା ସେତେବେଳେ ମୋରୋପନ୍ତଙ୍କ ଜଙ୍ଘରେ ତରବାରି ଆଘାତ ଲାଗିଥିଲା । ତଥାପି ସେହି ଆହତ ଅବସ୍ଥାରେ ବି ସେ ଆକ୍ରମଣକାରୀଙ୍କ ଆଖିରେ ଧୂଳିଦେଇ ନିଜ ପାଇଁ ବାଟ କାଢ଼ି ଯିବାପାଇଁ ସକ୍ଷମ ହେଲେ । କିନ୍ତୁ ରାତିର ଅନ୍ଧକାର ଭିତରେ ସେ ବାଟବଣା ହୋଇଗଲେ । ଦତିଆର ଲୋକେ ଝାନ୍‌ସୀର ପୁରୁଣା ଶତ୍ରୁ ଥିଲେ । କିନ୍ତୁ ଗୋଡ଼ର ଆଘାତ ମୋରୋପନ୍ତଙ୍କୁ ତାଙ୍କର ଯାତ୍ରା ଜାରି ରଖିବାରେ ବାଧା ସୃଷ୍ଟି କରୁଥିଲା । ତେଣୁ ବିବଶ ହୋଇ ମୋରୋପନ୍ତଙ୍କୁ ଗ୍ରାମର ସୀମା ନିକଟରେ ଜଣେ ତମ୍ବୁଲି (ତୁଳା ବ୍ୟବସାୟୀ)ଙ୍କୁ ଭେଟି ଅର୍ଥ ବିନିମୟରେ ତାଙ୍କ ପାଖରେ ଆଶ୍ରୟ ନେବାକୁ ହେଲା । ମୋରୋପନ୍ତଙ୍କ ସହିତ ଥିବା ଲୋକମାନେ ଏବଂ ଧନସମ୍ପତ୍ତି ଦେଖି ସେ ସମସ୍ତଙ୍କୁ ନିଜ ଘରେ ରଖିଲେ । କିନ୍ତୁ ଏହି କଥା ଲୁଚାଇ ହେଲା ନାହିଁ । ଦତିଆର ଦେବାନଙ୍କୁ ଏହି ଖବର ମିଳିବାକ୍ଷଣି ସେ ନିଜର ଲୋକ ପଠାଇ ମୋରୋପନ୍ତଙ୍କୁ ଧରାଇଦେଲେ । ତାଙ୍କ ପାଖରେ ଥିବା ସମସ୍ତ ସମ୍ପତ୍ତି ଜବତ୍ କରିନେଲେ ଏବଂ ମୋରୋପନ୍ତଙ୍କୁ ତାଙ୍କ ଲୋକବାକ ସହିତ ଝାନ୍‌ସୀ ପଠାଇ ଇଂରେଜଙ୍କ ଜିମା ଦେଇଦେଲେ ।

କମିଶନର ହାମିଲଟନ୍ ୧୮୫୮ ମସିହା ଏପ୍ରିଲ୍ ୨୦ ତାରିଖରେ ଗଭର୍ଣ୍ଣର ଜେନେରାଲଙ୍କୁ ଏକ ପତ୍ର ପ୍ରେରଣ କରିଥିଲେ । ଯେଉଁଥିରେ ସେ ସୂଚନା ଦେଇଥିଲେ ଯେ– "ଝାନ୍‌ସୀରୁ ପ୍ରସ୍ଥାନ କରିବାର ୧୨ ଦିନ ପରେ ଦତିଆର ଅକାଲା ଗ୍ରାମର ପଟଓ୍ୱାରୀ ମୋରୋପନ୍ତଙ୍କୁ ଧରି ଦତିଆ ରାଜାଙ୍କ ପାଖକୁ ପଠାଇ ଦେଇଥିଲେ । ସେ ମୋରୋପନ୍ତଙ୍କୁ ହାମିଲ୍‌ଟନ୍‌ଙ୍କ କବ୍‌ଜାକୁ ସମର୍ପିଦେଲେ । ତୁରନ୍ତ ମୋରୋପନ୍ତଙ୍କ ଉପରେ ରାଜଦ୍ରୋହର ମକଦ୍ଦମା ଦାୟର କରାଗଲା ।

ସେ (ମୋରୋପନ୍ତ) କୌଣସି ପ୍ରକାରର ପ୍ରତିକାର କଲେ ନାହିଁ । ସେ ସ୍ୱୀକାର କଲେ ଯେ ଝାନ୍‌ସୀରେ ଯେତେବେଳେ ବିଦ୍ରୋହ ହୋଇଥିଲା ସେତେବେଳେ ସେ ସେହିଠାରେ ଥିଲେ ଏବଂ କିଲ୍ଲାରେ ବନ୍ଦୀ ଥିବା ବ୍ରିଟିଶ୍ ନାଗରିକମାନଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା ମଧ କରି ନ ଥିଲେ । ସେତେବେଳେ ମୋରୋପନ୍ତ ରାଣୀଙ୍କ ସହିତ ସହରର ରାଜପ୍ରାସାଦରେ ହିଁ ଥିଲେ । ସେବେଠାରୁ କିଲ୍ଲାରୁ ପ୍ରସ୍ଥାନ କରିବାଯାଏ ସେ ଝାନ୍‌ସୀରେ ହିଁ ରହିଥିଲେ ।

ମୋରୋପନ୍ତଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ମୃତ୍ୟୁପର୍ଯ୍ୟନ୍ତ ଫାଶୀଦଣ୍ଡ ଶୁଣାଇ ଦିଆଗଲା । ଏହି ରାୟ ଅନୁସାରେ ୧୯ ତାରିଖରେ ଜୋଖନବାଗରେ ତାଙ୍କୁ ଫାଶୀରେ ଝୁଲାଇ ଦିଆଗଲା, ଯେଉଁଠାରେ କି ଏକବର୍ଷ ପୂର୍ବରୁ ଜୁନ୍ ୮ ତାରିଖରେ ଇଂରେଜମାନଙ୍କୁ ହତ୍ୟା କରାଯାଇଥିଲା ।

ରାଣୀଙ୍କ ଦ୍ୱିତୀୟ ପରାମର୍ଶଦାତା ଲାଲୁ ବଖଶୀଙ୍କ ଉପରେ ମଧ ମକଦ୍ଦମା ହେଲା । କ୍ୟାପ୍‌ଟେନ୍ ପିକ୍‌ନେ ତାଙ୍କୁ ଦୋଷୀ ସାବ୍ୟସ୍ତ କରି ଏକା ସ୍ଥାନ ଓ ଏକା ସମୟରେ ତାଙ୍କୁ ମଧ ଫାଶୀରେ ଝୁଲାଇଦେଲେ (ଝାନ୍‌ସୀ କୀ ରାନୀ, ସୁମନ ତାମ୍ବେ, ପୃ. ୮୯) ଏପଟେ, ଦ୍ୱିତୀୟ ଦିନ ସକାଳେ ରାଣୀ ଝାନ୍‌ସୀଠାରୁ ଏକୋଇଶ ମାଇଲ୍ ଦୂର ଭାଣ୍ଡେର ଗ୍ରାମରେ ପହଞ୍ଚିଲେ । ଗ୍ରାମର ତହସିଲଦାରକୁ ଖବର ପଠାଇ ଦାମୋଦରଙ୍କର ଜଳଖିଆ ବ୍ୟବସ୍ଥା କରିବାକୁ କହିଲେ । ପ୍ରାତଃକାଳୀନ ନିତ୍ୟକର୍ମ ସମାପ୍ତ କରି ଜଳଖିଆ ଆଦି ଖାଇ ଆଗକୁ ଯାତ୍ରା କରିବା ନିମନ୍ତେ ପ୍ରସ୍ତୁତ ହୋଇଗଲେ । ପିଠିରେ ଦାମୋଦରଙ୍କୁ ବାନ୍ଧି ରାଣୀ ଘୋଡ଼ା ଉପରେ ସବାର ହୋଇଗଲେ । କାଲ୍‌ପୀ ଆଡ଼କୁ ଅଗ୍ରସର ହେଲାବେଳେ ସାଙ୍ଗରେ କେବଳ ଦଶବାର ଜଣ ଘୋଡ଼ସବାର ଥିଲେ । କାଶୀ, ସୁନ୍ଦର, ମୁନ୍ଦରଙ୍କ ପରି ସେବିକାମାନେ ମଧ ଥିଲେ ।

ସେତିକିବେଳେ ଲେଫ୍‌ନାଣ୍ଟ ବୌକର ସେଠାରେ ପହଞ୍ଚିଗଲେ । ରାଣୀ ଏବଂ ବୌକରଙ୍କ ମଧରେ ତରବାରି ଯୁଦ୍ଧ ଆରମ୍ଭ ହୋଇଗଲା । ତରବାରି ସହିତ ତରବାରିର ଟକ୍କର ହେବାରେ ଲାଗିଲା । ଘୋଡ଼ା ଉପରେ ସବାର ହୋଇ ତରବାରି ଚାଳନା କରିବାରେ ରାଣୀ ଖୁବ୍ ନିପୁଣ ଥିଲେ । ତାଙ୍କ ଗତି ଖୁବ୍ ତୀବ୍ର ଥିଲା । ବୌକରଙ୍କ ଉପରେ ତାଙ୍କର ଆକ୍ରମଣ ଏତେ ତୀବ୍ର ଥିଲା ଯେ ବୌକରଙ୍କର ଜଙ୍ଘ କଟି ଯାଇଥାନ୍ତା । କିନ୍ତୁ ବୌକରଙ୍କର

କମରରେ ବନ୍ଧା ହୋଇଥିବା ପିସ୍ତଲ ତାଙ୍କୁ ବଞ୍ଚାଇଦେଲା । ରାଣୀଙ୍କ ତରବାରିର ପ୍ରହାର ଜଙ୍ଘ ଉପରେ ନ ପଡ଼ି ପିସ୍ତଲ ଉପରେ ପଡ଼ିଲା । ସେଥିଯୋଗୁଁ ବୌକର ଆହତ ହେଲେ । କିନ୍ତୁ ଜଙ୍ଘ କଟି ଯାଇ ନ ଥିଲା । ରାଣୀଙ୍କର ଏପରି ଆକ୍ରମଣରେ ବୌକର ଘାବରେଇ ଗଲେ ଏବଂ ପଛକୁ ହଟିଯାଇ ଫେରିଯିବାକୁ ବାଧ୍ୟ ହେଲେ । ଝାନ୍‌ସୀର ଛାଉଣୀକୁ ଫେରିଆସିବା ପରେ ସେ ହିଁ ସମସ୍ତ ଘଟଣା ନିଜର ସହଯୋଗୀମାନଙ୍କୁ ଶୁଣାଇଥିଲେ ।

ବୌକରଙ୍କୁ ତଡ଼ି ଦେଲା ପରେ ରାଣୀ ତୀବ୍ରଗତିରେ କାଲ୍‌ପୀ ଆଡ଼କୁ ଅଗ୍ରସର ହେଲେ । ଦିନସାରା ଘୋଡ଼ସବାର କରି, ଅଧରାତି ବେଳକୁ ସେ କାଲ୍‌ପୀ ସହରର ସୀମାରେ ପହଞ୍ଚିଲେ । ବୌକରଙ୍କୁ ଯଦିଓ ସେ ତଡ଼ି ଦେଇଥିଲେ, ତଥାପି ଇଂରେଜ ସୈନ୍ୟ ରାଣୀଙ୍କ ପିଛା କରି କାଲ୍‌ପୀରେ ପହଞ୍ଚିଯିବେ ଏକଥା ପଥରର ଗାର ପରି ନିଶ୍ଚିତ ଥିଲା । ଏବେ ଭବିଷ୍ୟତ୍‌ରେ ବ୍ୟୂହରଚନା କିପରି ହେବ ? ଆଗାମି ରଣନୀତି କ'ଣ ହେବ ? ଏହି ବିଷୟରେ ରାଓସାହେବ ପେଶବା, ତାନ୍ତିଆ ଟୋପେ ଓ ରାଣୀଙ୍କ ମଧ୍ୟରେ ବିଶଦ ଭାବରେ ଚର୍ଚ୍ଚା ଆରମ୍ଭ ହୋଇଗଲା । ଭାବୀ ଯୋଜନାର ଚୂଡ଼ାନ୍ତ ରୂପରେଖ ପ୍ରସ୍ତୁତି କରାଗଲା ।

## ଇଂରେଜ ଫଉଜଙ୍କ ଆଗୁଆ ଅଭିଯାନ

ରାଣୀ ଲକ୍ଷ୍ମୀବାଈ ଝାନ୍‌ସୀରୁ ପ୍ରସ୍ଥାନ କରିବା ପରେ ବିଦ୍ରୋହୀ ସିପାହି ଚାରି ଦିଗକୁ ଅଲଗା ଅଲଗା ଭାବରେ ବାହାରିଗଲେ । ଝାନ୍‌ସୀରେ ରହି ଏବେ କିଛି ଲାଭ ନ ଥିଲା । ପ୍ରତ୍ୟେକ କାଲ୍‌ପୀ ଯିବାକୁ ଚାହୁଁଥିଲେ । ବର୍ତ୍ତମାନ ସେହିଠାରେ କେବଳ ଆଶାର କିରଣ ଦେଖାଯାଉଥିଲା । ବିଦ୍ରୋହୀ ସିପାହିମାନେ କାଲ୍‌ପୀ ଯିବେ– ହ୍ୟୁରୋଜ ଏହା ଅନୁମାନ କରିଥିଲେ । ସେଥିପାଇଁ ସେ କାଲ୍‌ପୀ ସହର ଆଡ଼କୁ ସବୁ ରାସ୍ତାରେ ଏବଂ ବେତଓ୍ୱା ନଦୀ ପାର ହୋଇ ଯିବାକୁ ଚାହୁଁଥିବା ଲୋକଙ୍କୁ ଅଟକାଇବା ପାଇଁ ସମ୍ପୂର୍ଣ୍ଣ ଭାବେ ପହରା ବସାଇ ଦେଇଥିଲେ । କାଲ୍‌ପୀରେ ପେଶବାମାନଙ୍କର ଗତିବିଧି ଉପରେ ନଜର ରଖିବା ପାଇଁ ଗୁପ୍ତଚରମାନଙ୍କୁ ମଧ୍ୟ ପଠାଇଦେଲେ ।

ଝାନ୍‌ସୀରେ ହ୍ୟୁରୋଜ ନିଜର ବିଶେଷ ସୈନିକ ଅଧିକାରୀମାନଙ୍କୁ ନିଯୁକ୍ତ କଲେ, ଯାହା ଫଳରେ ଝାନ୍‌ସୀ ଉପରେ ପୁନରାୟ ଆକ୍ରମଣ ହୋଇପାରିବ ନାହିଁ । ସେଠାକାର ପ୍ରଶାସନ ଠିକ୍ ଭାବରେ ପରିଚାଳିତ ହେବ ଏବଂ ଶାନ୍ତି ଓ ସୁବ୍ୟବସ୍ଥା ବଜାୟ ରହିବ । ତା'ପରେ ୨୫ ଏପ୍ରିଲକୁ ସେ ସ୍ୱୟଂ ନିଜର ବିଶାଳ ସୈନ୍ୟବାହିନୀ ସହିତ କାଲ୍‌ପୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସେତେବେଳକୁ ଦିଲ୍ଲୀ, କାନପୁର, ବିଠୁର, ଲକ୍ଷ୍ନୌ ପରି ମହତ୍ତ୍ୱପୂର୍ଣ୍ଣ ସ୍ଥାନକୁ ଇଂରେଜମାନେ ପୁନଶ୍ଚ ଦଖଲ କରି ସାରିଥିଲେ । ବର୍ତ୍ତମାନ କେବଳ କାଲ୍‌ପୀରେ ରାଣୀ ଲକ୍ଷ୍ମୀବାଈ, ତାନ୍ତିଆ ଟୋପେ, ରାଓସାହେବ ପେଶବାଙ୍କ ସାଥିରେ ହିଁ ମୁକାବିଲା କରିବା ବାକି ଥିଲା । ଏହା ଏକ ନିର୍ଣ୍ଣାୟକ ଯୁଦ୍ଧ ହୋଇପାରେ, ହ୍ୟୁରୋଜ ଏ

କଥା ମଧ୍ୟ ଜାଣିଥିଲେ । ସେଥିପାଇଁ ଝାନ୍‌ସୀ ଜିତିଲା ପରେ ବିଶ୍ରାମ ନ କରି, କ୍ଲାନ୍ତି ଏବଂ ପେଟର ଯନ୍ତ୍ରଣା ସତ୍ତ୍ୱେ ସେ କାଲ୍‌ପୀ ଅଭିଯାନ ନିମନ୍ତେ ନିଷ୍ପତ୍ତି ନେଲେ । ରାଣୀ ଲକ୍ଷ୍ମୀବାଈ ଏବଂ ପେଶବାଙ୍କ ସହିତ ଯୁଦ୍ଧ କରି ବିଜୟଲାଭ କରିବା, ବିଶ୍ରାମଠାରୁ ବହୁଗୁଣରେ ଅଧିକ ମହତ୍ତ୍ୱପୂର୍ଣ୍ଣ ଥିଲା । ହ୍ୟୁରୋଜଙ୍କ ପରି ଝାନ୍‌ସୀର ଲଢ଼େଇରେ ଆହତ, କ୍ଲାନ୍ତ ସିପାହିମାନଙ୍କ ସଂଖ୍ୟା ମଧ୍ୟ ଅଧିକ ଥିଲା । କିନ୍ତୁ ସେମାନଙ୍କ ପାଇଁ ଆରାମ କରିବା ହାରାମ୍ ଥିଲା ।

ସିଲବେଷ୍ଟର, ମୀଡ଼ ଏବଂ ଅନ୍ୟ ଇଂରେଜ ଲେଖକମାନେ ଏହି ଯାତ୍ରାର ଯେଉଁ ବର୍ଣ୍ଣନା ଦେଇଛନ୍ତି, ସେଥିରୁ ତତ୍କାଳୀନ ଇଂରେଜ ଏବଂ ବିଦ୍ରୋହୀ ସୈନ୍ୟଙ୍କର ଗତିବିଧି ଓ କଷ୍ଟଯନ୍ତ୍ରଣା ସମ୍ବନ୍ଧରେ ବିସ୍ତୃତ ବିବରଣୀ ମିଳିଥାଏ । ଏହା ସହିତ ଇଂରେଜ ସୈନ୍ୟମାନଙ୍କୁ ବିଦ୍ରୋହୀ ସୈନ୍ୟମାନଙ୍କ ସହିତ କେଉଁ କେଉଁ ସମସ୍ୟା ନେଇ ଲଢ଼ିବାକୁ ପଡ଼ିଥିଲା, ତା'ର ସୂଚନା ମଧ୍ୟ ମିଳେ ।

ଝାନ୍‌ସୀରୁ ଯାତ୍ରା କରୁଥିବା ହ୍ୟୁରୋଜଙ୍କ ସୈନ୍ୟବାହିନୀର ଧାଡ଼ି ସାଢ଼େ ଚାରିମାଇଲ୍ ଧରି ଲମ୍ବିଥିଲା । ସେଥିରେ ତୋପଖାନା, ଘୋଡ଼ସବାର, ଓଟସବାର, ପଦାତିକ ସୈନ୍ୟ ଥିଲେ । ପ୍ରତ୍ୟକ୍ଷ ଯୁଦ୍ଧର ସୈନିକଙ୍କ ସଂଖ୍ୟା ଷାଠିଏହଜାର ଥିଲା । ଯୁଦ୍ଧ ସାମଗ୍ରୀର ଦେଖାଶୁଣା କରିବାପାଇଁ ବହୁ ଲୋକ ସୈନ୍ୟଙ୍କ ସହିତ ସାମିଲ୍ ହୋଇଥିଲେ । ଖାଦ୍ୟଶସ୍ୟ ଓ ପାଣି ବୋହିବାକୁ ହଜାର ହଜାର ଶଗଡ଼ ଏବଂ ଓଟଟଣା ଗାଡ଼ି ମଧ୍ୟ ଥିଲା । ଓଟ, ହାତୀ, ବଳଦଙ୍କ ଛଡ଼ା ଡାକ୍ତର, ବୈଦ୍ୟ, ଔଷଧଗାଡ଼ି, ଆହତ ଓ ଅସୁସ୍ଥ ବ୍ୟକ୍ତିଙ୍କୁ ବୋହିନେବା ପାଇଁ ବଳଦଗାଡ଼ି, ଚାକରବାକର, କମାର, ବଢ଼େଇ, ଚମାର, ନାଲ ପିଟିବା ଲୋକଙ୍କ ପରି ବହୁ ଲୋକ ଏହି ସୈନ୍ୟବାହିନୀର ଏକ ଅଙ୍ଗ ଥିଲେ । ଏକ ମହାକାୟ ଅଜଗର ପରି ଏହି ବିଶାଳ ବାହିନୀ ମଧ୍ୟମ ଗତିରେ ଧୀରେ ଧୀରେ ଘୁଷୁରି ଘୁଷୁରି ଆଗକୁ ବଢୁଥିଲା ।

ଏହି ରାସ୍ତା ବହୁତ ପାର୍ବତୀୟ ଅଞ୍ଚଳପୂର୍ଣ୍ଣ, ଧୂଳି ଧୂସରିତ, ନଈ, ନାଳ, ଘାଟି, ଅପନ୍ତରା, ତେଢ଼ାମେଢ଼ା, ସଂକୀର୍ଣ୍ଣ ଏବଂ ବୁଲାଣି ଥିଲା । ଅପ୍ରେଲ, ଖରାର ଭୀଷଣ ରୌଦ୍ରତାପ ଭାଟି ପରି ଜଳୁଥିଲା । ତାତିରେ ଦେହ ପୋଡ଼ି ଯାଉଥିଲା । ଶୋଷରେ ମଣିଷ ଏବଂ ପଶୁମାନେ ବ୍ୟାକୁଳ ହୋଇ ଉଠୁଥିଲେ । ପାଣିର ତ ପୂରାପୂରି ଅକାଳ ପଡ଼ିଥିଲା । ମଝି ମଝିରେ ଯଦି କୋଉଠି ପାଣିଥିବା ପୋଖରୀ କି କୂଅ ଦେଖାଯାଉଥିଲା ତ ଲୋକମାନେ ନିଜ ଧାଡ଼ି ଭାଙ୍ଗି ସେ ଦିଗକୁ ଧାଉଁଥିଲେ । ସେମାନଙ୍କୁ ସଂଭାଳିବାକୁ ଇଂରେଜ ଅଧିକାରୀମାନେ ନାକେଦମ୍ ହୋଇ ଯାଉଥିଲେ । କେବେ କେବେ ଗୋରା ଅଫିସର୍‌ମାନେ ମଧ୍ୟ ନିଜ ଶୋଷ ମେଣ୍ଟାଇବାକୁ ଇଆଡ଼େ ସିଆଡ଼େ ଧାଁ–ଦଉଡ଼ କରୁଥିଲେ । ପ୍ରବଳ ଗରମ ଯୋଗୁଁ ଗୋରା ଏବଂ କଳା ସିପାହିମାନେ ବେମାର ପଡ଼ିବାକୁ ଲାଗିଲେ । ଝାନ୍‌ସୀରୁ କାଲ୍‌ପୀ ଯିବା ବାଟରେ ତିନିଶହରୁ ଅଧିକ ଲୋକ ବେମାର ପଡ଼ିଗଲେ । କେତେକଙ୍କର ମଧ୍ୟ ମୃତ୍ୟୁ ହୋଇଗଲା । ବେମାର ପଡୁଥିବା ଓ ମରିଯାଉଥିବା ହିନ୍ଦୁସ୍ଥାନୀ ସିପାହିମାନଙ୍କର କୌଣସି ଗଣତି କରାଯାଉ ନ ଥିଲା ।

ରାସ୍ତାର ଦୁଇ ପାଖରେ ଛୋଟ ଛୋଟ ଗାଁ ଏବଂ ବସ୍ତି ମଧ୍ୟ ପଡୁଥିଲା । ଇଂରେଜ ସୈନ୍ୟବାହିନୀ ରାସ୍ତାରେ ଗଲାବେଳେ ଗାଁ ଲୋକେ ଏଠି ସେଠି ଲୁଚି ଯାଉଥିଲେ ନ ହେଲେ ଦୂରକୁ ଦୌଡ଼ି ପଳାଉଥିଲେ । କେହି ସାହାଯ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ । ସୈନ୍ୟବାହିନୀ ନିକଟରେ ସମସ୍ତ ପ୍ରକାରର କାରିଗର ଏବଂ ରସଦ (ଖାଦ୍ୟପଦାର୍ଥ) ଥିବା ସତ୍ତ୍ୱେ ବେଳେବେଳେ ପଶୁମାନଙ୍କ ପାଇଁ ଚାରା-ପାଣି, ବଳଦଗାଡ଼ିର ଚକରେ ରବର ଲଗାଇବା, ବଳଦଙ୍କ ଖୁରାରେ ନାଲ ପିଟିବା ପରି କାମ ଦରକାର ପଡୁଥିଲା । କିନ୍ତୁ ପଇସା ଯାଚିଲେ ମଧ୍ୟ ଗାଁ ଲୋକେ ସାହାଯ୍ୟ କରିବାକୁ ରାଜି ହେଉ ନ ଥିଲେ । ଓଲଟା ଇଂରେଜ ସୈନ୍ୟବାହିନୀରେ ଥିବା ହିନ୍ଦୁସ୍ଥାନୀ ସିପାହିମାନଙ୍କୁ ଗାଳି-ମନ୍ଦ କରୁଥିଲେ, ଉପହାସ କରୁଥିଲେ । ସେମାନେ ସେହି ସିପାହିମାନଙ୍କୁ କହୁଥିଲେ ଯେ- ଏହି ବିଦେଶୀମାନେ ଆମର ଧର୍ମ ନଷ୍ଟ କରୁଛନ୍ତି, ଆପଣମାନେ ସେମାନଙ୍କୁ କାହିଁକି ସାହାଯ୍ୟ କରୁଛନ୍ତି ? ସେମାନଙ୍କ ପକ୍ଷରେ କାହିଁକି ଲଢୁଛନ୍ତି ? 'ନର୍କକୁ ଯିବ'- ଏପରି ଅଭିଶାପ ମଧ୍ୟ ଦେଉଥିଲେ । ଏପରି କଥାରେ ଗ୍ରାମବାସୀ ଓ ହିନ୍ଦୁସ୍ଥାନୀ ସିପାହିମାନଙ୍କ ଭିତରେ କଳିଝଗଡ଼ା ମଧ୍ୟ ହୋଇଯାଉଥିଲା । କେବେ କେବେ ଦଳେ ବିଦ୍ରୋହୀ ସିପାହି ଅଚାନକ ଆସି, ଅତର୍କିତ ଆକ୍ରମଣ, ହାଣକାଟ ଏବଂ ଲୁଟ୍‌ପାଟ କରି ଝଡ଼ବେଗରେ ପଳାୟନ କରୁଥିଲେ । ପରବର୍ତ୍ତୀ ସମୟରେ କାଲ୍‌ପୀରୁ ଗୋଆଲିଅର ଯିବା ବାଟରେ ଇଂରେଜ ସୈନ୍ୟଙ୍କର ଅନୁରୂପ ଅନୁଭବ ହୋଇଥିଲା । ଏହି ସାରା ଇଲାକା ଡାକୁ ଏବଂ ଗଣ୍ଡଗୋଳକାରୀଙ୍କର ହିଁ ଥିଲା ।

ସିଲବେଷ୍ଟର ଲେଖିଛନ୍ତି ଯେ- ''ଥରେ ଝାନ୍‌ସୀର ବିଦ୍ରୋହୀ ସିପାହିମାନେ ଅଚାନକ ଇଂରେଜ ସୈନ୍ୟବାହିନୀ ପଛରେ ଥିବା ଦଳ ଉପରେ ଆକ୍ରମଣ କରିଦେଲେ । ଝାନ୍‌ସୀକୁ ଲୁଟ୍ କରି ନେଇଯାଉଥିବା ଲୋକଙ୍କ ଉପରେ ସିପାହିମାନେ ଝାମ୍ପି ପଡ଼ିଥିଲେ । ଆଖିବୁଜା ମାରପିଟ୍ କରି ଲୁଟସମ୍ପତ୍ତି ହସ୍ତଗତ କରି ସେହି ଲୋକମାନେ ପଳାୟନ କରିଥିଲେ । ଝାନ୍‌ସୀ ରାଣୀଙ୍କ ବହୁମୂଲ୍ୟ ଆଭୂଷଣ ଏବଂ ରତ୍ନାଳଙ୍କାର ବିଦ୍ରୋହୀ ସିପାହିମାନେ ଛଡ଼ାଇନେଲେ । ସିଲବେଷ୍ଟର ଜାଣିଶୁଣି ଏହି ଦୁଃଖର ଚର୍ଚ୍ଚା କରିଛନ୍ତି । ନ ହେଲେ ଏପରି ଛୋଟମୋଟ ଘଟଣା ତ ପ୍ରତିଦିନ ଘଟୁଥିଲା ।

ଦିଲ୍ଲୀ, କାନପୁର, ଲକ୍ଷ୍ନୌ, ଝାନ୍‌ସୀକୁ ପରାଜୟ ସ୍ୱୀକାର କରିବାକୁ ହେଲା । ସେଠିକାର ଲୋକମାନଙ୍କ ଉପରେ ବ୍ରିଟିଶ୍‌ମାନେ ଚଳାଇଥିବା ବିଭୀଷିକା ନିଜର ଚରମ ସ୍ଥାନରେ ଥିଲା । କାନପୁର ବିଜୟ ପରେ ନୀଲ୍‌ଙ୍କ ଫଉଜରେ ଥିବା ଗୋରାମାନେ ବିଦ୍ରୋହୀ ସିପାହିମାନଙ୍କ ସହିତ ସାଧାରଣ ଲୋକମାନଙ୍କୁ ମାରି ପକାଇବାର ଏକ ଅଭିଯାନ ଆରମ୍ଭ କରିଦେଇଥିଲେ । ନୀଲ୍‌ଙ୍କ ଫଉଜର ଜଣେ ଇଂରେଜ ସିପାହି ଇଂଲଣ୍ଡରେ ଥିବା ନିଜ ଘରକୁ ପଠାଇଥିବା ପତ୍ରରେ ଲେଖିଥିଲେ- ''ଗତ କେତେ ଦିନ ହେଲା ମୁଁ ପ୍ରତିଦିନ ଏହି ଦୁଷ୍ଟ ଓ କ୍ରୂର ଲୋକମାନଙ୍କୁ ହତ୍ୟା କରିଚାଲିଛି । ସେମାନଙ୍କ ପାଇଁ ଏହାହିଁ ଉପଯୁକ୍ତ ଦଣ୍ଡ

ଥିଲା । ଏପର୍ଯ୍ୟନ୍ତ ମୁଁ ଅଗଣିତ ଲୋକଙ୍କୁ ହତ୍ୟା କରିଅଛି । ଏମିତି କରି କରି ମତେ ଆଶ୍ୱସ୍ତି ଲାଗିଲାଣି, ଘୃଣା ଲାଗିଲାଣି । ଜାଣେ ନାହିଁ କେତେଦିନଯାଏ ଏହି ଅଭିଯାନ ଜାରି ରହିବ ? ଏବେ ଏହାକୁ ବିରାମ ଦେବାକୁ ହେବ । ଆମେ ଯାହା ବି ସବୁ କରିଛୁ, ସେଥିପାଇଁ ଆମ ଉପରେ ଈଶ୍ୱର ଦୟା ଦୃଷ୍ଟି ରଖିବେ, ଏ ବିଶ୍ୱାସ ମୋର ଅଛି ।''

ତରବାରିରେ ହାଣି ପକାଇବା, ତୋପ ମୁହଁରେ ଉଡ଼ାଇଦେବା, ବନ୍ଧୁକ ଗୁଳିରେ ଛିନ୍ନଭିନ୍ନ କରିଦେବା ଏବଂ ଏହା ସହିତ ପ୍ରତ୍ୟେକ ଗ୍ରାମର ଗଛମାନଙ୍କରେ ହଜାର ହଜାର ଲୋକଙ୍କୁ ଫାଶୀଦଣ୍ଡ ଦେଇ ସେଇ ଗଛଡାଳରେ ଝୁଲାଇଦେବା, ସତେକି ବ୍ରିଟିଶ୍‌ମାନଙ୍କର ପ୍ରତିଶୋଧ ନେବାର ଏହା ଏକ ଅଭିଯାନ ଥିଲା । ଲୋକମାନଙ୍କ ମଧ୍ୟରେ ଏକପ୍ରକାର ଆତଙ୍କ ଖେଳାଇ ଦେବାର ଥିଲା । ଯେଉଁ ସିପାହିମାନେ ବଞ୍ଚି ଯାଇଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ପରାଜୟ ଯୋଗୁଁ ନିରାଶ ହୋଇ, ସୈନ୍ୟବାହିନୀ ଛାଡ଼ି ନିଜ ନିଜର ଗାଁକୁ ଫେରିଯିବାରେ ଲାଗିଥିଲେ । ସମସ୍ତ ଫଉଜ ଛିନ୍ନଛତର ହୋଇ ଯାଇଥିଲେ । ତଥାପି ଏବେ ମଧ୍ୟ ଇଂରେଜଙ୍କ ବିରୋଧରେ ଈର୍ଷା, କ୍ରୋଧ ଏବଂ ତିରସ୍କାର ସମାପ୍ତ ହୋଇ ନ ଥିଲା । ଲଢ଼ିବାର ଜିଦ୍ ଖୁବ୍ ପ୍ରବଳ ଥିଲା । ଏବେବି ସେହି ଲୋକମାନଙ୍କ ମନରୁ ଆଶାର କିରଣ ଲିଭି ନ ଥିଲା । ଲଢ଼ାଇର ପ୍ରାରମ୍ଭିକ ଦିନମାନଙ୍କରେ ସମସ୍ତେ ଦିଲ୍ଲୀର ବାଦଶାହଙ୍କ ପାଖକୁ ଯିବାକୁ ଚାହୁଁଥିଲେ; କିନ୍ତୁ ଏବେ ସମସ୍ତେ କାଲ୍‌ପୀ ଆଡ଼କୁ ଯିବାକୁ ଚାହୁଁଥିଲେ, କାରଣ ସେଠାରେ ଇଂରେଜଙ୍କ ଉପରେ ଝଡ଼ପରି ଝପଟି ପଡ଼ିବାବାଲା, ପ୍ରାଥମିକ ପର୍ଯ୍ୟାୟରେ କାନପୁର ଯୁଦ୍ଧରେ ଇଂରେଜମାନଙ୍କୁ ମଜା ଚଖେଇ ଦେଇଥିବା ତାନ୍ତିଆ ଟୋପେ ଥିଲେ । ସେହି ଯୁବତୀ–ବିଧବା ରାଣୀ ଧନ୍ୟ, ଯିଏ ହ୍ୟୁରୋଜ ପରି ଶକ୍ତିଶାଳୀ ସେନାନୀ ଓ ତାଙ୍କର ବିଶାଳ ସେନାର ଦାନ୍ତ ଭାଙ୍ଗି ଦେଇଥିଲେ । ସେ ହ୍ୟୁରୋଜଙ୍କୁ ପରାଜୟର ଅନ୍ଧକାର ମଧ୍ୟକୁ ଠେଲି ଦେଇଥିଲେ । କିନ୍ତୁ ନିଜ ଘରର ବିଶ୍ୱାସଘାତୀମାନଙ୍କ ପାଖରେ ଶେଷକୁ ତାଙ୍କୁ ହାର ମାନିବାକୁ ପଡ଼ିଲା । ଚତୁର୍ଦ୍ଦିଗରେ ଶତ୍ରୁ–ସେନାଙ୍କର ପକ୍କା ବନ୍ଦୋବସ୍ତ ହୋଇଥିଲେ ହେଁ ଯେଉଁ ଚତୁରତାର ସହ ସେ ନିଜର ଶିଶୁପୁତ୍ରକୁ ପିଠିରେ ବାନ୍ଧି ଝାନ୍‌ସୀରୁ ବାହାରି ଯାଇଥିଲେ– ସେହି ବୀରାଙ୍ଗନା ଝାନ୍‌ସୀର ରାଣୀ କାଲ୍‌ପୀରେ ହିଁ ଥିଲେ । ତାଙ୍କର ସାହସ, ଯୁଦ୍ଧକୌଶଳ ଦେଖି ସମସ୍ତେ ସ୍ତମ୍ଭୀଭୂତ ଥିଲେ । ସିପାହିମାନଙ୍କର ଏବେ ମଧ୍ୟ ଆଶା ଥିଲା । କେବଳ ତାଙ୍କରି ଭରସା ଏକମାତ୍ର ଭରସା ଥିଲା । କେହି ଜଣେ ଦୁଇଜଣ କରି ତ କେହି ସଦଳବଳେ ଅଲଗା ଅଲଗା ରାସ୍ତାରେ କାଲ୍‌ପୀ ଯିବାପାଇଁ ବାହାରି ପଡ଼ିଥିଲେ । ସେଇଠି ବର୍ତ୍ତମାନ ଫିରିଙ୍ଗିମାନଙ୍କ ସହିତ ଅନ୍ତିମ ନିର୍ଣ୍ଣାୟକ ଯୁଦ୍ଧ ହେବାର ଥିଲା । ବୁନ୍ଦେଲଖଣ୍ଡର ରାଜା, ନବାବ, ସରଦାର, ବ୍ୟବସାୟୀ, ସେଠ–ସାହୁକାର, ଜାଗିରଦାରମାନଙ୍କୁ ପତ୍ର ପ୍ରେରଣ କରି ଫିରିଙ୍ଗିମାନଙ୍କ ବିରୋଧରେ ଯୁଦ୍ଧ ପାଇଁ ସାହାଯ୍ୟ କରିବାକୁ ଆହ୍ୱାନ କରାଯାଇଥିଲା । ଯଦି ଏହି ଯୁଦ୍ଧରେ ବିଜୟ ପ୍ରାପ୍ତି ହୁଏ ତେବେ ସେମାନଙ୍କୁ ପୁରସ୍କାର ସହିତ ସେମାନଙ୍କର ରାଜ୍ୟ, ପଦ ଓ

ପ୍ରତିଷ୍ଠା ଫେରାଇ ଦିଆଯିବାର ଆଶ୍ୱାସନା ମଧ୍ୟ ଦିଆଯାଇଥିଲା । ସେମାନେ ଯେପରି କୌଣସି ପ୍ରକାରେ ଇଂରେଜମାନଙ୍କୁ ସାହାଯ୍ୟ ନ କରନ୍ତି ଏ ପ୍ରକାରର ଚେତାବନୀ ମଧ୍ୟ ଦିଆଯାଇଥିଲା । ଲକ୍ଷ୍ମୀବାଈ ବାଣପୁରରେ ମର୍ଦ୍ଦାନସିଂହଙ୍କ ସହିତ ବରାବର ଯୋଗାଯୋଗ ରକ୍ଷା କରିଥିଲେ ।

## କାଲ୍‌ପୀର ଯୁଦ୍ଧ

କାଲ୍‌ପୀରେ ଯେତେବେଳେ ଯୁଦ୍ଧ ହେଲା ସେତେବେଳେ ବିଷ୍ଣୁଭଟ୍ଟ ଗଡ଼ସେ ମଧ୍ୟ କାଲ୍‌ପୀରେ ହିଁ ଉପସ୍ଥିତ ଥିଲେ । 'ମାଝାପ୍ରବାସ'ରେ ସେ କାଲ୍‌ପୀ ସହରର ବର୍ଣ୍ଣନା ଦେଇଛନ୍ତି । ଯମୁନା ତଟଦେଶରେ ଏହି ସହରଟି ଖୁବ୍ ଛୋଟ ହେଲେହେଁ ସୁନ୍ଦର ଏବଂ ସୁଗଠିତ ଥିଲା । ଯମୁନା ନଦୀ କୂଳରେ ହିଁ କିଲ୍ଲା ନିର୍ମାଣ କରାଯାଇଥିଲା । କିଲ୍ଲାର ତିନି ଦିଗରେ ବୃହତ୍ ଦୁର୍ଗ ଥିଲା । ଚତୁର୍ଥ ଦିଗରେ ଯମୁନା ନଦୀର ଜଳ ପ୍ରବାହିତ ହେଉଥିଲା । ସେଥିପାଇଁ ଏହି କିଲ୍ଲା ଯେତିକି ମଜଭୁତ୍ ଥିଲା, ସେତିକି ଭବ୍ୟ ମଧ୍ୟ ଥିଲା । କିଲ୍ଲା ଯମୁନାର ପଶ୍ଚିମ ଦିଗରେ ଥିଲା । କିଲ୍ଲାର ପଶ୍ଚିମରେ ଏକ ମାଇଲ୍ ଖୋଲା ପ୍ରାନ୍ତରକୁ ବାଦ୍ ଦେଇ ତା' ପରେ ସହର ନିର୍ମାଣ କରାଯାଇଥିଲା । ଦକ୍ଷିଣେତର ଦିଗରେ ସହର ଲମ୍ବିଥିଲା । ଯମୁନା ଗଭୀର ହେବା କାରଣରୁ କୂଅ ସବୁ ମଧ୍ୟ ଖୁବ୍ ଗଭୀରକୁ ଖୋଳାଯାଇଥିଲା । ସହରରେ ଚିନିର ବହୁତ ବଡ଼ ଧରଣର ବ୍ୟବସାୟ ଚାଲିଥିଲା । ସହରର ଲୋକମାନଙ୍କର ବହୁତ ବଡ଼ ବଡ଼ ପ୍ରାସାଦ ଥିଲା । ରାସ୍ତା ମଧ୍ୟ ବହୁତ ବଡ଼ କିମ୍ବା ଛୋଟ ନ ହୋଇ ମଧ୍ୟମ ଧରଣର ଥିଲା । ଯମୁନା କୂଳରେ କିଲ୍ଲା ପଶ୍ଚିମକୁ ଥିଲା ଏବଂ ମଝିରେ ଏକ ବିରାଟ ଯୁଦ୍ଧ ହେଲାପରି ପ୍ରାନ୍ତର ମଧ୍ୟ ଥିଲା । ଯୁଦ୍ଧ ହେବାପାଇଁ ଏହି ପ୍ରାନ୍ତର ବେଶ୍ ବିସ୍ତୃତ ଥିଲା । ସେଠାରେ ୮୪ଟି ଗୁମ୍ଫଟ ନିର୍ମାଣ କରାଯାଇଥିଲା । କବର ମଧ୍ୟ ତିଆରି କରାଯାଇଥିଲା ।(ପୃ. ୧୧୦-୧୧୧)

କାଲ୍‌ପୀରେ ରାଓସାହେବ, ତାନ୍ତିଆ ଟୋପେ, ରାଣୀ ଲକ୍ଷ୍ମୀବାଈ ଏକତ୍ର ହୋଇ ନିଷ୍ପତ୍ତି କଲେ ଯେ ହ୍ୟୁରୋଜଙ୍କୁ କାଲ୍‌ପୀରେ ପହଞ୍ଚିବା ଆଗରୁ ଅଟକାଇବାକୁ ହେବ । ତାଙ୍କୁ କାଲ୍‌ପୀ ଭିତରେ ପ୍ରବେଶ କରିବାକୁ ଦିଆଯିବ ନାହିଁ । ସେମାନଙ୍କୁ ଏକଥା ମଧ୍ୟ ଜଣାଥିଲା ଯେ ହ୍ୟୁରୋଜଙ୍କର ଫଉଜ ଥକିପଡ଼ିଛନ୍ତି, ଗରମ ଯୋଗୁଁ ବ୍ୟସ୍ତବିବ୍ରତ ଏବଂ ଅସୁସ୍ଥ ହୋଇପଡ଼ିଛନ୍ତି । ତେଣୁ ସେମାନେ କାଲ୍‌ପୀରେ ପ୍ରବେଶ କରିବା ପୂର୍ବରୁ ସମରସଜ୍ଜା କରି ସେମାନଙ୍କୁ ଧ୍ୱଂସ କରିଦେବା ହିଁ ଠିକ୍ ହେବ । ଏହି କାର୍ଯ୍ୟ ନିମନ୍ତେ କାଲ୍‌ପୀରୁ ୪୨ ମାଇଲ ଦୂର କୋଞ୍ଚ ଗ୍ରାମ ସବୁଠୁଁ ଅଧିକ ଉପଯୁକ୍ତ ଥିଲା । କୋଞ୍ଚ ଗ୍ରାମର ଚାରିପାଖରେ ଘନ ଜଙ୍ଗଲ ଥିଲା । ଗାଁରେ ବଡ଼ ବଡ଼ ବଗିଚା, ମନ୍ଦିର ଏବଂ ଉଞ୍ଚା ଉଞ୍ଚା ପାଚେରି ମଧ୍ୟ ଥିଲା । ଏପରି ସ୍ଥାନ ସୁରକ୍ଷା ଦୃଷ୍ଟିରୁ ଉତ୍ତମ ଥିଲା ।

ଝାନ୍ସୀରୁ ପ୍ରସ୍ଥାନ କରିବାର ପାଞ୍ଚ-ଛଅ ଦିନ ପରେ ହ୍ୟୁରୋଜ କୋଞ୍ଚ ଗାଁରେ ପହଞ୍ଚିଲେ । ସେଠାରେ ତାଙ୍କୁ ସୂଚନା ମିଳିଲା ଯେ ତାନ୍ତିଆ ଟୋପେ ଓ ରାଣୀ ଲକ୍ଷ୍ମୀବାଈ

କୋଞ୍ଚ ଗାଁକୁ ଆସୁଛନ୍ତି । ହ୍ୟୁରୋଜ ଏ କଥା ଜାଣିଥିଲେ ଯେ ତାଙ୍କର ସୈନିକମାନେ କ୍ଳାନ୍ତ ହୋଇପଡ଼ିଛନ୍ତି ଓ ଗରମ ଏବଂ ତୃଷାରେ ବ୍ୟାକୁଳ ହେଉଛନ୍ତି । ବହୁ ଇଂରେଜ ଅଧିକାରୀ ଏବଂ ସୈନିକମାନେ ଅସୁସ୍ଥ ଅଛନ୍ତି । ସେଥିପାଇଁ ସାମ୍ନାସାମ୍ନି ମୁକାବିଲା କରିବା ଧୋକାଦେବା ପରି ହେବ । ବରଂ ଭଲ ହେବ ଯେ ଶତ୍ରୁର କୌଣସି ଦୁର୍ବଳତାର ସନ୍ଧାନ କରି ସେଇ ଦିଗରୁ ଯଦି ଆକ୍ରମଣ କରାଯିବ । ଏହି କଥାକୁ ଦୃଷ୍ଟିରେ ରଖି ହ୍ୟୁରୋଜ ନିଜର ଯୋଜନା ପ୍ରସ୍ତୁତ କଲେ । କୋଞ୍ଚ ଗ୍ରାମର ପଶ୍ଚିମୋତ୍ତର ଦିଗର ପଛୁଆ ଇଲାକାରେ କୌଣସି ସୈନ୍ୟବାହିନୀ ନାହାନ୍ତି, ଏହା ଜାଣିବାମାତ୍ରେ ଇ ହ୍ୟୁରୋଜ ସେହି ଦିଗରୁ ଅଚାନକ ଆକ୍ରମଣ କରିବାର ନିଷ୍ପତ୍ତି ନେଲେ । କ୍ଳାନ୍ତ-ଶ୍ରାନ୍ତ ସୈନିକମାନଙ୍କୁ ଠେଲି-ପେଲି ନେଇ କୋଞ୍ଚ ଗ୍ରାମର କିଲ୍ଲାକୁ ହସ୍ତଗତ କରିନେଲେ । ଏହା ପରେ କୋଞ୍ଚଠାରୁ ଦଶମାଇଲ ଦୂରରେ ଥିବା ଲୁହାରୀ କିଲ୍ଲାକୁ ଜିତିବାର ପ୍ରଯତ୍ନ କରାଗଲା । ଇଂରେଜ ସୈନ୍ୟଙ୍କ ଆଗରେ ପେଶବାଙ୍କ ସୈନ୍ୟ ଅସହାୟ ଓ ବେକାର ସାବ୍ୟସ୍ତ ହେଲେ । ସୈନ୍ୟମାନେ ଦୁଇ ଭାଗରେ ବିଭକ୍ତ ହୋଇଗଲେ । କୋଞ୍ଚ ଗ୍ରାମର ବାହାରେ ଘମାଘୋଟ ଯୁଦ୍ଧ ହେଲା । ଲଢୁ ଲଢୁ ଶେଷକୁ ପେଶବାଙ୍କ ସୈନ୍ୟମାନେ ପଛଘୁଞ୍ଚା ଦେଲେ ଏବଂ ଗାଁକୁ ଫେରିଆସିଲେ । ପେଶବାଙ୍କ ସେନା ଏଣେତେଣେ ପଳାଇବାକୁ ଲାଗିଲେ । କିଛି ଲୋକ ବଗିଚାର ବୁଦା ଏବଂ ମନ୍ଦିର ଆଡୁଆଳରେ ରହି ଯୁଦ୍ଧ କରିବାର ପ୍ରୟାସ କଲେ । ସଫଳତା ମିଳିଲା ନାହିଁ । ପେଶବାଙ୍କର ସୈନ୍ୟ ଆଖପାଖର ଜଙ୍ଗଲରେ ଲୁଚିବାକୁ ଲାଗିଲେ । ଯୁଦ୍ଧର ଏପରି ଦୁର୍ବଳ ମୁହୂର୍ତ୍ତରେ ତାନ୍ତିଆ ଟୋପେ କୋଞ୍ଚଠାରୁ ପଚିଶମାଇଲ ଦୂରରେ ଥିବା ଚରଖାରୀ ଗ୍ରାମଆଡ଼େ ନିଜର ମାତାପିତାଙ୍କୁ ଭେଟିବାକୁ ବାହାରିଗଲେ ।

ଏତେ ଘମାଘୋଟ ଯୁଦ୍ଧ ଜାରି ରହିଥିଲାବେଳେ, ପେଶବାମାନଙ୍କ ପାଇଁ ନିଜର ସବୁକିଛି ସମର୍ପିତ କରି ଦେଇଥିବା ତାନ୍ତିଆ ଟୋପେଙ୍କ ପରି ସୈନିକ ରଣଭୂମି ଛାଡ଼ି ନିଜର ମାତା-ପିତାଙ୍କ ପାଖକୁ ଚାଲିଗଲେ । ମନରେ ଏହି ପ୍ରଶ୍ନ ନ ଉଠି ରହିପାରିବ ନାହିଁ । ଏହାର ଉତ୍ତର ଶ୍ୟାମନାରାୟଣ ସିହ୍ନା ନିଜର ପୁସ୍ତକ 'ଦି ରିଭୋଲ୍ଟ ଅଫ ବୁନ୍ଦେଲଖଣ୍ଡ'ରେ ଦେଇଛନ୍ତି । ସେ ଲେଖିଛନ୍ତି ଯେ "କୋଞ୍ଚର ପରାଜୟ ପରେ କାଲ୍‌ପୀର ଯୁଦ୍ଧ ଜିତିବା ମୁସ୍କିଲ୍ ହୋଇପଡ଼ିବ, ତାନ୍ତିଆ ଟୋପେ ଏ କଥା ବୁଝିସାରିଥିଲେ । ସେ ଭାବିଲେ ଗୋଆଲିଅରର ସିନ୍ଧିଆ ଯଦିଓ ଇଂରେଜମାନଙ୍କୁ ସମର୍ଥନ କରୁଛନ୍ତି ତଥାପି ତାଙ୍କର ସୈନ୍ୟମାନଙ୍କୁ ନିଜ ପକ୍ଷକୁ ଅଣାଯାଇପାରିବ । ୧୮୫୭ ସେପ୍ଟେମ୍ବରରେ ତାନ୍ତିଆ ଟୋପେ ଗୋଆଲିଅର ନିକଟରେ ମୋରାର ଛାଉଣୀର ପଲଟଣଙ୍କୁ ନିଜ ପକ୍ଷକୁ ଆଣିପାରିଥିଲେ ଏବଂ ସେହି ସୈନ୍ୟଦଳଟି ପେଶବା ସୈନ୍ୟଙ୍କ ସହିତ ଆସି ମିଶି ଯାଇଥିଲେ । ସେହିପରି ଗୋଆଲିଅରର ସମସ୍ତ ସୈନିକଙ୍କୁ ନିଜ ପକ୍ଷକୁ ଆଣିବାକୁ ପ୍ରଯତ୍ନ କରିବାର ଦୃଷ୍ଟି ରଖି ତାନ୍ତିଆ ଚରଖାରୀ ଯିବା କଥା କହି ଗୋଆଲିଅର ଚାଲିଯାଇଥିଲେ । ଥରେ ଗୋଆଲିଅର ସୈନ୍ୟମାନଙ୍କୁ ନିଜ ପକ୍ଷକୁ ଆଣିପାରିଲେ ହିନ୍ଦୁସ୍ଥାନର ଅନ୍ୟ ରାଜା-

ମହାରାଜାଙ୍କର ସୈନ୍ୟମାନଙ୍କୁ ପେଶବାଙ୍କ ସୈନ୍ୟବାହିନୀରେ ସାମିଲ୍ କରିବା ସହଜ ହୋଇଯାଇଥାନ୍ତା । ତାନ୍ତିଆଙ୍କର ଦୂତ ମହାଦେବ ଶାସ୍ତ୍ରୀ ଫାଶୀରେ ଚଢ଼ିବା ପୂର୍ବରୁ ନିଜର ସାକ୍ଷ୍ୟ ଦେଇ ହାମିଲ୍‌ଟନଙ୍କୁ କହିଥିଲେ ଯେ ସିନ୍ଧିଆ ଇଂରେଜମାନଙ୍କୁ ସମର୍ଥନ କରୁଥିବା ଯୋଗୁଁ ତାଙ୍କର ପେଶବାମାନଙ୍କ ପ୍ରତି ମୈତ୍ରୀ ଭାବନା ନ ଥିଲା, ଆଦର ମଧ୍ୟ ନ ଥିଲା । ସିନ୍ଧିଆ ଜଣେ ବଡ଼ ମହାରାଜା ଥିଲେ । ତାଙ୍କୁ ଦେଖି ଅନ୍ୟ ଛୋଟ ବଡ଼ ରାଜାମାନେ ବଡ଼ ବିବ୍ରତ ହୋଇ ଇଂରେଜଙ୍କୁ ସମର୍ଥନ କରିଥିଲେ । ସେହି କାରଣରୁ ପେଶବାମାନଙ୍କୁ ସିନ୍ଧିଆଙ୍କ ସୈନ୍ୟବାହିନୀକୁ ନିଜ ପକ୍ଷକୁ ମୁହାଁଇ ଆଣିବା ଜରୁରି ଥିଲା । ଥରେ ସୈନ୍ୟମାନେ ନିଜ ପକ୍ଷକୁ ଆସିଗଲେ ରାଜା ମଧ୍ୟ ଆସିଯିବେ, ଏହି ବିଚାର କରି ତାନ୍ତିଆ ଗୋଆଲିଅର ଅଭିମୁଖେ ବାହାରି ଯାଇଥିଲେ ।

କିନ୍ତୁ ତାନ୍ତିଆଙ୍କ ଏହି ଯୋଜନା ସଂପର୍କରେ ଅନଭିଜ୍ଞ ଥିବା ହେତୁ ସୈନ୍ୟମାନଙ୍କୁ ଲାଗିଲା ଯେ ଆମକୁ ଶତ୍ରୁ ମୁହଁରେ ଛାଡ଼ିଦେଇ ତାନ୍ତିଆ ପଳାୟନ କଲେ । ସେମାନେ ତାନ୍ତିଆଙ୍କ ଉପରେ ଖୁବ୍ ଅସନ୍ତୁଷ୍ଟ ମଧ୍ୟ ହୋଇପଡ଼ିଥିଲେ । ସର୍ବତ୍ର ନିରାଶା ଛାଇ ଯାଇଥିଲା । ବହୁ ସିପାହି ମଧ୍ୟ କାଲ୍‌ପୀକୁ ଫେରିଲେ ନାହିଁ । ଯେଉଁଆଡ଼େ ବାଟ ଦିଶିଲା ସେଆଡ଼େ ଚାଲିଗଲେ । ସେହି କାରଣରୁ କାଲ୍‌ପୀର ଲଢ଼େଇରେ ଯେପରି ତାନ୍ତିଆ ଟୋପେ ଅନୁପସ୍ଥିତ ଥିଲେ ସେହିପରି ବହୁ ବାହାଦୁର ସିପାହି ମଧ୍ୟ ଅନୁପସ୍ଥିତ ଥିଲେ । ଇତିମଧ୍ୟରେ ସିପାହିମାନଙ୍କର ଗଞ୍ଜେଇ, ଅଫିମ ଇତ୍ୟାଦି ସେବନ କରିବାର ଅଭ୍ୟାସ ପଡ଼ିଯାଇଥିଲା । ଏସବୁ ବିନା ଲଢ଼େଇ ପାଇଁ ସେମାନେ ପ୍ରସ୍ତୁତ ମଧ୍ୟ ହେଉ ନ ଥିଲେ ।

କୋଞ୍ଚରୁ ତାନ୍ତିଆ ଟୋପେ ଚାଲିଯିବା ପରେ ରାଣୀ ଲକ୍ଷ୍ମୀବାଈ ଏକାକୀ ବୀରତ୍ୱର ସହ ନିର୍ଣ୍ଣାୟକ ଯୁଦ୍ଧ ଲଢ଼ିଚାଲିଲେ । କିନ୍ତୁ ଶେଷକୁ ତାଙ୍କର ପାଞ୍ଚଶହ ସିପାହି ମଧ୍ୟ କୋଞ୍ଚ ତ୍ୟାଗ କରି ଚାଲିଗଲେ । ସେତେବେଳେ ପଛଘୁଞ୍ଚା ଦେବା ବ୍ୟତୀତ ତାଙ୍କ ପାଇଁ ଅନ୍ୟ ବିକଳ୍ପ ନ ଥିଲା । କୋଞ୍ଚରେ ତାଙ୍କର ଘାତକ ପରାଜୟ ଘଟିଲା । ସେଥିପାଇଁ ପରସ୍ପରକୁ ଦୋଷ ଦେଇ ଦାୟୀ କରାଗଲା । ପଦାତିକ ଏବଂ ଅଶ୍ୱାରୋହୀ ସୈନ୍ୟମାନେ ପରସ୍ପରକୁ ସାହାଯ୍ୟ କଲେ ନାହିଁ, ସେଥିପାଇଁ ପରସ୍ପରକୁ ଦୋଷ ଦେଲେ । ତାନ୍ତିଆ ଟୋପେଙ୍କ ପରି ସେନାପତି ଯୁଦ୍ଧର ଏହି ଦୁର୍ବଳ ଏବଂ ଗମ୍ଭୀର ମୁହୂର୍ତ୍ତରେ ସମସ୍ତଙ୍କୁ ମଝିନଈରେ ଭସେଇଦେଇ କିପରି ଚାଲିଗଲେ ? ଆଫଗାନ୍ ସିପାହିମାନେ ନିଜର ଚିରାଚରିତ ବୀରତ୍ୱର ସହିତ କାହିଁକି ଲଢ଼ିଲେ ନାହିଁ ? ସେମାନେ ରାଣୀ ଲକ୍ଷ୍ମୀବାଈଙ୍କ ସୁରକ୍ଷା ନିମନ୍ତେ କୌଣସି ପ୍ରକାରର ବିଚାର କାହିଁକି କଲେ ନାହିଁ ? ତାଙ୍କୁ ଏକାକିନୀ ଛାଡ଼ିଦେଇ କାହିଁକି ଚାଲିଗଲେ ? ସେମାନେ ନିଜର କର୍ତ୍ତବ୍ୟ କାହିଁକି ପାଳନ କଲେ ନାହିଁ ? ଲକ୍ଷ୍ମୀବାଈ ଏକୁଟିଆ ସାହସର ସହିତ ଲଢ଼ିଲେ । ଶେଷକୁ ନାଚାର ହୋଇ ତାଙ୍କୁ ପଛକୁ ହଟିବାକୁ ହେଲା । ତିନିଦିନଯାଏ କାଲ୍‌ପୀରେ ଯୁଦ୍ଧ ଚାଲିଲା । ଏହି ଲଢ଼େଇରେ ସୈନ୍ୟମାନଙ୍କର ପରାଜୟକୁ କେନ୍ଦ୍ରକରି ପରସ୍ପର ମଧ୍ୟରେ ନିରର୍ଥକ ଚର୍ଚ୍ଚା ଜାରି ରହିଲା ।

ଇତିମଧ୍ୟରେ ବାନ୍ଦାର ନବାବ ଅଲୀ ବାହାଦୁରଶାହ ମଧ୍ୟ ପରାଜିତ ହୋଇଥିଲେ । ସେଠାରୁ ସେ ନିଜର ବିଶାଳ ସେନା ସହିତ କାଲ୍‌ପୀରେ ପହଞ୍ଚିଗଲେ । କୋଞ୍ଚରେ ପରାଜୟ ସତ୍ତ୍ୱେ ଏହି ନୂତନ ସାହାଯ୍ୟ ଯୋଗୁଁ ଆଶାର ଏକ କିରଣ ପୁନରାୟ ଜଳିଉଠିଲା । ଏବେ କାଲ୍‌ପୀ ଯୁଦ୍ଧର ଦାୟିତ୍ୱ ଥିଲା । ଯମୁନା ନଈର ଜଳକୁ ହାତରେ ଧରି ସମସ୍ତେ ଶପଥ ନେଲେ ଯେ ଏଥର ଲଢ଼େଇରେ ବ୍ରିଟିଶ୍ ସୈନ୍ୟକୁ ହରାଇବାର ହିଁ ଅଛି, ଅନ୍ୟଥା ମୃତ୍ୟୁ ଶ୍ରେୟସ୍କର । ପେଶବା ସୈନ୍ୟଙ୍କୁ ଯେତେବେଳେ ବି ମଉକା ମିଳେ, ସେତେବେଳେ ଫିରିଙ୍ଗି ସେନା ଉପରେ ଛୋଟ-ମୋଟ ଆକ୍ରମଣ କରି ସେମାନଙ୍କୁ ଅଟକାଇ ରଖୁଥିଲେ । ଇଂରେଜ ଫଉଜ ଧୀରେ ଧୀରେ କାଲ୍‌ପୀର ଦ୍ୱାରଯାଏ ପହଞ୍ଚିଗଲେ । ସେ ସମୟରେ ପେଶବାଙ୍କ ପାଖରେ କୋଡ଼ିଏହଜାର ସୈନିକ ଥିଲେ । ସେହି ସୈନ୍ୟମାନଙ୍କୁ ହ୍ୟୁରୋଜ ନିଜ ସାଥିରେ ଆଣିଥିବା ଷାଠିଏହଜାର ବିଶାଳ ସେନାଙ୍କ ସହିତ ସମ୍ମୁଖ ସମର ଲଢ଼ିବାର ଥିଲା ।

ରାଓସାହେବଙ୍କ ମଧ୍ୟରେ ଆତ୍ମବିଶ୍ୱାସର ଘୋର ଅଭାବ ଥିଲା । ନବାବ ଅଲୀ ବାହାଦୁରଙ୍କର ନିଜ ସଂପର୍କରେ କିଛି ଭ୍ରାନ୍ତ ଧାରଣା ଥିଲା । ସେ ରାଓସାହେବଙ୍କୁ ନିଜ ଅଙ୍ଗୁଳିରେ ନଚାଇବାର ଚେଷ୍ଟା କରୁଥିଲେ । ରାଓସାହେବ ଏହି ସୈନ୍ୟବାହିନୀର ନାମକୁମାତ୍ର ମୁଖ୍ୟ ଥିଲେ । ତାନ୍ତିଆ ଟୋପେ କାର୍ଯ୍ୟଦକ୍ଷ ହୋଇଥିଲେ ହେଁ ରାଓସାହେବଙ୍କର ସମ୍ପୂର୍ଣ୍ଣ ଅନୁଗତ ଥିଲେ । କାୟମନରେ ତାଙ୍କୁ ପ୍ରଭୁ ଭାବେ ମାନୁଥିଲେ, ତାଙ୍କ ଆଦେଶ ପାଳନ କରୁଥିଲେ । କିନ୍ତୁ ନିଜ ଆଡ଼ୁ ନା ଗୋଟିଏ ଶବ୍ଦ ଉଚ୍ଚାରଣ କରୁଥିଲେ ନା କୌଣସି ନିଷ୍ପତ୍ତି ଗ୍ରହଣ କରୁଥିଲେ । ଏକମାତ୍ର ଲକ୍ଷ୍ମୀବାଈ ସବୁଦିଗରୁ ବିଚାର୍ କରିବା ପରି ବ୍ୟକ୍ତି ଥିଲେ । କୋଞ୍ଚର ଲଢ଼ାଇ ଆମେ କିପରି ଏବଂ କାହିଁକି ହାରିଲୁ ? ଏହାର ବିଶ୍ଳେଷଣ କରି ବର୍ତ୍ତମାନ ଆଗାମି ଯୋଜନା କ'ଣ ହେବା ଉଚିତ, ଏହା ଉପରେ ନିଜର ରାୟ ବ୍ୟକ୍ତ କରି ରାଣୀ କହିଲେ- ''ଇଂରେଜ ସୈନ୍ୟମାନେ କେବେ ମଧ୍ୟ ଅନୁଶାସନହୀନ ବ୍ୟବହାର ପ୍ରଦର୍ଶନ କରନ୍ତି ନାହିଁ । ସେଥିପାଇଁ ସେମାନଙ୍କୁ ବିଜୟ ପ୍ରାପ୍ତି ହେଉଛି । ଆମକୁ ମଧ୍ୟ ସେଥିପାଇଁ ନିଜ ସୈନ୍ୟମାନଙ୍କୁ ଅନୁଶାସନ ମଧ୍ୟରେ ରଖିବା ଅତ୍ୟନ୍ତ ଜରୁରି ଅଟେ । ସେଥିପାଇଁ ପ୍ରତ୍ୟେକ ଦିନ ବିଧିବଦ୍ଧ ଭାବରେ ସମରାଭ୍ୟାସ କରାଇବାକୁ ହେବ । ସେମାନଙ୍କ ଭିତରେ ସେନାପତି ଏବଂ ଅନ୍ୟ ବରିଷ୍ଠ ଅଧିକାରୀମାନଙ୍କର ଆଜ୍ଞା ପାଳନର ଅଭ୍ୟାସ ପକାଇବାକୁ ହେବ । ସେମାନଙ୍କ ଭିତରେ ଅନୁଶାସନ ସହିତ ଆତ୍ମବିଶ୍ୱାସ, ଦୂରଦର୍ଶିତା, ସଂଯମ ଏବଂ ଚେତନା ଜାଗ୍ରତ କରିବାକୁ ହେବ ।'' ଏହିପରି ରାଣୀ ସେନାର ଅନୁଶାସନ, ଅଭ୍ୟାସ-ପ୍ୟାରେଡ୍ ଇତ୍ୟାଦି ବିଷୟକୁ ଆଗ୍ରହର ସହ ପାଳନ କରିବାର କଥା କହିଲେ ।

ରାଣୀଙ୍କ କଥା ମନକୁ ତ ପାଇଲା । କିନ୍ତୁ ରାଓସାହେବ ଅଧିକ ଉତ୍ସୁକତା ପ୍ରକାଶ କଲେ ନାହିଁ । ସେ ଉପରଠାଉରିଆ ଭାବରେ ଭିନ୍ନ ଭିନ୍ନ ସ୍ଥାନରେ ନିଜର ସୈନ୍ୟମାନଙ୍କୁ ପ୍ରତିଦିନ ଅଭ୍ୟାସ କରାଇବାର ଅନୁମତି ରାଣୀଙ୍କୁ ଦେଲେ । ରାଣୀ ସର୍ବପ୍ରଥମେ

ସେନାବାହିନୀରେ ଅନୁଶାସନହୀନତା ଏବଂ ବିଶୃଙ୍ଖଳା ବରଦାସ୍ତ ନ କରିବାକୁ ଖୁବ୍ ଦୃଢ଼ ବକ୍ତବ୍ୟ ରଖିଲେ । ରାଓସାହେବ ନିଜ ପାଖରେ ସେନାପତି ପଦ ରଖିଲେ, ରାଣୀଙ୍କୁ ପ୍ରଦାନ କଲେ ନାହିଁ । ରାଣୀଙ୍କ ପାଖରେ କେବଳ ଅଳ୍ପ କେତେକ ଆଫଗାନୀ ଅସ୍ଥାୟୀ ସୈନିକଙ୍କ ଅତିରିକ୍ତ କେହି ଖାସ୍ ସୈନ୍ୟ ନ ଥିଲେ । ସେତିକିବେଳେ ରାଓସାହେବ ଅଢ଼େଇଶହ ଅଶ୍ୱାରୋହୀ ସୈନିକ ତାଙ୍କୁ ଦେଲେ ଏବଂ କାଲ୍‌ପୀର ଯମୁନାନଦୀ ଆଡ଼ର ଦାୟିତ୍ୱ ସଂଭାଳିବାକୁ କହିଲେ । ରାଓସାହେବଙ୍କ ଅନିଚ୍ଛାସତ୍ତ୍ୱେ ସେ ନିଜ ସୈନ୍ୟମାନଙ୍କୁ ପ୍ରତିଦିନ ସମରାଭ୍ୟାସ କରାଇଲେ । ରାଣୀ ପୁରୁଷ ପୋଷାକ ପିନ୍ଧି, ଘୋଡ଼ାରେ ସବାର ହୋଇ ସୈନିକମାନଙ୍କ ମଧ୍ୟରେ ଏଠିସେଠି ବୁଲି ସେମାନଙ୍କ ଭଲମନ୍ଦ ବୁଝୁଥିଲେ । ସେମାନଙ୍କ ମଧ୍ୟରେ ଉତ୍ସାହ, ଉତ୍ତେଜନାକୁ ଅନୁପ୍ରେରିତ କରୁଥିଲେ । ପରିଣାମସ୍ୱରୂପ ସୈନିକମାନଙ୍କ ମନରେ ତାଙ୍କ ପ୍ରତି ଆଦର, ବିଶ୍ୱାସ ଏବଂ ଅତୁଟ ଶ୍ରଦ୍ଧା ଜାଗରିତ ହେଲା । ନିଜ ଦାୟିତ୍ୱକୁ ପୂର୍ଣ୍ଣ ନିଷ୍ଠା ସହକାରେ ତୁଲାଇବା ପାଇଁ ରାଣୀ ଅଣ୍ଟା ଭିଡ଼ିଲେ । ସମସ୍ତେ ତାଙ୍କପାଇଁ ଜୀବନ ଦେଇଦେବାକୁ ତତ୍ପର ଥିଲେ ।

ହ୍ୟୁରୋଜ ନିଜ ତୋପଗାଡ଼ିଗୁଡ଼ିକୁ କାଲ୍‌ପୀଯାଏ ନ ଆଣିପାରନ୍ତୁ, ସେଇଥିପାଇଁ ସେ କୋଞ୍ଚଠାରୁ କାଲ୍‌ପୀଯାଏ ରାସ୍ତାରେ ବଡ଼ ବଡ଼ ଗାତ ଖୋଳାଇଦେଲେ । କାଲ୍‌ପୀର ପାହାଡ଼ମାନଙ୍କରେ ସ୍ଥାନେ ସ୍ଥାନେ ଗାତଖୋଳି ରାଣୀ ସୁରକ୍ଷା ଦୃଷ୍ଟିରୁ ବ୍ୟୂହ ରଚନା କଲେ ।

ହ୍ୟୁରୋଜ ସବୁଥର ପରି କାଲ୍‌ପୀର ଦୁର୍ବଳ ଦିଗଟିକୁ ଖୋଜି ନେଇଥିଲେ । ୧୫ ମଇ ୧୮୫୮ ଦିନ ସେ କାଲ୍‌ପୀରୁ ଛଅ ମାଇଲ୍ ଦୂରରେ ଥିବା ଗଲାବତୀ ଗାଁରେ ପହଞ୍ଚିଗଲେ । ସେଠାରେ ସେ ନିଜର ଶିବିର ପକାଇଲେ । କାଲ୍‌ପୀ ସହରର ଦକ୍ଷିଣ ଦିଗରେ ଯମୁନା ନଦୀ ଥିଲା । ତେଣୁ ସେ ଦିଗରୁ ସେନାକୁ ଆଗକୁ ପଠାଇବା ତାଙ୍କ ପାଇଁ ସମ୍ଭବ ନ ଥିଲା । ଅନ୍ୟ ଦିଗରେ ପାହାଡ଼ିଆ ନିର୍ଜନ, ବନ୍ଧୁର ଅଞ୍ଚଳ ଯେଉଁଠି କେବଳ ଧୂଳିଭରା ପବନ ଏବଂ ଅଙ୍କାବଙ୍କା ସଂକୀର୍ଣ୍ଣ ରାସ୍ତା ଥିଲା । କାଲ୍‌ପୀ ସହରକୁ ଜାଣି ପ୍ରକୃତି ହିଁ ଏକପ୍ରକାର ନିଜର ସୁରକ୍ଷା କବଚ ପିନ୍ଧାଇ ଦେଇଥିଲା । ଆର ଦିଗରେ ଉଞ୍ଚା ଉଞ୍ଚା ଚଟାଣରେ ବିଶାଳ ପ୍ରାନ୍ତର ଥିଲା । ସେହି ପାହାଡ଼ ଚଟାଣ ପଛଆଡ଼େ ଲୁଚି ଶତ୍ରୁଙ୍କ ଉପରେ ଆକ୍ରମଣ କରିବାର ଭଲ ଜାଗା ଥିଲା । ତେଣୁ କାଲ୍‌ପୀ ଅଧିକାର କରିବା ଇଂରେଜଙ୍କ ପାଇଁ ଅସମ୍ଭବ ଅଟେ । ପେଶବାମାନଙ୍କର ଏହି ବିଶ୍ୱାସ ଥିଲା ଏବଂ ଏହି ସମସ୍ତ କଥାକୁ ଧ୍ୟାନ ଦେଇ ହ୍ୟୁରୋଜ ଗଲାବତୀରେ ହିଁ ଶିବିର ପକାଇ ଅଟକିଥିଲେ ।

ଏହି ଖବର ମିଳିବାମାତ୍ରେ ଇଂରେଜ ସିଧା ରାସ୍ତାରେ କାଲ୍ପୀ ଆସିବେ, ଏହି ବିଶ୍ୱାସ ସହ ପେଶବାମାନେ ଅପେକ୍ଷା କରିବା ପରେ ଶୀଘ୍ର ଗଲାବତୀର ତଟରେ ଆକ୍ରମଣ କରିଦେଲେ । ପେଶବାମାନେ ଇଂରେଜ ସୈନ୍ୟବାହିନୀର ବହୁ ଲୋକଙ୍କୁ ମାରି ପକାଇଲେ । ଅସଂଖ୍ୟ ଲୋକଙ୍କୁ ଆହତ କଲେ । ତଥାପି ହ୍ୟୁରୋଜଙ୍କର ଅଧିକ କ୍ଷତି ହୋଇ ନ ଥିଲା । କାରଣ ସେ ନିଜର ସେନାକୁ ବେଶ୍ ପ୍ରସାରିତ କରି ରଖିଥିଲେ । ଏତିକିମାତ୍ର

ବିଜୟରେ ଆତ୍ମହରା ହୋଇପଡ଼ିଥିବା ପେଶବାମାନଙ୍କ ସମର୍ଥନରେ ଗୋଆଲିଅର ପଲଟଣର ସିପାହିମାନେ ଇଂରେଜ ସିପାହିଙ୍କୁ ଉପହାସ ଏବଂ ଥଟ୍ଟା କରି କହିଲେ– ''ଝାନ୍‌ସୀ ତ ଲୁଟ୍ କଲ, ଏବେ କ'ଣ କାଲ୍‌ପୀ ଲୁଟିବାକୁ ଆସିଛ ? କିନ୍ତୁ ଆମେ ଆପଣମାନଙ୍କର ଏ ଲକ୍ଷ୍ୟ କେବେହେଲେ ପୂରଣ ହେବାକୁ ଦେବୁ ନାହିଁ । ଆଜି ଆମେ ଆପଣଙ୍କୁ ପ୍ରଥମ ଆଘାତ ଦେଇଛୁ । ଏବେ ଗୋଟିଏ ପରେ ଗୋଟିଏ ପରାଜୟ ନିମନ୍ତେ ପ୍ରସ୍ତୁତ ହୋଇଯାଅ, କିନ୍ତୁ ଏ ପ୍ରକାରର ପରାଜୟ କିମ୍ବା ଉପହାସ ଇଂରେଜ ସୈନ୍ୟଙ୍କ ଉପରେ ଆଦୌ ପ୍ରଭାବ ପକାଇ ନ ଥିଲା ।

୨୨ ମଇରେ ପେଶବାଙ୍କ ଫଉଜ ହ୍ୟୁରୋଜଙ୍କ ଫଉଜଙ୍କ ଉପରେ ପୂର୍ବାହ୍ନ ୧୦ଟା ବାଜିବା ପରେ ଆକ୍ରମଣ କରିଦେଲେ । ଇଂରେଜ ଫଉଜ ମଇ ମାସର ପ୍ରଚଣ୍ଡ ରୌଦ୍ର, ଉତ୍ତାପ, ପାଣିର ଅଭାବରୁ ପୂରାପୂରି ଅସୁବିଧା ଭୋଗୁଥିଲେ । ଇଂରେଜ ଅଧିକାରୀ, ସ୍ୱୟଂ ହ୍ୟୁରୋଜ ମଧ୍ୟ ବାରମ୍ବାର ବେମାର ପଡ଼ି ଯାଉଥିଲେ । ଏହାର ଲାଭ ଉଠାଇ ଖରା ଫିଟିଲା ପରେ ଯୁଦ୍ଧର ଆରମ୍ଭ କରାଯାଉଥିଲା । ପେଶବାମାନେ ଦିନ ଦିପହରରେ ଆକ୍ରମଣ କରିବାର ଯୋଜନା ତିଆରି କଲେ । ବଡ଼ ଉତ୍ସାହ ଏବଂ ଆଶା ନେଇ ଫେରିଆସୁଥିବା ପେଶବାଙ୍କ ସୈନ୍ୟବାହିନୀ ଉପରେ ଇଂରେଜମାନେ ଧନୁର୍ବାଣରୁ ତୀର ଚଳାଇବା ଆରମ୍ଭ କରିଦେଲେ । ସେତିକିବେଳେ ତୋପ ଓ ବନ୍ଧୁକରୁ ଗୁଳି ବର୍ଷଣ କରି ଭୀଷଣ ଆକ୍ରମଣ ମଧ୍ୟ କଲେ । କାଲ୍‌ପୀର ସୈନ୍ୟମାନେ ବଡ଼ କଷ୍ଟରେ ନିଜକୁ ନିଜେ ବଞ୍ଚାଇବାର ପ୍ରୟାସ କଲେ । କିନ୍ତୁ ଇଂରେଜଙ୍କ ଆକ୍ରମଣ ଆଗରେ ସେମାନଙ୍କର ତିଷ୍ଠିରହିବା କଷ୍ଟକର ହୋଇଉଠିଲା । ସେମାନଙ୍କର ଦୁର୍ଦ୍ଦଶା ଦେଖି ହ୍ୟୁରୋଜ ନିଜାମୀ ପଲଟଣକୁ ଅଗ୍ରସର କରାଇ ପେଶବାମାନଙ୍କର ସେନାକୁ ପୂରାପୂରି ଧ୍ୱଂସ କରିଦେଲେ ।

ଆରମ୍ଭରୁ ଛାମୁଆ ବାହିନୀର ଏପରି ଦୁର୍ଦ୍ଦଶା ଦେଖି କୋଞ୍ଚର ପେଶବାମାନଙ୍କର ଶିବିରରେ ନିରାଶା ଛାଇଗଲା । ରାଓସାହେବ, ନବାବ ଅଲୀ ବାହାଦୁର କାଲ୍‌ପୀ ଫେରିଯିବାକୁ ବିଚାର କଲେ । ସେତିକିବେଳେ ରାଣୀ ଲକ୍ଷ୍ମୀବାଈ ଆଗକୁ ବାହାରିପଡ଼ିଲେ । ପେଶବାମାନଙ୍କଠାରୁ ମିଳିଥିବା କେବଳ ଅଢ଼େଇଶହ ଘୋଡ଼ସବାରଙ୍କୁ ସାଥିରେ ନେଇ ସେ ଗୋଟିଏପଟରୁ ଇଂରେଜ ଫଉଜଙ୍କ ଉପରେ ଝାମ୍ପି ପଡ଼ିଲେ । କାଲ୍‌ପୀର ସେନା ପଛଘୁଞ୍ଚା ଦେଉଥିବାର ଦେଖୁଥିବାବେଳେ ଅକସ୍ମାତ୍ ରାଣୀଙ୍କର ଏପରି ଆକ୍ରମଣ ଦେଖି ଇଂରେଜ ସେନା ସ୍ତମ୍ଭୀଭୂତ ହୋଇଗଲେ । ସୈନ୍ୟବାହିନୀ ଅଳ୍ପ ପଛକୁ ହଟିଆସିଲେ । ରାଣୀ ଇଂରେଜ ଫଉଜଙ୍କର ଅସୁବିଧା ବଢ଼ାଇଦେଲେ । ସେମାନଙ୍କ ଉପରେ ତୀବ୍ର ପ୍ରହାର କରିବା ଆରମ୍ଭ କରିଦେଲେ । ଇଂରେଜଙ୍କ ତୋପ ମଧ୍ୟ କିଛି ସମୟ ନିମନ୍ତେ ଶାନ୍ତ ହୋଇଗଲା । ରାଣୀ ନିଜର ସୈନ୍ୟଙ୍କୁ ଇଂରେଜବାହିନୀର ଖୁବ୍ ଭିତରକୁ ନେଇଗଲେ । ରାଣୀଙ୍କର ଏହି ଉତ୍ସାହ, ତାଙ୍କର ବୀରତ୍ୱ ଏବଂ ତାଙ୍କ ଦ୍ୱାରା ଶତ୍ରୁ ସୈନ୍ୟଙ୍କର ଦୁର୍ଦ୍ଦଶା ଦେଖି ପଛଘୁଞ୍ଚା ଦେଉଥିବା କାଲ୍‌ପୀ ସେନା ପୁନଶ୍ଚ ରଣଭୂମି ଆଡ଼କୁ ଧାଇଁଲେ । ରାଣୀଙ୍କ

ସୈନ୍ୟଙ୍କ ସହିତ ସେମାନେ ମଧ୍ୟ ଇଂରେଜ ସୈନ୍ୟଙ୍କ ଉପରେ ଭୟଙ୍କର ଭାବରେ ଝାମ୍ପି ପଡ଼ିଲେ ଏବଂ ହାଣ–କାଟର ଉଗ୍ର ଲଢ଼ାଇ ଆରମ୍ଭ ହୋଇଗଲା । ରାଣୀଙ୍କ ଉତ୍ସାହ ଫଳରେ ବୀରତ୍ୱ ଅଗ୍ନିର ଯେଉଁ ଗୋଳା ଇଂରେଜ ସୈନ୍ୟଙ୍କ ଉପରକୁ ଫିଙ୍ଗାଯାଇଥିଲା, ତାହା ଇଂରେଜସୈନ୍ୟଙ୍କୁ ଭସ୍ମ କରିବାରେ ଲାଗିଲା । ଘମାଘୋଟ ଯୁଦ୍ଧର ଦୃଶ୍ୟ ଦେଖିବାକୁ ମିଳିଲା । ଇଂରେଜ ତୋପଚୀମାନେ ତୋପଛାଡ଼ି ପଳାଇଲେ । ତୋପ ନେଇ ଲଢୁଥିବା ଘୋଡ଼ସବାରମାନଙ୍କୁ ମଧ୍ୟ ମାରି ଦିଆଗଲା । ଇଂରେଜ ସୈନ୍ୟମାନେ ପ୍ରାଣ ବଞ୍ଚାଇବା ପାଇଁ ଚାରିଆଡ଼କୁ ଦୌଡ଼ିବାରେ ଲାଗିଲେ । କିଛି କ୍ଷଣ ପୂର୍ବରୁ ଯୁଦ୍ଧଭୂମିରୁ ପଳାୟନ କରୁଥିବା ପେଶବାଙ୍କ ସେନାରେ, ରାଣୀ ଲକ୍ଷ୍ମୀବାଈଙ୍କ ଯୋଗୁଁ ଉତ୍ସାହର ରଙ୍ଗ ଭରିଯିବାରେ ଲାଗିଲା ଏବଂ ପୁଣିଥରେ ବିଜୟର ଆଶା ପ୍ରଜ୍ୱଳିତ ହେବାରେ ଲାଗିଲା ।

ଯୁଦ୍ଧକୁ ଗୋଟିଏ ନୂଆ ମୋଡ଼ ମିଳିବା ଦେଖି, ହ୍ୟୁରୋଜ ନିଜର କଳ୍ପନା–ବୁଦ୍ଧିରେ ନିଜ ପାଖରେ ଥିବା ଓଟ–ପଲଟଣକୁ ଆଗକୁ ବଢ଼ାଇଦେଲେ । ସେହି ପଲଟଣ ଆଗରେ ଥିଲେ ସ୍ୱୟଂ ହ୍ୟୁରୋଜ । ଠିକଣା ବେଳରେ ଓଟ ପଲଟଣକୁ ଆଗକୁ ଦେଇ ହ୍ୟୁରୋଜ 'ଉତ୍କୃଷ୍ଟ ସେନାପତି ହେବାର ଶ୍ରେଷ୍ଠତା ପ୍ରମାଣ କଲେ । କାଲ୍‌ପୀ ସୈନ୍ୟଙ୍କ ଉପରେ, ଓଟ ଉପରୁ ବାଣବର୍ଷା ଆରମ୍ଭ ହୋଇଗଲା । ଲାଗୁଥିଲା ସତେକି ତୀରସବୁ ଆକାଶରୁ ହିଁ ବର୍ଷା ହେଉଛି । ଓଟ ପିଠିରେ ବସିଥିବା ସୈନିକମାନଙ୍କ ସହିତ ନା ତରବାରିରେ ଲଢ଼ାଯାଇପାରିବ ନା ଭୂମି ଉପରେ ରହି ଲଢ଼ିହେବ । ତୋପଦ୍ୱାରା ଆକ୍ରମଣ କରାଯାଇପାରିଥାନ୍ତା । ଏପରି କଲାବେଳେ ତୋପର ଗୋଳା ସେମାନଙ୍କର ନିଜ ସୈନିକମାନଙ୍କ ଉପରେ ହିଁ ପଡୁଥିଲା । ଯେଉଁମାନଙ୍କ ପାଖରେ ବନ୍ଧୁକ ଥିଲା ସେମାନଙ୍କ ପାଇଁ ମଧ୍ୟ ଓଟ ଉପରେ ବସିଥିବା ସୈନିକମାନଙ୍କୁ ସିଧା ଲକ୍ଷ୍ୟ କରି ମାରିବା କଷ୍ଟକର ଥିଲା । ପେଶବାଙ୍କ ସୈନ୍ୟବାହିନୀରେ ପୁନରାୟ ଅସ୍ଥିରତା, ଧାଁ–ଦଉଡ଼ ଆରମ୍ଭ ହୋଇଗଲା । ଅଫିମ ନିଶାରୁ ଆରମ୍ଭ ହୋଇଥିବା ଉତ୍ସାହରେ ସେତେବେଳେ ଲଢ଼ିଥିବା ଯୁଦ୍ଧ ପୁଣି ଥରେ ଓଟ ପିଠିରୁ କରାଯାଉଥିବା ବାଣ–ବର୍ଷା ଯୋଗୁଁ ଦୁର୍ବଳ ହୋଇଆସିଲା । ଚାରିଆଡ଼େ ସମସ୍ତେ ଏଣେତେଣେ ଧାଇଁବାକୁ ଲାଗିଲେ । ଓଟ ଉପରେ ବସିଥିବା ସୈନିକଙ୍କ ସହିତ ଲଢ଼ିବା ବଦଳରେ ଓଟମାନଙ୍କର ଗୋଡ଼କୁ ଲକ୍ଷ୍ୟ କରି ଗୁଳି ମାରି ତାଙ୍କୁ ଆହତ କରିବାକୁ ଓ ସେମାନଙ୍କୁ ତଳେ ବସିଯିବାକୁ ବାଧ୍ୟ କରିବାକୁ କହି ଲକ୍ଷ୍ମୀବାଈ ପଳାୟନ କରୁଥିବା ସୈନ୍ୟମାନଙ୍କୁ ଅଟକାଇ ରଖିବାକୁ ପ୍ରାଣମୂର୍ଚ୍ଛା ଚେଷ୍ଟା କଲେ । କିନ୍ତୁ ଏବେ କେହିହେଲେ ତାଙ୍କ କଥା ଶୁଣିବା ସ୍ଥିତିରେ ନ ଥିଲେ । ସୈନ୍ୟମାନେ ନିଜର ସାହସ ହରାଇ ସାରିଥିଲେ । ରାଣୀଙ୍କ ପ୍ରଯତ୍ନ କୌଣସି ଫଳ ଦେଲା ନାହିଁ । ନିଜର କ୍ଷୁଦ୍ର ସେନାଦଳ, ଅନ୍ୟ ସୈନିକମାନଙ୍କର ଅନୁଶାସନହୀନତା, ଦିଶାହୀନ ନେତୃତ୍ୱ, ସେନାର ଅବ୍ୟବସ୍ଥା ଏବଂ ଦରକାରବେଳେ ସାହସ ହରେଇ ଦେଉଥିବା ସୈନ୍ୟଙ୍କ

ଯୋଗୁଁ ହତାଶ ହୋଇ ପଡ଼ିଥିବା ରାଣୀ ଭାରାକ୍ରାନ୍ତ ହୃଦୟରେ କାଲ୍‌ପୀ ଅଭିମୁଖେ ପ୍ରସ୍ଥାନ କଲେ । ଅନ୍ୟମାନେ ତାଙ୍କ ପୂର୍ବରୁ ହିଁ କାଲ୍‌ପୀରେ ପହଞ୍ଚି ସାରିଥିଲେ ।

ପରଦିନ ସେମାନଙ୍କ ପଛେ ପଛେ ହ୍ୟୁରୋଜ ସେଠାରେ ପହଞ୍ଚିଗଲେ । ଯାହାକୁ ଆଗରେ ପାଇଲେ, ସେହି ବିଦ୍ରୋହୀ ସିପାହିଙ୍କୁ ହତ୍ୟା କରି ଆଗକୁ ଅଗ୍ରସର ହେଲେ । ତାଙ୍କର ଆସିବା ଖବର ପାଇବାମାତ୍ରେ ଲୋକମାନେ ନିଜ ପ୍ରାଣ ବଞ୍ଚାଇବା ଲାଗି ଆଖପାଖର ପାହାଡ଼ୀ ଇଲାକା ଓ ଯମୁନା ନଦୀ ତୀରରେ ଥିବା ଜଙ୍ଗଲ ଆଡ଼କୁ ପଳାଇଗଲେ । କାଲ୍‌ପୀ ସହରକୁ ଦଖଲ କରିବାର ସଂକଳ୍ପ କରି ହ୍ୟୁରୋଜ ପବନ ପରି ଆଗକୁ ଚାଲିଲେ । ମଝି ମଝିରେ ଛୋଟବଡ଼ ଲଢ଼ାଇ ମଧ୍ୟ ହେଉଥିଲା । କାଲ୍‌ପୀର ଦୁର୍ଗରେ ବହୁ ପରିମାଣରେ ଗୋଳାବାରୁଦ ଥିଲା, ସୈନ୍ୟ ମଧ୍ୟ ଥିଲେ । ସହରର ଗଲାବତୀ ଏବଂ ଅନ୍ୟ ସ୍ଥାନମାନଙ୍କରୁ ପଳାଇ ଆସିଥିବା ସୈନିକମାନେ ମଧ୍ୟ ସେଠାରେ ଥିଲେ ।

ହ୍ୟୁରୋଜ ସହରର ସୀମାରେ ପହଞ୍ଚିଲାମାତ୍ରେ ହିଁ କିଲ୍ଲା ଉପରୁ ତାଙ୍କ ସୈନ୍ୟମାନଙ୍କ ଉପରେ ତୋପର ଧଡ଼ାଧଡ଼ ଗୋଳାବର୍ଷଣ ଆରମ୍ଭ ହୋଇଗଲା ।

ଏହାର ଜବାବରେ ଇଂରେଜମାନଙ୍କର ବିରାଟ ବିରାଟ ତୋପ କିଲ୍ଲା ଓ ସହର ଉପରେ ଗୋଳା ବର୍ଷିବାକୁ ଲାଗିଲେ । ଇତିମଧ୍ୟରେ ସେନା ସହରରେ ପ୍ରବେଶ କରି ସାରିଥିଲେ । ପ୍ରତ୍ୟେକ ପ୍ରବେଶ ପଥରେ ସେମାନଙ୍କର ଜୋର୍‌ଦାର ବିରୋଧ ହେବାକୁ ଲାଗିଲା । ସିଲ୍‌ବେଷ୍ଟର କହନ୍ତି ଯେ କାଲ୍‌ପୀର ସ୍ତ୍ରୀଲୋକମାନେ ମଧ୍ୟ ଘର ଭିତରେ ଥାଇ ଇଂରେଜ ସେନା ଉପରେ ଗୁଳିବର୍ଷଣ କରୁଥିଲେ । ତରବାରି ସହିତ ତରବାରିର ମୁକାବିଲା ହେବାରେ ଲାଗିଲା । କିଛି ସମୟ ପାଇଁ ଇଂରେଜ ଫଉଜ ପଛକୁ ହଟିବାକୁ ଆରମ୍ଭ କଲା । ଏହି ସୁଯୋଗରେ ରାଓସାହେବ ପେଶବା, ନବାବ ଅଲୀ ବାହାଦୁର ଓ ରାଣୀ ଲକ୍ଷ୍ମୀବାଈ ଯୁଦ୍ଧର ଗତିବିଧି ଦେଖି ସହରର ଆରପଟରେ ସହରରୁ ବାହାରି ଚାଲିଗଲେ । ସେମାନଙ୍କ ପଛେ ପଛେ, ହଜାର ହଜାର ସିପାହି ମଧ୍ୟ ବାହାରିଗଲେ । ପେଶବାଙ୍କ ସୈନ୍ୟ ପୁଣିଥରେ ସକ୍ରିୟ ହୋଇଉଠିଲେ ।

ସେତିକିବେଳେ ହ୍ୟୁରୋଜ ସହର ଏବଂ କିଲ୍ଲାକୁ ନିଜ ଅଧିକାରକୁ ନେଇଗଲେ । କାଲ୍‌ପୀରେ ପେଶବାଙ୍କ ସୈନ୍ୟ ମଧ୍ୟରେ ଏବେ ଲଢୁଆ ସିପାହିଙ୍କ ବଦଳରେ ଲୁଟେରା, ଡକାୟତଙ୍କ ଦଳ ହିଁ ବାକି ରହି ଯାଇଥିଲେ । ସେମାନେ ସହରର ଧନୀଲୋକଙ୍କର ପ୍ରାସାଦ ଲୁଟ୍ କରିବା ଆରମ୍ଭ କରିଦେଲେ । ଚିନିବସ୍ତାସବୁ ଆଣି ରାସ୍ତାରେ ଫିଙ୍ଗିଦେଲେ । କାରଣ ଚିନିବସ୍ତା ବୋହିନେବା ଅପେକ୍ଷା ଧନସମ୍ପତ୍ତି ଏବଂ ଅନ୍ୟ ବହୁମୂଲ୍ୟ ବସ୍ତୁ ନେଇଯିବା ଅଧିକ ଲାଭଜନକ ଅଟେ । ଏହା ଭାବି ସେମାନେ ଚିନିବସ୍ତାସବୁ ରାସ୍ତାରେ ହିଁ ଛାଡ଼ିଦେଇଗଲେ ।

ଅଳ୍ପ ସମୟ ପରେ ଇଂରେଜମାନେ କାଲ୍‌ପୀ ଦୁର୍ଗ ଉପରେ ୟୁନିୟନ୍ ଜ୍ୟାକ୍ ଉଡ଼ାଇଦେଲେ । ଝାନ୍‌ସୀ ଦୁର୍ଗରୁ ଇଂରେଜମାନଙ୍କୁ ରାଜମହଲର ବିପୁଳ ସମ୍ପତ୍ତି, ବହୁମୂଲ୍ୟ

ହୀରା–ନୀଳା, ଅତ୍ୟନ୍ତ ସୁନ୍ଦର ଏବଂ ମୂଲ୍ୟବାନ୍ କଳାକୃତିର ଭଣ୍ଡାର ମିଳିଥିଲା । ଏବେ କାଲ୍‌ପୀ ଦୁର୍ଗରୁ ସେମାନଙ୍କୁ ବିପୁଳ ପରିମାଣରେ ଯୁଦ୍ଧ ସରଞ୍ଜାମ ମିଳିଲା । ଅନେକ ତୋପ, ଗୋଳାବାରୁଦ, ଅଗଣିତ ଅସ୍ତ୍ରଶସ୍ତ୍ର, ବିରାଟ ଧନଭଣ୍ଡାର, ସବୁ ମିଶି ଅଢ଼େଇ ତିନିଲକ୍ଷ ଟଙ୍କା ମୂଲ୍ୟର ଜିନିଷପତ୍ର ଇଂରେଜମାନଙ୍କର ହସ୍ତଗତ ହୋଇଥିଲା । ସିଲବେଷ୍ଟର ଲେଖିଛନ୍ତି ଯେ "କାଲ୍‌ପୀ ଦୁର୍ଗରେ ଅସ୍ତ୍ରଶସ୍ତ୍ରର ବିଶାଳ ଭଣ୍ଡାର ଥିଲା । ବଡ଼ ବଡ଼ ମହାକାୟ ତୋପରୁ ଆରମ୍ଭ କରି ଭାଲ, ତେଣ୍ଟା ଏବଂ ଧନୁଶର ପର୍ଯ୍ୟନ୍ତ ମହଜୁଦ୍ ଥିଲା, ଏତେ ଅସ୍ତ୍ରଶସ୍ତ୍ର ଏପର୍ଯ୍ୟନ୍ତ କୌଣସି କିଲ୍ଲାରୁ ମଧ ମିଳି ନ ଥିଲା, ଯେତିକି ଏଠାରେ ମିଳିଥିଲା । କାଲ୍‌ପୀରେ ଅସ୍ତ୍ରଶସ୍ତ୍ରର ଏତେବଡ଼ ଭଣ୍ଡାର ଥିବା ସତ୍ତ୍ୱେ ସେଠିକାର ସୈନିକମାନଙ୍କ ଭିତରେ ଯୁଦ୍ଧର ଉତ୍ସାହ ଆଦୌ ନ ଥିଲା । ଏହି କାରଣରୁ ଆମେ ଖୁବ୍ ସହଜରେ କାଲ୍‌ପୀ ଦଖଲ କରିପାରିଲୁ ।"

ତିରିଶହଜାର ଲୋକ ବସବାସ କରୁଥିବା କାଲ୍‌ପୀ ସହର ପ୍ରାୟ ଜନଶୂନ୍ୟ ହୋଇଗଲା । ରାସ୍ତାରେ ଚିନି ବସ୍ତା ସବୁ ପଡ଼ି ରହିଥିଲା । ସ୍ଥାନେ ସ୍ଥାନେ ଚିନି ବୁଣି ହୋଇ ଯାଇଥିଲା । ଲୁଟେରାମାନଙ୍କ ଦ୍ୱାରା ପିଙ୍ଗାଯାଇଥିବା ବହୁ ଦ୍ରବ୍ୟ ରାସ୍ତାରେ ବିଛାଡ଼ି ହୋଇ ପଡ଼ିଥିଲା । ରାସ୍ତାସାରା ଏଠିସେଠି ପଡ଼ି ରହିଥିବା ଶବକୁ ଖାଇବାକୁ ବିଲୁଆ କୁକୁର ଏଣେ ତେଣେ ବୁଲିବାର ଦେଖାଯାଉଥିଲା ।

ତିନିଦିନର ଲଢ଼େଇ ପରେ କାଲ୍‌ପୀ ଉପରେ ବିଜୟପ୍ରାପ୍ତ ହେଲା । ହ୍ୟୁରୋଜଙ୍କ ଉପରେ ଅର୍ପଣ କରାଯାଇଥିବା ଦାୟିତ୍ୱ ସେ ପୂରା ନିଷ୍ଠା ଓ ସଫଳତାର ସହିତ ନିର୍ବାହ କରିଥିଲେ । ରାଓସାହେବ, ତାନ୍ତିଆ ଟୋପେ, ରାଣୀ ଲକ୍ଷ୍ମୀବାଈ କେଉଁଆଡ଼େ ପଳାଇ ଯାଇଥିଲେ, ଜଣାପଡ଼ି ନ ଥିଲା । ଇଂରେଜ ସରକାରଙ୍କ ପାଇଁ ଆଉ କୌଣସି ବିପଦ ନ ଥିଲା । ଏତେ ବଡ଼ ସୈନ୍ୟବାହିନୀର ଆଉ କୌଣସି ଆବଶ୍ୟକତା ନ ଥିଲା । ହ୍ୟୁରୋଜ ନିଜ ସୈନ୍ୟମାନଙ୍କୁ ସେମାନଙ୍କର ମୂଳ ଛାଉଣୀମାନଙ୍କୁ ପ୍ରେରଣ କରିବାର ପ୍ରସ୍ତୁତିରେ ଲାଗିଗଲେ । ସେନାମାନଙ୍କର ଉତ୍ତମ ସଫଳତା ନିମନ୍ତେ ସେ ସେମାନଙ୍କୁ ପ୍ରଶଂସା କଲେ । ସେମାନଙ୍କର ପ୍ରତ୍ୟାବର୍ତ୍ତନର ଆଦେଶ ଜାରି କଲେ । ସେ ନିଜେ ଏବେ ଖୁବ୍ କ୍ଳାନ୍ତ ହୋଇପଡ଼ିଥିଲେ । ବାରମ୍ବାର ଅସୁସ୍ଥ ହୋଇପଡୁଥିଲେ । ସେ ଛୁଟି ନେଇ ପୁନା ଯାଇ ବିଶ୍ରାମ କରିବାର ଯୋଜନା ପ୍ରସ୍ତୁତ କଲେ । ଏହା ପରେ ସେ ଲଣ୍ଡନ ଫେରିଯିବାର ଥିଲା । ନିଜର ଏହି ଯୋଜନା ମୁତାବକ ସେ ଛୁଟି ପାଇଁ ନିବେଦନ କଲେ ଏବଂ ଏହା ମଞ୍ଜୁର କରାଗଲା ।

ମେ ୨୬ ତାରିଖରେ ତାଙ୍କୁ ଖବର ମିଳିଲା ଯେ ରାଓସାହେବ, ଅଲୀ ବାହାଦୁର, ତାନ୍ତିଆ ଟୋପେ, ରାଣୀ ଲକ୍ଷ୍ମୀବାଈ, ଏ ସମସ୍ତେ ଗୋଆଲିଅର ଯିବା ବାଟରେ ଗୋପାଳପୁରଯାଏ ପହଞ୍ଚି ଗଲେଣି । ଏହି ଖବରର ମହତ୍ତ୍ୱ ଅନୁଭବ କରି ହ୍ୟୁରୋଜ କମ୍ପି ଉଠିଲେ । ଏହାର ଅର୍ଥ ହେଲା ଯେ ଯୁଦ୍ଧ ଏବେ ସମାପ୍ତ ହୋଇ ନାହିଁ । ପେଶବା ଏବେ

ଗୋଆଲିଅରରେ ପହଞ୍ଚିବାକୁ ଯାଉଛନ୍ତି ଏବଂ ଗୋଆଲିଅରର ଦୁର୍ଗମ କିଲ୍ଲା ଭିତରେ ରହିବାକୁ ଯାଉଛନ୍ତି । ଏବେ ଯୁଦ୍ଧ ସେଠାରେ ଲଢ଼ିବାକୁ ହେବ । ଏହା ସହିତ ସିନ୍ଧିଆଙ୍କ ସମଗ୍ର ସେନା ପେଶବାଙ୍କ ସହିତ ରହିବା ପାଇଁ ସେମାନଙ୍କ ସହିତ ମିଶିଯିବାର ସମ୍ଭାବନାକୁ ମଧ୍ୟ ଏଡ଼ାଇ ଦେଇ ହେବ ନାହିଁ । ସେଠାରେ ଏକ ଘୋର ଯୁଦ୍ଧର ସମ୍ଭାବନା ସୃଷ୍ଟି ହୋଇଯାଇଥିଲା । ଲୁ'ର ଉତ୍ତପ୍ତ, ଶିଝେଇ ଦେଲାପରି ପବନ ଝଡ଼ପରି ପ୍ରବାହିତ ହେବାରେ ଲାଗିଥିଲା । ଏବେ ବର୍ଷାର ଆଗମନର ସଙ୍କେତ ମଧ୍ୟ ମିଳୁଥିଲା । ବର୍ଷା ଆରମ୍ଭ ହୋଇଗଲେ, ଏପର୍ଯ୍ୟନ୍ତ କ୍ଷୁଧା, ଭୀଷଣ ଗରମ, ଉତ୍ତପ୍ତ ରୌଦ୍ରରେ ହନ୍ତସନ୍ତ ଇଂରେଜ ସୈନ୍ୟଙ୍କୁ ଝଡ଼–ବର୍ଷାର ସାମନା କରିବାକୁ ହେବ । ମ୍ୟାଲେରିଆ, କଲେରା ପରି ମହାମାରୀର ମୁକାବିଲା କରିବାକୁ ପଡ଼ିପାରେ । ଏହି ଯୁଦ୍ଧ ବହୁଦିନ ପର୍ଯ୍ୟନ୍ତ ଚାଲିପାରେ ।

ଅସୁସ୍ଥତା ଯୋଗୁଁ ମଞ୍ଜୁର ହୋଇଥିବା ଛୁଟିକୁ ହ୍ୟୁରୋଜ ନିଜେ ନିଜେ ରଦ୍ଦ କରିଦେଲେ । ପୁନା ଏବଂ ପରେ ପରେ ଇଂଲଣ୍ଡ ଯିବାର ଯୋଜନା ମଧ୍ୟ ବାତିଲ କରିଦେଲେ । ବର୍ତ୍ତମାନ ସେ ଗୋଆଲିଅର ଯିବାର ପ୍ରସ୍ତୁତି ଆରମ୍ଭ କରିଦେଲେ ।

## ଶେଷ ଚେଷ୍ଟା

କାଲ୍‌ପୀ ହାତରୁ ଖସିଯିବାର ଦେଖି ରାଓସାହେବ ଓ ଅଲୀ ବାହାଦୁର କାଲ୍‌ପୀ ଛାଡ଼ିଦେବାର ନିର୍ଣ୍ଣୟ ନେଲେ । ଝାନ୍‌ସୀରୁ କାଲ୍‌ପୀ ପହଞ୍ଚିଲା ପରେ ରାଣୀ ଲକ୍ଷ୍ମୀବାଈଙ୍କର ଭାଗ୍ୟ ରାଓସାହେବଙ୍କ ସହିତ ଯୋଡ଼ି ହୋଇଯାଇଥିଲା । ସେଥିଯୋଗୁଁ ରାଓସାହେବଙ୍କ ସହିତ ଯିବା ବ୍ୟତୀତ ରାଣୀଙ୍କ ପାଖରେ ଅନ୍ୟ କିଛି ବିକଳ୍ପ ବାକି ନ ଥିଲା । କିନ୍ତୁ ଯିବେ ତ କୁଆଡ଼େ ଯିବେ । ସାରା ବୁନ୍ଦେଲଖଣ୍ଡ ଇଂରେଜଙ୍କର ଦଖଲରେ ଥିଲା । କେବଳ ଦକ୍ଷିଣ ଦିଗକୁ ଯିବାର ରାସ୍ତା ଖୋଲା ଥିଲା । କାଲ୍‌ପୀରୁ ପ୍ରସ୍ଥାନ କରିବା ପରେ ପ୍ରଥମେ ସେମାନେ ଶେରଗଡ଼ ଗଲେ । ସେଠାରୁ ତାନ୍ତିଆ ଟୋପେଙ୍କ ପିତାମାତାଙ୍କ ଘର ଚରଖାରୀ ଗଲେ ଏବଂ ତା' ପରେ ସମସ୍ତେ ଗୋପାଳପୁରରେ ପହଞ୍ଚିଲେ । ଚରଖାରୀରେ ତାନ୍ତିଆ ଟୋପେ ମଧ୍ୟ ତାଙ୍କ ଦଳରେ ମିଶିଲେ ।

ଆଗାମି ଯୋଜନା କ'ଣ ହେବ ? ଏହା ଏକ ବଡ଼ ପ୍ରଶ୍ନ ଥିଲା । ଏହି ବିଷୟ ଉପରେ ସବିସ୍ତାର ଖୁବ୍ ବିଚାର ଆଲୋଚନା କରାଗଲା । ଅନେକ ବିଚାର ଏବଂ ପ୍ରସ୍ତାବ ପ୍ରସ୍ତୁତ କରାଗଲା । ଶେଷକୁ ନିଷ୍ପତ୍ତି ନିଆଗଲା ଯେ ଗୋଆଲିଅର ଯିବା ଠିକ୍ ହେବ । ଗୋଆଲିଅର ଯିବାର ନିର୍ଣ୍ଣୟ ନେବାର ଅର୍ଥ ହେଲା, ଏପର୍ଯ୍ୟନ୍ତ ସର୍ବତ୍ର ବିଜୟ ହାସଲ କରିଥିବା ଇଂରେଜମାନଙ୍କ ଉପରେ ଲଗାମ୍ ଲଗାଇବା । ଏହା ବୁଡ଼ି ଯାଉଥିବା ଲୋକର ନିଜ ଜୀବନ ବଞ୍ଚାଇବାପାଇଁ ଏହା ଶେଷ ବାଜି ପକାଇବା ପରି ଥିଲା । ଯଦି ଏହି ପ୍ରୟାସରେ ସଫଳତା ମିଳିଯାଇଥାନ୍ତା ତା'ହେଲେ ହୁଏତ ସଂପୂର୍ଣ୍ଣ ଇତିହାସକୁ ଏକ ନୂଆ ଦିଗ ମିଳିଯାଇଥାନ୍ତା ।

ଏହି ନିଷ୍ପତ୍ତିକୁ ହ୍ୟୁରୋଜ ଉପରେ ହୋଇଥିବା ପରିଣାମ ପରିପ୍ରେକ୍ଷୀରେ ଦେଖାଯାଏ ତ ଏହାର ମହତ୍ତ୍ୱ ଦୃଷ୍ଟିଗୋଚର ହୁଏ । ଏହି ନିର୍ଣ୍ଣୟ କିଏ ନେଇଥିଲେ ସେ ବିଷୟରେ ଗୋଟିଏ ନିର୍ଦ୍ଦିଷ୍ଟ ମତାମତ ନ ଥିଲା । ଏହି ନିର୍ଣ୍ଣୟ ରାଓସାହେବଙ୍କର ଥିଲା ? ତାନ୍ତିଆ ଟୋପେଙ୍କର ଥିଲା ? କିମ୍ବା ପୁଣି ରାଣୀ ଲକ୍ଷ୍ମୀବାଈଙ୍କର ଥିଲା ? ଅଧିକାଂଶ ଇଂରେଜ ଏବଂ ଭାରତୀୟ ଐତିହାସିକ ସ୍ୱୀକାର କରନ୍ତି ଯେ ଏହି ନିର୍ଣ୍ଣୟ ନିଶ୍ଚିତଭାବରେ ରାଣୀ ଲକ୍ଷ୍ମୀବାଈ ଗ୍ରହଣ କରିଥିବେ । ଗୋଆଲିଅରର ପାହାଡ଼ୀ କିଲ୍ଲା ମଜବୁତ୍ ତଥା ବିଶାଳ ଥିଲା । ସେଥିରେ ପ୍ରଚୁର ପରିମାଣରେ ଅସ୍ତ୍ରଶସ୍ତ୍ରର ଭଣ୍ଡାର ଥିଲା ଏବଂ ସବୁଠୁଁ ବଡ଼ କଥା ହେଲା ସିନ୍ଧିଆଙ୍କର ସାରା ଫଉଜ ସେମାନଙ୍କୁ ସମର୍ଥନ କରିବାର ସମ୍ଭାବନା ଥିଲା । ସେଥିପାଇଁ ଗୋଆଲିଅରରେ ଆଶ୍ରୟ ନେବାର ଅର୍ଥ ଇଂରେଜଙ୍କ ପାଇଁ ଜବରଦସ୍ତ ଆହ୍ୱାନ ସୃଷ୍ଟି କରିବା ପରି ଥିଲା । ଏହି ନିର୍ଣ୍ଣୟ ଫଳରେ ପେଶବାଙ୍କ ଫଉଜରେ ଆଶା ଏବଂ ସାହସର ଜ୍ୟୋତି ପୁନର୍ବାର ପ୍ରଜ୍ୱଳିତ ହୋଇ ଉଠିଲା । ଥରେ ନିଷ୍ପତ୍ତି ନେଲା ପରେ ସମୟ ନଷ୍ଟ ନ କରି ସମସ୍ତେ ଗୋଆଲିଅର ଦିଗରେ ପ୍ରସ୍ଥାନ କଲେ । ୨୮ ମଇ ଦିନ ସିନ୍ଧୁ ନଦୀ ପାର ହୋଇ ସେମାନେ ସିନ୍ଧିଆଙ୍କ ସୀମା ଭିତରେ ଥିବା ଅମୀନଗାଓଁରେ ପହଞ୍ଚିଲେ ।

ରାଓସାହେବ ପେଶବା, ସେନାପତି ତାନ୍ତିଆ ଟୋପେ, ଝାନ୍ସୀର ରାଣୀ ଲକ୍ଷ୍ମୀବାଈ, ବାନ୍ଦାର ନବାବ ଅଲୀ ବାହାଦୁରଙ୍କ ପରି ପ୍ରତିଷ୍ଠିତ ବ୍ୟକ୍ତି, ସୈନ୍ୟଦଳ ତୋପ, ଗୋଳାବାରୁଦ, ବିଶାଳ ସେନାବାହିନୀ ସହିତ ଗୋଆଲିଅର ଆଡ଼େ ଆସୁଛନ୍ତି । ଏହି ଖବର ଜିଆଜିରାଓ ସିନ୍ଧିଆଙ୍କ ପାଖରେ ପହଞ୍ଚିଥିଲା । ଗୋଆଲିଅର ଉତ୍ତର ଏବଂ ଦକ୍ଷିଣ ହିନ୍ଦୁସ୍ଥାନର ମଧ୍ୟବର୍ତ୍ତୀ ସ୍ଥାନରେ ମରାଠୀ ସତ୍ତାର ପ୍ରମୁଖ କେନ୍ଦ୍ରସ୍ଥଳ ଥିଲା । ମହାଦଜୀ ସିନ୍ଧିଆଙ୍କ ସମୟରେ ଏହା ଏକ ଶକ୍ତିଶାଳୀ ରାଜସତ୍ତା ଥିଲା । ୧୮୫୩ରେ ଜିଆଜୀରାଓ ସିନ୍ଧିଆ ଗୋଆଲିଅରର ମୁଖ୍ୟ ହେଲେ, ପରେ ମହାରାଜା ହେଲେ । ଏହା ପୂର୍ବରୁ ଅର୍ଥାତ୍ ୧୮୪୪ରେ ସିନ୍ଧିଆ ଏବଂ ଇଂରେଜମାନଙ୍କ ମଧ୍ୟରେ ସନ୍ଧି ହୋଇ ଉଭୟଙ୍କ ମଧ୍ୟରେ ମୈତ୍ରୀ ସ୍ଥାପିତ ହୋଇଥିଲା । ଜିଆଜୀରାଓ ରାଜା ହେଲାବେଳେ ତାଙ୍କର ବୟସ ୨୦ ବର୍ଷ ହୋଇଥିଲା । ବିଳାସବ୍ୟସନରେ ଜୀବନ କଟାଉଥିବା ରାଜାଙ୍କ ଦେଓ୍ୱାନ ଦିନକରରାଓ ଜଣେ ଅନୁଭବୀ, ବ୍ୟବହାର କୁଶଳ, ଚତୁର ଏବଂ ଜଣାଶୁଣା ରାଜନୀତିଜ୍ଞ ବ୍ୟକ୍ତି ଥିଲେ । ଯେତେବେଳେକି ଜିଆଜୀରାଓ ବୟସରେ ଖୁବ୍ ସାନ ଏବଂ ଅନଭିଜ୍ଞ ଥିଲେ । ପିତୃପୁରୁଷଙ୍କଠାରୁ ମିଳିଥିବା ସୁଖ-ସୁବିଧାକୁ ଉପଭୋଗ କରିବାରେ ହିଁ ଅଧିକ ବ୍ୟସ୍ତ ରହୁଥିଲେ । ଏହି କାରଣରୁ ରାଜ୍ୟର ସମସ୍ତ ଶାସନ ବ୍ୟବସ୍ଥାକୁ ମୁଖ୍ୟତଃ ଦିନକରରାଓ ହିଁ ଦେଖାଶୁଣା କରୁଥିଲେ । ଜିୟାଜୀରାଓଙ୍କ ଉପରେ ତାଙ୍କର ସମ୍ପୂର୍ଣ୍ଣ ଆଧିପତ୍ୟ ଥିଲା । ୧୮୫୫ରେ ମେଜର ମେକଫର୍ସନଙ୍କୁ ଇଂରେଜଙ୍କର ରାଜନୀତିକ ଏଜେଣ୍ଟ ରୂପରେ ନିଯୁକ୍ତ କରାଗଲା । ୧୮୫୭ ମସିହା ମାର୍ଚ୍ଚ ମାସରେ ମେକଫର୍ସନ ଜିଆଜୀରାଓ ଏବଂ ଦିନକରରାଓଙ୍କୁ ଗଭର୍ଣ୍ଣର

ଜେନେରାଲଙ୍କ ସହ ସାକ୍ଷାତ୍ କରାଇବା ପାଇଁ କଲିକତା ନେଇଯାଇଥିଲେ । ଜିଆଜୀରାଓଙ୍କୁ ଆତିଥ୍ୟ ପ୍ରଦାନ କରିବାରେ ସେ କୌଣସି ତ୍ରୁଟି କରି ନ ଥିଲେ । ତାଙ୍କର ରାଜକୀୟ ସମ୍ମାନ ପ୍ରତି ସେ ସମ୍ପୂର୍ଣ୍ଣ ଦୃଷ୍ଟି ରଖିଥିଲେ । ଏଥିରେ ସେ ଦୁଇଜଣ ଖୁବ୍ ପ୍ରଭାବିତ ହୋଇଥିଲେ । ଗଭର୍ଣ୍ଣର ଜେନେରାଲ ତାଙ୍କର ସାକ୍ଷାତ୍ ସମୟରେ ଜିଆଜୀରାଓଙ୍କୁ ଏହି ଆଶ୍ୱାସନା ଦେଲେ କି ଗୋଆଲିଅର ରାଜ୍ୟ ସବୁବେଳେ ସିନ୍ଧିଆ ରାଜବଂଶଙ୍କ ପାଖରେ ହିଁ ରହିବ ଏବଂ ସନ୍ତାନର ଅନୁପସ୍ଥିତିରେ ଜିଆଜୀରାଓଙ୍କୁ ପୋଷ୍ୟସନ୍ତାନ ଗ୍ରହଣ କରିବାର ଅନୁମତି ମଧ୍ୟ ପ୍ରଦାନ କରାଯିବ ।

କଲିକତାରେ ଇଂରେଜଙ୍କ ତରଫରୁ ମିଳିଥିବା ଅତିଥି ସତ୍କାର, ପ୍ରତିଷ୍ଠା, ପୋଷ୍ୟପୁତ୍ର ଗ୍ରହଣ କରିବାର ଅନୁମତି, ସିନ୍ଧିଆ ବଂଶର ସତ୍ତାକୁ ଅବାଧ ରଖିବାର ଆଶ୍ୱାସନା ମିଳିବା ଯୋଗୁଁ ଜିଆଜୀରାଓଙ୍କ ମନରେ ଇଂରେଜଙ୍କ ପ୍ରତି ଶ୍ରଦ୍ଧା ଏବଂ ବିଶ୍ୱାସ ବୃଦ୍ଧି ପାଇଥିଲା । କଲିକତାରେ ସେ ଇଂରେଜଙ୍କ ଶାସନର ବୈଭବ ଦେଖିଲେ, ସାମର୍ଥ୍ୟ ଏବଂ ପ୍ରଗତିକୁ ଦେଖିଲେ । କଲିକତାରେ ସେ ବାଷ୍ପଚାଳିତ, ଲୁହା ଧାରଣାରେ ଦୌଡୁଥିବା ରେଳଗାଡ଼ି ମଧ୍ୟ ଦେଖିଲେ । ତାଙ୍କର ବିଶ୍ୱାସ ହୋଇଗଲା ଯେ ଇଂରେଜ ଶାସନ ହିଁ ଏକମାତ୍ର ବିକଳ୍ପ ଅଟେ । ଇଂରେଜ ଶାସନ ଏକପ୍ରକାରର ଉଦିତ ସୂର୍ଯ୍ୟ ଅଟେ ଏବଂ ପ୍ରକାଶଦେବାବାଲା ଅଟେ ଏବଂ ଆମର ଫାଇଦା ମଧ୍ୟ ଏଇଥିରେ ଅଛି । ସେଥିପାଇଁ ସେମାନଙ୍କ ସହିତ ମୈତ୍ରୀସଂପର୍କ ରକ୍ଷା କରିବା ଅତ୍ୟନ୍ତ ଜରୁରି ଅଟେ । ସେ ନିଜ ମନରେ ଏହି କଥାଟିକୁ ପୂରାପୂରି ସ୍ଥିର କରି ସାରିଥିଲେ । କିନ୍ତୁ ଜିଆଜୀରାଓ କଲିକତାରୁ ଫେରିଲା ପରେ ଜଣାପଡ଼ିଲା ଯେ ଇଂରେଜ ଶାସନ ବିରୋଧରେ ସେନାବାହିନୀରେ ଅସନ୍ତୋଷ ବ୍ୟାପିଯାଇଛି । ମେ ମାସରେ ତ ବିଦ୍ରୋହ ଆରମ୍ଭ ହୋଇ ବାହାଦୁର ଶାହଙ୍କୁ ସିଂହାସନରେ ବସାଇ ବାଦଶାହୀ ଶାସନ ଆରମ୍ଭ ହେବାର ଘୋଷଣା ମଧ୍ୟ କରି ଦିଆଗଲା । ଏହାର ପରେ ପରେ ହିଁ ସିଧା ପେଶୱାରଠାରୁ ଅଯୋଧ୍ୟାଯାଏ ବିଭିନ୍ନ ସ୍ଥାନରେ ଇଂରେଜଙ୍କ ବିରୋଧରେ ବିଦ୍ରୋହ ଆରମ୍ଭ ହୋଇଯାଇଥିଲା । ଏହା ଦେଖି ଜିଆଜୀରାଓଙ୍କ ମନରେ ଇଂରେଜଙ୍କ ନିମନ୍ତେ ଚିନ୍ତା ଉତ୍ପନ୍ନ ହୋଇଗଲା । ସେ ଅତିଶୀଘ୍ର ଆଗ୍ରାର ଲେଫ୍ଟନାଣ୍ଟ ଗଭର୍ଣ୍ଣରଙ୍କ ସୁରକ୍ଷା ନିମନ୍ତେ ନିଜର ଏକ ସୈନ୍ୟଦଳକୁ ଆଗ୍ରା ମଧ୍ୟ ପଠାଇଦେଲେ । ଅନ୍ୟ ଏକ ସୈନ୍ୟଦଳଙ୍କୁ ଇଟାୱାର ଇଂରେଜ ସୈନ୍ୟଶିବିରକୁ ମଧ୍ୟ ପଠାଇଦେଲେ । ତାଙ୍କର ଭୟ ହେଲା ଯେ କାଳେ ଗୋଆଲିଅରରେ ସୈନ୍ୟମାନେ ମଧ୍ୟ ବିଦ୍ରୋହ କରିଦେବେ । ଗୋଆଲିଅରରେ ରହୁଥିବା ଇଂରେଜମାନଙ୍କର ସୁରକ୍ଷା ଦାୟିତ୍ୱ ଜିୟାଜୀରାଓ ନିଜେ ଗ୍ରହଣ କଲେ । କିନ୍ତୁ ୧୮୫୭ ଜୁନ୍ ୧୪ ତାରିଖରେ ଗୋଆଲିଅରର ସୈନ୍ୟମାନେ ଖୋଲାଖୋଲି ଇଂରେଜମାନଙ୍କ ବିରୋଧରେ କାର୍ଯ୍ୟପନ୍ଥା ଆରମ୍ଭ କରିଦେଲେ । ସେମାନେ ଇଂରେଜଙ୍କ ଛାଉଣୀରେ ନିଆଁ ଲଗେଇଦେଲେ । ଛାଉଣୀର ଅଧିକାଂଶ ଇଂରେଜ ଅଧିକାରୀଙ୍କୁ ମାରି ପକାଇଲେ । ଏପରି ପରିସ୍ଥିତିରେ ସୁରକ୍ଷା ଦୃଷ୍ଟିରୁ ସମସ୍ତ ୟୁରୋପୀୟ ମହିଳା ଏବଂ ଶିଶୁଙ୍କୁ ଆଗ୍ରା ପଠାଇବାର

ସୁବନ୍ଦୋବସ୍ତ କରିବାର ଦାୟିତ୍ୱକୁ ଜିୟାଜୀରାଓ ସ୍ୱୟଂ ନିଷ୍ଠାର ସହିତ ତୁଲାଇଥିଲେ । କାହିଁକିନା ଏବେ ସୈନ୍ୟବାହିନୀର ସିପାହିମାନଙ୍କ ଉପରେ ବିଶ୍ୱାସ ରଖିବା ଠିକ୍ ନ ଥିଲା । ସେଥିପାଇଁ ଜିଆଜୀରାଓ ମେକଫର୍ସନଙ୍କ ସହ ସମସ୍ତ ଇଂରେଜଙ୍କୁ ନିଜର ବିଶ୍ୱସ୍ତ ବିଶାଳ ସେନାବାହିନୀଙ୍କ ସହିତ ଆଗ୍ରା ପଠାଇଦେଲେ । ରାସ୍ତାରେ ସେମାନଙ୍କୁ ଥରେ ଦି ଥର ବିଦ୍ରୋହୀ ସିପାହିମାନଙ୍କର କ୍ଷୁଦ୍ର କ୍ଷୁଦ୍ର ଦଳ ସହିତ ମୁକାବିଲା ମଧ୍ୟ କରିବାକୁ ପଡ଼ିଥିଲା । କିନ୍ତୁ ସେତେବେଳେ ଧୋଲପୁର ରାଜାଙ୍କ ସାହାଯ୍ୟରେ ସମସ୍ତେ ସକୁଶଳ ଆଗ୍ରାରେ ପହଞ୍ଚି ଯାଇଥିଲେ । ସେମାନଙ୍କର ଦେଖାଶୁଣା କରିବାକୁ ସ୍ୱୟଂ ଦେୱାନ ଦିନକରରାଓ ରାଜୱାଡ଼ା ପର୍ଯ୍ୟନ୍ତ ଯାଇଥିଲେ ।

ଗୋଆଲିଅରରୁ ଇଂରେଜମାନେ ଚାଲିଯିବା ପରେ, ''ଏବେ ଆପଣ ଇଂରେଜଙ୍କ ପକ୍ଷ ତ୍ୟାଗ କରି ଇଂରେଜ ଶାସନ ବିରୋଧରେ ଲଢ଼ିବାପାଇଁ ଆମ ସହିତ ଯୋଗ ଦିଅନ୍ତୁ ଏବଂ ଆମେ ତାଠାରେ ମିଳିମିଶି ଆଗ୍ରା ଉପରେ ଚଢ଼ାଉ କରିବା''– ଗୋଆଲିଅର ସୈନ୍ୟମାନେ ଜିଆଜୀରାଓଙ୍କୁ ଆଗ୍ରହର ସହିତ ଏପରି ପ୍ରସ୍ତାବ ଦେଲେ । କିନ୍ତୁ ଜିଆଜୀରାଓ ଏବଂ ଦିନକରରାଓ ବଡ଼ ଚତୁରତାର ସହ କୌଣସି ନା କୌଣସି ବାହାନାରେ ଗୋଆଲିଅରର ସୈନ୍ୟଙ୍କୁ ଅଟକାଇ ରଖିଲେ, କୌଣସି ପ୍ରକାରେ ନିଜ ଆୟତ୍ତରେ ରଖିଲେ, ଆଗ୍ରା ଆଡ଼କୁ ଯିବାକୁ ଦେଲେ ନାହିଁ । କିନ୍ତୁ ସୈନ୍ୟମାନେ ଜିଆଜୀରାଓଙ୍କୁ ଟଙ୍କା ମାଗିବା ଜାରି ରଖିଥିଲେ । ଟଙ୍କା ମିଳିଲାମାତ୍ରେ ଆଗ୍ରା ଉପରେ ଚଢ଼ାଉ କରିବାପାଇଁ ସୈନ୍ୟମାନେ ବିଚାର କରୁଥିଲେ । କିନ୍ତୁ ଜିଆଜୀରାଓ ସୈନ୍ୟମାନଙ୍କୁ ଟଙ୍କା ଦେଲେ ନାହିଁ । ଇତିମଧ୍ୟରେ ତାନ୍ତିଆ ଟୋପେ ଗୋଆଲିଅର ଯାଇ ସେନାମୁଖ୍ୟଙ୍କ ସହିତ କଥାବାର୍ତ୍ତା କରି ଫେରି ଆସିଥିଲେ । ତାନ୍ତିଆଙ୍କ ପଛେ ପଛେ ଅଶ୍ୱାରୋହୀ ସୈନିକଙ୍କର କେତେକ ପଲଟଣ ପେଶବାଙ୍କ ସହିତ ସାମିଲ୍ ହେବାକୁ ବାହାରି ଆସିଥିଲେ । ଅନ୍ୟ ସୈନ୍ୟମାନେ ମଧ୍ୟ ପେଶବାଙ୍କ ତରଫରୁ ଲଢ଼ିବାକୁ ତିଆର ହୋଇ ବସିଥିଲେ । ଜିଆଜୀରାଓ, ଦିନକରରାଓ ଏବଂ ଅନ୍ୟ ଦୁଇଚାରିଜଣ ସରଦାରଙ୍କୁ ଛାଡ଼ି ଅନ୍ୟ ସମସ୍ତେ ମନରେ ଇଂରେଜଙ୍କ ବିରୋଧରେ ଘୃଣା ଓ ତିରସ୍କାରର ଭାବନା ରଖୁଥିଲେ । ଏପରି ଭାବନା ରଖିବା ସତ୍ତ୍ୱେ ଭାରତୀୟମାନଙ୍କ ମନରେ ରାଜା ଏକପ୍ରକାର ବିଷ୍ଣୁଙ୍କ ଅବତାର ହିଁ ଥିଲେ । ଏହି ପରମ୍ପରାଗତ ବିଶ୍ୱାସ ମନରେ ବସା ବାନ୍ଧିଥିବା ଯୋଗୁଁ ବିଦ୍ରୋହୀ ସୈନିକମାନେ ଜିଆଜୀରାଓଙ୍କ ଇଂରେଜପ୍ରୀତି ସତ୍ତ୍ୱେ ତାଙ୍କ ରାଜସତ୍ତାକୁ କ୍ଷତି ପହଞ୍ଚାଇ ନ ଥିଲେ । ସେମାନଙ୍କର ବିଶ୍ୱାସ ଥିଲା ଯେ ଜିଆଜୀରାଓ ତାଙ୍କର ସମର୍ଥନ କରିବେ । ଇଂରେଜଙ୍କ ବିରୋଧରେ ଯୁଦ୍ଧ କରିବେ ।

ସେହି ସମୟରେ କାଲ୍‌ପୀରୁ ସ୍ୱୟଂ ପେଶୱା, ରାଣୀ ଲକ୍ଷ୍ମୀବାଈ, ପେଶୱାଙ୍କ ସେନା, ସିନ୍ଧିଆ ରାଜ୍ୟର ସୀମା ଅନ୍ତର୍ଗତ ଅମୀନଗାଁଉ ପହଞ୍ଚିଗଲେଣି । ଏ ଖବର ଗୋଆଲିଅରରେ ପହଞ୍ଚିଗଲା । ଜିଆଜୀରାଓ ତୁରନ୍ତ କାକାଜୀ ମୋରୋପନ୍ତଙ୍କ ହାତରେ ଖବର ପଠାଇଲେ ଯେ – ସେମାନେ ଶୀଘ୍ର ରାଜ୍ୟ ଛାଡ଼ି ଫେରିଯାନ୍ତୁ । ଏହି ଖବର ଶୁଣି

ରାଓସାହେବ କ୍ରୋଧାନ୍ୱିତ ହୋଇଗଲେ । ସେ କାକାଜୀଙ୍କୁ କହିଲେ ''ମତେ ଏଠାରୁ ଚାଲିଯିବାକୁ କହିବାକୁ ଆପଣ କିଏ ? ଦି ଟଙ୍କାର ମୁଣ୍ଡ ଆପଣଙ୍କର । ଭାଙ୍ଗ-ଅଫିମ ଖାଇ ତ ଆସି ନାହାନ୍ତି ? ଏବଂ ଆପଣଙ୍କ ଏହି ମହାରାଜା ଏବଂ ଦିନକରରାଓ ଆପଣଙ୍କର କ'ଣ ହୁଅନ୍ତି ? ସମସ୍ତେ ନିଜକୁ ଖ୍ରୀଷ୍ଟିୟାନ ଭାବୁଛନ୍ତି ନା କ'ଣ ? ସମସ୍ତେ ତାଙ୍କ କଥା କାହିଁକି ଶୁଣିବେ ? ଆମ୍ଭେମାନେ ପେଶବା ଅଟୁ । ସିନ୍ଧିଆ ଆମ ଆଗରେ ଆମ ଜୋତା ଧରି ଠିଆ ହୋଇ ରହୁଥିଲେ । ଏହି ରାଜ୍ୟ ଆମେ ସିନ୍ଧିଆମାନଙ୍କୁ ଦେଇଛୁ । ସିନ୍ଧିଆଙ୍କ ସମସ୍ତ ଫଉଜ ଆମ ପକ୍ଷରେ ଅଛନ୍ତି । ବାୟଜାବାଈ (ଜିଆଜୀରାଓଙ୍କର ଜେଜେମା) ଆମକୁ ଚିଠି ପଠାଇଛନ୍ତି । ସିନ୍ଧିଆ ଆମକୁ ସମର୍ଥନ କରୁଛନ୍ତି । ଆପଣ ଆମ ସହିତ କ'ଣ ଯୁଦ୍ଧ କରିବାକୁ ଚାହାନ୍ତି ? ଏପରି କଥା ଶୁଣି କାକାଜୀ ମୋରୋପନ୍ତ ନିରୁତ୍ତର ହୋଇ ଚୁପ୍‌ଚାପ୍ ଫେରି ଯାଇଥିଲେ (ରିଭୋଲ୍ଟ ଅଫ୍ ବୁନ୍ଦେଲଖଣ୍ଡ, ସିହ୍ନା, ପୃଷ୍ଠା-୧୫୧)

ଏଠାରେ ଯେତେବେଳେ ରାଓସାହେବ କହନ୍ତି ଯେ ''ଆମକୁ ସିନ୍ଧିଆଙ୍କ ସମର୍ଥନ ଅଛି ସେତେବେଳେ ୧୧ ନଭେମ୍ବର ୧୮୫୭, ୧୮ ନଭେମ୍ବର ୧୮୫୭ ଏହି ଦୁଇଟି ତାରିଖରେ ଜିଆଜୀରାଓ ନବାବ ଅଲ୍ଲୀ ବାହାଦୁରଙ୍କୁ ପଠାଇଥିବା ଚିଠିର କଥା ସ୍ମରଣକୁ ଆସେ । ଏହି ଚିଠିରେ ଜିଆଜୀରାଓ ଇଂରେଜଙ୍କ ବିରୋଧରେ ଚାଲିଥିବା ଲଢ଼େଇର ପ୍ରଶଂସା କରିଥିଲେ ଏବଂ ଆବଶ୍ୟକ ହେଲେ ସାହାଯ୍ୟ କରିବାର ଆଶ୍ୱାସନା ମଧ୍ୟ ଦେଇଥିଲେ । ଏ ବିଷୟ ଆମେ ଗତ ଅଧ୍ୟାୟରେ ପଢ଼ିଛେ । ଜିଆଜୀରାଓଙ୍କର ଏହି ଆଚରଣରେ ସମ୍ପୂର୍ଣ୍ଣ ବିରୋଧାଭାସ ଦେଖାଯାଏ । ଗୋଟିଏପଟରେ ବିଦ୍ରୋହର ପ୍ରଶଂସା କରୁଥିଲେ ତ ଆରପଟରେ ଇଂରେଜଙ୍କୁ ସାହାଯ୍ୟ କରିବା କଥା ମଧ୍ୟ କହୁଥିଲେ । ବିଦ୍ରୋହୀମାନଙ୍କୁ ସାହାଯ୍ୟ କରିବାର ଆଶ୍ୱାସନା ଦେବା ସହିତ ଇଂରେଜମାନଙ୍କର ସୁରକ୍ଷାର ପୂରା ଦାୟିତ୍ୱ ମଧ୍ୟ ଉଠାଉଥିଲେ । ଏହାର ଅର୍ଥ ହେଲା ସ୍ୱୟଂ ଜିଆଜୀରାଓଙ୍କୁ ବିଦ୍ରୋହୀମାନଙ୍କ ପ୍ରତି ହୁଏତ ଆତ୍ମୀୟତା ଥାଇପାରେ, କିନ୍ତୁ ଦିନକରରାଓଙ୍କ ପ୍ରଭାବ ଯୋଗୁଁ ଖୋଲା ମନରେ ସେ ସେପରି ଭୂମିକା ତୁଲାଇବାରେ ନିଜକୁ ଅସମର୍ଥ ମନେ କରୁଥିଲେ । ଏପରି ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ଦୁଇ ପକ୍ଷରେ ସମନ୍ୱୟ ସ୍ଥାପନ କରିବା ଏବଂ ଶେଷରେ ଯାହାର ବିଜୟ ହେବ ତାହାର ସମର୍ଥନ କରିବା ପରି ଧୂର୍ତ୍ତତା ଏବଂ ସତର୍କତା ଦର୍ଶାଇବାର ସଂଭାବନା ମଧ୍ୟ ଥାଇପାରେ । ତଥାପି କେବଳ ଏହି ଦୁଇଟି ଚିଠିକୁ ଛାଡ଼ିଦେଲେ ଆରମ୍ଭରୁ ଶେଷପର୍ଯ୍ୟନ୍ତ ତାଙ୍କର କମ୍ପାନୀ ସରକାରଙ୍କ ପ୍ରତି ହିଁ ସମର୍ଥନ ପ୍ରକାଶ ପାଇଥିଲା । ତାଙ୍କର ନିଷ୍ଠା ନିମନ୍ତେ ତାଙ୍କୁ ପରବର୍ତ୍ତୀ ସମୟରେ ସମ୍ମାନିତ ଏବଂ ପୁରସ୍କୃତ ମଧ୍ୟ କରାଯାଇଥିଲା । ଲଢ଼େଇ ଶେଷ ହେବା ପରେ ୧୮୬୦ରେ ଇଂରେଜମାନେ ସିନ୍ଧିଆଙ୍କ ସହ ନୂତନ ଭାବେ ବନ୍ଧୁତା ତଥା ସନ୍ଧି ସ୍ଥାପନ କଲେ । ତଦନୁଯାୟୀ ତିନିଲକ୍ଷ ଟଙ୍କା ମୂଲ୍ୟର ଇଲାକା ଇଂରେଜମାନେ ସିନ୍ଧିଆଙ୍କୁ ପ୍ରଦାନ କଲେ ।

ଆବଶ୍ୟକ ପଡ଼ିଲେ ପୋଷ୍ୟସନ୍ତାନ ଗ୍ରହଣ କରିବାର ଅଧିକାର ଦେବାକୁ ପୁନରାୟ ଆଶ୍ୱାସନା ଦେଲେ । ପାଞ୍ଚହଜାର ପଦାତିକ ସୈନ୍ୟ ରଖିବାର ଅନୁମତି ମଧ୍ୟ ଦେଲେ । ଦେବାନ ଦିନକରରାଓଙ୍କୁ ପୁରସ୍କାରସ୍ୱରୂପ ପାଞ୍ଚହଜାର ମୁଦ୍ରା ଅସୁଲ ହେଉଥିବା ଭୂମି ପ୍ରଦାନ କଲେ । ବରୋଦାର ଗାୟକୋବାଡ଼ ରାଜବଂଶ ମଧ୍ୟ କଂପାନୀ ସରକାରଙ୍କ ପ୍ରତି ବିଶ୍ୱସ୍ତ ଥିଲେ । ସେମାନେ ବିଦ୍ରୋହୀଙ୍କୁ କୌଣସି ସାହାଯ୍ୟ କରି ନ ଥିଲେ । ସେଥିପାଇଁ ତାଙ୍କୁ ବାର୍ଷିକ ତିନିଲକ୍ଷ ଟଙ୍କା କର ମାଫ୍ କରିଦିଆଯାଇଥିଲା ଏବଂ ପୋଷ୍ୟସନ୍ତାନ ଗ୍ରହଣର ଅନୁମତି ମଧ୍ୟ ପ୍ରଦାନ କରାଯାଇଥିଲା । ଇନ୍ଦୋର ରାଜ୍ୟକୁ ମଧ୍ୟ ପୋଷ୍ୟସନ୍ତାନ ଗ୍ରହଣ କରିବାର ଅଧିକାର ମିଳିଲା । ଧାରର ରାଜା କଂପାନୀ ସରକାରଙ୍କ ବିରୋଧରେ ନେତୃତ୍ୱ ନେଇଥିଲେ । ଧାରରେ ଯୁଦ୍ଧ ମଧ୍ୟ ହୋଇଥିଲା । ସେଥିପାଇଁ ଯୁଦ୍ଧ ପରେ ରାଣୀଙ୍କ ଚୁକ୍ତିପତ୍ରରେ ଦିଆଯାଇଥିବା ଆଶ୍ୱାସନା ସତ୍ତ୍ୱେ ଧାରର ରାଜାଙ୍କର ପୋଷ୍ୟସନ୍ତାନ ଗ୍ରହଣ କରିବାର ଅଧିକାରକୁ ବାତିଲ କରି ଦିଆଗଲା ଏବଂ ଧାର ରାଜ୍ୟକୁ ଇଂରେଜମାନେ ନିଜ ଅଧିକାରକୁ ନେଇଗଲେ । ଅତ୍ୟନ୍ତ ଅପମାନଜନକ ଢଙ୍ଗରେ ତାଙ୍କର ସମ୍ପତ୍ତି ମଧ୍ୟ ଛଡ଼ାଇନେଲେ ।

କାକାଜୀ ମୋରୋପନ୍ତ ଫେରିଗଲା ପରେ ପେଶବା ନିଜ ସୈନ୍ୟମାନଙ୍କ ସହିତ ଆଉ ଟିକିଏ ଅଗ୍ରସର ହେଲେ । ଦ୍ୱିତୀୟଦିନ ଦେହଗ୍ରାମ ପହଞ୍ଚିଲେ । ସେଠାରୁ ସେ ଜିଆଜୀରାଓ ଏବଂ ବାୟଜାବାଈଙ୍କୁ ପତ୍ର ଲେଖିଲେ । ପତ୍ରରେ ଲେଖିଲେ ଯେ ‘‘ଆମେ ଏଠାକୁ ବନ୍ଧୁତାର ସଂପର୍କ ଧରି ଆସିଛୁ । ଆପଣ ଆମର ପୂର୍ବପୁରୁଷଙ୍କର ରକ୍ତସଂପର୍କକୁ ସ୍ମରଣ କରନ୍ତୁ ଏବଂ ଆମକୁ ସହାୟତା ଦିଅନ୍ତୁ ।’’

ଏହାର ଉତ୍ତରରେ ଜିଆଜୀରାଓ ଲାଲ୍‌ବିହାରୀ ଲାଲ୍‌ଙ୍କ ହାତରେ ଖବର ପଠାଇଲେ ଯେ ‘‘ପେଶବାଙ୍କୁ କୁହାଯାଉଛି ଯେ ସେ ଏଠାରୁ ଚାଲିଯାନ୍ତୁ ।’’

ପେଶବା ବିହାରୀଲାଲଙ୍କୁ ଉତ୍ତର ଦେଲେ ଯେ ‘‘ଏହି ରାସ୍ତା ଦେଇ ଆମକୁ ଦକ୍ଷିଣକୁ ଯିବାର ଅଛି ।’’ ଏହା ଶୁଣି ବିହାରୀଲାଲ କହିଲେ କି ‘‘ଆପଣ ଅନ୍ୟ ମାର୍ଗରେ ମଧ୍ୟ ଯାଇପାରନ୍ତି ।’’ ପେଶବା ଉତ୍ତର ଦେଲେ ‘‘କିନ୍ତୁ ଆମକୁ ଖାଦ୍ୟପଦାର୍ଥ ନେବାର ଅଛି । ଲୁଗାପଟା ଏବଂ ଟଙ୍କାପଇସା ମଧ୍ୟ ନେବାର ଅଛି । ସେପର୍ଯ୍ୟନ୍ତ ଆମେ ମୋରାର ଛାଉଣୀ ଏବଂ ଫୁଲବାଗରେ ଅବସ୍ଥାନ କରିବୁ ।’’

ରାଓସାହେବ ସାମାନ୍ୟ ଚତୁରତାର ସହିତ କାମ ଆଦାୟ କରିବାକୁ ନିର୍ଣ୍ଣୟ ନେଲେ । ପଛରୁ ଆଜି ନ ହେଲେ କାଲି ଇଂରେଜ ସୈନ୍ୟଙ୍କର ଆସିବାର ଅଛି । ଏପରି ସମୟରେ ଇଂରେଜଙ୍କ ଶତ୍ରୁତା ଅନର୍ଥ ସୃଷ୍ଟି କରିପାରେ । ରାଓସାହେବ ପୁଣିଥରେ ଜିଆଜୀରାଓ, ବାୟଜାବାଈଙ୍କୁ ଚିଠି ଲେଖିଲେ– ‘‘ଆମ ପାଖରେ କୋଡ଼ିଏହଜାର ସୈନ୍ୟ ଅଛନ୍ତି । ଆପଣଙ୍କ ଇଲାକାରୁ ଆମକୁ ଏବେଯାଏ ରସଦ ମିଳି ନାହିଁ । ଆପଣଙ୍କ ପ୍ରଶାସନ ଏହା ଆମକୁ ଦେଇ ନାହାନ୍ତି । ସେଥିଯୋଗୁଁ ଆମ ପାଇଁ ବହୁତ ଅସୁବିଧାଜନକ ପରିସ୍ଥିତି ସୃଷ୍ଟି ହୋଇଛି । ଆସନ୍ତାକାଲି ଆମେ ଗୋଆଲିଅରରେ ରହିବୁ । ତତ୍ପରେ ଆପଣଙ୍କୁ

ସାକ୍ଷାତ୍ କରି ଯାହା ନିର୍ଣ୍ଣୟ ନେବାକୁ ହେବ, ନିଆଯିବ । ଏହା ପରେ କ'ଣସବୁ ଘଟିବ ତାହା ଆପଣଙ୍କ ସହିତ କଥାବାର୍ତ୍ତା କରିବା ପରେ ହିଁ ସ୍ଥିର କରାଯିବ ।''

ପେଶବା ଭାବୁଥିଲେ, ସିନ୍ଧିଆଙ୍କ ତରଫରୁ ତାଙ୍କୁ କୌଣସି ପ୍ରକାରର ବିରୋଧ କରାଯିବ ନାହିଁ । ଏହା ସତ୍ତ୍ୱେ ସେ ନିଜ ସୈନ୍ୟମାନଙ୍କର ସମରାଭ୍ୟାସ ଆରମ୍ଭ କରିଦେଲେ । ସେହି ସମୟରେ ସେ ଗୋଆଲିଅର ସୈନିକ ଛାଉଣୀକୁ କେହି ନ ଯିବାକୁ ନିଜ ସୈନ୍ୟଙ୍କୁ ଆଦେଶ ଦେଲେ ।

ଇତିମଧ୍ୟରେ ଜିଆଜୀରାଓ ଏବଂ ଦିନକରରାଓ ଭିତରେ ଭିତରେ ନିଜର କାର୍ଯ୍ୟଧାରା ଚଳାଇ ରଖିଲେ । ସେମାନେ ଆଗ୍ରାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ସହିତ ନିରନ୍ତର ସଂପର୍କ ସ୍ଥାପନ କରି, ସାହାଯ୍ୟ ପାଇଁ ସୈନ୍ୟବାହିନୀ ଧରି ଗୋଆଲିଅର ଆସିବାକୁ ଇଂରେଜମାନଙ୍କୁ କହିଲେ । ସିନ୍ଧିଆ ପେଶବାମାନଙ୍କ ସହ ସମ୍ମୁଖ ଯୁଦ୍ଧ ପାଇଁ ଇଚ୍ଛୁକ ଥିଲେ । କିନ୍ତୁ ଦିନକରରାଓ ସେଥିପାଇଁ ପ୍ରସ୍ତୁତ ନ ଥିଲେ । ସେ ଧୈର୍ଯ୍ୟର ସହିତ କାମ କରିବାକୁ ପରାମର୍ଶ ଦେଉଥିଲେ । ''ଆମର ନିଜର ସୈନ୍ୟମାନେ ଆଗରେ ପେଶବା, ରାଣୀ ଲକ୍ଷ୍ମୀବାଈଙ୍କୁ ଦେଖି ସେମାନଙ୍କ ସହିତ ଯଦି ମିଶିଗଲେ ?'' ଏ ଭୟ ମଧ୍ୟ ଥିଲା, ସେଥିପାଇଁ ଇଂରେଜଙ୍କର ଗୋରା ସୈନ୍ୟ ଆସି ପହଞ୍ଚିବା ପର୍ଯ୍ୟନ୍ତ କୌଣସି ନା କୌଣସି ଉପାୟରେ ପେଶବାଙ୍କୁ ଅଟକାଇ ରଖିବା ଦିନକରରାଓଙ୍କର ନିଜର ନୀତି ଥିଲା ।

ଜିୟାଜୀରାଓଙ୍କର ଗୁପ୍ତଚର ଆସି ଜଣାଇଲା ଯେ ପେଶବାଙ୍କ ସୈନ୍ୟମାନେ କ୍ଳାନ୍ତ, ତାଙ୍କ ଭିତରେ ଫାଟ ସୃଷ୍ଟି ହୋଇଗଲାଣି । ଗୋଟିଏ ଆକ୍ରମଣରେ ପେଶବାଙ୍କ ସୈନ୍ୟଙ୍କୁ ପରାଜିତ କରି ସେମାନଙ୍କୁ ଗୋଆଲିଅରର ସୀମା ବାହାରକୁ ତଡ଼ି ଦିଆଯାଇପାରିବ । ଇଂରେଜ ସରକାରଙ୍କୁ ଖୁସି କରିବାର ଏହି ମଉକାକୁ ଜିୟାଜୀରାଓ ହାତଛଡ଼ା କରିବାକୁ ଚାହୁଁ ନ ଥିଲେ । ଆଠହଜାର ସିପାହି ଓ ଚବିଶହଜାର ତୋପ ସହିତ ଜିୟାଜୀରାଓ ପେଶବାଙ୍କ ଉପରେ ଚଢ଼ାଉ କରିଦେଲେ । ଦିନକରରାଓ ଏଥିପାଇଁ ରାଜି ନ ଥିଲେ ଏବଂ ଏପରି କରିବାକୁ ସେ ବାରଣ ମଧ୍ୟ କରିଥିଲେ । ତଥାପି ସିନ୍ଧିଆ ତାଙ୍କ କଥା ମାନି ନ ଥିଲେ । ଦିନକରରାଓଙ୍କ ଭୟ ସତ୍ୟ ହେଲା । ଏହି ଅଭିଯାନ ନିମନ୍ତେ ସିନ୍ଧିଆ ସୈନ୍ୟଙ୍କର ଆତ୍ମୀୟତା ନ ଥିଲା । କେବଳ ରାଜାଙ୍କର ହୁକୁମ ପାଳନ କରିବା ଦୃଷ୍ଟିରୁ ୧ ଜୁନ ୧୮୫୮ ସକାଳେ ସିନ୍ଧିଆ ସୈନ୍ୟ ବାହାଦୁରପୁରରେ ଅଟକିଥିବା ପେଶବାଙ୍କ ସୈନ୍ୟଙ୍କ ଉପରେ ତୋପ ଚଳାଇବା ଆରମ୍ଭ କରିଦେଲେ । ଅଚାନକ ଏହି କଳ୍ପନା କରୁ ନ ଥିବା ଆକ୍ରମଣ ହେବାର ଦେଖି ପେଶବାଙ୍କ ସୈନ୍ୟ ହଡ଼ବଡ଼େଇ ଗଲେ । ଏଣେତେଣେ ଧାଇଁବାକୁ ଲାଗିଲେ । ସେମାନଙ୍କୁ ଏପରି ଏଣେତେଣେ ଧାଇଁବାର ଦେଖି ରାଣୀ ଲକ୍ଷ୍ମୀବାଈ ଘୋଡ଼ା ଉପରେ ସବାର ହୋଇ ସିଧା ସେହି ଧାଇଁ ପଳାଉଥିବା ସୈନ୍ୟଙ୍କ ସମ୍ମୁଖରେ ଯାଇ ଛିଡ଼ା ହୋଇଗଲେ ଏବଂ କହିଲେ– ''ଆପଣମାନେ ବାହାଦୁର ସିପାହି ଅଟନ୍ତି ନା ? ତା'ହେଲେ ଯେତେବେଳେ ଲଢ଼ିବାର ମଉକା ଆସିଲା ତ ଏପରି ଲାଞ୍ଜ ଜାକି କୁଆଡ଼େ ଦୌଡ଼ି

ପଳାଉଛନ୍ତି ? ନିଜ ଲୋକମାନେ ହିଁ ଆମ ଉପରେ ଆକ୍ରମଣ କରିଛନ୍ତି । ସେମାନଙ୍କୁ ଠିକଣା ଜବାବ ଦେବା ବଦଳରେ ଆପଣମାନେ କୁଆଡ଼େ ପଳାଉଛନ୍ତି । ଆମେ ସମସ୍ତେ ଶତ୍ରୁ ସହିତ ଲଢୁ ଲଢୁ ଶହୀଦ ହୋଇଯିବାର ଶପଥ ନେଇଛନ୍ତି । ଆମ ସହିତ ଯାହାର ଆସିବାର ଅଛି ସେ ଆମ ପଛରେ ଆସନ୍ତୁ । ଯାହାଙ୍କର ଆସିବାର ନାହିଁ ନିଜର ଜୀବନ ବଞ୍ଚାଇବାର ଅଛି ସେମାନଙ୍କର ଏଠାରୁ ଚାଲିଯିବା ହିଁ ଉଚିତ ହେବ ।

ରାଣୀ ଲକ୍ଷ୍ମୀବାଈଙ୍କର ଏପରି କଥା ଶୁଣି ପଳାୟନ କରୁଥିବା ସୈନ୍ୟମାନଙ୍କ ଭିତରେ ଏକ ନୂଆ ଚେତନା ଜାଗ୍ରତ ହୋଇଉଠିଲା । ପଳାୟନ କରୁଥିବା ସିପାହିମାନେ ଫେରିଆସିଲେ । ରାଣୀ ଲକ୍ଷ୍ମୀବାଈଙ୍କର ଘୋଡ଼ସବାରମାନେ ସବୁଠାରୁ ଆଗରେ ଥିଲେ । ପୂର୍ଣ୍ଣ ଉତ୍ସାହ-ଉଦ୍ଦୀପନାର ସହିତ ରାଣୀ ସିନ୍ଧିଆଙ୍କ ଫଉଜ ଉପରେ କୁଦି ପଡ଼ିଲେ । ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । ପେଶବାଙ୍କ ତରଫରୁ 'ଦୀନ୍-ଦୀନ୍' ସ୍ୱର ନିନାଦିତ ହେଲା । "ୟା ନାରା ହୈଦରୀ, ୟା ହୁସେନ୍" ଧ୍ୱନି ସହିତ "ଜୟ ଶ୍ରୀରାମ ଲକ୍ଷ୍ମଣ"ର ଘୋଷଣା ମଧ୍ୟ ହେବାକୁ ଲାଗିଲା । (ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍, ସିଭିଲ୍ ରିବେଲିଅନ ଇନ୍ ଇଣ୍ଡିଆନ ମ୍ୟୁଟିନିଜ, ୧୯୫୭, ପୃ. ୨୪) ଏହା ସହିତ ସିନ୍ଧିଆଙ୍କ ପକ୍ଷର ବହୁ ସିପାହି ଜବାବରେ ସେହି ପ୍ରକାରର ଘୋଷଣା କଲେ ଏବଂ ତୁରନ୍ତ ସିନ୍ଧିଆଙ୍କ ପକ୍ଷ ତ୍ୟାଗ କରି ପେଶବାଙ୍କ ସେନାରେ ସାମିଲ୍ ହେବାକୁ ଚାଲିଆସିଲେ ।

ଏପରି ପରିସ୍ଥିତି ଦେଖି ଜିୟାଜୀରାଓ ସେଠାରୁ ହଟିଯିବାକୁ ନିର୍ଣ୍ଣୟ ନେଲେ । ସର୍ବପ୍ରଥମେ ସେ ଗୋଆଲିଅର ଗଲେ ଏବଂ ସେଠାରୁ ତୁରନ୍ତ ସିଧା ଆଗ୍ରାର କମ୍ପାନୀ ସରକାର ପାଖରେ ଆଶ୍ରୟ ନେବାକୁ ଚାଲିଗଲେ । ଦିନକରରାଓ ମଧ୍ୟ ତାଙ୍କ ସହିତ ଆଗ୍ରା ଚାଲିଗଲେ । ରାଜପରିବାରର ମହିଳାମାନେ ନରବରଗାଓଁ ଚାଲିଗଲେ । ଏହା ପରେ ସିନ୍ଧିଆଙ୍କର ସମସ୍ତ ସୈନ୍ୟ ପେଶବାଙ୍କ ସହିତ ମିଶିଗଲେ । ପେଶବାଙ୍କର ଅବରୁଦ୍ଧ ମାର୍ଗ ଏବେ ନିଷ୍କଣ୍ଟକ ହୋଇଗଲା । କାଲ୍ପୀର ପରାଜୟ ପରେ ଗୋଆଲିଅର ଯିବାର ପ୍ରସ୍ତାବ ରଖି ରାଣୀ ଲକ୍ଷ୍ମୀବାଈ ନିଜର ବୁଦ୍ଧିମତ୍ତାର ପରିଚୟ ଦେଇଥିଲେ । ଏହି ଅତିରିକ୍ତ ସିନ୍ଧିଆଙ୍କ ସୈନ୍ୟ ଯେତେବେଳେ ଆକ୍ରମଣ କରିବାକୁ ଆସିଲେ ସେତେବେଳେ ସେ ବିବ୍ରତ ନ ହୋଇ ପେଶବାଙ୍କ ସୈନ୍ୟଙ୍କୁ ଯୁଦ୍ଧ କରିବାପାଇଁ ଉତ୍ସାହିତ କରିବା, ପରିସ୍ଥିତିକୁ ସଫଳତାପୂର୍ବକ ସାମ୍ନା କରିବାର ଦୂରଦର୍ଶିତା ରାଣୀ ଦେଖାଇଥିଲେ ।

ପରାଜିତ ହୋଇ ଜିୟାଜୀରାଓ ଆଗ୍ରାରେ ଇଂରେଜଙ୍କର ଆଶ୍ରୟକୁ ଚାଲିଯାଇଥିଲେ । ଦ୍ୱିତୀୟ ଦିନ ରାଓସାହେବ ପେଶବା, ରାଣୀ ଲକ୍ଷ୍ମୀବାଈ, ତାନ୍ତିଆ ଟୋପେ ନିଜର ଖୁସିକୁ ପ୍ରକାଶ କଲେ । ଏହି ତିନିଜଣ ଯେତେବେଳେ ଗୋଆଲିଅର ସହରରେ ପ୍ରବେଶ କଲେ ତ ଚାରିଆଡ଼େ ଖୁସିର ବାତାବରଣ ଥିଲା । ଗୋଆଲିଅରର ସମସ୍ତ ସେନା ଓ ସାଧାରଣ ନାଗରିକମାନେ ଉନ୍ମୁକ୍ତ ହୃଦୟରେ ସେମାନଙ୍କୁ ସ୍ୱାଗତ କଲେ ଏବଂ ଜୟ ଜୟକାର କଲେ । ଏହି ଅବସରରେ ଆନନ୍ଦମୟ ବାତାବରଣର ପ୍ରମୁଖ କେନ୍ଦ୍ରବିନ୍ଦୁ ଥିଲେ ଝାନ୍ସୀର

ରାଣୀ ଲକ୍ଷ୍ମୀବାଈ । ଯୁଦ୍ଧ ପୋଷାକ ପିନ୍ଧି, ଘୋଡ଼ା ପିଠିରେ ବସି ଆସୁଥିବା ରାଣୀଙ୍କୁ ଦେଖି ଲୋକେ ଆଶ୍ଚର୍ଯ୍ୟରେ ଆଙ୍ଗୁଠି କାମୁଡ଼ି ପକାଉଥିଲେ । ସେମାନଙ୍କର ହୃଦୟ ଶ୍ରଦ୍ଧା ଏବଂ ଆନନ୍ଦରେ ଭାବୁକ ହୋଇ ଉଠୁଥିଲା । ରାଣୀସାହେବାଙ୍କ ଯୋଗୁଁ ହିଁ ଗୋଆଲିଅରକୁ ଇଂରେଜ କବ୍‌ଜା କରିପାରି ନ ଥିଲେ । ଇଂରେଜଙ୍କ ପ୍ରତି ସମର୍ପିତ ଜିୟାଜୀରାଓଙ୍କୁ ଗୋଆଲିଅର ଛାଡ଼ି ଆଗ୍ରା ଚାଲିଯିବାକୁ ରାଣୀ ହିଁ ବାଧ କରିଥିଲେ ।

ବିଜୟୀ ହୋଇ ଗୋଆଲିଅର ସହରରେ ପ୍ରବେଶ କଲା ପରେ ରାଓସାହେବ ସିନ୍ଧିଆଙ୍କ ରାଜମହଲରେ ରହିବାକୁ ଚାଲିଗଲେ । ଲକ୍ଷ୍ମୀବାଈ ରାଜମହଲ ଗଲେ ନାହିଁ । ସେ ନଓ୍ୱାଲଖାବାଗର ମହଲରେ ରହିବାକୁ ଚାଲିଗଲେ । ତାନ୍ତିଆ ଟୋପେ ଗୋଆଲିଅର କିଲ୍ଲାକୁ ହସ୍ତଗତ କଲେ । ସମସ୍ତ ରାଜକୋଷକୁ ନିଜ ଅଧିକାରକୁ ଆଣିଲେ । ଗୋଆଲିଅର ସହରରେ ଯେପରି କୌଣସି ପ୍ରକାରର ଦଙ୍ଗାଫସାଦ ବା ଲୁଟ୍‌ପାଟ୍ ନ ହୁଏ ସେଥିପାଇଁ ଘୋଷଣା ଜାରି କରି ରାଓସାହେବ ସେ ସବୁ ଉପରେ ନିଷେଧାଜ୍ଞା ଲଗାଇଲେ । ସେହି ନିଷେଧାଜ୍ଞାକୁ ଉଲ୍ଲଙ୍ଘନ କରିବା ଲୋକଙ୍କୁ କଠିନରୁ କଠିନ ଦଣ୍ଡ ଦିଆଯିବାର ହୁକୁମ୍ ଜାରି କରାଗଲା । କିନ୍ତୁ ଦେବାନ ଦିନକରରାଓ, ମୋହନଧୁର ଏବଂ ବଳବନ୍ତରାଓ ଏହି ପ୍ରମୁଖ ଅଧିକାରୀଙ୍କର ପ୍ରାସାଦ ଏବଂ ସମ୍ପତ୍ତି ଜବତ୍ କରି ନିଆଗଲା ।

ସିପାହିମାନେ ମଧ ସେମାନଙ୍କର ମହଲ ଲୁଟିନେଲେ । ଗୋଆଲିଅରରେ କେବଳ ଏତିକିମାତ୍ର ଲୁଟ୍‌ପାଟ୍ ହୋଇଥିଲା । ସିନ୍ଧିଆ ନିଜର ସୈନ୍ୟମାନଙ୍କୁ ତିନିମାସ ହେଲା ଦରମା ଦେଇ ନ ଥିଲେ । ଖଜଣାଖାନାରୁ ଟଙ୍କା କାଢ଼ି ରାଓସାହେବ ସେମାନଙ୍କୁ ଦରମା ଦେଲେ । ଏହା ସହିତ ପୁରସ୍କାର ମଧ ଦେଲେ । ସେଥିପାଇଁ ମୋଟ ନ ଲକ୍ଷ ଟଙ୍କା ଖର୍ଚ୍ଚ ହେଲା । ପେଶବାଙ୍କ ସୈନ୍ୟଙ୍କ ଦରମା ବାବଦ ମଧ ସାଢ଼େ ସାତଲକ୍ଷ ଟଙ୍କା ଖର୍ଚ୍ଚ ହେଲା । କାରାଗାରରୁ ବନ୍ଦୀମାନଙ୍କୁ ମୁକ୍ତ କରାଗଲା । ନୂତନ କର୍ମକର୍ତ୍ତା ନିଯୁକ୍ତ କରାଗଲା । ଗୋଆଲିଅର ଦରବାରର ଯେଉଁ ପୁରୁଣା କର୍ମଚାରୀ ପେଶବାଙ୍କ ସ୍ୱାମିତ୍ୱ ସ୍ୱୀକାର କଲେ ସେମାନଙ୍କୁ ନିଜ ନିଜର ପଦରେ ପୁନଶ୍ଚ ଅବସ୍ଥାପିତ କରାଗଲା ।

୧୮୫୮ ଜୁନ୍ ୩ ତାରିଖରେ ରାଜଦରବାର ଆୟୋଜନ କରାଗଲା ଏବଂ ନାନାସାହେବ ପେଶବାଙ୍କ ନାମରେ ନାଗରା ବଜାଇ ଦିଆଗଲା । ସେହି ସମୟରେ ରାଓସାହେବ ବାୟଜାବାଈଙ୍କୁ ପୁଣିଥରେ ଦୁଇଟି ଚିଠି ଲେଖିଲେ, ଯେଉଁଥିରେ କୁହାଯାଇଥିଲା ଯେ– "ଗୋଆଲିଅରକୁ ନିଜ ଦଖଲରେ ରଖିବାକୁ ପେଶବାଙ୍କର ଇଚ୍ଛା ନାହିଁ । ତାଙ୍କୁ ଦକ୍ଷିଣ ଆଡ଼କୁ ଆଗକୁ ଯିବାର ଅଛି । ସେଥିପାଇଁ ସେ ଫେରିଆସନ୍ତୁ ଏବଂ ଗୋଆଲିଅରର ଶାସନଭାର ନିଜ ହାତକୁ ନିଅନ୍ତୁ" । ବାୟଜାବାଈ ଭୀଷଣ ଷଡ଼୍‌ଯନ୍ତ୍ରକାରିଣୀ ମହିଳା ଥିଲେ । ସେ ସେହି ଚିଠି ଦୁଇଟିକୁ ଆଗ୍ରାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର, ସାର୍ ରବର୍ଟ ହାମିଲ୍‌ଟନଙ୍କ ପାଖକୁ ପଠାଇଦେଲେ (ବୁନ୍ଦେଲଖଣ୍ଡ, ସିହ୍ନା, ପୃଷ୍ଠା–୧୫୩)

## ଗୋଆଲିଅର ଯୁଦ୍ଧ

କାଲ୍‌ପୀର ପରାଜୟ ପରେ ରାଓସାହେବ, ରାଣୀ ଲକ୍ଷ୍ମୀବାଈ ଗୋଆଲିଅର ଆଡ଼କୁ ପ୍ରସ୍ଥାନ କରିବାର ଖବର ମିଳିବାମାତ୍ରେ ହ୍ୟୁରୋଜ ନିଜର ଛୁଟି ସ୍ଥଗିତ କରିଦେଲେ । ଗୋଆଲିଅର ଅଭିଯାନ ନିଜ ହାତକୁ ନେବାର ଅନୁମତି ମଧ୍ୟ ତାଙ୍କୁ ମିଳିଗଲା । ତୁରନ୍ତ ସେ ଆଗାମି କାର୍ଯ୍ୟପନ୍ଥା ସ୍ଥିର କରିବାରେ ଲାଗିଗଲେ ।

୧୮୫୮ ମେ ୨୫ ତାରିଖରେ ହ୍ୟୁରୋଜ କର୍ଣ୍ଣେଲ ରବର୍ଟସନଙ୍କୁ ପେଶବାଙ୍କ ପିଛା କରିବା ନିମନ୍ତେ ପଠାଇଥିଲେ । ୪ ଜୁନ୍‌ରେ ଖବର ଆସିଲା ଯେ ଗୋଆଲିଅର ଅଧିକାର କରି ସର୍ବତ୍ର ନାନାସାହେବଙ୍କ ପେଶବା ପଦ ଗ୍ରହଣ କରିବାର ଘୋଷଣା କରି ଦିଆଯାଇଛି । ଏହାର ଉଦ୍ଦେଶ୍ୟ ସ୍ପଷ୍ଟ ଥିଲା ଯେ ଉତ୍ତର ଏବଂ ଦକ୍ଷିଣ ମଧ୍ୟରେ ସ୍ଥାପିତ ଇଂରେଜମାନଙ୍କର ସଞ୍ଚାର ବ୍ୟବସ୍ଥାକୁ ବନ୍ଦ କରି ଦିଆଯିବାର ସମ୍ଭାବନା ସୃଷ୍ଟି ହୋଇଗଲା । ପେଶବାଙ୍କର ଏହି ବିଜୟ ଯୋଗୁଁ ମୁଖ୍ୟତଃ ସମ୍ପୂର୍ଣ୍ଣ ଦକ୍ଷିଣ ଇଲାକା, ବିଶେଷତଃ ପୂର୍ବ ପେଶବାମାନଙ୍କର ଶାସନ ଅନ୍ତର୍ଗତ ସମସ୍ତ ରାଜା–ମହାରାଜା, ସରଦାର ଯଦି ପୁଣିଥରେ ପେଶବାମାନଙ୍କ ସହିତ ସମ୍ମିଳିତ ହୋଇଯାନ୍ତି ତ ଇଂରେଜମାନଙ୍କ ପାଇଁ ଏହା ମହଙ୍ଗା ସାବ୍ୟସ୍ତ ହୋଇପାରେ । ଏବେ ପେଶବାମାନେ ରାଜଗାଦି ସଂଭାଳି ନେଲେଣି–ଏହି ଖବର ଯୋଗୁଁ ଦକ୍ଷିଣର ବିଭିନ୍ନ ସ୍ଥାନରେ ବିଶେଷତଃ ପେଶବାମାନଙ୍କର ମହାରାଷ୍ଟ୍ରର ଚାରିଆଡ଼େ ଅସନ୍ତୋଷ ବ୍ୟାପିଯିବ ଏପରି ଆଶଙ୍କା ସୃଷ୍ଟି ହୋଇଗଲା । ଏସବୁ କଥା ଚିନ୍ତା କରି ହ୍ୟୁରୋଜ ଅତିଶୀଘ୍ର ଗୋଆଲିଅର ନିମନ୍ତେ ପ୍ରସ୍ଥାନ କଲେ ।

ଜୁନ୍ ୫ ତାରିଖରେ ବ୍ରିଗେଡ଼ିଅର ସ୍ମିଥ୍ ଏବଂ କର୍ଣ୍ଣେଲ୍ ରିଡଲ୍‌ଙ୍କୁ ହ୍ୟୁରୋଜଙ୍କ ସାହାଯ୍ୟ ପାଇଁ ପଠାଗଲା । ଏ ସୂଚନା ତାଙ୍କୁ ମିଳିଲା । ନିଜର ଚିରାଚରିତ ନୀତି ଅନୁସାରେ ହ୍ୟୁରୋଜ ଗୋଆଲିଅରର ସବୁଠୁଁ ଦୁର୍ବଳ ସ୍ଥାନଟି ଖୋଜି ବାହାର କଲେ । ସେହି ଦିଗରୁ ଆକ୍ରମଣ କରିବାର ନିଷ୍ପତ୍ତି ସେ ଗ୍ରହଣ କଲେ । ସେ କର୍ଣ୍ଣେଲ ରିଡଲ୍‌ଙ୍କୁ ଆଗ୍ରାଆଡୁ ଗୋଆଲିଅର ଯିବାକୁ କହିଲେ ତ ଅନ୍ୟ ଦିଗରେ ବ୍ରିଗେଡିଅର୍ ସ୍ମିଥ୍‌ଙ୍କୁ ଗୋଆଲିଅରରୁ ଚାରିମାଇଲ୍ ଦୂରରେ ଥିବା କୋଟାର ସରାଇଆଡୁ ଦକ୍ଷିଣପୂର୍ବ ଦିଗରୁ ଯିବାକୁ କହିଲେ ଏବଂ ହାଇଦ୍ରାବାଦ ପଲଟଣଙ୍କୁ ପେଶବାଙ୍କୁ ଦକ୍ଷିଣ–ମାର୍ଗରୁ ଅଟକାଇ ରଖିବାର ଦାୟିତ୍ୱ ଅର୍ପଣ କଲେ ।

ଜୁନ୍ ୫ ତାରିଖରେ ହ୍ୟୁରୋଜ କାଲ୍‌ପୀରୁ ଗୋଆଲିଅର ନିମନ୍ତେ ପ୍ରସ୍ଥାନ କଲେ । ଦିନବେଳା ଦେହ ପୋଡ଼ି ପକାଉଥିବା ଭୀଷଣ ଗରମ ଓ ଖରାରୁ ରକ୍ଷା ପାଇବା ପାଇଁ ସେ ରାତିରେ ଯାତ୍ରା କରିବାର କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ହ୍ୟୁରୋଜ ଲେଖିଥିଲେ "ଯମୁନା କୂଳରେ ଥିବା ଗାଁମାନଙ୍କରେ ଇଂରେଜମାନଙ୍କ ବିରୋଧରେ ଅତ୍ୟଧିକ ଅସନ୍ତୋଷ ଥିଲା । ବିଦ୍ରୋହ ଆରମ୍ଭ ହେବା ଦିନରୁ ଏମାନେ ବ୍ରିଟିଶ୍ ପ୍ରଶାସନର ଅଧିକାର ଭିତରେ ନ

ଥିଲେ । ସେଠାରେ ବିଦ୍ରୋହୀମାନଙ୍କର କବ୍‌ଜା ଏବଂ ପ୍ରଶାସନ ରହିଥିଲା । ପ୍ରତି ଗ୍ରାମରେ ଜଣେ ଦୁଇଜଣ ମରାଠୀ ବ୍ରାହ୍ମଣ ରହୁଥିଲେ ଯେଉଁମାନେ ଅତ୍ୟନ୍ତ ପ୍ରଭାବଶାଳୀ ଓ ସଫଳତାର ସହ ନାନାସାହେବ ପେଶବାଙ୍କର ପ୍ରଚାର କରୁଥିଲେ । ଆମର ପତ୍ରବିନିମୟ ଏବଂ ଆମର ଗତିବିଧିର ବିବରଣୀ ହାସଲ କରି ଗାଁର ଲୋକମାନେ ସେ ସମସ୍ତ ସୂଚନା ବିଦ୍ରୋହୀଙ୍କ ପାଖରେ ପହଞ୍ଚାଇ ଦେଉଥିଲେ । ଆମର ଜିନିଷପତ୍ର ବୋହୁଥିବା ବଳଦ ଯଦି ଥକି ଯାଉଥିଲେ କିମ୍ବା ଗାଡ଼ିବାଲା ଶୋଷ ମେଣ୍ଟାଇବା ପାଇଁ କେଉଁଠି ଅଟକି ଯାଉଥିଲେ ତେବେ ଗାଁ ଲୋକେ ସେମାନଙ୍କୁ ଲୁଟ୍ କରି ବିଦ୍ରୋହୀଙ୍କ ଜିମା ଦେଇ ଦେଉଥିଲେ । ଏପ୍ରକାରର ଘଟଣା ସେଠାରେ ସାଧାରଣ ଘଟଣା ହୋଇ ଯାଇଥିଲା ।'' (୧୮୫୭, ସିପାହିମାନଙ୍କର ଭିଡ଼ଭାଡ଼୍, ନ.ର. ଫାଟକ, ପୃଷ୍ଠା ୨୪୯)

ହ୍ୟୁରୋଜ ପୁନଶ୍ଚ ଲେଖିଛନ୍ତି– ବିଦ୍ରୋହୀ ସିପାହିମାନେ, ଇଂରେଜମାନଙ୍କ ଚାକିରିରେ କାର୍ଯ୍ୟରତ ଥିଲାବେଳେ ପିନ୍ଧୁଥିବା ନିଜର ପୋଷାକ ପରିଧାନ କରିବା ଜାରି ରଖିଥିଲେ । ସେହି ପୋଷାକ ସହିତ ଇଂରେଜ ଫଉଜରେ ଥିବାବେଳର ଅନ୍ୟ ସମସ୍ତ ବସ୍ତୁକୁ ମଧ୍ୟ ଠିକ୍ ସେତେବେଳ ପରି ବ୍ୟବହାର କରୁଥିଲେ । କେବଳ ଭାଷାରେ ହିଁ ସୈନିକମାନଙ୍କୁ ସଙ୍ଗଠିତ କରାଯାଉଥିଲା । ରାତିର ଅନ୍ଧକାର ଭିତରେ ସେମାନଙ୍କର ଗତିବିଧି ଜାରି ରହୁଥିଲା, ଯାହାର କୋଳାହଳ ଆମକୁ ସ୍ପଷ୍ଟ ଭାବରେ ଶୁଣାଯାଉଥିଲା । ଇଂରେଜମାନେ ସେମାନଙ୍କୁ ଯେଉଁସବୁ କଥା ଶିଖାଇଥିଲେ, ସେମାନେ ଏସବୁର ବ୍ୟବହାର କରୁଥିଲେ ।

ହ୍ୟୁରୋଜ ଯେତେ ଯେତେ ଆଗକୁ ବଢ଼ିବାକୁ ଲାଗିଲେ, ରାସ୍ତାରେ ତାଙ୍କୁ ବିଦ୍ରୋହୀ ସିପାହିଙ୍କର ଦଳ ସହିତ ମୁକାବିଲା କରିବାକୁ ପଡୁଥିଲା । ଉଭୟଙ୍କ ମଧ୍ୟରେ ଛୋଟ ମୋଟ ଲଢ଼େଇ ହେଉଥିଲା । ସବୁଦିନ ପରି ବିଦ୍ରୋହୀ ସିପାହିମାନେ ଇଂରେଜ ଫଉଜରେ ଥିବା ହିନ୍ଦୁସ୍ଥାନୀ ସିପାହିମାନଙ୍କୁ ଗାଳି ଦେଉଥିଲେ । ଦେଶ, ଧର୍ମ ପାଇଁ ଲଢ଼ିବା ଛାଡ଼ି ଗାଈ, ଘୁଷୁରିର ଚର୍ବି ଖାଉଥିବା ଅତ୍ୟାଚାରୀ ଫିରିଙ୍ଗିଙ୍କ ପକ୍ଷରେ ଲଢ଼ିବା ଯୋଗୁଁ ତାଙ୍କର ନିନ୍ଦା କରୁଥିଲେ । ସେହି କାରଣରୁ ମୁମ୍ବଇର ପଦାତିକ ସୈନ୍ୟଙ୍କ ମଧ୍ୟରୁ ଅଧିକାଂଶ ସୈନ୍ୟ ବିଦ୍ରୋହୀଙ୍କ ଦଳରେ ସାମିଲ୍ ହୋଇଯାଇଥିଲେ । ଏହା ଦେଖି ହ୍ୟୁରୋଜ ଖୁବ୍ ଚିନ୍ତିତ ହୋଇପଡ଼ିଥିଲେ । ତାଙ୍କର ଭୟ ଥିଲା ଯେ ତାଙ୍କ ସୈନ୍ୟବାହିନୀର ହିନ୍ଦୁସ୍ଥାନୀ ସିପାହିମାନେ ଯଦି ବିଦ୍ରୋହୀଙ୍କ ସହିତ ମିଶିଯିବେ, ତା'ହେଲେ ତାଙ୍କ ସୈନ୍ୟମାନଙ୍କର ସଂଖ୍ୟା କମି କମି ଯିବ । ସୈନ୍ୟମାନଙ୍କ ଭିତରେ ଅନୁଶାସନହୀନତା ସୃଷ୍ଟି ହୋଇଯିବ । କିନ୍ତୁ ଏପରି ହୋଇ ନ ଥିଲା ।

ଜୁନ୍ ୧୬ ତାରିଖରେ ହ୍ୟୁରୋଜ ଗୋଆଲିଅରଠାରୁ ନ ମାଇଲ ଏବଂ ମୋରାର ଛାଉଣୀଠାରୁ ପାଞ୍ଚମାଇଲ ଦୂରରେ ଯାଇ ପହଞ୍ଚିଲେ । ଏହି ମୋରାର ଛାଉଣୀରେ ବିଦ୍ରୋହୀମାନେ ନିଜର ଶିବିର ପକାଇଥିଲେ । ଗୁପ୍ତଚରମାନେ ହ୍ୟୁରୋଜଙ୍କୁ ଏହି ସୂଚନା ଦେଇଥିଲେ । ଏହା ଜାଣିବାମାତ୍ରେ ହ୍ୟୁରୋଜ ମୋରାର ଛାଉଣୀ ଉପରେ ଚଢ଼ାଉ କରିବାକୁ

ସ୍ଥିର କଲେ । ତାଙ୍କର ଫଉଜ ଯାତ୍ରାଯୋଗୁଁ ଥକି ପଡ଼ିଥିଲେ । ଅଫିସରମାନେ ମଧ୍ୟ ଥକି ପଡ଼ିଥିଲେ । ଏକଥା ଜାଣି ମଧ୍ୟ ସେ ସେହିଦିନ ଆକ୍ରମଣ କରିବାର ନିର୍ଣ୍ଣୟ ନେଲେ । କାରଣ ସେ ସମୟ ନଷ୍ଟ କରିବା ଚାହୁଁ ନ ଥିଲେ । ଶତ୍ରୁକୁ ସେ କୌଣସିପ୍ରକାର ସତର୍କତା ଅବଲମ୍ବନ କରିବାର ସୁଯୋଗ ଦେବାକୁ ଚାହୁଁ ନ ଥିଲେ ।

ଏସବୁ ସତ୍ତ୍ୱେ ଶତ୍ରୁକୁ ହତୋତ୍ସାହ କରିଦେବାର ତାଙ୍କର ଅନ୍ୟ ପ୍ରୟାସ ମଧ୍ୟ ଜାରି ରହିଥିଲା । ୧୮୫୮ ଜୁନ୍ ୧୦ ତାରିଖରେ ଗଭର୍ଣ୍ଣର ଜେନେରାଲ୍‌ଙ୍କ ତରଫରୁ ହ୍ୟୁରୋଜ ବାନ୍ଦାର ନବାବ ଅଲୀ ବାହାଦୁର ଏବଂ ରାଣୀ ଲକ୍ଷ୍ମୀବାଈଙ୍କୁ ଧରାଇଦେଲାବାଲାଙ୍କୁ ପୁରସ୍କାର ଦେବାର ଘୋଷଣା ମଧ୍ୟ କରିଥିଲେ ।

ଗୋଆଲିଅରର କିଲ୍ଲା ଦିଲ୍ଲୀ ଏବଂ ଆଗ୍ରାର କିଲ୍ଲାଠାରୁ ପୂରାପୂରି ଭିନ୍ନ ଥିଲା । ଏହାକୁ ଦେଖିଲାମାତ୍ରେ ମନରେ ଚାପ ସୃଷ୍ଟି ହୋଇଯାଉଥିଲା । ଭୂମିଠାରୁ ତିନିଶହଫୁଟ ଉଚ୍ଚରେ ବିଶାଳ ଉଚ୍ଚ ପାହାଡ଼ ଉପରେ ଏହି ଦୁର୍ଗ ନିର୍ମାଣ କରାଯାଇଥିଲା । ଦୁର୍ଗର ବୁରୁଜ, ପାଚିରି ଦୂରରୁ ଏପରି ଦେଖାଯାଉଥିଲା, ସତେକି କେହି ଚିତ୍ରକର ନିଜର ତୂଳୀ ଧରି ଦିଗ୍‌ବଳୟରେ ଏକ ସୁନ୍ଦର ଚିତ୍ର ଆଙ୍କିଦେଇଛି । କିଲ୍ଲାର ଦୈର୍ଘ୍ୟ ପ୍ରାୟ ଦୁଇମାଇଲଠାରୁ ସାମାନ୍ୟ ଊଣା ଥିଲା ଏବଂ ଏହାର ପ୍ରସ୍ଥ କେଉଁଠାରେ ଛଅଶହ ଫୁଟ ତ କେଉଁଠି ଦୁଇହଜାର ଆଠଶହ ଫୁଟ ପର୍ଯ୍ୟନ୍ତ ଥିଲା । ଏହିପରି ଏହି ଦୁର୍ଗ ବିଶାଳ, ମଜବୁଦ୍ ଓ ସୁରକ୍ଷିତ ତ ଥିଲା, ତତ୍‌ସହିତ ଏହା ଏକ ଶକ୍ତିଶାଳୀ ରାଜସତ୍ତାର ପ୍ରତୀକ ପରି ଲାଗୁଥିଲା ।

ଗୋଆଲିଅରର ଏହି ବିଶାଳ କିଲ୍ଲା ଏବେ ପେଶବାମାନଙ୍କର ଅଧିକାରରେ ଥିଲା । ବିପୁଳ ସମ୍ପତ୍ତିର ଭଣ୍ଡାର ମଧ୍ୟ ପେଶବାଙ୍କ ହାତକୁ ଆସିଯାଇଥିଲା । ସିନ୍ଧିଆଙ୍କ ସମସ୍ତ ଫଉଜ ତାଙ୍କ ଫଉଜରେ ସାମିଲ ହୋଇଯାଇଥିଲେ । ସମାରୋହପୂର୍ବକ ଦରବାର ଆୟୋଜନ କରି ଏହାର ବିଧିବଦ୍ଧ ଘୋଷଣା କରି ଦିଆଯାଇଥିଲା । ରାଓସାହେବ ପେଶବା ପୂରାପୂରି ଆଶ୍ୱସ୍ତ ହୋଇଯାଇଥିଲେ । ବିଜୟର ଖୁସି ପାଳନ କରୁଥିଲେ । ଏହି ଖୁସିପାଳନ କିଛିଦିନ ପାଇଁ ଚାଲିଲା । ଏହି ବିଜୟଶ୍ରୀ ଏହିପରି ଜାରି ରହୁ, ସେଥିପାଇଁ ବ୍ରାହ୍ମଣଙ୍କ ଆଶୀର୍ବାଦ ପାଇବାକୁ ପ୍ରତିଦିନ ବ୍ରାହ୍ମଣ ଭୋଜନର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଆଗାମି ଭବିଷ୍ୟତ୍ ଜାଣିବା ପାଇଁ ଜ୍ୟୋତିଷମାନଙ୍କୁ ଡକାଇ, ସେମାନଙ୍କୁ ଆଗରେ ବସାଇ ଗ୍ରହ-ନକ୍ଷତ୍ର ଗଣନା ମଧ୍ୟ କରାଯିବାରେ ଲାଗିଲା । ଦୁଇ ହାତରେ ଦାନ-ଦକ୍ଷିଣା ଦିଆଯିବାରେ ଲାଗିଲା । ରାଓସାହେବଙ୍କ ଅଧିକାଂଶ ସମୟ ଏଇଥିରେ ଅତିବାହିତ ହେବାରେ ଲାଗିଲା ।

ରାଣୀ ଲକ୍ଷ୍ମୀବାଈଙ୍କୁ ଏସବୁ ବିଲ୍‌କୁଲ୍ ପସନ୍ଦ ନ ଥିଲା । ସେ ଭୋଜିଭାତରେ ଆଦୌ ଅଂଶଗ୍ରହଣ କଲେ ନାହିଁ । କୌଣସି ଜ୍ୟୋତିଷଙ୍କୁ ମଧ୍ୟ ଡକାଇଲେ ନାହିଁ । ଦରବାରରେ ମଧ୍ୟ ସେ କେବେ ଉପସ୍ଥିତ ରହି ନ ଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଦିନେ ନା ଦିନେ ତାଙ୍କର ପିଛା କରି ଇଂରେଜ ସୈନ୍ୟ ଏଠାରେ ନିଶ୍ଚୟ ପହଞ୍ଚିଯିବେ । ପ୍ରତିଦିନ ଏପରି ଅନ୍ନ-ଛତ୍ର ଚଳାଇବା ବଦଳରେ ସୈନିକମାନଙ୍କର ପ୍ରତିଦିନ ସମରାଭ୍ୟାସ

ଓ ପରେଡ୍ କରାଇବା ଜରୁରି ଅଟେ । ଜ୍ୟୋତିଷଙ୍କ ସହିତ ବସି ଗ୍ରହ-ନକ୍ଷତ୍ର ଗଣନା କରିବା ବଦଳରେ ସରଦାର ଓ ସେନାପତିମାନଙ୍କ ସହିତ ବସି, ଆଲୋଚନା କରି ଆଗାମି ଯୋଜନା ପ୍ରସ୍ତୁତ କରିବା ଅଧିକ ଜରୁରି ଅଟେ । ରାଣୀ ସର୍ବଦା ଏହିସବୁ କଥା ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । କିନ୍ତୁ ରାଓସାହେବ ଏହାର ଆବଶ୍ୟକତା ଅନୁଭବ କରୁ ନ ଥିଲେ ।

ରାଣୀ ଲକ୍ଷ୍ମୀବାଈ ନିଜର ଦୁଇ-ଅଢ଼େଇଶହ ଘୋଡ଼ସବାରଙ୍କୁ ପ୍ରତିଦିନ ଅଭ୍ୟାସ କରାଇବା ଜାରି ରଖିଲେ । ଛାଉଣୀରେ ବୁଲି ସିପାହିମାନଙ୍କୁ ପଚରାଉଚରା କରୁଥିଲେ । ସେମାନଙ୍କର ସାହସ ଏବଂ ମନୋବଳ ମଧ୍ୟ ବଢ଼ାଉଥିଲେ । ଇଂରେଜମାନଙ୍କୁ ବାଧା ଦେବାପାଇଁ ଗୋଆଲିଅର ଆଖପାଖର ଅଲଗା ଅଲଗା ଘାଟିରେ କେଉଁଠି କେଉଁଠି ଘୋଡ଼ସବାରଙ୍କୁ ନିଯୁକ୍ତ କରାଯିବ, କେଉଁ କେଉଁ ସ୍ଥାନରେ ପଦାତିକ ସୈନ୍ୟମାନଙ୍କୁ ରଖାଯିବ, ଆମର ବ୍ୟୂହରଚନା କିପରି ହେବ, ଏ ସବୁ ବିଷୟରେ ସେ ଚର୍ଚ୍ଚା କରୁଥିଲେ ।

ରାଜକୋଷରେ ଧନ ବୃଦ୍ଧି କରିବା ଲାଗି ରାଓସାହେବ ନୂଆ କର ଲାଗୁ କଲେ ଏବଂ ଗାଁର ପଚିଶଜଣ ଲୋକଙ୍କୁ ସୈନ୍ୟବାହିନୀରେ ଭର୍ତ୍ତି କରିବାକୁ ଗାଁର ପ୍ରଧାନ ଦାୟିତ୍ୱ ନେବାପାଇଁ ହୁକୁମ୍ ଜାରି କଲେ । ଏହି ସମସ୍ତ ଉଦ୍ୟମ ଜାରି ରହିବା ଭିତରେ ବାୟଜାବାଈଙ୍କୁ ଗୋଆଲିଅର ଫେରାଇ ଆଣିବାର ଚେଷ୍ଟା ମଧ୍ୟ ଚାଲିଥିଲା । ୧୮୫୮ ମସିହା ଜୁନ୍ ୯ ତାରିଖରେ ବାୟଜାବାଈଙ୍କର ଦୂତ ଦରବାରରେ ହାଜର ହେଲେ । ଦୂତ ରାଓସାହେବଙ୍କୁ ବାୟଜାବାଈଙ୍କ ବାର୍ତ୍ତା ଦେଲା ଯେ – ''ଆପଣଙ୍କର ଯେତେ ଟଙ୍କା ଦରକାର ରାଜକୋଷରୁ ନେଇଯାନ୍ତୁ । ଯେତେ ସୈନ୍ୟ, ତୋପ, ଗୋଳାବାରୁଦ ନବାର ନେଇଯାଆନ୍ତୁ ଏବଂ ଏଠାରୁ ଚାଲିଯାନ୍ତୁ । ଏହା ପରେ ହିଁ ବାୟଜାବାଈ ଗୋଆଲିଅର ଫେରିବେ ।''

ନିଜ ଉତ୍ତରରେ ରାଓସାହେବ ବାୟଜାବାଈଙ୍କୁ କହିଲେ ଯେ- ''ଯଦି ସେ ଗୋଆଲିଅର ଫେରି ଆସିବାକୁ ଚାହୁଁଛନ୍ତି ତ ଏକ ସପ୍ତାହ ମଧ୍ୟରେ ଏଠାରେ ପହଞ୍ଚିଯାନ୍ତୁ । ତା'ପରେ କ'ଣ କରିବାକୁ ହେବ, ଆମେ ତା'ର ନିଷ୍ପତ୍ତି କରିବୁ ।'' (ବୁନ୍ଦେଲଖଣ୍ଡ, ସିହ୍ନା, ପୃଷ୍ଠା-୧୫୪)

ଜୁନ୍ ୧୬ ତାରିଖରେ ହ୍ୟୁରୋଜ ମୋରାର ଛାଉଣୀ ଉପରେ ଆକ୍ରମଣ କରିଦେଲେ । ସାମାନ୍ୟ ଲଢ଼େଇ ପରେ ସେ ଛାଉଣୀ ଉପରେ କବ୍‌ଜା କରିନେଲେ । ଏହାଫଳରେ ଆଗ୍ରାଆଡ଼କୁ ଯାଇଥିବା ରାସ୍ତା ମଧ୍ୟ ତାଙ୍କ ଅଧିକାରକୁ ଆସିଗଲା । ଆଗ୍ରାରୁ ଆସୁଥିବା ବ୍ରିଗେଡ଼ିୟରଙ୍କ ସହିତ ସଂପର୍କ ସ୍ଥାପନ କରିବା ପାଇଁ ତାଙ୍କୁ ସହଜ ହୋଇଗଲା ।

ଜୁନ୍ ୧୭ ତାରିଖ ସକାଳ ସାତଟାବେଳେ ବ୍ରିଗେଡ଼ିୟର୍ ସ୍ମିଥ୍ ଗୋଆଲିଅରଠାରୁ ୪ ମାଇଲ୍ ଦୂରରେ ଥିବା କୋଟା ଉପକଣ୍ଠରେ ଆସି ପହଞ୍ଚିଗଲେ । ଏଠାରୁ ଗୋଆଲିଅର ଯାଉଥିବା ରାସ୍ତା ଛୋଟ ଛୋଟ ପାହାଡ଼, ଅଧିକ ବୁଲାଣି, ସଂକୀର୍ଣ୍ଣ ଘାଟି ଓ ନଦୀନାଳପୂର୍ଣ୍ଣ ଥିଲା । ପ୍ରତି ମୋଡ଼ରେ ବିଦ୍ରୋହୀ ସିପାହିମାନଙ୍କର ବିରୋଧର ସାମ୍ନା କରି କରି ସ୍ମିଥ୍

ଗୋଟିଏ ଗୋଟିଏ ଇଞ୍ଚ ଅଗ୍ରସର ହେଉଥିଲେ । ଥରେ ଏହି ଇଲାକା କବ୍‌ଜାକୁ ଆସିଗଲେ ହ୍ୟୁରୋଜ, ବ୍ରିଗେଡ଼ିଅର ସ୍ମିଥ୍ ଏବଂ କର୍ଣ୍ଣେଲ ରିଡଲ୍‌ଙ୍କ ପାଇଁ ରାସ୍ତାର ସବୁଠୁଁ ବଡ଼ ପ୍ରତିବନ୍ଧକ ଦୂର ହୋଇ ତିନିଜଣଯାକ ପରସ୍ପରର ଅଧିକ ନିକଟବର୍ତ୍ତୀ ହୋଇପାରିବେ ଏବଂ ତା'ପରେ ଏକଜୁଟ ହୋଇ ପେଶବାଙ୍କ ଫଉଜ ଉପରେ ସଫଳତାପୂର୍ବକ ଆକ୍ରମଣ କରିପାରିବେ । ଏହି କାରଣରୁ ଉକ୍ତ ଅଞ୍ଚଳ ଉପରେ କବ୍‌ଜା କରିବା ଅତ୍ୟଧିକ ମହତ୍ତ୍ୱପୂର୍ଣ୍ଣ ଥିଲା । ଏହି ଅଞ୍ଚଳରେ ସେମାନଙ୍କର ସର୍ବପ୍ରଥମ ମୁକାବିଲା ରାଣୀ ଲକ୍ଷ୍ମୀବାଈଙ୍କ ସହିତ କରିବାର ଥିଲା ।

## ସୂର୍ଯ୍ୟାସ୍ତ

ସେଦିନ ସକାଳୁ ରାଣୀ ଲକ୍ଷ୍ମୀବାଈ ପ୍ରତିଦିନ ପରି ପୁରୁଷ ପୋଷାକ ପରିଧାନ କରି ପ୍ରସ୍ତୁତ ଥିଲେ । ସେ ଜାଣିଥିଲେ ଯେ ସ୍ମିଥ୍ ନିଶ୍ଚିତଭାବରେ ଆଗକୁ ଯାତ୍ରା କରିବେ । ଫୁଲବାଗର ନିଜ ଶିବିରରେ ବସି ସେ ସରବତ୍ ପିଉଥିଲାବେଳେ ତାଙ୍କୁ ଖବର ମିଳିଲା ଯେ ସ୍ମିଥ୍ କୋଟାର ସରାଇରୁ ଆକ୍ରମଣ କରିବେ । ରାଣୀ ଦାମୋଦରରାଓଙ୍କୁ ରାମଚନ୍ଦ୍ରରାଓଙ୍କ ଜିମା ଦେଲେ । ମୁନ୍ଦର ଏବଂ କାଶୀ ତ ପ୍ରସ୍ତୁତ ଥିଲେ ହିଁ । ଅନବରତ ଯୁଦ୍ଧ ଯୋଗୁଁ ରାଣୀଙ୍କର ନିଜର ସ୍ୱତନ୍ତ୍ର ଘୋଡ଼ାଟି ଥକି ପଡ଼ିଥିଲା । ସେଥିପାଇଁ ସେଦିନ ସିନ୍ଧିଆଙ୍କ ଅସ୍ତାବଲରୁ ଆଉ ଗୋଟିଏ ହୃଷ୍ଟପୁଷ୍ଟ ଏବଂ ଚିକ୍କଣ ଘୋଡ଼ାକୁ ରାଣୀଙ୍କ ନିମନ୍ତେ ପ୍ରସ୍ତୁତ କରାଗଲା । ତା' ଉପରେ ସବାର ହୋଇ ରାଣୀ ଅଶ୍ୱ ହାଙ୍କିଲେ । ଛାଉଣୀରୁ ବାହାରକୁ ବାହାରିଲେ ଏବଂ ପବନ ଗତିରେ ପୂର୍ବ ଦିଗକୁ ଅଗ୍ରସର ହେଲେ । ସେ ସମୟରେ ତାଙ୍କର ଜବରଦସ୍ତ ଫୂର୍ତ୍ତି ଏବଂ ଉତ୍ସାହ ଦେଖିବାପରି ଥିଲା । ଅସିଚାଳନାର ଗତି ଏବଂ ପ୍ରହାର ସ୍ତମ୍ଭିତ କରିଦେଲାପରି ଥିଲା । ତଡ଼ିତ୍ ଗତିରେ ଅସିପ୍ରହାର କରି କରି ସମ୍ମୁଖରୁ ମୁକାବିଲା କରୁଥିବା ଫିରିଙ୍ଗି ସିପାହିଙ୍କୁ ସେ ନିଜର ପ୍ରହାରରେ ଆହତ କରିବାକୁ ଲାଗିଲେ, ନିହତ କରିବାକୁ ମଧ ଲାଗିଲେ । ତାଙ୍କର ଏହି ରୌଦ୍ରରୂପ ଦେଖି ତାଙ୍କ ପଲଟଣର ସିପାହିମାନେ ଖୁବ୍ ଉତ୍ସାହିତ ହୋଇପଡ଼ିଲେ ଏବଂ ପୂର୍ଣ୍ଣପ୍ରାଣରେ ଲଢ଼ିବାକୁ ଲାଗିଲେ । ବନ୍ଧୁକର ଜବାବ ବନ୍ଧୁକରେ ଦିଆଯିବାରେ ଲାଗିଲା । ଏହା ଦେଖି ସ୍ମିଥ୍ କିଛି ପଛକୁ ହଟିଆସି ନିଜର ତୋପଗୁଡ଼ିକୁ ଆଗକୁ କରିଦେଲେ । ରାଣୀଙ୍କର ଶକ୍ତିଶାଳୀ ଅଶ୍ୱାରୋହୀମାନେ ସ୍ମିଥ୍‌ଙ୍କ ସେନା ଉପରେ ଝାମ୍ପି ପଡ଼ିଲେ । ଉଭୟ ପକ୍ଷ ମଧ୍ୟରେ ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । ଏପରି ଲାଗୁଥିଲା ଯେପରି ରାଣୀ ସ୍ମିଥ୍‌ଙ୍କୁ ପୂରାପୂରି ପଛକୁ ହଟାଇଦେବେ । ରାଣୀଙ୍କ ଫଉଜଙ୍କ ଉତ୍ସାହ ଦ୍ୱିଗୁଣିତ ହୋଇଗଲା । ବିଜୟର ଉଲ୍ଲାସ ଗୁଞ୍ଜରଣ ସୃଷ୍ଟି କରିବାକୁ ଲାଗିଲା । ପଦାତିକ ପଦାତିକଙ୍କ ସହିତ ଭିଡ଼ିଗଲେ । ତରବାରିର ଝଣତ୍କାର ଶୁଣାଯିବାରେ ଲାଗିଲା । ତୋପର ଗୋଳା ଗର୍ଜନ କରିବାକୁ ଲାଗିଲା । ଦୁଇପକ୍ଷର ଅଶ୍ୱାରୋହୀଙ୍କ ଧାଁ ଦଉଡ଼ରେ ଧୂଳିର ବାଦଲ ଉଠି ଚତୁର୍ଦ୍ଦିଗରେ ଛାଇଗଲା ।

ଖରା, ଗରମ ଧୂଆଁ, ଧୂଳି ଏବଂ ଝାଳରେ ସିପାହିମାନେ ଲୁପ୍ତ ହୋଇପଡ଼ିଲେ । ତଥାପି ପ୍ରତ୍ୟେକ ସିପାହି ପ୍ରାଣମୂର୍ଚ୍ଛା ଲଢୁଥିଲେ । ରାଣୀ ମଧ୍ୟ ବିଜୁଳି ପରି ସମସ୍ତଙ୍କ ଉପରେ ଝାମ୍ପିପଡ଼ି ପ୍ରହାର କରିବାରେ ଲାଗିଲେ । ତାଙ୍କୁ ଏପରି ଭାବରେ ଲଢ଼ିବାର ଦେଖି ସିପାହିମାନେ ଅଧିକରୁ ଅଧିକ ସ୍ଫୂର୍ତ୍ତିରେ ଲଢ଼ିବାକୁ ଲାଗିଲେ । ଏହା ଦେଖି ଇଂରେଜମାନେ ଅବାକ୍ ହୋଇଗଲେ । ସେମାନେ ମଧ୍ୟ ଲଢ଼ି ଚାଲିଥିଲେ ।

ଇତିମଧ୍ୟରେ ବ୍ରିଗେଡ଼ିଅର୍ ସ୍ମିଥ୍‌ଙ୍କର ସତେଜ ଅଶ୍ୱାରୋହୀ ଦଳ ଦ୍ରୁତ ଗତିରେ ନିକଟସ୍ଥ ପାହାଡ଼ରୁ ତଳକୁ ଗଡ଼ିଲେ । ଅନ୍ୟ ପଟରେ କର୍ଣ୍ଣେଲ ରିଡଲ୍‌ଙ୍କର ସୈନ୍ୟଦଳ ମଧ୍ୟ ସେଠାରେ ପହଞ୍ଚିଗଲେ । ପଛରୁ ଓ ଆଗରୁ ଇଂରେଜ ସୈନ୍ୟ ଅଚାନକ ପହଞ୍ଚିଯିବାରୁ ରାଣୀଙ୍କର ମାତ୍ର ଦୁଇଶହ ଅଶ୍ୱାରୋହୀଙ୍କର ସେମାନଙ୍କର ସାମ୍‌ନା କରିବା କଷ୍ଟକର ହୋଇପଡ଼ିଲା । ରାଣୀ ବୁଝିଗଲେ ଯେ ବର୍ତ୍ତମାନ ଏଠାରେ ରହିବା ବିପଦମୁକ୍ତ ନୁହେ । ସେ ତୀବ୍ରଗତିରେ ନିଜର ଘୋଡ଼ାକୁ ସେହି ଘେର ଭିତରରୁ ବାହାର କରିନେଲେ । ସେତେବେଳେ ତାଙ୍କ ପଛେ ପଛେ ଦଶ–ବାରଜଣ ଅଶ୍ୱାରୋହୀ ମଧ୍ୟ ଭିଡ଼ ଭିତରୁ ବାହାରି ଆସିଲେ । ମୁନ୍ଦର ଏବଂ କାଶୀ ତ ରାଣୀଙ୍କ ପଛେ ପଛେ ହିଁ ଥିଲେ ।

ମଝିରେ ମୁନ୍ଦରଙ୍କୁ ଗୁଳି ବାଜିଲା, ଘୋଡ଼ାରୁ ଖସି ପଡୁ ପଡୁ ସେ ଚିତ୍କାର କଲେ "ମରିଗଲି, ମରିଗଲି, ବାଈସାହେବ ମୁଁ ମରିଗଲି" । ରାଣୀ ତୁରନ୍ତ ନିଜର ଘୋଡ଼ାକୁ ଫେରାଇନେଲେ । ମୁନ୍ଦର ମରି ପଡ଼ିଥିଲେ । ଜଣେ ଅଶ୍ୱାରୋହୀଙ୍କୁ ତାଙ୍କର ମୃତଶରୀର ଉଠାଇନେବାକୁ ଆଦେଶ ଦେଇ ରାଣୀ ଆଗକୁ ଚାଲିଲେ ।

ଯାଉ ଯାଉ ବାଟରେ ଏକ ଛୋଟ ପାଣିନାଳ ପଡ଼ିଲା । ପ୍ରତିଥର ପରି ଲକ୍ଷ୍ମୀବାଈ ନାଳ ପାରିହେବାକୁ ଘୋଡ଼ାକୁ ଏଡ଼ି ଲଗାଇ ହାଙ୍କିଲେ । କିନ୍ତୁ ଘୋଡ଼ା ଅଡ଼ିଯାଇ ସ୍ଥିର ହୋଇଗଲା । ସେ କୌଣସି ପ୍ରକାରେ ନାଳ ପାରିହେବାକୁ ପ୍ରସ୍ତୁତ ହେଲା ନାହିଁ । ଘୋଡ଼ା ନୂଆ ଥିଲା, ରାଣୀଙ୍କର ପରିଚିତ ନ ଥିଲା । ଦୁହେଁ ପରସ୍ପର ସହିତ ଅଭ୍ୟସ୍ତ ନ ଥିଲେ । ନିଜର ପିଲାଦିନରୁ କୁଶଳତାପୂର୍ବକ ସାରାଜୀବନ ଉତ୍କୃଷ୍ଟ ଘୋଡ଼ସବାରୀ କରିଥିବା ରାଣୀ ସବୁପ୍ରକାରର ଚେଷ୍ଟା କଲେ । କିନ୍ତୁ ଘୋଡ଼ା ସେମିତି ନିଶ୍ଚଳ ହୋଇ ରହିଲା । ଏହା ମଧ୍ୟରେ ଇଂରେଜ ଅଶ୍ୱାରୋହୀମାନେ ସେଠାରେ ଆସି ପହଞ୍ଚିଗଲେ । ଅସି ଯୁଦ୍ଧ ଆରମ୍ଭ ହୋଇଗଲା । ରାଣୀ ଘୋଡ଼ାକୁ ଖୁବ୍ ସାକୁଲାସାକୁଲି କଲେ କିନ୍ତୁ ଘୋଡ଼ା ପୂରାପୂରି ଅଡ଼ି ରହିଥିଲା । ସେତିକିବେଳେ ଜଣେ ଅଶ୍ୱାରୋହୀ ପଛରୁ ଆସି ରାଣୀଙ୍କ ମୁଣ୍ଡରେ ପ୍ରହାର କଲା । ରାଣୀଙ୍କ ମୁଣ୍ଡର ଡାହାଣପାଖ ଅଲଗା ହୋଇଗଲା । ଡାହାଣ ଆଖି ମଧ୍ୟ ଛିଡ଼ି ବାହାରିଗଲା । ରାଣୀ ନିଜକୁ ସଂଭାଳିବାକୁ ଚେଷ୍ଟା କରୁ କରୁ ଆଉ ଏକ ପ୍ରହାର ତାଙ୍କ ଛାତିରେ ପଡ଼ିଲା । ରାଣୀ ଘୋଡ଼ା ଉପରୁ ତଳକୁ ଖସି ପଡ଼ିଲେ । ସେ ଗଳାରେ ମୁକ୍ତାର ବହୁମୂଲ୍ୟ କଣ୍ଠି ପିନ୍ଧିଥିଲେ । ଇଂରେଜ ସିପାହିମାନେ ସେହି କଣ୍ଠିକୁ କାଢ଼ିନେଇ ଆଗକୁ ବାହାରିଗଲେ । ସେମାନଙ୍କୁ ଏହା ଆଦୌ ଜଣା ନ ଥିଲା ଯେ ସେମାନେ ଯାହାକୁ ନିଧନ

କରିଛନ୍ତି ସେ ଆଉ କେହି ନୁହନ୍ତି ଇଂରେଜଙ୍କ ମନରେ ଆତଙ୍କ ଖେଳାଇ ଦେଇଥିବା କଡ଼କବିଜୁଳି ଝାନ୍ସୀର ରାଣୀ ଅଟନ୍ତି । ତାଙ୍କର ପୁରୁଷ ବେଶପୋଷାକ ଦେଖି ସେହି ସିପାହିମାନେ ରାଣୀଙ୍କୁ ଜଣେ ତରୁଣ ସରଦାର ବୋଲି ଭାବି ନେଇଥିଲେ ଏବଂ ତାଙ୍କ ଗଳାରୁ ମୁକ୍ତାମାଳ ଲୁଟ୍‌କରି ଆଗରେ ଯାଉଥିବା ଘୋଡ଼ସବାରମାନଙ୍କୁ ପିଛା କରିବାପାଇଁ ଆଗକୁ ଚାଲିଯାଇଥିଲେ ।

ଯୁଦ୍ଧ ଆରମ୍ଭ ହେବା ଦିନରୁ ରାଣୀ ଲକ୍ଷ୍ମୀବାଈ ଇଚ୍ଛା ବ୍ୟକ୍ତ କରିଥିଲେ ଯେ ତାଙ୍କ ଶରୀର ଜୀବିତ କିମ୍ବା ମୃତାବସ୍ଥାରେ ମଧ୍ୟ ଯେପରି ଇଂରେଜମାନଙ୍କ ହାତରେ ନ ପଡ଼େ । ଯଦି ତାଙ୍କର ମୃତ୍ୟୁ ହୋଇଯାଏ ତେବେ ନିୟମ ଅନୁସାରେ ତାଙ୍କ ଶରୀରର ଅନ୍ତିମ ସଂସ୍କାର କରି ଦିଆଯିବ, ଏପରି ପ୍ରତିଶ୍ରୁତି ସେ ତାଙ୍କର ନିକଟତମ ବ୍ୟକ୍ତିମାନଙ୍କଠାରୁ ପ୍ରଥମରୁ ହିଁ ଆଦାୟ କରିଥିଲେ । ରାଣୀଙ୍କୁ ଜୀବିତ କିମ୍ବା ମୃତ ଧରାଇଦେବା ଲୋକଙ୍କ ପାଇଁ ଇଂରେଜ ସରକାରର ପୁରସ୍କାର ଘୋଷଣା କଥା ରାଣୀଙ୍କୁ ଜଣାଥାଇପାରେ କିମ୍ବା ଜଣା ନ ଥାଇ ବି ପାରେ । କିନ୍ତୁ ତାଙ୍କର ଶରୀର ଫିରିଙ୍ଗିଙ୍କର ହାତରେ ପଡ଼ିବାର କଳ୍ପନା ତାଙ୍କପାଇଁ ଅସହନୀୟ ଥିଲା । ସେ ଏତିକି ଚାହୁଁଥିଲେ ଯେ ତାଙ୍କ ଶରୀର ଶତ୍ରୁଙ୍କ କବ୍‌ଜାକୁ ଯିବା ଉଚିତ ନୁହେଁ ।

ରାଣୀଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳନ କରିବାର ଉଚିତ ସମୟ ଏବେ ଉପସ୍ଥିତ । ରାଣୀ ଯେଉଁ ସ୍ଥାନରେ ଘୋଡ଼ାରୁ ଖସି ପଡ଼ିଥିଲେ, ତା'ରି ପାଖରେ ଗଙ୍ଗାଦାସ ନାମକ ଜଣେ ସନ୍ନ୍ୟାସୀଙ୍କର କୁଟୀର ଥିଲା । ରାମଚନ୍ଦ୍ରରାଓ ଦେଶମୁଖ ତାଙ୍କର ଶରୀରକୁ ସେହି କୁଟୀର ଭିତରକୁ ନେଇଗଲେ ଏବଂ ତା'ପରେ ଘାସଗଦା ଉପରେ ରଖି ତାଙ୍କର ଅନ୍ତିମ ସଂସ୍କାର କରିଦେଲେ । ରାଣୀ ଲକ୍ଷ୍ମୀବାଈ ଅନନ୍ତରେ ବିଲୀନ ହୋଇଗଲେ ।

ରାଣୀ ଲକ୍ଷ୍ମୀବାଈଙ୍କର ସମଗ୍ର ଜୀବନ ମାତ୍ର ୨୬-୨୭ ବର୍ଷ ମଧ୍ୟରେ ସୀମିତ ଥିଲା । ଆତ୍ମସମ୍ମାନର ସହିତ ବଞ୍ଚିବା ପାଇଁ ତାଙ୍କୁ ନିୟତି ସହ ଲଢ଼ିବାକୁ ପଡ଼ିଥିଲା । ତାଙ୍କର ସୁଗୁଣସମ୍ପନ୍ନ ବ୍ୟକ୍ତିତ୍ୱର ପ୍ରଶଂସା ଶତ୍ରୁମାନେ ମଧ୍ୟ କରିଛନ୍ତି । ରାଣୀ ଲକ୍ଷ୍ମୀବାଈଙ୍କ ପାଖକୁ ମୃତ୍ୟୁ ଆସିଲା ତ ସିଏ ବି ବିଦ୍ୟୁତ୍ ପରି ଚକ୍ ଚକ୍ ହୋଇ ଆସିଲା । ତାଙ୍କର ମୃତ୍ୟୁ ସର୍ବତ୍ର ତେଜ ପ୍ରଜ୍ୱଳିତ କରିବାପରି ଥିଲା, ଦେଖିଲାବାଲାଙ୍କ ଚକ୍ଷୁ ଝଲସାଇ ଦେବା ପରି ଥିଲା ।

ରାଣୀଙ୍କ ମୃତ୍ୟୁ କିପରି ହେଲା, ସେ ସଂପର୍କରେ ଲୋକମାନଙ୍କର ଭିନ୍ନ ଭିନ୍ନ ମତ ରହିଛି । ଐତିହାସିକ ତଥା ଅନ୍ୟ ଲୋକମାନେ ସେ ବିଷୟରେ ଭିନ୍ନ ଭିନ୍ନ ଘଟଣାର ବର୍ଣ୍ଣନା କରିଛନ୍ତି । ମେକ୍‌ଫର୍ସନ ଲେଖିଛନ୍ତି– "ଫୁଲବାଗ ନିକଟରେ ଯେଉଁଠି ରଣସଜ୍ଜା କରାଯାଇଥିଲା, ରାଣୀ ସେଇଠି ଖସିପଡ଼ିଥିବା ମୁଁ ଜାଣେ । ତାଙ୍କର ଚାକରର କହିବାନୁଯାୟୀ ଯେତେବେଳେ ତାଙ୍କୁ ସୈନ୍ୟମାନେ ଆସିବାର ଖବର ଦିଆଗଲା ସେତେବେଳେ ସେ ସରବତ୍ ପାନ କରୁଥିଲେ । ତାଙ୍କ ପାଖରେ ଚାରିଶହ ଘୋଡ଼ସବାର ଥିଲେ । ଚାଳିଶ–

ପଚାଶ ସୈନିକ ଆଗେଇ ଆସିବାରୁ ବିଦ୍ରୋହୀମାନେ ଧାଇଁ ପଳାଇବାକୁ ଲାଗିଲେ । ରାଣୀଙ୍କ ହାତରେ ଯେତେବେଳେ ଗୁଳି ବାଜିଲା ସେତେବେଳେ ତାଙ୍କ ଘୋଡ଼ା ପାଣିନାଳ ପାଖରେ ଅଟକିଗଲା ଏବଂ ଆଗକୁ ଆଦୌ ଗଲା ନାହିଁ । ତା'ପରେ ତାଙ୍କ ମୁଣ୍ଡରେ ପ୍ରହାର ହେଲା ଏବଂ ସେ ତୁରନ୍ତ ଆଗେଇ ଚାଲିଲେ । ତା'ପରେ ସେ ସେଇଠି ଖସିପଡ଼ି ଧରାଶାୟୀ ହୋଇଗଲେ । ନିକଟସ୍ଥ ଏକ ବଗିଚାରେ ତାଙ୍କୁ ଦାହ କରିଦିଆଗଲା ।'' (ବୁନ୍ଦେଲଖଣ୍ଡ, ସିହ୍ନା, ପୃ-୧୫୫)

ସାର୍ ରବର୍ଟ ହାମିଲ୍‌ଟନ୍ ଲେଖିଛନ୍ତି- ''ରାଣୀ ଲକ୍ଷ୍ମୀବାଈ କିପରି ମୃତ୍ୟୁବରଣ କଲେ, ସେ ସମୟରେ ମୁଁ ତା'ର ସତ୍ୟାସତ୍ୟ ଅନୁସନ୍ଧାନ କରିଥିଲି; ଏହି ଅନୁସାରେ ସତ୍ୟାସତ୍ୟ ପୂରାପୂରି ଅଲଗା ଅଟେ । ରାଣୀ ନିହତ ହୋଇଛନ୍ତି- ଏହି ସୂଚନା ମୁଁ ନ ଦେବା ପର୍ଯ୍ୟନ୍ତ ବ୍ରିଗେଡ଼ିୟର ସ୍ମିଥ୍‌ଙ୍କୁ ଏ କଥା ଜଣା ନ ଥିଲା । ମୋତେ ମିଳିଥିବା ତଥ୍ୟ ଅନୁଯାୟୀ ସେଦିନ ସକାଳେ ରାଓସାହେବ ଏବଂ ତାନ୍ତିଆ ଟୋପେଙ୍କ ସହିତ ରାଣୀ ଲକ୍ଷ୍ମୀବାଈ ଆମ ତରଫରୁ କରାଯାଇଥିବା ଆକ୍ରମଣ ଓ ଯୁଦ୍ଧ ଦେଖୁଥିଲେ । ରାଣୀ ଘୋଡ଼ା ଉପରେ ସବାର ହୋଇଥିଲେ । ତାଙ୍କ ପାର୍ଶ୍ୱରେ ଦୁଇଜଣ ସ୍ତ୍ରୀଲୋକ ଥିଲେ । ସେମାନେ ବହୁବର୍ଷ ଧରି ରାଣୀଙ୍କ ପରିବାର ସହିତ ରହୁଥିବା ମୁସଲମାନ ସ୍ତ୍ରୀଲୋକ ଥିଲେ । ସେମାନେ ସର୍ବଦା ରାଣୀଙ୍କ ସହିତ ରହୁଥିଲେ । ସେ ଦୁହିଁଙ୍କୁ ବନ୍ଧୁକର ଗୁଳି ବାଜିଥିଲା । ଦୁହେଁ ତଳେ ପଡ଼ିଯାଇଥିଲେ । ରାଣୀ ତା'ପରେ କୋଡ଼ିଏ ମିନିଟ୍ ପର୍ଯ୍ୟନ୍ତ ବଞ୍ଚିଥିଲେ । ତା'ପରେ ତାଙ୍କୁ ଫୁଲବାଗ ଆଡ଼କୁ ନିଆଯାଇଥିଲା । ରାଓସାହେବ ସାଥିରେ ଥିଲେ । ଏହି ଘଟଣା ଯୋଗୁଁ ସମସ୍ତ ସରଦାର ଅତ୍ୟନ୍ତ ଦୁଃଖୀ ହୋଇଯାଇଥିଲେ । ଚତୁର୍ଦ୍ଦିଗରେ ଅସ୍ଥିରତା ନିଜର ଚରମ ସୀମାରେ ପହଞ୍ଚି ସାରିଥିଲା । ତୁରନ୍ତ ଦାହ-ସଂସ୍କାର କରିବାର ଆୟୋଜନ କରାଗଲା । ଫୁଲବାଗ ଏବଂ କିଲ୍ଲା ମଝିରେ ନଦୀ ତୀରରେ ଦାହ କରିବା ନିମନ୍ତେ ତାଙ୍କ ଶରୀରକୁ ପାଲିଙ୍କିରେ ରଖାଗଲା । କିନ୍ତୁ ବଗିଚାର ଆଖପାଖର ପାଚିରି ଉପର ଦେଇ ତାଙ୍କର ଶରୀରକୁ ଉଠାଇ ପାଲିଙ୍କି ପାଖକୁ ନେବା କଷ୍ଟକର ହୋଇଯାଇଥିଲା । ସେତେବେଳେ ମନ୍ଦିର ପାଖର ପାଚିରି ପାଖରୁ ତାଙ୍କ ଦେହକୁ ଉଠାଇ ପରଳି ପାଖର ଏକ ବିଶାଳ ସୁନ୍ଦର ବୃକ୍ଷ ପାଖରେ ରଖାଗଲା ଏବଂ ସେଠାରେ ତାଙ୍କୁ ଦାହ କରାଗଲା । ଏହି ସମସ୍ତ ବିଧି ସଂପୂର୍ଣ୍ଣ ହେବା ପର୍ଯ୍ୟନ୍ତ ସୈନିକମାନଙ୍କର ଏକ ପଲଟଣ ସେହି ବଗିଚା ଏବଂ ମନ୍ଦିର ପାଖରେ ପହଞ୍ଚି ଯାଇଥିଲେ । ତାଙ୍କ ସାଥିରେ ଥିବା ଛ/ସାତ ଜଣ ବ୍ୟକ୍ତି ନିହତ ହୋଇଥିବାର କୁହାଯାଏ । ଦାହ କ୍ରିୟା ସଂପୂର୍ଣ୍ଣ ହୋଇ ନ ଥିଲା, ଏହା ମଧ୍ୟ ସ୍ପଷ୍ଟ ଥିଲା । କାରଣ ମୁଁ ଯେତେବେଳେ ସେଠାରେ ପହଞ୍ଚିଲି ସେତେବେଳେ ଡାକ୍ତର ଖ୍ରିଷ୍ଟନଙ୍କୁ ସେଠାରେ ମନୁଷ୍ୟଙ୍କର ଅସ୍ଥିର ଅବଶେଷ ମିଳିଥିଲା । ଏହାର ଅର୍ଥ ହେଲା ଅସ୍ଥିସଂଗ୍ରହର ବିଧି ପୂରା ହୋଇପାରି ନ ଥିଲା । ସେମାନଙ୍କୁ ସେତିକି ସୁଯୋଗ ମଧ୍ୟ ମିଳିପାରି ନ ଥିଲା ।''

ମିସେସ୍ ହେନେରୀ ଡୁବର୍ଲିଙ୍କର ବକ୍ତବ୍ୟ ଥିଲା ଯେ "ଅଷ୍ଟମ ସୈନିକ ପଲଟଣର ଗୋଟିଏ ସିପାହି ତାଙ୍କୁ ତରବାରିରେ ହତ୍ୟା କରିଥିଲା । ସେତେବେଳେ ସେ ନିଜ ମୁଣ୍ଡରେ ଧଳା ରଙ୍ଗର ପଗଡ଼ି ବାନ୍ଧିଥିଲେ । ଦେହରେ ଲାଲ୍‌ରଙ୍ଗର ଜ୍ୟାକେଟ୍ ଏବଂ ପାଇଜାମା ପିନ୍ଧିଥିବାରୁ ସେ ସ୍ତ୍ରୀ କିମ୍ବା ପୁରୁଷ ଏହା ଜାଣିପାରିବା କଷ୍ଟକର ଥିଲା । ସାର୍ ହ୍ୟୁରୋଜ ମତେ କହିଥିଲେ ଯେ ମୃତ୍ୟୁପୂର୍ବରୁ ରାଣୀଙ୍କୁ ଖୁବ୍ ଯନ୍ତ୍ରଣା ହୋଇଥିଲା କିନ୍ତୁ ସେ ରଣଭୂମିରେ ପ୍ରାଣତ୍ୟାଗ କରି ନ ଥିଲେ । ତାଙ୍କୁ ସେଠାରୁ ଉଠାଇ ନିଆଯାଇଥିଲା । ତାଙ୍କର ଚିତା ପ୍ରସ୍ତୁତ କରିବାକୁ ସେ ନିଜେ ଆଦେଶ ଦେଇଥିଲେ ଏବଂ ତା'ପରେ ତାଙ୍କୁ ଚିତା ଉପରେ ରଖାଯିବା ପରେ ସେ ସ୍ୱୟଂ ନିଜ ହାତରେ ଚିତାର ଅଗ୍ନି ସଂଯୋଗ କରିଥିଲେ । (ମିସେସ ହେନେରୀ ଡୁବର୍ଲି, କମେନିଙ୍ଗ୍ ଏକ୍ସପେରିଏନ୍‌ସେସ୍ ଇନ୍ 'ରାଜପୁତାନା ଏଣ୍ଡ ସେଣ୍ଟ୍ରାଲ' ଇଣ୍ଡିଆ ଡ୍ୟୁରିଙ୍ଗ ଦ ସପ୍ରେଶନ ଅଫ୍ ଦ ମ୍ୟୁଟିନି ୧୮୫୭-୧୮୫୮, ପୃଷ୍ଠା-୧୪୪-୧୪୫)

ସାର୍ ହାମିଲ୍‌ଟନଙ୍କ ଛାଉଣୀରେ ଇନ୍ଦୋର ମହାରାଜାଙ୍କର ଦୁଇଜଣ ପ୍ରତିନିଧି ଥିଲେ । ସେମାନେ ନିଜ ମହାରାଜାଙ୍କୁ ଚିଠି ଲେଖିଥିଲେ । ରାମଚନ୍ଦ୍ର ବିନାୟକ ନିଜ ଚିଠିରେ ଲେଖିଥିଲେ "୧୭ ଜୁନ୍‌ରେ ଝାନ୍ସୀବାଲୀ ବାଈ ଯୁଦ୍ଧରେ ନିହତ ହେଲେ । ଘଟଣା ଏହିପରି ଅଟେ । ଯୁଦ୍ଧ ଆରମ୍ଭ ହେବାମାତ୍ରେ ହିଁ ତରବାରିରେ ତାଙ୍କ ଉପରେ ପ୍ରହାର କରାଗଲା । ସେଥିଯୋଗୁଁ ତାଙ୍କର ମୃତ୍ୟୁ ହେଲା । ସମସ୍ତେ କହୁଛନ୍ତି ଯେ ସେ ସର୍ବଶ୍ରେଷ୍ଠ ଯୋଦ୍ଧା ଥିଲେ ।" ହରିତ୍ରିମ୍ବକ ନାମକ ଦ୍ୱିତୀୟ ଦୂତ ନିଜର ମହାରାଜାଙ୍କୁ ସୂଚନା ଦେଲେ ଯେ- "ଗୋଆଲିଅରର ଲଢ଼ାଇ ଚାରିଦିନଯାଏ ଚାଲିଲା । ଝାନ୍ସୀର ରାଣୀ ଏଇ ଲଢ଼ାଇର ଦ୍ୱିତୀୟ ଦିନ ନିହତ ହେଲେ । ଯେତେବେଳେ ତାଙ୍କର ମୃତ୍ୟୁ ହେଲା ସେତେବେଳେ ସେ ଅତ୍ୟନ୍ତ କୁଶଳତାର ସହ ଅସିଚାଳନା କରୁଥିଲେ । ପରେ ତାଙ୍କର ଦାହ ସଂସ୍କାର କରି ଦିଆଗଲା ।"

କେବଳ ହାମିଲ୍‌ଟନ୍‌ଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତ ଲୋକଙ୍କର ଏହାହିଁ ବକ୍ତବ୍ୟ ଥିଲା ଯେ ରାଣୀ ଲକ୍ଷ୍ମୀବାଈଙ୍କର ମୃତ୍ୟୁ ଯୁଦ୍ଧ କରିବା ସମୟରେ ରଣଭୂମିରେ ହିଁ ହୋଇଥିଲା । କେବଳ ହାମିଲ୍‌ଟନ୍ କହନ୍ତି ଯେ ଯେତେବେଳେ ସେ ରାଓସାହେବ, ତାନ୍ତିଆ ଟୋପେଙ୍କ ସହିତ ଠିଆ ହୋଇ ବ୍ରିଟିଶ୍ ସୈନ୍ୟଙ୍କ ଆକ୍ରମଣ ଦେଖୁଥିଲେ, ସେତିକିବେଳେ ତାଙ୍କ ଦେହରେ ବନ୍ଧୁକର ଗୁଳି ବାଜିଲା ଓ ସେ ଆହତ ହେଲେ । ତା'ପରେ ସେ ମୃତ୍ୟୁବରଣ କରିଥିଲେ । ତାଙ୍କର କହିବାର ତାତ୍ପର୍ଯ୍ୟ ହେଲା ଯେ ରାଣୀଙ୍କୁ ଯୁଦ୍ଧଭୂମିରେ ଲଢୁ ଲଢୁ ଶହୀଦର ମୃତ୍ୟୁ ମିଳି ନ ଥିଲା । କିନ୍ତୁ ହାମିଲ୍‌ଟନ୍‌ଙ୍କର ଏହି ଉକ୍ତି ଅତ୍ୟନ୍ତ ପକ୍ଷପାତପୂର୍ଣ୍ଣ ମନେହୁଏ । କାରଣ ରାଣୀ ଯୁଦ୍ଧ କରୁ କରୁ ଶହୀଦ ହୋଇଗଲେ, ଏପରି କହିବା ତାଙ୍କୁ ସମ୍ମାନିତ କରିବା ପରି ହେବ ଏବଂ ହାମିଲ୍‌ଟନ୍ ଏହା ଚାହୁଁ ନ ଥିଲେ । ଏହା ଛଡ଼ା ଆଉ ଗୋଟିଏ କଥାକୁ ମଧ୍ୟ ଏଠାରେ ଧ୍ୟାନ ଦିଆଯାଇପାରେ ଏବଂ ତାହା ହେଉଛି ହ୍ୟୁରୋଜଙ୍କର

ଗୋଆଲିଅର ଅଞ୍ଚଳରେ ପ୍ରବେଶ କରିବାର ସୂଚନା ମିଳିବାମାତ୍ରେ ପେଶବାଙ୍କ ତରଫରୁ ବ୍ୟୂହରଚନା ଆରମ୍ଭ ହୋଇଯାଇଥିଲା । ଏହି ଅନୁସାରେ ରାଣୀଙ୍କୁ କୋଟୀର ସରାଇ ଅଞ୍ଚଳର ସୁରକ୍ଷା ଦାୟିତ୍ୱ ଅର୍ପଣ କଲା ପରେ ସେ ଫୁଲବାଗସ୍ଥିତ ନିଜ ଛାଉଣୀରେ ଅବସ୍ଥାନ କରୁଥିଲେ । ଏହା ପରେ ତାଙ୍କର ରାଓସାହେବ, ତାନ୍ତିଆ ଟୋପେଙ୍କ ସହିତ ଭେଟ ହେବାର ପ୍ରଶ୍ନ ହିଁ ନ ଥିଲା । ମୂଳତଃ ରାଣୀ ଏ ଦୁଇଜଣ ସହିତ ସଂପର୍କରେ ନ ଥିଲେ । ଆବଶ୍ୟକ ପଡ଼ିଲେ ହିଁ ଏମାନେ ପରସ୍ପରକୁ ଦେଖାକରି ଚର୍ଚ୍ଚା ଆଲୋଚନା କରୁଥିଲେ । ଦ୍ୱିତୀୟ କଥା ହେଲା ଇଂରେଜ ସୈନ୍ୟମାନେ ଆକ୍ରମଣ କରିବାକୁ ଆସୁଛନ୍ତି, ଏହା ଜଣାପଡ଼ିବା ପରେ ସେ ଦୁହିଁଙ୍କ ସହିତ ମିଶି ଯୁଦ୍ଧ ଦେଖିବାର ସୁଯୋଗ ହିଁ ନ ଥିଲା । ରାଣୀ ସେ ଦୁହିଁଙ୍କ ସହିତ ବୁଲାଚଲା କରିବାର କେବେହେଲେ ଦେଖାଯାଇ ନ ଥିଲା । ଏ ସବୁ କାରଣରୁ ଇଂରେଜ ସୈନ୍ୟଙ୍କୁ ଦେଖିବାକୁ ଠିଆହୋଇରହିବା ଏବଂ ସେତିକିବେଳେ ତାଙ୍କୁ ଗୁଳି ଲାଗିବା, ତା'ପରେ ପାଲିଙ୍କିରେ ତାଙ୍କର ଶରୀରକୁ ନେଇଯିବାର ପ୍ରଯତ୍ନ କରିବା ଇତ୍ୟାଦି ବର୍ଣ୍ଣନା ଶୁଦ୍ଧ କାଳ୍ପନିକ ଏବଂ ମନଗଢ଼ା ଲାଗେ ।

ତାନ୍ତିଆ ଟୋପେଙ୍କ ଉପରେ ଯେତେବେଳେ ମକଦ୍ଦମା ଦାଏର ହେଲା ସେତେବେଳେ ସେ ନିଜର ସାକ୍ଷ୍ୟ ଦେବାବେଳେ କହିଥିଲେ ଯେ- "ଇଂରେଜସେନା କାଲ୍‌ପୀରୁ ଗୋଆଲିଅର ଆସିଥିଲେ । ଶିବପୁର ଆଡୁ ମଧ୍ୟ ସୈନ୍ୟ ଆସିଥିଲେ । ଯୁଦ୍ଧ ଚାରିପାଞ୍ଚ ଦିନ ଚାଲିଲା । ସେଇଥିରେ ରାଣୀ ନିହତ ହୋଇଥିଲେ । ରାମରାଓ ଗୋବିନ୍ଦ ତାଙ୍କର ଦାହ-ସଂସ୍କାର କରିଥିଲେ । (ରାଣୀ ଲକ୍ଷ୍ମୀବାଇ ଅଫ୍ ଝାନ୍‌ସୀ, ସିହ୍ନା, ପୃଷ୍ଠା-୯୧)

କଲ୍ୟାଣ ସିଂହ କୁଡ଼ରା ୧୮୬୯ରେ ପ୍ରକାଶିତ ନିଜର 'ଲକ୍ଷ୍ମୀବାଈ ରାସୋ' ଗୌରବଗାଥାରେ ଲେଖିଛନ୍ତି ଯେ "ଯୁଦ୍ଧ ଆରମ୍ଭ ହେଲାମାତ୍ରେ ଗୋଟିଏ ଗୁଳି ରାଣୀଙ୍କ ଜଙ୍ଘରେ ବାଜିଲା । ଏହାଛଡ଼ା ଜଣେ ଇଂରେଜ ସିପାହି ତରବାରିରେ ତାଙ୍କ ମୁହିଁର ଦକ୍ଷିଣ ଭାଗକୁ ହାଣିଦେଲା । ମୃତ୍ୟୁ ପୂର୍ବରୁ ସେ ନିଜ ପୁଅକୁ ତାଙ୍କ ସହିତ ଥିବା ରାମଚନ୍ଦ୍ର ଦେଶମୁଖ ଓ ଜବାହର ସିଂହଙ୍କୁ ଅର୍ପଣ କଲେ ଏବଂ ଫିରିଙ୍ଗିମାନଙ୍କ ବିରୋଧରେ ଯୁଦ୍ଧ ଜାରି ରଖିବାର ଦାୟିତ୍ୱ ରଘୁନାଥ ସିଂହଙ୍କୁ ସମର୍ପଣ କଲେ । ନିଜ ଗଳାର ମୁକ୍ତାମାଳାକୁ ସେ ରଘୁନାଥ ସିଂହଙ୍କୁ ଦେଲେ । ସେ ତାହା ଗ୍ରହଣ କଲେ ନାହିଁ ଏବଂ ଯୁଦ୍ଧ ଜାରି ରଖିବାର ଆଶ୍ୱାସନା ମଧ୍ୟ ଦେଲେ ।

କଲ୍ୟାଣ ସିଂହ ଆଗକୁ ଲେଖିଛନ୍ତି ଯେ- "ଫିରିଙ୍ଗି ସିପାହି ଯେପରି ରାଣୀଙ୍କର ଆଖପାଖକୁ ନ ଆସିପାରନ୍ତି ସେଥିପାଇଁ ପୂର୍ଣ୍ଣ ସତର୍କତା ଅବଲମ୍ବନ କରାଯାଉଥିଲା ଏବଂ ସାମାନ୍ୟମଧ୍ୟ ଶବ୍ଦ ହେଲେ ବନ୍ଧୁକରୁ ଗୁଳି ଚଳାଇ ଆସିବା ଲୋକକୁ ମାରି ଘଉଡ଼ାଇ ଦେବାର ଚେଷ୍ଟା କରାଯାଉଥିଲା । ରାଣୀଙ୍କର ପ୍ରିୟ ଦାସୀ ମୁନ୍ଦର ମଧ୍ୟ ସେତିକିବେଳେ ନିଧନ ହୋଇଥିଲେ । ରାମଚନ୍ଦ୍ର ଦେଶମୁଖ, ଜବାହରସିଂହ ଏବଂ ରଘୁନାଥ ସିଂହ ତା'ପରେ ରାଣୀ ଏବଂ ମୁନ୍ଦରଙ୍କୁ ଦାହ କରିଥିଲେ ।

କଲ୍ୟାଣସିଂହଙ୍କର ଏହି ବକ୍ତବ୍ୟର ସତ୍ୟାସତ୍ୟ ଦାମୋଦରରାଓଙ୍କ ବକ୍ତବ୍ୟରୁ ପ୍ରମାଣିତ ହୋଇଥାଏ । ଦାମୋଦରରାଓ ମଧ୍ୟ ରାମଚନ୍ଦ୍ରରାଓ ଦେଶମୁଖ, ରଘୁନାଥ ସିଂହଙ୍କ ନାମ ଉଲ୍ଲେଖ କରିଛନ୍ତି । ଏତଦ୍‌ବ୍ୟତୀତ ସେ ଗଣପତ୍‌ରାଓ ମରାଠେ, ନନ୍ହେଖାନ୍ ରିସାଲ୍‌ଦାର, ବାଲୁ ଗୋଡ଼ବଲେ ଶାର୍ଗିଦ, ଲକ୍ଷ୍ମଣ ଆଚାରୀ ଏବଂ କାଶୀ କୁନବୀଙ୍କ ନାମ ମଧ୍ୟ ଉଲ୍ଲେଖ କରିଛନ୍ତି ।

ରାଣୀଙ୍କ ସାବତଭାଇ ଚିନ୍ତାମଣି ରାଓ ତୋମ୍ବେଙ୍କ ନାତୁଣୀ ଯମୁନାବାଈ ଖେବଡ଼େ ଅମୃତବଜାର ପତ୍ରିକାର ୧୯୫୭, ୧୫ ଅଗଷ୍ଟର ସ୍ୱତନ୍ତ୍ରତା ଦିବସ ସମ୍ବନ୍ଧିତ ସଂସ୍କରଣରେ ରାଣୀ ଲକ୍ଷ୍ମୀବାଈଙ୍କ ସଂପର୍କରେ କହିଛନ୍ତି– "ଜୁନ୍ ୧୮ ତାରିଖ ସକାଳେ (ବସ୍ତୁତଃ ରାଣୀଙ୍କର ମୃତ୍ୟୁ ଜୁନ୍ ୧୭ ତାରିଖରେ ହୋଇଥିଲା ।) ଖୁବ୍ ଗରମ ହେଉଥିଲା । ରାଣୀ ସରବତ୍ ପିଇଲେ । ସେ ଲାଲରଙ୍ଗର ସୈନିକ ପୋଷାକ ପିନ୍ଧିଲେ । ସେ ନିଜର ପୁରୁଷ ଓ ମହିଳା ସହଯୋଗୀମାନଙ୍କୁ ମଧ୍ୟ ସିପାହି ପୋଷାକ ପିନ୍ଧିନେବାକୁ କହିଲେ । ସେତିକିବେଳେ ବ୍ରିଟିଶ୍‌ମାନଙ୍କର ତୋପରୁ ଗୋଳାବର୍ଷଣ ଆରମ୍ଭ ହୋଇଗଲା । ରାଣୀ ତୁରନ୍ତ ଘୋଡ଼ା ଉପରେ ସବାର ହୋଇଗଲେ ଏବଂ ସିଧା ରଣଭୂମିକୁ କୁଦିପଡ଼ିଲେ । ତାଙ୍କର ଏପରି ସାହସ ଦେଖି ବ୍ରିଟିଶ୍ ସେନା ମଧ୍ୟ ଆଶ୍ଚର୍ଯ୍ୟଚକିତ ହୋଇଗଲେ ।

ଅଚାନକ ଏକ ଗୋରା ସିପାହି ତାଙ୍କୁ ଗୁଳି ଚଳାଇ ଆକ୍ରମଣ କଲା । ତାଙ୍କ ଶରୀରରୁ ରକ୍ତ ବୋହିବାକୁ ଲାଗିଲା । ରାଣୀ ଆହତ ବାଘୁଣୀ ପରି ପଛକୁ ଘୂରିଗଲେ ଏବଂ ନିଜ ଉପରକୁ ପ୍ରହାର କରୁଥିବା ବ୍ୟକ୍ତିକୁ ଗୁଳିକରି ମାରିଦେଲେ । ନିଜର ପ୍ରିୟ ଦାସୀ ମୁନ୍ଦରକୁ ଆଉ ଜଣେ ସିପାହିର ଗୁଳି ବାଜି ତଳକୁ ପଡ଼ିଯିବାର ସେ ଦେଖିଲେ । ରାଣୀ ତାକୁ ମଧ୍ୟ ତରବାରିରେ ପ୍ରହାର କରି ଦୁଇଗଡ଼ କରିଦେଲେ । ସେତିକିବେଳେ ଆଉଜଣେ ସିପାହିର ଗୁଳି ତାଙ୍କର ବାମଜଙ୍ଘରେ ଲାଗିଲା । ବାମ ହାତରୁ ତରବାରି ଫିଙ୍ଗିଦେଇ ସେ ଜଙ୍ଘରୁ ବୋହୁଥିବା ରକ୍ତକୁ ହାତରେ ଚାପିଧରି ସେ ନିଜର ଡାହାଣ ହାତରେ ସେହି ଆକ୍ରମଣକାରୀ ସିପାହି ଉପରେ ଏପରି ଜୋର୍‌ଦାର୍ ଆଘାତ କଲେ ଯେ ସେ ସେହି ସ୍ଥାନରେ ପଡ଼ିଯାଇ ମରିଗଲା । ଏବେ ତାଙ୍କ ଆଖପାଖରେ କେବଳ ତିନି-ଚାରିଜଣ ଗୋରା ସିପାହି ଥିଲେ । ସେମାନଙ୍କ ମଧ୍ୟରୁ ଜଣେ ରାଣୀଙ୍କ ମୁଣ୍ଡରେ ପ୍ରହାର କଲା । ମୁଣ୍ଡର ଡାହାଣ ଭାଗ କଟିଗଲା । ଡାହାଣ ଆଖି ରକ୍ତ ଜୁଡୁବୁଡୁ ହୋଇ ଝୁଲିପଡ଼ିଲା । ତଥାପି ସେ ଉକ୍ତ ସିପାହିର କାନ୍ଧ ଉଡ଼ାଇଦେଲେ । ତାଙ୍କର ସ୍ୱାମୀଭକ୍ତ ପଠାନ୍ ସରଦାର ଗୁଲ୍‌ମହମ୍ମଦ ଉକ୍ତ ସିପାହିକୁ ପ୍ରହାର କରିବାରେ ଲାଗିଲେ । ତାକୁ ଦୁଇଗଡ଼ କରିସାରି ଗୁଲ୍ ମହମ୍ମଦ ଅନ୍ୟ ସିପାହିମାନଙ୍କୁ ମାରିବା ପାଇଁ ଯେପରି ସେମାନଙ୍କ ଆଡ଼କୁ ବୁଲିପଡ଼ିଲେ, ସେମାନେ ପଳାୟନ କଲେ ।

ତାଙ୍କର ସାଥିରେ ଥିବା ଲୋକମାନେ ରକ୍ତ ଜୁଡୁବୁଡୁ ରାଣୀଙ୍କୁ ବାବା ଗଙ୍ଗାଦାସଙ୍କ କୁଟୀରକୁ ନେଇଗଲେ । ସେହି ସାଧୁପୁରୁଷ ରାଣୀଙ୍କୁ ଚିହ୍ନିପାରିଲେ । ତାଙ୍କ ତୁଣ୍ଡରେ

ପବିତ୍ର ଗଙ୍ଗାଜଳ ଦେଲେ । ରାଣୀ ଧୀର ସ୍ୱରରେ ହର-ହର ମହାଦେବ କହି ମୂର୍ଚ୍ଛା ଗଲେ । କିଛି ସମୟ ପରେ ସେ ଚେତନା ପାଇଲେ ଏବଂ ତାଙ୍କ ଓଠ ଥରିବାକୁ ଲାଗିଲା । ସେ ଧୀରେ ଧୀରେ "ଓଁ ନମୋ ଭଗବତେ ବାସୁଦେବାୟ" କହିଲେ ଓ ସବୁଦିନ ପାଇଁ ଚିରନିଦ୍ରାରେ ଶୋଇଗଲେ ।

ତାଙ୍କର ସମସ୍ତ ସାଥି ବିଳାପ କରିବାକୁ ଲାଗିଲେ । ସାଧୁ ସେମାନଙ୍କୁ ସାନ୍ତ୍ୱନା ଦେଲେ । ଶୀଘ୍ର ଶୀଘ୍ର ଘାସପତ୍ରରେ ଚିତା ପ୍ରସ୍ତୁତ କରାଗଲା । ଧରିତ୍ରୀ ସହିତ ଧରିତ୍ରୀର ମିଳନ ହେଲା । ରାଣୀ ଅନନ୍ତରେ ବିଲୀନ ହୋଇଗଲେ । (ରାଣୀ ଲକ୍ଷ୍ମୀବାଈ ଅଫ୍ ଝାନ୍‌ସୀ-ସିହ୍ନା, ୧୯୮୦ ପୃଷ୍ଠା-୯୨)

## ମୃତ୍ୟୁ ପରେ

ରାଣୀ ଲକ୍ଷ୍ମୀବାଈଙ୍କ ମୃତ୍ୟୁ ପରେ ଗୋଆଲିଅରର ଯୁଦ୍ଧ କୌଣସି ପ୍ରକାରେ ଦୁଇଦିନଯାଏ ଚାଲିଲା । ପରାଜୟ ତ ନିଶ୍ଚିତ ହୋଇଯାଇଥିଲା । ରାଓସାହେବ, ତାନ୍ତିଆ ଟୋପେ, ଅଲୀ ବାହାଦୁର ଗୋଆଲିଅର ଛାଡ଼ି କୁଆଡ଼େ ନା କୁଆଡ଼େ ଚାଲିଯାଇଥିଲେ । ରାଓସାହେବ ଏବଂ ତାନ୍ତିଆ ଟୋପେ ଏହା ପରେ ଛଅମାସଯାଏ ସାଥି ହୋଇ ରହିଥିଲେ । ବୁନ୍ଦେଲଖଣ୍ଡରୁ ବାହାରିଯିବା ପରେ ଇଂରେଜ ସୈନ୍ୟମାନେ ତାଙ୍କ ସନ୍ଧାନରେ ଥିଲେ । ସେଥିପାଇଁ ସେମାନେ ଜଙ୍ଗଲରେ ଘୂରି ବୁଲୁଥିଲେ । ବାନ୍ଦାର ନବାବ ଅଲୀବାହାଦୁର ଏବଂ ଝାନ୍‌ସୀର ରାଣୀଙ୍କ ପରି ରାଓସାହେବ ଏବଂ ତାନ୍ତିଆ ଟୋପେଙ୍କୁ ଧରାଇଦେବାବାଲାଙ୍କ ପାଇଁ ସରକାର ଦଶ-ଦଶ ହଜାର ଟଙ୍କାର ପୁରସ୍କାର ଘୋଷଣା କରିଥିଲେ । ଏଠାରେ ଗୋଟିଏ କଥା ଧ୍ୟାନ ଦିଆଯାଇପାରେ ଯେ ସବୁଠାରୁ ଅଧିକ ପୁରସ୍କାର ରାଶି ରାଣୀ ଲକ୍ଷ୍ମୀବାଈଙ୍କ ନିମନ୍ତେ ରଖାଯାଇଥିଲା । ରାଓସାହେବ ଧରାପଡ଼ିବା ପରେ ତାଙ୍କ ଉପରେ କୋର୍ଟ ମାର୍ଶାଲ କରାଯିବାର ଥିଲା । ଇଂରେଜଙ୍କର ସୈନିକ-ନ୍ୟାୟାଳୟରେ ତାଙ୍କ ଉପରେ ମକଦ୍ଦମା ଚଳାଇବାର ଆଦେଶ ହାମିଲ୍‌ଟନ୍‌ଙ୍କୁ ଦିଆଯାଇଥିଲା କିମ୍ବା ରାଓସାହେବ ଆତ୍ମସମର୍ପଣ କଲେ ମଧ୍ୟ ତାଙ୍କ ଉପରେ କୋର୍ଟ-ମାର୍ଶାଲ କରାଯିବାର ହୁକୁମ ମଧ୍ୟ ଦିଆଯାଇଥିଲା । ଗଭର୍ଣ୍ଣର ଜେନେରାଲଙ୍କ ଅନୁମତି ଅନୁସାରେ ହିଁ ଦଣ୍ଡବିଧାନ କରାଯିବାର ନିର୍ଣ୍ଣୟ ନିଆଯାଇଥିଲା ।

ରାଓସାହେବ ନିଜ ଦୂତ ଜରିଆରେ ବ୍ରିଟିଶ୍ ସରକାରଙ୍କ ନିକଟରେ ଆତ୍ମସମର୍ପଣର ପ୍ରସ୍ତାବ ରଖିଲେ । ଏହାର ଉତ୍ତରରେ ହାମିଲ୍‌ଟନ୍ ଲେଖିଲେ ଯେ "ଯଦି ରାଓସାହେବ ଆତ୍ମସମର୍ପଣ କରନ୍ତି, ତେବେ ତାଙ୍କୁ ଜୀବନଦାନ ଦିଆଯିବ । ତାଙ୍କୁ ଗିରଫ କରାଯିବ ନାହିଁ । ତାଙ୍କ ପାଦରେ ବେଡ଼ି ପକାଯିବ ନାହିଁ । ତାଙ୍କ ସହିତ ଅପମାନଜନକ ବ୍ୟବହାର କରାଯିବ ନାହିଁ । ବ୍ରିଟିଶ୍ ସରକାରଙ୍କ ଇଚ୍ଛା ଅନୁସାରେ ଯେକୌଣସି ସ୍ଥାନରେ ତାଙ୍କର ରହଣି ବ୍ୟବସ୍ଥା କରାଯିବ ।" କିନ୍ତୁ ଯଦି ଇଂରେଜଙ୍କ ବିରୋଧରେ ଷଡ଼୍‌ଯନ୍ତ୍ର କରିବା,

ସେମାନଙ୍କୁ ହତ୍ୟା କରିବାରେ ରାଓସାହେବଙ୍କ ହାତ ଥିଲା, ଏହା ଯଦି କୋର୍ଟରେ ପ୍ରମାଣିତ ହେଲା, ତେବେ ତା'ପରେ କ'ଣ ହେବ, ସେ ସଂପର୍କରେ କୌଣସି ପ୍ରକାରର ଆଶ୍ୱାସନା ଦେବା ନିମନ୍ତେ ହାମିଲ୍‌ଟନ୍ ପ୍ରସ୍ତୁତ ନ ଥିଲେ । କିନ୍ତୁ ରାଓସାହେବ ଆତ୍ମସମର୍ପଣ କଲେ ନାହିଁ । ଗୁଜରାଟରେ ଦୁଇମାସ ରହିବା ପରେ ଜାନୁୟାରୀ ୧୮୫୯ରେ ରାଓସାହେବ ଏବଂ ତାନ୍ତିଆ ଟୋପେ ଅଲଗା ଅଲଗା ରାସ୍ତାରେ ବାହାରିଗଲେ । ଦୁହେଁ ଅଲଗା ଅଲଗା ହୋଇ ଦକ୍ଷିଣ ମହାରାଷ୍ଟ୍ର, ନିଜାମଙ୍କ ରାଜ୍ୟ ଏବଂ ଉତ୍ତର ପଞ୍ଜାବରେ ଭ୍ରମଣ କରିବାରେ ଲାଗିଲେ । ବେଶ ବଦଳାଇ ସାଧୁ ସନ୍ନ୍ୟାସୀ ରୂପରେ ସେମାନେ ବୁଲିବାକୁ ଲାଗିଲେ । ସେଠାକାର ସରଦାରମାନଙ୍କ ସହିତ ମିଳାମିଶା କରୁଥିଲେ । ଛୋଟ ଛୋଟ ରାଜ୍ୟର ରାଜାମାନଙ୍କୁ ମଧ୍ୟ ଭେଟିଲେ । ଭୀଲ୍, କୋଲୀ, ଠାକୁରମାନଙ୍କୁ ଭେଟିବା ପାଇଁ ସେମାନେ ଗାଁ ଗାଁ ଭ୍ରମଣ କଲେ । ଲୋକମାନଙ୍କ ସହିତ ମିଳାମିଶା କରି ସେମାନଙ୍କୁ ଇଂରେଜମାନଙ୍କ ବିରୋଧରେ ଉସ୍‌କାଇବା କାର୍ଯ୍ୟ ସେମାନେ ଆରମ୍ଭ କରିଦେଲେ । ପୁଣି ଥରେ ସମସ୍ତେ ଏକଜୁଟ୍ ହୋଇ ଭିନ୍ନ ଭିନ୍ନ ସ୍ଥାନରେ ବିଦ୍ରୋହ କରାଇବାକୁ ସେମାନେ ଯତ୍ନ କରିଚାଲିଲେ । ତା'ରି ପ୍ରସ୍ତୁତିରେ ଲାଗିଗଲେ । ରାଓସାହେବ ଜାମ୍ମୁ ସହରର ଆଖପାଖରେ ରହୁଥିବାବେଳେ ଭୀମରାଓ ନାମକ ଜଣେ ବ୍ୟକ୍ତି ଷଡ୍‌ଯନ୍ତ୍ର କରି ରାଓସାହେବଙ୍କୁ ଧରାଇଦେବାରେ ଇଂରେଜଙ୍କୁ ସାହାଯ୍ୟ କରିଥିଲେ । ରାଓସାହେବଙ୍କୁ କାନପୁର ଅଣାଯାଇ ତାଙ୍କ ଉପରେ ମକଦ୍ଦମା ଦାଏର କରାଗଲା । ଇଂରେଜଙ୍କ ବିରୋଧରେ ବିଦ୍ରୋହ କରିବା, ସେଥିପାଇଁ ଲୋକଙ୍କୁ ଉତ୍ତେଜିତ କରିବା କିମ୍ବା ଇଂରେଜଙ୍କୁ ହତ୍ୟା କରିବାର କୌଣସି ଅଭିଯୋଗ କୋର୍ଟରେ ପ୍ରମାଣିତ ହୋଇପାରିଲା ନାହିଁ । ତଥାପି ତାଙ୍କୁ ଫାଶୀଦଣ୍ଡ ଦିଆଗଲା । ୧୮୬୨ ମସିହା ଅଗଷ୍ଟ ୨୦ ତାରିଖରେ ବିଠୁର ପେଶବାଙ୍କ ରାଜମହଲ ସମ୍ମୁଖରେ ତାଙ୍କୁ ଫାଶୀ ଦେଇ ଦିଆଗଲା ।

ତାନ୍ତିଆ ଟୋପେ ମଧ୍ୟ ସେହିପରି ଜଙ୍ଗଲରୁ ଜଙ୍ଗଲ ଘୂରି ବୁଲିଲେ । ନରବରର ରାଜା ମାନସିଂଙ୍କ ସହିତ ତାନ୍ତିଆଙ୍କର ପରିଚୟ ହେଲା । ମାନସିଂହ ଗୋଆଲିଅରର ସିନ୍ଧିଆମାନଙ୍କର ଶତ୍ରୁ ଥିଲେ । ଶିବପୁରୀ ଗ୍ରାମର ପାଖ ଜଙ୍ଗଲରେ ମାନସିଂହଙ୍କ ଆଶ୍ରୟରେ ଥିବା ତାନ୍ତିଆଙ୍କ ସହିତ ମାନସିଂ ବିଶ୍ୱାସଘାତକତା କଲେ । ତାଙ୍କ ସଂପର୍କରେ ଇଂରେଜମାନଙ୍କୁ ଜଣାଇଦେଲେ । ୧୮୫୯ ମସିହା ଏପ୍ରିଲ ୭ ତାରିଖ ରାତିରେ ତାନ୍ତିଆ ଶୋଇଥିବାବେଳେ ଇଂରେଜମାନେ ତାଙ୍କୁ ଧରିନେଲେ । ତାଙ୍କ ଉପରେ ଦେଶଦ୍ରୋହ ଓ କମ୍ପାନୀ ସରକାରଙ୍କ ବିରୋଧରେ ବିଦ୍ରୋହ କରିବା ଅପରାଧରେ ମକଦ୍ଦମା କରାଗଲା । ଏପ୍ରିଲ ୧୮ ତାରିଖରେ ଶିବପୁରୀ ଗ୍ରାମରେ ତାନ୍ତିଆଙ୍କୁ ଫାଶୀ ଦିଆଗଲା । ମକଦ୍ଦମା ସମୟରେ ତାନ୍ତିଆ କହିଥିଲେ ଯେ ସେ ପେଶବାଙ୍କର ଚାକର ଥିଲେ । ପେଶବା ଯେପରି କହୁଥିଲେ ସେ ସେପରି କରୁଥିଲେ ।

ତାନ୍ତିଆଙ୍କ ଉପରେ ମକଦ୍ଦମା ଅତି ତରବରରେ କରାଯାଇଥିଲା । ତାଙ୍କୁ କାନପୁର କିମ୍ବା ପୁନାକୁ ନ ଆଣି ଶିବପୁରୀରେ ଇ କାହିଁକି ବିଚାର କରାଗଲା ? ଏପରି ପ୍ରଶ୍ନ ମଧ୍ୟ ପଚରାଯାଇଥିଲା । ଯାହାକୁ ଫାଶୀ ଦିଆଗଲା ସେହି ବ୍ୟକ୍ତି ତାନ୍ତିଆ ଟୋପେ ହିଁ ନ ଥିଲେ । ସେ ତ ଭାଉ ତାମ୍ବେକର ନାମକ ବରୋଦା ରାଜ୍ୟର ଜଣେ ମନ୍ତ୍ରୀ ଥିଲେ । ସ୍ୱୟଂ ଜେନେରାଲ ଆଉ୍ରମ ଏପରି କହିଥିଲେ । ତାନ୍ତିଆଙ୍କୁ ନେଇ ଇଂରେଜଙ୍କ ମନରେ ଏପରି ଆତଙ୍କ ଖେଳିଯାଇଥିଲା ଯେ ତାନ୍ତିଆ ଭାବି ବହୁ ଲୋକଙ୍କୁ ଫାଶୀରେ ଚଢ଼ାଇ ଦିଆଯାଇଥିଲା । ୧୮ ଏପ୍ରିଲ୍‌ରେ ଫାଶୀ ଚଢ଼ିଥିବା ବ୍ୟକ୍ତି ତାନ୍ତିଆ ଥିଲେ ନା ଆଉ କେହି, ଏ ସଂପର୍କରେ ଅନେକ ସମୟରେ ସନ୍ଦେହ ବ୍ୟକ୍ତ କରାଯାଏ । ସ୍ୱୟଂ ବ୍ରିଟିଶ୍ ସରକାରଙ୍କର ଏ ସଂପର୍କରେ ସନ୍ଦେହ ଥିଲା ।

ତାନ୍ତିଆଙ୍କର ଫାଶୀଦଣ୍ଡର ବୈଧତାକୁ ନେଇ କର୍ଣ୍ଣେଲ ମେଲିସନ୍ ସନ୍ଦେହ ପ୍ରକଟ କରିଥିଲେ । ମେଲିସନ୍ କହିଥିଲେ ଯେ ''ତାନ୍ତିଆଙ୍କ ଜନ୍ମ ପେଶବାଙ୍କ ଶାସନକାଳରେ ୧୮୧୨ ମସିହା ପାଖାପାଖି ହୋଇଥିଲା । ସେ ସମୟରେ ତାଙ୍କର ମାଲିକ ଏକ ସ୍ୱତନ୍ତ୍ର ରାଜ୍ୟର ରାଜ୍ୟକର୍ତ୍ତା ଥିଲେ । ସେହି କାରଣରୁ କେବଳ ପେଶବାମାନଙ୍କ ପ୍ରତି ହିଁ ତାଙ୍କର ସ୍ୱାମୀନିଷ୍ଠା ଥିଲା । ଯେଉଁମାନେ ପେଶବାମାନଙ୍କୁ ବରବାଦ କରିଦେଲେ ସେମାନଙ୍କ ପ୍ରତି ସ୍ୱାମୀନିଷ୍ଠା ପ୍ରଦର୍ଶନ କରିବାର ନୈତିକ ଦାୟିତ୍ୱ ତାନ୍ତିଆଙ୍କର ନ ଥିଲା । ନିଜର ରାଜ୍ୟ ଇଂରେଜଙ୍କଠାରୁ ଫେରାଇନେବାର ସୁଯୋଗ ଯେତେବେଳେ ପେଶବାମାନଙ୍କୁ ମିଳିଲା ସେତେବେଳେ ପେଶବାମାନଙ୍କର ସଂରକ୍ଷକ, ତାଙ୍କର ମିତ୍ର ତଥା ସେବାରତ ତାନ୍ତିଆ ପେଶବାଙ୍କର, ନିଜର ସଚ୍ଚା ମାଲିକଙ୍କର ହୁକୁମ୍ ମାନିଥିଲେ । ତାଙ୍କର ଏହି ଅପରାଧ ତୁଳନାରେ ତାଙ୍କୁ ଦିଆଯାଇଥିବା ସଜା ଅଧିକ ଥିଲା । ଜଣେ ସ୍ୱାମୀଭକ୍ତ ଉଚିତ ଭାବରେ ନିଜ ସ୍ୱାମୀଙ୍କର ଆଜ୍ଞା ପାଳନ କରିଥିଲେ ।

ଏହାର ତାତ୍ପର୍ଯ୍ୟ ଥିଲା ଯେ ଯଦି ଇଂରେଜମାନେ ତାନ୍ତିଆଙ୍କର ମାଲିକ ନ ଥିଲେ ତା'ହେଲେ ତାଙ୍କ ବିରୋଧରେ ଯୁଦ୍ଧ କରିବାକୁ ସ୍ୱାମୀଦ୍ରୋହ, ଦେଶଦ୍ରୋହ, ବିଦ୍ରୋହ କୁହାଯାଇପାରିବ ନାହିଁ ।

ଇଂରେଜମାନେ ନ୍ୟାୟର ସମର୍ଥକ ଅଟନ୍ତି, ସମସ୍ତଙ୍କର ଏହି ଧାରଣା ଥିଲା । ଏହାର ଉଦାହରଣ କେବେ କେବେ ଏହି ରୂପରେ ଦେଖିବାକୁ ମିଳୁଥିଲା । ଭୁଲ୍‌ରେ ଏପରି ନ୍ୟାୟପ୍ରଦାନ କରୁଥିବା ଇଂରେଜ ଖୁବ୍ କଷ୍ଟରେ ଦେଖାଯାଉଥିଲେ । କିନ୍ତୁ ଏହାର କୌଣସି ଫାଇଦା ନ ଥିଲା ।

ତାନ୍ତିଆଙ୍କର ନକ୍ଷତ୍ରଚକ୍ର ଫାଶୀ ଦେଲା ପରେ ମଧ୍ୟ ଶେଷ ହୋଇ ନ ଥିଲା । ତାଙ୍କୁ ଯେଉଁଠି ଫାଶୀ ଦିଆଗଲା ସେଇ ଜାଗାଟି ଶିବପୁରୀର ଇଂରେଜ ସୈନ୍ୟଛାଉଣୀ ଥିଲା । ଗାଁଠାରୁ ଦୂରରେ, ଫାଶୀ ଦେବା ସମୟରେ କୌଣସିପ୍ରକାର ଦଙ୍ଗା ଫସାଦ ନ ହେଉ, ସେଥିପାଇଁ ସତର୍କତା ମଧ୍ୟ ଗ୍ରହଣ କରାଯାଇଥିଲା । ଯେଉଁଠାରେ ଫାଶୀ ଦିଆଯାଇଥିଲା

ସେଠାରେ ପଥରର ଚଉପାଢ଼ୀ ଉପରେ ଇଂରେଜମାନେ ଲେଖିଥିଲେ– "ଦି ନୋଟୋରିଅସ୍ ତାନ୍ତିଆ ଟୋପେ ୱାଜ ହାଙ୍ଗଡ୍ ହିଅର ଅନ୍ ଦ ଏଇଟିନ୍‌ଥ ଅଫ୍ ଏପ୍ରିଲ ୧୮୬୯" ଅର୍ଥାତ୍ ଏଠାରେ ୧୮ ଏପ୍ରିଲ ୧୮୬୯ ଦିନ କୁପ୍ରସିଦ୍ଧ ବିଦ୍ରୋହୀ ତାନ୍ତିଆ ଟୋପେଙ୍କୁ ଫାଶୀ ଦିଆଗଲା ।

ତାହା ଇଂରେଜସୈନ୍ୟଙ୍କ ଛାଉଣୀ ହୋଇଥିବା ଦୃଷ୍ଟିରୁ ଏବଂ ଇଂରେଜଙ୍କ ଭୟରେ ବହୁବର୍ଷଯାଏ ସେହି ସ୍ଥାନଆଡ଼େ କେହି ଯାଉ ନ ଥିଲେ । ତା'ପରେ ଧୀରେ ଧୀରେ ସେଠାକୁ ଲୋକମାନେ ଯିବାରେ ଲାଗିଲେ । ଅଗରବତି ମଧ ଜଳାଇବାକୁ ଲାଗିଲେ । ସେଠାରେ ନଡ଼ିଆ ବି ବାଢ଼େଇବାରେ ଲାଗିଲେ । ଏକପ୍ରକାରର ଉକ୍ତ ସ୍ଥାନକୁ ଈଶ୍ୱରଙ୍କ ଆସ୍ଥାନର ମାନ୍ୟତା ଦେଲେ । ସେଠାରେ ଏପରି ଏକ ଜନଶ୍ରୁତି ବ୍ୟାପିଗଲା ଯେ କେହି ବି ସେଠାକୁ ଟୋପି ପିନ୍ଧି ଯାଇପାରିବେ ନାହିଁ, ଯଦି ଯିବେ ତ ତାନ୍ତିଆଙ୍କର ଭୂତ ତାଙ୍କର ଟୋପି ଛଡ଼ାଇ ନେଇଯିବ । ଅନ୍ଧ ଶ୍ରଦ୍ଧାର ପ୍ରଚାର ଯେକୌଣସି ରୂପ ନେଇପାରେ । ତା'ପରେ ଲୋକମାନେ ସେଠାକୁ ଯିବା ବନ୍ଦ କରିଦେଲେ । ଏହିପରି ୧୯୦୬–୧୯୦୭ ଯାଏ ଚାଲିଲା । ପରେ ଛାଉଣୀକୁ ଅନ୍ୟ ପଟକୁ ଉଠାଇ ନିଆଗଲା ଏବଂ ଶିବପୁରୀ ଗ୍ରାମ ଗୋଆଲିଅରର ସିନ୍ଧିଆଙ୍କ କବ୍‌ଜାକୁ ଆସିଲା । ସୈନିକ ଛାଉଣୀ ଜାଗାରେ ସିନ୍ଧିଆମାନେ 'ମାଧବ ବିଳାସ' ନାମକ ରାଜମହଲର ନିର୍ମାଣ କଲେ । ତା'ର ଚାରିପାଖରେ ଏକ ବଡ଼ ବଗିଚା କଲେ । ସେତିକିବେଳେ ତାନ୍ତିଆଙ୍କର ସମାଧିକୁ ସେହି ଚଉତରାକୁ ବି ହଟେଇ ଦିଆଗଲା । ୧୯୫୭ ମସିହାର ଦୁଇ ଚାରି ବର୍ଷ ପୂର୍ବ ପର୍ଯ୍ୟନ୍ତ ସେହି ଚଉତରା ଉପେକ୍ଷିତ ଅବସ୍ଥାରେ ରେସିଡେନ୍‌ସି ପରିସରରେ ଖୋଲା ପଡ଼ିରହିଲା । ତା'ପରେ ତାହା ସେଠାରୁ ମଧ ଉଭେଇ ଗଲା ।

ଆଜି ଶିବପୁରୀରେ ତାନ୍ତିଆ ଟୋପେଙ୍କର ଏକ କ୍ଷୁଦ୍ର ସ୍ମାରକୀ ନିର୍ମାଣ କରାଯାଇଛି ।

ଝାନ୍ସୀ ରାଣୀଙ୍କୁ ଶେଷପର୍ଯ୍ୟନ୍ତ ସହଯୋଗ କରିଥିବା ବାଣପୁର ରାଜା ମର୍ଦାନ ସିଂହଙ୍କର ଅନ୍ତ ମଧ ଅତ୍ୟନ୍ତ କରୁଣ ଥିଲା । ୧୮୫୮ ମସିହା ମାର୍ଚ୍ଚ ୧୦ ତାରିଖରେ ହ୍ୟୁରୋଜ ବାଣପୁର ଉପରେ କବ୍‌ଜା କରିନେଲେ । ମର୍ଦାନସିଂହ ତା'ପରେ ବଣଜଙ୍ଗଲରେ ଘୂରି ବୁଲିଲେ । ତାଙ୍କ ସୈନ୍ୟ ମଧ ପୂରାପୂରି ଇତସ୍ତତଃ ହୋଇଗଲେ । ଅଧିକାଂଶ ସୈନିକ ନିହତ ହେଲେ । ରାଣୀ ଲକ୍ଷ୍ମୀବାଈଙ୍କ ମୃତ୍ୟୁ ପରେ ସେହି ଯୁଦ୍ଧ ଶେଷ ହୋଇଯାଇଥିଲା । ଏପରି ପରିସ୍ଥିତିରେ ମର୍ଦାନସିଂହ ଏବଂ ଶାହଗଡ଼ର ବଖ୍‌ତବଲୀ ସିଂହଙ୍କୁ ଗୋଆଲିଅର ଯିବା ବାଟରେ ମୋରାର ନିକଟରେ ଇଂରେଜ ସୈନ୍ୟମାନେ ୧୮୫୮ ସେପ୍ଟେମ୍ବର ୨୮ ତାରିଖରେ ଧରିନେଲେ ଏବଂ ଲାହୋର ଜେଲ୍‌ରେ ନଜରବନ୍ଦୀ କରି ରଖିଲେ । ମର୍ଦାନସିଂହଙ୍କ ପରିବାର ଦତିଆ ରାଜାଙ୍କ ପାଖରେ ଆସି ରହିଲେ । ଇଂରେଜମାନେ ବାଣପୁର ଜବତ୍ କରିନେଲେ । ଏକହଜାର ଟଙ୍କା ମାସିକ ପେନ୍‌ସନ୍ ଦେଲେ ଏବଂ ଯଦି ତାଙ୍କର ଆଚରଣ ଉଚିତ ରହେ, ତା'ହେଲେ ପଚାଶବର୍ଷ ପରେ

ଇଂରେଜ ସରକାର ବାଣପୁର ରାଜାଙ୍କ ବଂଶଜଙ୍କୁ ରାଜ୍ୟର ଅଧା ମାଲଗୁଜାରି ଦେବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଦର୍ଶାଇଲେ । ମର୍ଦାନସିଂହ ବୁନ୍ଦେଲଖଣ୍ଡ ଫେରିବାକୁ ଚାହୁଁଥିଲେ । କିନ୍ତୁ ବ୍ରିଟିଶ୍ ସରକାର ଏଥିପାଇଁ ଅନୁମତି ପ୍ରଦାନ କଲେ ନାହିଁ । ୧୮୭୩ରେ ତାଙ୍କର ତରୁଣ ସାନପୁଅ ଦତିଆରେ ମୃତ୍ୟୁବରଣ କଲେ । ଏହା ପରେ ତାଙ୍କ ୧୮ ବର୍ଷର ନାତି ମଧ ମରିଗଲେ । କିନ୍ତୁ ଶେଷପର୍ଯ୍ୟନ୍ତ ତାଙ୍କୁ ନିଜ ପରିବାର ସହିତ ମିଳିତ ହେବାର ସୁଯୋଗ ଦିଆଗଲା ନାହିଁ । ଯୁଦ୍ଧର ପନ୍ଦରବର୍ଷ ବିତିଯିବା ପରେ ମର୍ଦାନସିଂହ ପୁନଶ୍ଚ ବହୁତ ଅନୁନୟ ବିନୟ କରିବାରୁ ତାଙ୍କୁ ମଥୁରାରେ ରହିବାର ଅନୁମତି ମିଳିଲା । ସେତେବେଳକୁ ଶାହଗଡ଼ ରାଜାଙ୍କର ମୃତ୍ୟୁ ହୋଇସାରିଥିଲା । ମର୍ଦାନସିଂହ ମଥୁରାରେ ରାଧାକୃଷ୍ଣ ମନ୍ଦିରରେ ଧ୍ୟାନ-ପୂଜା କରିବାରେ ଲାଗିଲେ । ପାଞ୍ଚବର୍ଷ ପରେ ମଥୁରାରେ ତାଙ୍କର ମୃତ୍ୟୁ ହୋଇଗଲା । ବୁନ୍ଦେଲଖଣ୍ଡର ଆଉ ଏକ ଉଜ୍ଜ୍ୱଳ ନକ୍ଷତ୍ର ଖସିପଡ଼ି ଅସ୍ତମିତ ହୋଇଗଲା । ଝାନ୍‌ସୀର ରାଣୀଙ୍କ ଆଉ ଜଣେ ସହଯୋଗୀ କାଳ-ଗର୍ଭରେ ଲୀନ ହୋଇଗଲେ ।

ରାଣୀ ଲକ୍ଷ୍ମୀବାଈଙ୍କ ଦେହାନ୍ତ ହେବାବେଳକୁ ତାଙ୍କର ପୋଷ୍ୟପୁତ୍ର ଦାମୋଦରରାଓ ନଅବର୍ଷର ଥିଲେ । ତା'ପରେ ସେହି ବାଳକଙ୍କର କ'ଣ ଅବସ୍ଥା ହେଲା ? ସେ କିପରି ବଞ୍ଚିଥିଲେ ? କିପରି ବଡ଼ ହେଲେ ? ବଞ୍ଚିଥିଲେ ନା ମରି ଯାଇଥିଲେ ? ସେ ସଂପର୍କରେ କେହି ମଧ କିଛି ଖୋଜଖବର ନେଇ ନ ଥିଲେ । ସେ ସମ୍ବନ୍ଧରେ କେଉଁଠାରେ ମଧ କିଛି ଉଲ୍ଲେଖ ହୋଇ ନାହିଁ । ସେହି ବାଳକଙ୍କ ସମ୍ପର୍କରେ କୌଣସି ସୂଚନା ବହୁବର୍ଷଯାଏ ମହାରାଷ୍ଟ୍ରକୁ ଜଣା ନ ଥିଲା ।

ସଂଯୋଗବଶତଃ ଦିନେ ଏହି ସଂପର୍କରେ ତଥ୍ୟ ପ୍ରକାଶକୁ ଆସିଲା । ୧୮୯୪ରେ ପାରସନିସ୍‌ଙ୍କ 'ଝାନ୍‌ସୀର ରାଣୀ' ଶୀର୍ଷକ ଜୀବନଚରିତ ପ୍ରକାଶିତ ହେଲା । ଏହି ପୁସ୍ତକର ମୁଖବନ୍ଧରେ ତାଙ୍କର ଚର୍ଚ୍ଚା ମିଳେ । ୧୮୯୦, ମେ ମାସରେ ପୁନାରେ ବସନ୍ତ ବ୍ୟାଖ୍ୟାନମାଳାରେ ବସନ୍ତ ରାଓ ପଣ୍ଡିତ ନାମକ ଜନୈକ ବ୍ୟକ୍ତି ବକ୍ତୃତା ଦେଇଥିଲେ । ସେଥିରେ ସେ ରାଣୀ ଲକ୍ଷ୍ମୀବାଈଙ୍କ ସଂପର୍କରେ ବେଶ୍ କିଛି ସୂଚନା ପ୍ରଦାନ କରିଥିଲେ । ସେହି ଭାଷଣର ବିବରଣୀ କେଶରୀର ୨୭ ମେ' ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ସ୍ୱୟଂ ଦାମୋଦରରାଓ ସେହି ବିବରଣୀକୁ ପଢ଼ିଥିଲେ । ତାହା ପାଠ କରି ତାଙ୍କୁ ବହୁତ ଖରାପ ଲାଗିଥିଲା । ସେ ସମୟରେ ସେ ଇନ୍ଦୋରରେ ରହୁଥିଲେ । ତୁରନ୍ତ ସେ ସତ୍ୟାସତ୍ୟ କ'ଣ- ସେ ବିଷୟରେ ସ୍ପଷ୍ଟୀକରଣ ଦେବାପୂର୍ବକ 'କେଶରୀ'କୁ ଏକ ପତ୍ର ଲେଖିଥିଲେ । ସେହି ପତ୍ର ୧୮୯୦ ମସିହା ଜୁନ ୧୦ ତାରିଖ ସଂଖ୍ୟା 'କେଶରୀ'ରେ ଛପା ହୋଇଥିଲା । ଏହା ସହିତ 'କେଶରୀ'ର ସଂପାଦକ ଦାମୋଦରରାଓଙ୍କ ନିକଟରେ କ୍ଷମାପ୍ରାର୍ଥନା କରିଥିଲେ । ଦାମୋଦରରାଓ ବସନ୍ତରାଓଙ୍କୁ ଆହ୍ୱାନ ଦେଇଥିଲେ ଯେ ରାଣୀ ଲକ୍ଷ୍ମୀବାଈଙ୍କ ସମ୍ବନ୍ଧରେ ସେ ଯାହାସବୁ ବକ୍ତବ୍ୟ ରଖିଛନ୍ତି ତାକୁ ସମର୍ଥନ କରି ସେ ନିଜର ପ୍ରମାଣ

ପ୍ରସ୍ତୁତ କରନ୍ତୁ । ପ୍ରମାଣ ପ୍ରସ୍ତୁତ କରି ନ ପାରିବାରୁ ବସନ୍ତରାଓ ମଧ୍ୟ ପ୍ରକାଶ୍ୟ ଭାବରେ କ୍ଷମାପ୍ରାର୍ଥନା କରିଥିଲେ । ସେତେବେଳେ ଯାଇ ଲୋକମାନଙ୍କୁ ରାଣୀ ଲକ୍ଷ୍ମୀବାଈଙ୍କର ପୋଷ୍ୟପୁତ୍ରଙ୍କର ଅସ୍ତିତ୍ୱ ସଂପର୍କରେ ଖବର ମିଳିଲା । ତାହା ମଧ୍ୟ ରାଣୀଙ୍କ ମୃତ୍ୟୁର ବତିଶ ବର୍ଷ ପରେ ।

୧୯୪୭ରେ ରାମକୃଷ୍ଣ ଗୋପାଳ ଭିଡ଼େ 'ଝାନ୍ସୀର ସ୍ୱତନ୍ତ୍ର ଲକ୍ଷ୍ମୀ' ନାମକ ଜୀବନଚରିତ ଲେଖିଲେ । ସେଥିରେ ସେ କହିଲେ ଯେ ଦାମୋଦର ପନ୍ତ ନିଜର ବାସ୍ତବତା ଦର୍ଶାଇ ଆତ୍ମଚରିତ ରଚନା କରିଛନ୍ତି । ଏହି ପୁସ୍ତକ ମୋତେ କେଉଁଠି ମଧ୍ୟ ପ୍ରାପ୍ତ ହେଲା ନାହିଁ । କିନ୍ତୁ କେଶରୀର ୩ ଏପ୍ରିଲ୍, ୧୯୩୬ ସଂଖ୍ୟାରେ ସଂକ୍ଷେପରେ ଯେଉଁ ଆତ୍ମକଥା ପ୍ରସ୍ତୁତ କରାଯାଇଛି – ସେହି ଆଧାରରେ ସତ୍ୟାସତ୍ୟ ଜଣାପଡ଼ିଲା ।

ସେଥିରେ ଦାମୋଦରରାଓ ଲେଖିଛନ୍ତି ଯେ – "ମାତାଶ୍ରୀ ବୀରସ୍ୱର୍ଗ ଦର୍ଶନ କଲେ" । ତା'ପରେ ସେ (ଦାମୋଦରରାଓ) ତିନିଦିନ ଗୋଆଲିଅରରେ ରହିଲେ । ତାଙ୍କ ସହିତ ଥିବା ବିଶ୍ୱସ୍ତ ଲୋକମାନଙ୍କ ଭିତରୁ କେବଳ ଷାଠିଏଜଣ ଲୋକ ବଞ୍ଚି ରହିଥିଲେ । ସେମାନଙ୍କ ପାଖରେ ବାଇଶଟି ଘୋଡ଼ା, ଛଟି ଓଟ ଏବଂ ଅଳ୍ପକିଛି ଧନସମ୍ପତ୍ତି ଥିଲା । ରିସାଲ୍‌ଦାର ନନ୍ହେଖାନ୍, ଗଣପତ୍‌ରାଓ ନାମକ ମରାଠା ସରଦାର, ରଘୁନାଥ ସିଂହ, ରାମଚନ୍ଦ୍ର ରାଓ ଦେଶମୁଖ, ଏହି ଲୋକମାନେ ତିନିଦିନ ପରେ ରାଓସାହେବଙ୍କୁ ଛାଡ଼ି ଦାମୋଦରରାଓଙ୍କୁ ନେଇ ଗୋଆଲିଅର ତ୍ୟାଗ କଲେ । ତା'ପରେ ଏମାନେ ଲୁଚି–ଛପି ଗାଁ, ନିର୍ଜନ ଘାଟି, ଜଙ୍ଗଲରେ ଘୂରି ବୁଲିଲେ । ଇଂରେଜ ସେନାଙ୍କ ସହିତ କେତେବେଳେ କେଉଁଠି ଭେଟ ହୋଇଯିବ କହିବା ମୁସ୍କିଲ ଥିଲା । ଝାନ୍ସୀବାଲୀ ରାଣୀଙ୍କ ଲୋକ ହୋଇଥିବା ଯୋଗୁଁ କୌଣସି ଗାଁ କିମ୍ବା ବସ୍ତିକୁ ଗଲେ ଇଂରେଜଙ୍କ ଭୟରେ ଆମକୁ ସାହାଯ୍ୟ କରିବାକୁ ଲୋକମାନେ ପଛାଉଥିଲେ । ଜଙ୍ଗଲରେ ଭୟଙ୍କର ଜନ୍ତୁଙ୍କ ଯୋଗୁଁ ଗଛ ଉପରେ ଚଢ଼ି ଆମେ ରାତି ବିତାଉଥିଲୁ । ଜଙ୍ଗଲରେ ମିଳୁଥିବା ଫଳ ଓ କନ୍ଦମୂଳ ଖାଇ ପେଟ ପୂରାଉଥିଲୁ । ଆଖପାଖର ଗାଁକୁ ଯାଇ ଖାଦ୍ୟପେୟର ବ୍ୟବସ୍ଥା କରିବା କଷ୍ଟକର ଥିଲା । କାରଣ ଇଂରେଜଙ୍କ ଭୟରେ ଗ୍ରାମୀଣ ଲୋକେ ସାହାଯ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ । ଏହାଛଡ଼ା କାଳେ କେହି ବିଶ୍ୱାସଘାତ କରିବ, ମନରେ ଏ ଭୟ ମଧ୍ୟ ରହିଥିଲା । ଖରା, ବର୍ଷା, କାଳୁଆ ପବନ ସହି ସହି, ନଈନାଳ ପାର ହୋଇ ବଣଜଙ୍ଗଲରେ ବୁଲୁବୁଲୁ କେତେବେଳେ କେଉଁ ଗୁମ୍ଫା ଭିତରେ ତ କେତେବେଳେ ଗଛ ଉପରେ ଚଢ଼ି ଜୀବନଯାପନ କରିବାକୁ ପଡୁଥିଲା । ଏହିପରି ଦୁଇବର୍ଷ ବିତିଗଲା । ବହୁତ କଷ୍ଟ ଏବଂ ବିପଦ ସହିବାକୁ ପଡ଼ିଲା । ରୋଗ ବେମାରି ମଧ୍ୟ ସହିବାକୁ ହେଲା । ଗାଁର ଜଣେ ପଟବାରୀ ଆମକୁ କହିଲା ଯେ ଇଂରେଜଙ୍କ ଭୟରେ ସେ ଆମକୁ ଗାଁରେ ରଖିପାରିବ ନାହିଁ । କିନ୍ତୁ ଯଦି ଗାଁ ପାଖର ଜଙ୍ଗଲରେ ରହିବ ତ ପଇସା ନେଇ ଖାଦ୍ୟଶସ୍ୟ ପହଞ୍ଚାଇଦେବ ।

ତା'ପରେ ଆମେମାନେ କିଛିଦିନ ପାଇଁ ଜଙ୍ଗଲରେ ରହିବାକୁ ଲାଗିଲୁ । କିଛିଦିନ ପାଇଁ ଆମର ଯାତ୍ରା ଅଟକି ଯାଇଥିଲା । ଏବେ ଆମେ କେବଳ ଏଗାରଜଣ ଲୋକ ବଞ୍ଚିରହିଥିଲୁ । କାଶୀ କୁମ୍ବି ଶେଷପର୍ଯ୍ୟନ୍ତ ଦାମୋଦରରାଓଙ୍କର ପୂରା ଯତ୍ନ ନେଉଥିଲେ । ସେହି ପଟବାରୀ ଆମଠାରୁ ବହୁତ ପଇସା ଆଦାୟ କରିବାରେ ଲାଗିଲା । ପଇସା ମଧ୍ୟ ଏବେ ସରି ଆସିଥିଲା । ପୁଣି ଥରେ ଏଠି ସେଠି ଘୂରି ବୁଲିବାକୁ ହେଲା । ସାଥିରେ ଥିବା ଲୋକମାନେ ଗାଁ ଭିତରକୁ ଯାଇ ଜଣଜଣକିଆ କିଛି କିଛି କାମଧନ୍ଦା କରିବାକୁ ଲାଗିଲେ । ଏହିପରି ଉଭୟଙ୍କ ମଧ୍ୟରେ ବିଶ୍ୱାସ ସ୍ଥାପିତ ହେଲା । ଏହା ପରେ ନନ୍ହେଖାନ୍ ରେସିଡେଣ୍ଟଙ୍କୁ ଦାମୋଦରରାଓଙ୍କର ଦୁର୍ଗତିର ସୂଚନା ପ୍ରଦାନ କଲେ । ଜଣେ ବୀରାରାଣୀଙ୍କର ଏଗାରବର୍ଷର ପୁତ୍ର ଏପରି ବନବାସ ଭୋଗ କରୁଛନ୍ତି । ଯଦି ଆପଣ ତାଙ୍କୁ ଅଭୟଦାନ ଦେବେ ତ ସମଗ୍ର ହିନ୍ଦୁସ୍ଥାନ ଆପଣଙ୍କୁ ଆଶୀର୍ବାଦ କରିବ । ରେସିଡେଣ୍ଟଙ୍କୁ ସେ ଏହିପରି କହିଲେ । ଏହା ପରେ ସେହି ଦୟାଳୁ ରେସିଡେଣ୍ଟ ଇନ୍ଦୋରର ପଲିଟିକାଲ୍ ଏଜେଣ୍ଟଙ୍କ ନିକଟରେ ଦାମୋଦରରାଓଙ୍କ ନିମନ୍ତେ ସୁପାରିସ କଲେ । ବହୁତ ଉଦ୍ୟମ ପରେ ଦାମୋଦରରାଓଙ୍କୁ ସରକାରଙ୍କ ତରଫରୁ ଇନ୍ଦୋରରେ ଅଭୟ ତଥା ଆଶ୍ରୟ ମିଳିଲା । ଇଂରେଜ ସରକାରଙ୍କ ତରଫରୁ ଦେଢ଼ଶହ ଟଙ୍କା ବେତନ ମଧ୍ୟ ମିଳିବାରେ ଲାଗିଲା । ଯୁଦ୍ଧର ତିରିଶ ବର୍ଷ ପରେ ଅର୍ଥାତ୍ ୧୮୮୭ରେ ଦାମୋଦରରାଓ ସରକାରଙ୍କୁ ନିଜର ମୂଳ ପାରୋଲା ଖାନ୍‌ଦେଶର ତେରଟି ଗ୍ରାମ ବଂଶ ପରମ୍ପରାର ଉତ୍ତରାଧିକାର ସୂତ୍ରରେ ଫେରସ୍ତ ମାଗିଲେ । ସେଥିପାଇଁ ଭିନ୍ନ ଭିନ୍ନ ଉପାୟରେ ଖୁବ୍ ପ୍ରଯତ୍ନ କରାଗଲା । ଭାଇସ୍‌ରାୟଙ୍କ ପର୍ଯ୍ୟନ୍ତ ଚେଷ୍ଟା କରାଗଲା । ପତ୍ର ବିନିମୟ କରାଗଲା । ଦରମା ଦେଢ଼ଶହରୁ ଦୁଇଶହ କରି ଦିଆଗଲା । କିନ୍ତୁ ଉତ୍ତରାଧିକାରୀ ହିସାବରେ ଦାମୋଦରରାଓଙ୍କୁ ଅର୍ଥ ମିଳିଲା ନାହିଁ । ଏହା ପରେ ତାଙ୍କର ଖୁଡ଼ୀ ତାଙ୍କର ବିବାହ କରାଇଦେଲେ । ଦାମୋଦରରାଓଙ୍କ ପରେ ତାଙ୍କର ପୁଅ ଲକ୍ଷ୍ମଣ ରାଓ ୧୯୩୬ ମସିହାରେ କଂଗ୍ରେସ ନେତା ଲୋକନାୟକ ଅଣେଙ୍କ ମାର୍ଫତରେ କେନ୍ଦ୍ରସରକାରଙ୍କ ପାଖରେ ଝାନ୍‌ସୀରାଣୀଙ୍କ ବଂଶଜ ଓ ଉତ୍ତରାଧିକାରୀଙ୍କ ସମ୍ବନ୍ଧରେ ପ୍ରଶ୍ନ ଉଠାଇଥିଲେ । କିନ୍ତୁ ତାଙ୍କୁ ଯେଉଁ ଉତ୍ତର ମିଳିଲା, ତାହା ହେଲା– "୧୮୫୭ର ବିଦ୍ରୋହ ପରେ ଝାନ୍‌ସୀ ରାଣୀଙ୍କର ସମସ୍ତ ନିଜସ୍ୱ ସଂପତ୍ତି, ଜମିଜମା ଜବତ୍ କରି ନିଆଯାଇଥିଲା । ତେଣୁ ତାଙ୍କ ଉତ୍ତରାଧିକାରୀଙ୍କୁ ଅର୍ଥ ପ୍ରଦାନ କରିବାର ପ୍ରଶ୍ନ ହିଁ ଉଠୁ ନାହିଁ ।"

ରାଣୀ ଲକ୍ଷ୍ମୀବାଈଙ୍କର ପୋଷ୍ୟପୁତ୍ର ଦାମୋଦରରାଓଙ୍କ ବଂଶ ଆଜି ମଧ୍ୟ ଇନ୍ଦୋରରେ ବସବାସ କରୁଛନ୍ତି । ପଢ଼ାଲେଖା କରି ଚାକିରି–ବାକିରି କରି ଚଳୁଛନ୍ତି ।

## ଅଧ୍ୟାୟ–୬

# ବ୍ୟକ୍ତିତ୍ୱ ଓ କୃତିତ୍ୱ

ମନୁଷ୍ୟ ଯେତେବେଳେ ଜନ୍ମ ନିଏ ତ ନିଜ ସାଙ୍ଗରେ ଦୁଇଟି ଜିନିଷ ନେଇ ଆସିଥାଏ । ଗୋଟିଏ ହେଲା ନିୟତି ଓ ଦ୍ୱିତୀୟଟି ନିଜ ଜନ୍ମଜାତ ପ୍ରବୃତ୍ତି । ଏହି ଦୁଇଟି ସ୍ୱର ଯେତେବେଳେ ମେଳ ଖାଏ ନାହିଁ, ସେତେବେଳେ ମନୁଷ୍ୟ ଜୀବନସାରା ସଂଘର୍ଷ ଓ ବାଧାବିଘ୍ନର ସାମ୍ନା କରି ଚାଲିଥାଏ । ଯଦି ବ୍ୟକ୍ତିର ନିୟତି ଦୁର୍ଭାଗ୍ୟପୂର୍ଣ୍ଣ ହୋଇଥାଏ ଓ ସେହି ବ୍ୟକ୍ତି ସ୍ୱାଭିମାନପୂର୍ଣ୍ଣ ଜୀବନ ବିତାଇବାକୁ ସଂକଳ୍ପବଦ୍ଧ ହୋଇଥାଏ, ତା'ହେଲେ ଆହୁରି ବେଶି ସଂଘର୍ଷର ସାମନା କରିବାକୁ ପଡ଼େ ଓ ତା' ପାଇଁ ଅନେକ ପ୍ରତିବନ୍ଧକ ସୃଷ୍ଟି ହୁଏ । ହୁଏତ ସେ ନିଜ ନିୟତି ଉପରେ ଭରସା କରି ଚୁପ୍‌ଚାପ୍ ବସି ରହିବ, ନ ହେଲେ ନିଜର କୃତି ବଳରେ ନିୟତିକୁ ନିଜ ମନମୁତାବକ ପରିବର୍ତ୍ତିତ କରିବାକୁ ପ୍ରୟାସ କରିବାରେ ଲାଗିବ । ଏମିତି ନିର୍ଣ୍ଣୟ ଉପରେ ହିଁ ବ୍ୟକ୍ତିର ଶ୍ରେଷ୍ଠତା ନିର୍ଭର କରେ । ମନୁଷ୍ୟର ବ୍ୟକ୍ତିତ୍ୱର ଏହି ଦିଗକୁ ଜାଣିବା ଓ ସେହି ବ୍ୟକ୍ତିର ଜୀବନ ସହିତ ଏହି ପକ୍ଷର ସଂପର୍କକୁ ଖୋଜିବା ବି ଏକ ମହତ୍ତ୍ୱପୂର୍ଣ୍ଣ ଆହ୍ୱାନ ।

ମନୁଷ୍ୟକୁ ନିଜର ଜୀବନ, ନିଜର ମନମୁତାବକ ସ୍ୱେଚ୍ଛାରେ ବିକଶିତ କରିବାକୁ ସ୍ୱତନ୍ତ୍ରତାର ଆବଶ୍ୟକତା ରହିଛି, କିନ୍ତୁ ନିୟତିର ମନୁଷ୍ୟର ଏ ପ୍ରକାର ଆଶା ଆକାଂକ୍ଷା ସହ କୌଣସି ଦବାନବା ନ ଥାଏ । ମନୁଷ୍ୟର ନିୟତି, ତା'ର ବିଧିଲିଖିତ, ସ୍ୱୟଂଭୂ, ସ୍ୱୟଂପୂର୍ଣ୍ଣ ରହେ ଓ ତାହା ପୂର୍ବ ନିୟୋଜିତ ହୋଇଥାଏ । ତାକୁ ନିର୍ଦ୍ଧାରିତ କିଏ କରେ ? ଏହି ରହସ୍ୟ ଆଜି ବି ଅଡୁଆ ସୂତା ପରି ସଜାଡ଼ି ହେବ ନାହିଁ । ହେଲେ ଏଇ ଦୁଇଟା ଭିତରେ ସଂପର୍କ କ'ଣ ? ଏହା ନିଜେ ଗୋଟିଏ ବଡ଼ ରହସ୍ୟ । ନିୟତି ଓ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଗଠନର ବାସ୍ତବିକ୍ ସ୍ୱରୂପ କ'ଣ ? ଏହା ଏକ ରହସ୍ୟ । ଏହି ଦୁଇଟି ପ୍ରଶ୍ନର ଉତ୍ତର ଖୋଜିବା ସମୟରେ ବୁଝାପଡ଼େ ମନୁଷ୍ୟର ସଂପୂର୍ଣ୍ଣ ଜୀବନ ଏହି ଦୁଇଟି ଭିତରେ ଅନେକ ସଂଘର୍ଷର ଜବାବ ଦେଉ ଦେଉ ହିଁ ବିତିଯାଏ । ତା'ର ଚେଷ୍ଟା ଫଳରେ କେତେବେଳେ ସଫଳତା ମିଳେ ତ କେତେବେଳେ ପରାଜୟ ସ୍ୱୀକାର କରିବାକୁ ପଡ଼େ ତ କେତେବେଳେ ଆଂଶିକ ବିଜୟ ବି ମିଳେ । ଏହି ନିର୍ଣ୍ଣୟ ନିୟତି ଓ ଆନ୍ତରିକ ଇଚ୍ଛା ଏହି ଦୁଇଟି ଭିତରେ ବଳ କଷାକଷି ଉପରେ ନିର୍ଭର କରେ । କେତେବେଳେ ନିୟତି

ସବାର ହୋଇଯାଏ ତ କେତେବେଳେ ଆନ୍ତରିକ ଦୃଢ଼ ନିଶ୍ଚୟ । କିନ୍ତୁ ପରାଜୟ ମିଳିଲା ପରେ ବି ସେହି ବ୍ୟକ୍ତିର ପ୍ରଯତ୍ନ ଭୁଲ୍ ପ୍ରମାଣିତ ହୁଏ ନାହିଁ କି ସେହି ବ୍ୟକ୍ତିର ମହାନତା କମ୍ ହୁଏ ନାହିଁ । ସେହି ବ୍ୟକ୍ତିର ମହତ୍ତ୍ୱ ଗୋଟିଏ କଥାରୁ ନିଶ୍ଚିତ ହୁଏ ଯେ ଜୀବନରେ ଆସୁଥିବା ବିପତ୍ତିଗୁଡ଼ିକୁ ସେ କିଭଳି ଭାବରେ ସାମନା କରିପାରୁଛି । ନିୟତି ପାଖରେ ଯଦି ଶେଷ ପର୍ଯ୍ୟାୟରେ ଆତ୍ମସମର୍ପଣ ବି କରିବାକୁ ପଡ଼େ ତେବେବି ତା'ର ଯଶ ହାନି ହୁଏ ନାହିଁ, ସର୍ବଦା ପ୍ରଜ୍ୱଳିତ ହେଉଥାଏ । ସେଇଥିରେ ହିଁ ବ୍ୟକ୍ତିର ସଫଳତା ନିହିତ ଥାଏ ।

ଝାନ୍ସୀ ରାଣୀଙ୍କର ଜୀବନ, ତାଙ୍କର ନିୟତି, ତାଙ୍କର ଆନ୍ତରିକ ଇଚ୍ଛା ଉପରେ ବିଚାର କରିବା ସମୟରେ ତାଙ୍କର ପାରସ୍ପରିକ ସଂପର୍କ ମଧ୍ୟରେ ଥିବା ରହସ୍ୟ ଅଧିକ ଗାଢ଼ ହୋଇଯାଏ । ତାହା ଖୋଜିବା ସମୟରେ ରାଣୀ ଲକ୍ଷ୍ମୀବାଈଙ୍କର ଚରିତ୍ର, ତାଙ୍କର ଚତୁରତା ଆଦି ମନ ମୋହିନେଲା ଭଳି ଗୁଣମାନ ଦୃଷ୍ଟିଗୋଚର ହୁଏ । ଶେଷରେ ଏହି କଷଟିରେ ରାଣୀ ଲକ୍ଷ୍ମୀବାଈଙ୍କର ଶ୍ରେଷ୍ଠତା ପ୍ରତିପାଦିତ ହୁଏ । ସେ ନିଜର ନିୟତି ସହ ଚୁପଚାପ୍ ସାଲିସ କରି ନ ଥିଲେ । ଆଜୀବନ ସେହି ଦୁର୍ଭାଗ୍ୟପୂର୍ଣ୍ଣ ଚକ୍ରବ୍ୟୂହରୁ ନିଜକୁ ବାହାର କରି ନିଜ ଜୀବନର ଶ୍ରେଷ୍ଠତା ଓ ଲୋକପ୍ରିୟତା ପ୍ରମାଣିତ କରି ବଞ୍ଚିଲେ ଓ ବୀର-କେଶରୀ ପରି ଶେଷରେ ବୀର-ଗତି ପ୍ରାପ୍ତ କଲେ ।

ଏକ ଗରିବ ଆଶ୍ରିତ ବ୍ରାହ୍ମଣ ଘରେ ତାଙ୍କର ଜନ୍ମ । ପିଲାଦିନୁ ହିଁ ମା'ର ବାତ୍ସଲ୍ୟମମତାରୁ ସେ ବଞ୍ଚିତ ହୋଇଥିଲେ । ମାତୃହୀନ ଝିଅଟିର ଲାଳନପାଳନ ହୋଇଥିଲା ବାଜିରାଓ ଦ୍ୱିତୀୟ ପରି ବ୍ୟଭିଚାରୀ, ଦୁରାଚାରୀ, ଚରିତ୍ରହୀନ, ଅଳସୁଆ ଓ କର୍ତ୍ତବ୍ୟହୀନ, ପରାଜିତର ଘରେ । ତାଙ୍କୁ ଖୁବ୍-ମାୟା-ମମତା ମିଳିଲା । ବିବାହ ହେଲା ଝାନ୍ସୀ ରାଜ୍ୟର ଧନୀ, କର୍ତ୍ତବ୍ୟପରାୟଣ କିନ୍ତୁ ତାଙ୍କଠାରୁ ତିରିଶ-ବତିଶ ବୟସ ଅଧିକ ବୟସର ବିବାଦରେ ଛନ୍ଦି ହୋଇଥିବା ରାଜାଙ୍କ ସହ । ତାଙ୍କର ଗୋଟିଏ ପୁତ୍ର ଜନ୍ମ ନେଲା ମାତ୍ର ଅଚାନକ ତା'ର ମୃତ୍ୟୁ ହୋଇଗଲା । ରାଜା ଅନ୍ୟ ଏକ ବାଳକକୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କଲେ, କିନ୍ତୁ ରାଜାଙ୍କ ମୃତ୍ୟୁ ପରେ ଇଂରେଜମାନେ ତାଙ୍କର ରାଜ୍ୟସମ୍ପତ୍ତି ଅଧିକାର କାଢ଼ିନେଲେ ଓ ଝାନ୍ସୀକୁ ବ୍ରିଟିଶ୍ ଶାସନାଧୀନ ବୋଲି ଘୋଷଣା କରିଦେଲେ । ତାଙ୍କୁ ସବୁପ୍ରକାରର ଅପମାନିତ କରାଗଲା । ପରେ ମଉକା ମିଳିବାରୁ ଶକ୍ତିଶାଳୀ ଇଂରେଜଙ୍କ ବିରୋଧରେ ଯୁଦ୍ଧ କରି ସେ ବଳିଦାନୀ ଜୀବନ ସ୍ୱୀକାର କରିନେଲେ । ନିୟତିର ପ୍ରତ୍ୟେକ କ୍ଷେତ୍ରରେ ସେ ନିଜର ଧୈର୍ଯ୍ୟ, ଶୌର୍ଯ୍ୟ ଓ ଚାତୁର୍ଯ୍ୟର ଅଲିଭା ଛାପ ରଖିଗଲେ । ତାଙ୍କର ସଂପୂର୍ଣ୍ଣ ଜୀବନ ପ୍ରତି ଦୃଷ୍ଟିପାତ କଲେ ଆମ ନଜରକୁ ଯାହା ଆସେ ତାହା ହେଲା ତାଙ୍କର ଶକ୍ତିଶାଳୀ ବ୍ୟକ୍ତିତ୍ୱ ଓ ତାଙ୍କର ନିଷ୍କଳଙ୍କ, ଆଦର୍ଶମୟ ଚରିତ୍ର । ମନକୁ ମୋହିନେଉଥିବା ଗୁଣ, ସ୍ୱଜନମାନଙ୍କ ପ୍ରତି ବୁଦ୍ଧିମତ୍ତା ଓ ପରିଜନମାନଙ୍କ ପ୍ରତି ତାଙ୍କର ଦକ୍ଷତା, ଏହି କାରଣରୁ ଏକ ଗରିବ, ମାତୃହୀନ, ଆଶ୍ରିତମାନଙ୍କ ଭିତରେ ବଢ଼ିଥିବା ଝିଅ 'ଝାନ୍ସୀ

ରାଣୀ' ବୋଲାଇଲା । ଏଠାରେ ଏହି ଦୁଇଟି ଶବ୍ଦର ଅର୍ଥ ନିଶ୍ଚିତରୂପେ କେବଳ ଝାନ୍ସୀ ରାଜା ଗଙ୍ଗାଧର ରାଓଙ୍କ ପତ୍ନୀ ଭାବେ ସୀମିତ ନୁହେଁ ବରଂ 'ଝାନ୍ସୀ ରାଣୀ' ଶବ୍ଦର ଉପଯୋଗ ଲକ୍ଷ୍ମୀବାଈଙ୍କ କାରଣରୁ ହିମାଳୟଠାରୁ ଉଚ୍ଚ କର୍ତ୍ତବ୍ୟ ପାଳନର, ଶାଶ୍ୱତ ପ୍ରେରଣାର, ଶୌର୍ଯ୍ୟର ସମଷ୍ଟିକୁ ବୁଝାଏ । ତାଙ୍କ ବ୍ୟକ୍ତିତ୍ୱର ଏହି ଅର୍ଥ ଏଠାରେ ବୁଝିବାକୁ ହେବ ।

## ବ୍ୟକ୍ତିତ୍ୱର ବିକାଶ

ବ୍ରହ୍ମାବର୍ତ୍ତର ଏହି ଛୋଟ ମଣିକର୍ଣ୍ଣିକା, ବାଜିରାଓ ଦ୍ୱିତୀୟଙ୍କ ରାଜପ୍ରାସାଦରେ ଆଶ୍ରିତର ଝିଅ ରୂପରେ ବଢୁଥିଲା । ତତ୍କାଳୀନ ବାଜିରାଓଙ୍କ ଜୀବନଶୈଳୀର ବର୍ଣ୍ଣନା ସାଲକାଢ଼େ ନାମକ ଏକ ବ୍ୟକ୍ତି ଲେଖିଛନ୍ତି । ସେହି ସମୟରେ ବ୍ରହ୍ମାବର୍ତ୍ତରେ ସାଲକାଢ଼େ ବାଜିରାଓଙ୍କର ଜାଗିରଦାର ଥିଲେ । ୧୮୫୭ ଘଟଣା ପରେ ସେ ବ୍ରହ୍ମାବର୍ତ୍ତରୁ ମହାରାଷ୍ଟ୍ରର ବିଂଚୁର ଗାଁକୁ ପଳେଇ ଆସିଥିଲେ । ୧୮୮୨ରେ ସେଠାକାର ଗୋଟିଏ ସ୍କୁଲର ଜଣେ ହେଡ଼ମାଷ୍ଟର, ଗୋପାଳ ବାଳକୃଷ୍ଣ ବୈଦ୍ୟଙ୍କ ସହ ସାକ୍ଷାତ୍ ହୋଇଗଲା । ଜିଜ୍ଞାସୁ ପ୍ରବୃତ୍ତିର ବୈଦ୍ୟ ଘଣ୍ଟା ଘଣ୍ଟା ଧରି ସାଲକାଢ଼େଙ୍କ ସହ ବସି ବିଭିନ୍ନ ବିଷୟରେ ଆଲୋଚନା କରୁଥିଲେ । ସାଲକାଢ଼େ ବ୍ରହ୍ମାବର୍ତ୍ତରେ ରହୁଥିବା ସମୟର ଘଟଣାମାନ ବୈଦ୍ୟଜୀଙ୍କୁ ଶୁଣାଉଥିଲେ । ତାଙ୍କର ଏହି ସ୍ମୃତିକୁ ବୈଦ୍ୟ ମହାଶୟ ଯେମିତି ଶୁଣିଥିଲେ ସେମିତି ଲେଖି ପ୍ରସ୍ତୁତ କରିଥିଲେ । ପରେ ବୈଦ୍ୟଜୀ ନିଜ ମୃତ୍ୟୁ ପୂର୍ବରୁ ଏହି ସ୍ମୃତିର ହସ୍ତଲିଖିତ ପ୍ରତି ନାସିକର ଶଂ. ନା. ଜୋଶୀଙ୍କୁ ଦେଇଦେଲେ । ତାକୁ ପଢ଼ି ଯୋଶୀ ମହାଶୟଙ୍କୁ ବି ବହୁତ ଆନନ୍ଦ ମିଳିଲା । ପରେ ସେ ସେହି ଲେଖାକୁ 'ଉନକିୟାଦ' (ତାଙ୍କ ସ୍ମୃତି)ର ଶୀର୍ଷକରେ ଭାରତ ଇତିହାସ ସଂଶୋଧନ ମଣ୍ଡଳରେ ଏପ୍ରିଲ ୧୯୩୮ ଅଙ୍କରେ ପ୍ରକାଶିତ କଲେ । ସେଇ ଲେଖାକୁ ପଢ଼ିଲେ ବାଜିରାଓ ଦ୍ୱିତୀୟଙ୍କର ଜୀବନର ଅନେକ ଦିଗ ଉନ୍ମୋଚିତ ହୁଏ, ଯାହାକୁ ବିଶ୍ୱସନୀୟ ବୋଲି ଧରି ନିଆଯାଇପାରେ ।

ବାଜିରାଓ ଦ୍ୱିତୀୟ ପୁନାରୁ ଯେତେବେଳେ ବାହାରିଥିଲେ ସେହି ସମୟରେ ଦୟାଳୁ ଏଲଫିଷ୍ଟନ ସାହେବ ପୁନାରେ ହିଁ ଥିଲେ । ସେ ବାଜିରାଓଙ୍କୁ ପୁନାରେ ରହିବାକୁ ପରାମର୍ଶ ଦେଇଥିଲେ । ପ୍ରଶାସନ ଦେଖାଦେଖି କରିବାକୁ କହିଲେ । କିନ୍ତୁ ବାଜିରାଓ ତାଙ୍କ କଥା ଶୁଣିଲେ ନାହିଁ ଓ ବୈଠକରୁ ଉଠି ଏକଲା ଚାଲିଗଲେ । ସେତେବେଳେ ଏଲଫିଷ୍ଟନ ସାହେବ କହିଲେ ଯଦି ଆପଣ ରହିବାକୁ ଚାହାନ୍ତି ନାହିଁ ତା'ହେଲେ ଆପଣ ନିଜ ସହ ଯାହା ଜିନିଷ ନେବାକୁ ଚାହାନ୍ତି ନେଇପାରନ୍ତି । ସେତେବେଳେ ପେଶୱା ଚଉଦଟା ହାତୀ ଉପରେ ମଣିମାଣିକ୍ୟ, ଚଉଦଟି ହାତୀ ଉପରେ ସୁନାମୋହର, ସୁନା ଚାନ୍ଦିର ଟଙ୍କା, ଅସରଫି ଆଦି ମିଶାଇ ଅଠେଇଶଟି ହାତୀ ନିଜ ସାଙ୍ଗରେ ନେଇଗଲେ ।

ଥରେ ବିଠୁରରେ ଜୋରଦାର ଅକାଳ ପଡ଼ିଲା । ସେତେବେଳେ ସେ ବ୍ରାହ୍ମଣମାନଙ୍କୁ ମାଗଣାରେ ଖୁଆଇଲେ । କୁହାଯାଏ କି ଶାସ୍ତ୍ର ଅନୁସାରେ ଦଳିତମାନଙ୍କୁ ବିନା କାମରେ

ଅନ୍ନ ଖୁଆଇବା ଉଚିତ ନୁହେଁ, ସେଥିପାଇଁ ସେ ନିଜ ଉଆସକୁ ଭାଙ୍ଗି ପୁନଃନିର୍ମାଣ କରାଇଲେ କାରଣ ସେ ଦଳିତମାନଙ୍କ ଭରଣପୋଷଣ କରିପାରିବେ । ଏଥିରେ ପାଖାପାଖି ୨୫ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଯାଇଥିଲା । ଅକାଳର ପ୍ରକୋପ ଦେଢ଼ବର୍ଷଯାଏ ରହିଲା । ଗୁମାସ୍ତା ଅଧିକ ଖର୍ଚ୍ଚ ହେଇ ଯାଉଥିବା କଥା କହିଲେ । ସେକଥା ଶୁଣି ବାଜିରାଓ କହିଲେ କି ଯେତେ ଟଙ୍କା ଖର୍ଚ୍ଚ ହେଲା ସେତେଜଣଙ୍କର ଜୀବନ ତ ବଞ୍ଚାଇ ହେଲା । ଟଙ୍କା ଜମା କରି କୋଉ ପ୍ରତିଷ୍ଠା ବା ମିଳିଥାନ୍ତା । ଏଥିରୁ ଏକଥା ଜଣାଯାଏ ଯେ ରାଜ୍ୟ ଚାଲିଗଲା, ପେନ୍‌ସନ୍ ପାଇଲେ । ପୁଣି ବି ଖର୍ଚ୍ଚ କରିବାରେ ପରୱା କଲେ କି ? ବାଜିରାଓଙ୍କ ସଂଗେ ଦେଖା କରିବା ସହଜ ନ ଥିଲା । ଯଦି ବାଜିରାଓଙ୍କ ସହ କାହାର ଭେଟ କରିବାର ଥାଏ ତ ସର୍ବପ୍ରଥମେ ତାଙ୍କ ସହ ତାଙ୍କ ମହଲରେ ରଙ୍ଗରସରେ ମାତିଥିବା ସ୍ତ୍ରୀଲୋକଙ୍କ ସହ ସଂପର୍କ ରଖିବାକୁ ପଡୁଥିଲା ଓ ସେମାନଙ୍କ ଅନୁମତି ମିଳିଲେ ଦେଖା କରାଇ ଦିଆ ଯାଉଥିଲା । ଅନ୍ୟଥା ତାଙ୍କୁ ଭେଟିବା ଅତି କଠିନ କାମ ଥିଲା । ସରକାରୀ କର୍ମଚାରୀ, ଅଧିକାରୀମାନଙ୍କ ଉପରେ ଏହି ନିୟମ ଲାଗୁ ହେଉ ନ ଥିଲା । ସେମାନଙ୍କ ପାଇଁ ଏଭଳି ସୁପାରିସର ଆବଶ୍ୟକତା ନ ଥିଲା ।

ରାଜକୀୟ ଭୋଜନରେ ଶହେ ଲୋକ ଖାଉଥିଲେ । ସେଥିରେ ତାଙ୍କର ତିନି ପତ୍ନୀ, ତିନି ବୋହୂ ଓ ତିନି ଝିଅ ମଧ ସାମିଲ ଥିଲେ । ସବୁ ମିଶାଇ ଅଠରଶହ ଲୋକ ପ୍ରତିଦିନ ଭୋଜନ କରୁଥିଲେ । ଏହିସଂଖ୍ୟକ ଲୋକ ରାତିରେ ବି ଖାଉଥିଲେ । ନିଜ ଖାଇବା ପାଇଁ ସୁନାର ଥାଳି, ସୁନାର ଅଠରଶହ ତାଟିଆ, ସୁନାର ଅଠରଶହ ଚାମଚ, ଏସବୁ ରୁପା ଖଟୁଲି ଉପରେ ରଖି ବାଜିରାଓ ଭୋଜନ କରୁଥିଲେ । ପିଲାମାନଙ୍କର ବି ସବୁ ବାସନକୁସନ ଚାନ୍ଦିର ଥିଲା । ପଂକ୍ତି ଭୋଜନରେ ସ୍ତ୍ରୀ ପୁରୁଷ ମିଶି ୨ ହଜାର ଲୋକ ଭୋଜନ କରୁଥିଲେ ।

ପିଲାମାନଙ୍କର ରହିବା ବ୍ୟବସ୍ଥା ଅଲଗା ଉଆସରେ କରାଯାଇଥିଲା । ନାନାସାହେବ ଇଂରେଜୀ ଶିଖିଲେ । ବାଜିରାଓଙ୍କୁ ନ ଜଣାଇ ସେ ଇଂରେଜୀ ଶିଖିଲେ । ସେ ନିଜ ପୁଅକୁ ତିନିହଜାର ଟଙ୍କା ମାସିକ ଦେଉଥିଲେ । ସେ ତାଙ୍କ ଇଚ୍ଛା ଅନୁସାରେ ସେହି ଟଙ୍କାକୁ ଖର୍ଚ୍ଚ କରିପାରୁଥିଲେ । ନାନାସାହେବ ସେଇ ଖର୍ଚ୍ଚ ପଇସାରେ ଏକ ସେନାବାହିନୀ ଗଠନ କରିଥିଲେ ।

ବାଜିରାଓଙ୍କ ସହ ଯଦି ପୁନାରୁ କେହି ଦେଖା କରିବାକୁ ଆସୁଥିଲା ତାକୁ ପ୍ରଥମ ପ୍ରଶ୍ନ ପଚରା ଯାଉଥିଲା କି ଆପଣ କେଉଁଠାରୁ ଆସିଛନ୍ତି ? ଯଦି ସେ କହୁଥିଲା କି ସେ ପୁନାରୁ ଆସିଛି ତା'ହେଲେ ଦ୍ୱିତୀୟ ପ୍ରଶ୍ନ ପଚରା ଯାଉଥିଲା 'ଶନିବାରବାଡ଼ା' ସୁରକ୍ଷିତ ଅଛି ନା ନାହିଁ ? ସେ କଥାର ଉତ୍ତରରେ ଦେଖା କରିବାକୁ ଆସିଥିବା ଲୋକଟି ଯଦି କହୁଥିଲା ବାଡ଼ା ସୁରକ୍ଷିତ ଅଛି, ଗୋବରରେ ଲିପି ପୋଛି ରଖିଛନ୍ତି ଓ ମହାରାଜାଙ୍କ ପୁନଃ ଆଗମନ ଆଶାରେ ଠିଆ ହୋଇଛି । ଏହିପରି ଚର୍ଚ୍ଚା ସେଠି ଚାରିଆଡ଼େ ହେଉଛି ।

ଏକଥା ଶୁଣିଲେ ସେ ସନ୍ତୋଷ ହେଉଥିଲେ । ଦେଖା କରିବାକୁ ଆସିଥିବା ଲୋକଟିର ସବୁ ଇଚ୍ଛା ପୂରଣ କରାଯାଉଥିଲା, ସେ ତୃପ୍ତ ହେବା ପର୍ଯ୍ୟନ୍ତ । ରାଜାଙ୍କର ଏହି ସ୍ୱଭାବ ଯେତେବେଳେ ତାଙ୍କ ନିକଟତର ଲୋକମାନେ ଜାଣିଗଲେ ସେତେବେଳେ ସେମାନେ ଏହାର ଫାଇଦା ଉଠାଇଲେ ଓ ପୁନାରୁ ଆସୁଥିବା ପ୍ରତ୍ୟେକ ବ୍ୟକ୍ତିକୁ ରାଜାଙ୍କ ସହ ଦେଖା କରିବା ପୂର୍ବରୁ ଏହି ପ୍ରଶ୍ନାବଳୀ ଓ ଉତ୍ତର ସବୁ ଶିଖେଇ ଦିଆ ଯାଉଥିଲା ।

ଯେଉଁଦିନ ବାଜିରାଓ ସାହେବ ବ୍ରହ୍ମାବର୍ତ୍ତ ପହଞ୍ଚିଲେ ଓ ସେ ଯେଉଁ ସ୍ଥାନରେ ବସିଲେ, ସେହି ସ୍ଥାନରେ ଏକ ଛୋଟ ଛତା ନିର୍ମାଣ କରାଗଲା ଓ ତା' ତଳେ ଏକ ପ୍ରତୀକାତ୍ମକ ପେଶୱାଙ୍କର ରାଜଗାଦୀ ସ୍ଥାପିତ କରାଗଲା ଓ ତା'ର ମୁହଁ ଦକ୍ଷିଣଆଡ଼କୁ କରି ରଖାଗଲା । ସେଠାରେ ପ୍ରତିଦିନ ପୂଜା କରାଯାଉଥିଲା ଓ ଭୋଗ ବି ଲଗାଯାଉଥିଲା । ଏମିତି କରିବାର ପ୍ରଥମ କାରଣ ହେଲା କି ସଂକେତ ଦେବାର ଥିଲା କି ଆମେ ଶୀଘ୍ର ପୁନା ଫେରିବୁ । କିନ୍ତୁ ଯେତେବେଳେ ସବୁ ଆଶା ମଉଳିଗଲା ଓ ମୃତ୍ୟୁ ସମୟ ସାମନାକୁ ଆସିଗଲା ସେତେବେଳେ ସବୁ କିଛି ହଟାଇ ଦିଆଗଲା । ଅନ୍ୟଥା ସବୁ ବର୍ଷ ସେଠି ଗୋଟିଏ ନୂଆ ପିଣ୍ଡି ତିଆରି କରାଯାଉଥିଲା ପୁରୁଣା ହଟାଯାଉ ନ ଥିଲା ।

ବାଜିରାଓଙ୍କର ଯେତେବେଳେ ମୃତ୍ୟୁ ହେଲା ସେତେବେଳେ ତାଙ୍କ ପାଖରେ ପଚାଶ ଲକ୍ଷ ଟଙ୍କା ଥିଲା । ସେଥିରେ ମୋହର ଓ ନଗଦ ଟଙ୍କା ବି ଥିଲା । ଏହାଛଡ଼ା ଲୁଗାପଟା, ମଣିମାଣିକ୍ୟ ଓ ଅଳଙ୍କାର ବି ଥିଲା ।

ତିନୋଟି ଘୋଡ଼ାଶାଳରେ ଯାହାର ନାମ ହୁଜୁରାତ, ବାବନ ଓ ନଜର ଦିଆଯାଇଥିଲା, ସମୁଦାୟ ଦୁଇହଜାର ଘୋଡ଼ା ଥିଲେ । କୋଡ଼ିଏଟି ହାତୀ, ତିନିଶହ ଓଟ, ଶହେ ଗାଈ, ଶହେ ମଇଁଷି, ପାଞ୍ଚଶହ ବଳଦ ବି ଥିଲେ । ଏହାଛଡ଼ା ଗଜେନ୍ଦ୍ର ନାମକ ହାତୀ ଓ ଦୁଇଟି ବିଶେଷ ଓଟ ଥିଲେ ।

ସବୁ ମିଶାଇ ପ୍ରତିମାସରେ ଯେଉଁ ପେନସନ ମିଳୁଥିଲା ସେଥିରୁ ପାଞ୍ଚହଜାର ଟଙ୍କା ସେ ନିଜ ପାଇଁ ଓ ବଳୁଥିବା ସବୁ ଟଙ୍କା ସେ ସେନାବାହିନୀ ପାଇଁ ଖର୍ଚ୍ଚ କରୁଥିଲେ ।

ବାଜିରାଓଙ୍କ ମୃତ୍ୟୁ ପରେ ଶ୍ରାଦ୍ଧର ଏଗାର ଦିନରେ କାଉ ପିଣ୍ଡକୁ ସ୍ପର୍ଶ କଲା ନାହିଁ । ସବୁପ୍ରକାରର ସଂକଳ୍ପ କରାଗଲା । ଘାସର ଏକ ନକଲି କାଉ ତିଆରି କରାଗଲା । ଯେତେବେଳେ ଶତ୍ରୁଙ୍କୁ ନାଶ କରିବାର ସଂକଳ୍ପ କରାଗଲା, ତୁରନ୍ତ କାଉ ଆସି ପିଣ୍ଡକୁ ଛୁଇଁ ଦେଲା ।

ବିଦ୍ରୋହ ସମୟରେ ଯଜ୍ଞଶାଳାରେ ଏକ କୂଅ ଥିଲା । ସେଥିରୁ ଇଂରେଜମାନଙ୍କୁ ୨,୭୦୦ ସୁନାରୁପାର ଅତରଦାନୀ, ଗୋଲାପଦାନୀ ଓ ସୁନା-ରୁପାର ଦେଢ଼ହଜାର ଥାଳି ବି ମିଳିଲା ।

ସାଲକାଢ଼େ ବୈଦ୍ୟଙ୍କୁ ଶୁଣାଇଥିବା ସ୍ମୃତିମାନଙ୍କରୁ ଏସବୁ ଛୋଟ-ମୋଟ କଥା ଉଲ୍ଲେଖ କରାଗଲା । ଏହାକୁ ଆଧାର କରି ଓ ମିଳିଥିବା ଅନ୍ୟ କାଗଜପତ୍ର ଆଧାରରେ

ଆମେ ଜାଣିପାରୁ ଯେ ବାଜିରାଓ ଅତି ଧାର୍ମିକ ପ୍ରବୃତ୍ତିର, ପାପ-ଭୀରୁ, ଦାନବୀର, ସବୁ ଧାର୍ମିକ ରୀତିନୀତିକୁ ମାନିଲାବାଲା, ପର୍ବପର୍ବାଣି ଉତ୍ସବ ଆୟୋଜନ କଲାବାଲା ପରମ୍ପରାକୁ ସମ୍ମାନ କଲାବାଲା ଥିଲେ । ଦୁଃଖୀରଙ୍କିଙ୍କୁ କେବେ କେବେ ଶହେ, ହଜାରେ, ଲକ୍ଷ ଲକ୍ଷ ଟଙ୍କା ବି ବାଣ୍ଟି ଦେଉଥିଲେ । "ମୋର ମା'-ବାପା ରାଧୋବା ଓ ଆନନ୍ଦୀବାଈଙ୍କ ଷଡ୍‌ଯନ୍ତ୍ର କାରଣରୁ ନାରାୟଣ ପେଶୱାଙ୍କୁ ହତ୍ୟା କରାଗଲା । ସେହି ପାପ କାରଣରୁ ପେଶୱାଗିରି ହାତରୁ ଗଲା । ନାରାୟଣ ରାଓଙ୍କ ଭୂତ ତାଙ୍କୁ ଦେଖାଦେଉଥିଲା । ସେକଥା ସେ ବାରମ୍ବାର କହୁଥିଲେ ।

ଏହିସବୁ କାରଣରୁ ଗୋଟିଏ କଥା ସ୍ପଷ୍ଟ ହୋଇଯାଏ ଯେ ବାଜିରାଓ ଦ୍ୱିତୀୟ ବ୍ରହ୍ମାବର୍ତ୍ତରେ ଅତ୍ୟନ୍ତ ବିଳାସପୂର୍ଣ୍ଣ, ରଙ୍ଗିନ, କାମୁକତା ପୂର୍ଣ୍ଣ ଜୀବନ ବିତାଉଥିଲେ । ଏତିକିରେ ତାଙ୍କ ଜୀବନ ସୀମିତ ନ ଥିଲା । ପୁନା ସହର, ଶନିବାରବାଡ଼ା, ହରାଇଥିବା ପେଶୱାଗିରି, ରାଜକୀୟ ସତ୍ତାକୁ ବାଜିରାଓ ଭୁଲିପାରୁ ନ ଥିଲେ । ଏମିତିକି ସେଠାରେ ରହିଲାବାଲା ବି ତାଙ୍କୁ ଭୁଲିପାରୁ ନ ଥିଲେ । ଏହି କଷ୍ଟ ସବୁ ଦିନ ପାଇଁ ତାଙ୍କ ମନରେ ଘର କରି ରହିଯାଇଥିଲା । ସେହି ବିଷୟରେ ସେଠାରେ ସବୁବେଳେ ଚର୍ଚ୍ଚା ହେଉଥିବ । ହରାଇଥିବା ସତ୍ତା ଓ ସ୍ୱାଧୀନତା ପାଇବାର ପ୍ରବଳ ଇଚ୍ଛା, ଦୁଃଖ, ଅସହାୟତା ଓ ଇଂରେଜମାନଙ୍କ ପ୍ରତି କ୍ରୋଧ ସହ ଆଜି ନାହିଁ ତ କାଲି ପୁଣି ସତ୍ତା ଫେରିଆସିବ, ସ୍ୱାଧୀନତା ମିଳିଯିବ, ପୁନେକୁ ପୁଣି ଫେରିଆସିବାର ସୁଯୋଗ ମିଳିବ, ଏମିତି ଆଶା ତାଙ୍କ ମନରେ ଥିବ । ଏମିତି ସ୍ଥିତିରେ କୌଣସି ବି ବ୍ୟକ୍ତି ଏଭଳି ବିଚାର କରିବ । ବାଜିରାଓଙ୍କ ମୃତ୍ୟୁ ପରେ ବାରଦିନ ଦିନ ତାଙ୍କ ପିଣ୍ଡକୁ କାଉ ନ ଛୁଇଁବାର ଉଲ୍ଲେଖ କରାଯାଇଛି । ପିଣ୍ଡକୁ କାଉ ସ୍ପର୍ଶ କରିବାର ଅର୍ଥ ହେଲା ମୃତ ବ୍ୟକ୍ତିର ଜୀବନକାଳରେ ସବୁ ଆଶା ଆକାଂକ୍ଷା ତୃପ୍ତ ହୋଇଛି ବୋଲି ଧରାଯାଏ । ଶତ୍ରୁମାନଙ୍କର ନିଶ୍ଚୟ ନାଶ ହେବ, ଏମିତି ସଂକଳ୍ପ କଲାରୁ କାଉ ପିଣ୍ଡକୁ ସ୍ପର୍ଶ କଲା । ଏହାର ଅର୍ଥ ହେଲା ବାଜିରାଓ ଗାଦିଚ୍ୟୁତ ହେବା, ନିଜ ସ୍ୱାଧୀନତା ହରାଇବାକୁ ଭାଗ୍ୟର ବିଡ଼ମ୍ବନା ଭାବି ନିୟତି ଆଗରେ ନିଜକୁ ସମର୍ପିତ କରି ଦେଇଥିଲେ । କିନ୍ତୁ ଆନ୍ତରିକ ଯନ୍ତ୍ରଣା ଓ ଅପମାନ ତାଙ୍କୁ ଭିତରେ ଭିତରେ ଖାଇଯାଉଥିଲା, ସେହି କାରଣରୁ କାଉ ତାଙ୍କ ପିଣ୍ଡକୁ ସ୍ପର୍ଶ କରୁ ନ ଥିଲା । କାରଣ ତାଙ୍କର ମନ ଅଶାନ୍ତ ଥିଲା । କିନ୍ତୁ ଯେମିତି ହିଁ ଶତ୍ରୁକୁ ବିନାଶ କରିବାର ସଂକଳ୍ପ ନିଆଗଲା, କାଉ ପିଣ୍ଡକୁ ସ୍ପର୍ଶ କଲା । ଏହି ପ୍ରକାର ଶପଥ କଲାରୁ ତାଙ୍କର ଆତ୍ମା ମୁକ୍ତ ହୋଇଗଲା ବୋଲି କୁହାଯାଇପାରେ । ବାଜିରାଓଙ୍କ ମୃତ୍ୟୁ ଓ ଶତ୍ରୁ ନାଶର ସଂକଳ୍ପ ଏହି ଦୁଇଟି ଘଟଣା ଲକ୍ଷ୍ମୀବାଈଙ୍କର ବିବାହ ପରବର୍ତ୍ତୀକାଳର । ତେବେବି ବାଜିରାଓଙ୍କ ମନରେ ପରାଧୀନତାକୁ ନେଇ ଯେଉଁ କଷ୍ଟ ଥିଲା ତାଙ୍କ ମନରେ ଯେଉଁ ଯନ୍ତ୍ରଣା ଥିଲା, ସେ ବ୍ୟଗ୍ରତାକୁ ମନୁ ଅର୍ଥାତ୍ ଲକ୍ଷ୍ମୀବାଈ ବିଠୁରରେ ରହି ବାଜିରାଓଙ୍କ ଚେହେରାରେ ନିଶ୍ଚୟ ଦେଖିଥିବେ, ତାଙ୍କ ମନ ଭିତରର ବ୍ୟଥାକୁ ଅନୁଭବ କରିଥିବେ ।

ଏହିପରି ସଂପୂର୍ଣ୍ଣ ବାତାବରଣରେ ମଣିକର୍ଣ୍ଣିକା ଶୁକ୍ଳ ପକ୍ଷର ଚନ୍ଦ୍ରମା ପରି ଦିନକୁ ଦିନ ସତେଜ ହେବାରେ ଲାଗିଲା । ସେଠାକାର ବାତାବରଣର ପ୍ରଭାବ ଜଣା-ଅଜଣାରେ ତାଙ୍କ ଉପରେ ପଡ଼ିବାରେ ଲାଗିଲା । ମନୁ ଚାରିବର୍ଷର ହୋଇଥିଲାବେଳେ ତାଙ୍କ ମାତାଙ୍କର ଦେହାନ୍ତ ହୋଇଗଲା । ମା' ଛେଉଣ୍ଡ ଝିଅ ହେଇଥିବାରୁ ମୋରୋପନ୍ତ ତାଙ୍କୁ ସବୁବେଳେ ସାଙ୍ଗରେ ରଖୁଥିଲେ । ପିଲାଦିନରୁ ହିଁ ତା'ର ବସାଉଠା ଯଜ୍ଞଶାଳାରେ ବା ପୁରୁଷ ଗହଣରେ ଥିଲା । ସେଥିପାଇଁ ଧୀରେ ଧୀରେ ତା' ଭିତରେ ପୁରୁଷସୁଲଭ ଗୁଣମାନ ବିକଶିତ ହେବାରେ ଲାଗିଲା । ସ୍ତ୍ରୀ ସଙ୍ଗ ନମ୍ ପ୍ରାପ୍ତ ହେବା କାରଣରୁ ମନୁ ମନରୁ ସଂକୋଚ, ଲଜ୍ଜା ଆଦି କମ୍ ହେବାରେ ଲାଗିଲା ।

ଦ.ବ. ପାରସନିସ୍ 'ଝାନ୍‌ସୀ କି ରାଣୀ' ପୁସ୍ତକରେ ଗୋଟିଏ ସ୍ଥାନରେ ଲେଖିଛନ୍ତି 'ମନୁ ଏତେ ସୁନ୍ଦର ଥିଲା, ତେଜସ୍ୱୀ ଥିଲା ଯେ ତାକୁ କେବଳ ତା ପିତା ନୁହେଁ, ବାଜିରାଓଙ୍କ ସହ ରହୁଥିବା ସବୁ ଲୋକ ବହୁତ ସ୍ନେହ କରୁଥିଲେ । ତା'ର ସୁନ୍ଦର କାନ୍ତିମୟ ବିଶାଳ ନେତ୍ର ତଥା ଗୌରବର୍ଣ୍ଣ ମୁଖମଣ୍ଡଳର ସୌନ୍ଦର୍ଯ୍ୟ ଦେଖିଲେ ଯେକୌଣସି ଲୋକ ଆନନ୍ଦମୟ ଅନୁଭବ କରୁଥିଲେ । ସେ ରାଜକୀୟ ଥାଟବାଟରେ, ସୁଖସୁବିଧାରେ ବଢୁଥିବା ତୀବ୍ର ବୁଦ୍ଧିସଂପନ୍ନ ଝିଅ ଥିଲା । ସେଥିପାଇଁ ବାଜିରାଓ, ତାଙ୍କର ସହଯୋଗୀ ରାମଚନ୍ଦ୍ରପନ୍ତ ସୁବେଦାର, ବାବା ଭଟ୍ଟ ଆଦି ପ୍ରମୁଖ ଲୋକମାନେ ତାକୁ ସ୍ନେହରେ 'ଛବିଲି' ନାଁରେ ଡାକୁଥିଲେ । ବାଜିରାଓଙ୍କର ପୋଷ୍ୟପୁତ୍ର ନାନାସାହେବ ଓ ରାଓସାହେବ ସେ ସମୟରେ ଛୋଟ ଥିଲେ ଓ ସେମାନେ ଅନେକ ପ୍ରକାରର ଖେଳ ଖେଳୁଥିଲେ । ଛବିଲି ମଧ୍ୟ ତାଙ୍କ ସହ ଖେଳରେ ସାମିଲ୍ ହେଉଥିଲା । ଏହା ପ୍ରତିଦିନର କାର୍ଯ୍ୟକ୍ରମ ଥିଲା । କିନ୍ତୁ ଏହି ଛୋଟ ବାଳକ, ବାଳିକାଙ୍କ ଲୀଳା ଦେଖି ବାଜିରାଓଙ୍କୁ ପରମ ଆନନ୍ଦ ଅନୁଭବ ହେଉଥିଲା । (ପାରସନିସ୍, ପୃଷ୍ଠା ୧୯)

ଗୋଡ଼ସେ ଭଟ୍ଟଙ୍କ କକା ବ୍ରହ୍ମାବର୍ତ୍ତରେ ବାଜିରାଓଙ୍କ ହୋମଶାଳାରେ ଦୀର୍ଘ ପନ୍ଦରବର୍ଷ ପୁରୋହିତ କାମ କରିଥିଲେ । ସେବେଠାରୁ ସେ ମନୁକୁ ହସିଖେଳି ବଡ଼ ହେବାର ଦେଖିଥିଲେ । ତା' ବିଷୟରେ ସେ କହିଛନ୍ତି ''ସବୁବେଳେ ଯଜ୍ଞଶାଳାରେ ସେ ନିଜ ବାପାଙ୍କ ସହ ରହୁଥିଲା, ଖାଇବା ପିଇବା ସବୁକିଛି ବାଜିରାଓଙ୍କ ଘରେ କରୁଥିଲା । ସେ ମୋଡ଼ା, ବାଳବୋଧ ଲେଖିବା, ପଢ଼ିବା ଭଲଭାବରେ ଶିଖି ଯାଇଥିଲା । ପିଲାଦିନରୁ ହିଁ ମନୁ ଚପଳ, ଜିଦ୍‌ଖୋର ଓ ଚଞ୍ଚଳ ସ୍ୱଭାବର ଥିଲା । ବାପାଙ୍କର ଗେହ୍ଲାଝିଅ ଥିଲା । ଏହି ଝିଅଟି ମାତୃହୀନ ଥିଲା । ସବୁବେଳେ ମହଲନିବାସୀ ତା ପ୍ରତି ଧ୍ୟାନ ଦେଉଥିଲେ ଓ ଏହି ଝିଅ ବହୁତ ବୁଦ୍ଧିମାନ୍ ଓ ନିର୍ମଳ, ଜ୍ଞାନୀ, ଗୋରାରଙ୍ଗ, ପତଳା ଶରୀର ଓ ଡେଙ୍ଗା ଥିଲା । ନାକ ସିଧା, ଉଚ୍ଚା ଲଲାଟ ଓ ଆଖି ପଦ୍ମପତ୍ର ପରି ଥିଲା । ବଡ଼ ବଡ଼ କାନ ମୁଖମଣ୍ଡଳର ଶୋଭା ବଢ଼ାଉଥିଲା । ମଝି ଅଣ୍ଟା ଶରୀର ରଚନା ତୁଳନାରେ ପତଳା ଥିଲା ।''

ଗୋଡ଼ସେ ଭଟ୍ଟଙ୍କ କକାଙ୍କ ବର୍ଣ୍ଣନା ଦ୍ୱାରା ଯାହା ନଜରକୁ ଆସେ, ଯୁବତୀ ହେଉଥିବା ମନୁ ରୂପବତୀ, ଆକର୍ଷକ ଓ ବହୁମୁଖୀ ବ୍ୟକ୍ତିତ୍ୱର ଅଲିଭାଛବି ଭଳି ଝିଅଟିଏ ଥିଲା । ତା' ସହ ନିଜର ତେଜସ୍ୱୀ ଓ ଚଞ୍ଚଳ ସ୍ୱଭାବ କାରଣରୁ ସମସ୍ତଙ୍କର ପ୍ରିୟ ବି ଥିଲା । ସ୍ୱୟଂ ବାଜିରାଓଙ୍କର ଅତି ଗେହ୍ଲା ଥିଲା । ବାଜିରାଓଙ୍କର ନିଜର କୌଣସି ସନ୍ତାନ ନ ଥିଲେ, ସେ ନିଜ ବ୍ରାହ୍ମଣ ପରିବାରରୁ ହିଁ ତିନିଝିଅ ଓ ତିନିପୁଅଙ୍କୁ ପୋଷ୍ୟରୂପେ ଗ୍ରହଣ କରିଥିଲେ । ମନୁକୁ ବି ପୋଷ୍ୟ କନ୍ୟାରୂପେ ଗ୍ରହଣ କରିଥିଲେ ବୋଲି ଲୋକମୁଖରୁ ଶୁଣିବାକୁ ମିଳେ । କିନ୍ତୁ ଏହି କଥାର ସ୍ପଷ୍ଟ ଉଲ୍ଲେଖ କେହି ବି କରି ନାହାନ୍ତି । ଅଥବା କେଉଁଠାରେ ଲେଖିକରି ରଖା ଯାଇ ନାହିଁ । କିନ୍ତୁ ବାଜିରାଓ ମନୁକୁ ନିଜ ଝିଅପରି ପାଳନ ପୋଷଣ କରୁଥିଲେ । ଏହି କାରଣରୁ ତାକୁ ବାଜିରାଓଙ୍କ ପୋଷ୍ୟପୁତ୍ରମାନଙ୍କ ସହ ଶିକ୍ଷା ଗ୍ରହଣ କରିବାର ସୁଯୋଗ ମିଳିଲା । ମନୁ ମରାଠୀ ଓ ମୋଡ଼ି ତ ଶିଖିଲା, ତା ସହ ପୁରୁଷ ଶିଖୁଥିବା ବିଦ୍ୟାଗୁଡ଼ିକୁ ବି ହାସଲ କଲା ।

ପୁନାରୁ ବ୍ରହ୍ମାବର୍ତ୍ତ ଆସିବା ସମୟରେ ବାଜିରାଓଙ୍କ ସହ ରାନ୍ଧୁଣିଆ, ଗଉଡ଼ଠୁ ଆରମ୍ଭ କରି ସରଦାର ଅଧିକାରୀ ପର୍ଯ୍ୟନ୍ତ ଅନେକ ଲୋକ ସାଙ୍ଗରେ ଆସିଥିଲେ । ସେମାନଙ୍କ ଭିତରେ ବିଭିନ୍ନ ବିଦ୍ୟାରେ-କଳାରେ ପାରଙ୍ଗମ ଲୋକ, ଓସ୍ତାଦ୍, ବିଦ୍ୱାନ୍ ପଣ୍ଡିତ ବି ଥିଲେ । ବ୍ରହ୍ମାବର୍ତ୍ତରେ ବାଜିରାଓଙ୍କ ମହଲରେ ସ୍ଥାପିତ ପାଠଶାଳା, କାର୍ଯ୍ୟଶାଳା, ଆଖଡ଼ାଘରେ ଏହିମାନେ ପିଲାମାନଙ୍କୁ ପାଠ ବି ପଢ଼ାଉଥିଲେ । ଏହି ଲୋକମାନଙ୍କ ମଧ୍ୟରୁ କେହି ଘୋଡ଼ାଚଢ଼ା, କିଏ ତରବାରି ଚାଳନା, କିଏ ତୀର ଚଳାଇବା, ବନ୍ଧୁକ ଚଳାଇବା, ପିସ୍ତଲ ଚଳାଇବା, ଛୁରୀ ଚାଳନା ଆଦି ବି ଶିଖାଇଲେ । ମନୁ କେବଳ ଶିଖିଲା ତା' ନୁହେଁ ବରଂ ସେ ସବୁ ବିଦ୍ୟାରେ ପ୍ରବୀଣ ହୋଇଗଲା । ଏହାର ଉଲ୍ଲେଖ ପରବର୍ତ୍ତୀ କାଳରେ ବାରମ୍ବାର କରାଯାଇଛି । ଗୋଡ଼ସେ ଭଟ୍ଟଜୀ ଲେଖିଛନ୍ତି 'ଝାନ୍‌ସୀବାଲୀ ଲକ୍ଷ୍ମୀବାଈ ସାହିବାଙ୍କ ସମ୍ବନ୍ଧରେ ଦେଶ-ବିଦେଶର ସୌଦାଗର, ଅଶ୍ୱାରୋହୀ ଜାଣିଥିଲେ । ଅଶ୍ୱ ପରୀକ୍ଷଣ ସଂପର୍କରେ ଘୋଡ଼ା ଚଢ଼ିବା ବିଷୟରେ ତାଙ୍କର କୁଶଳତାର ପ୍ରଶଂସା କରୁଥିଲେ । ସେହି ସମୟରେ ହିନ୍ଦୁସ୍ଥାନରେ ଦକ୍ଷିଣୀ ଲୋକମାନଙ୍କ ଭିତରେ ନାନାସାହେବ ପେଶୱା, ଜିୟାଜୀରାଓ ସିନ୍ଧେ ଓ ଝାନ୍‌ସୀବାଲୀ ଲକ୍ଷ୍ମୀବାଈ ଏହି ତିନିଜଣଙ୍କ ଛଡ଼ା ଘୋଡ଼ା ପରୀକ୍ଷଣ, ଘୋଡ଼ାଚଢ଼ାରେ ପ୍ରବୀଣ ଚତୁର୍ଥ ବ୍ୟକ୍ତି କେହି ନ ଥିଲା । ସବୁ ହିନ୍ଦୁସ୍ଥାନୀ ଏପରି କହୁଥିଲେ ।

ଗୋଡ଼ସେ ଭଟ୍ଟ ଏକ ଘଟଣାର ବର୍ଣ୍ଣନା କରିଛନ୍ତି । ଦିନେ ଜଣେ ସୌଦାଗର ଦୁଇଟି ଘୋଡ଼ା ନେଇ ବିକିବାକୁ ଆସିଥିଲା । ଘୋଡ଼ା ଦୁଇଟି ଦେଖିବାକୁ ବହୁତ ସୁନ୍ଦର, ସମାନ ଭାବରେ ହୃଷ୍ଟପୁଷ୍ଟ ଓ ଚତୁର ଥିଲେ । ସେହି ବେପାରୀ ଗୋଆଲିୟରରେ ସିନ୍ଧେଙ୍କ ପାଖକୁ ଗଲେ । ପରନ୍ତୁ ସେ ଠିକ୍ ଭାବରେ ଘୋଡ଼ାକୁ ପରଖିପାରିଲେ ନାହିଁ । ପୁଣି ସେହି ବେପାରୀ ଝାନ୍‌ସୀରେ ରାଣୀଙ୍କ ପାଖକୁ ଗଲା । ରାଣୀ ସେହି ଦୁଇ ଘୋଡ଼ାଙ୍କ ଉପରେ

ଚଢ଼ି ଚକ୍କର ଲଗାଇଲେ । ତା'ପରେ ସେ କହିଲେ "ଗୋଟିଏ ଘୋଡ଼ାର ଦାମ୍ ବାରଶହ ଟଙ୍କା ତ ଆରଟିର ପଚାଶ ଟଙ୍କା ମାତ୍ର, କାରଣ ଦ୍ୱିତୀୟ ଘୋଡ଼ାଟି ଅଳସୁଆ, ତା'ର ଛାତିରେ ପୀଡ଼ା ହେଉଛି ।" ଏକଥା ଶୁଣି ସୌଦାଗର ରାଣୀଙ୍କ ତ୍ରୁଟିଶୂନ୍ୟ ପରୀକ୍ଷଣ ଦେଖି ଆଶ୍ଚର୍ଯ୍ୟ ହେଲା । ଛାତିରେ ପୀଡ଼ା ହେଉଥିଲା । ଏହାର ଅର୍ଥ ହେଲା ତା'ର ଫୁସ୍‌ଫୁସ୍ ଦଉଡ଼ିବା ସମୟରେ ପୂରାପୂରି କାମ କରୁ ନ ଥିଲା । ତାହାର କାନ୍ଧ ଚୌଡ଼ା ନ ଥିଲା ସେଥିପାଇଁ ସେ ଜୋର୍‌ରେ ଦୌଡ଼ିପାରୁ ନ ଥିଲା । ନିଃଶ୍ୱାସ ନେବାରେ ତାକୁ କଷ୍ଟ ହେଉଥିଲା । ଘୋଡ଼ା ପରୀକ୍ଷା କରିବାର କିଛି ମାପଦଣ୍ଡ ଥାଏ, ଏହା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବୋଲି ଧରାଯାଏ । ରାଣୀଙ୍କୁ ସେ ବିଷୟରେ ସଂପୂର୍ଣ୍ଣ ଜ୍ଞାନ ଥିଲା ।

ତାଙ୍କର ଅଶ୍ୱ ପରୀକ୍ଷା, ଘୋଡ଼ାଚଢ଼ା ସହ ତାହାର ଯୁଦ୍ଧ କୌଶଳ, ତରବାରି ଚାଳନା ଓ ବିଚକ୍ଷଣତାର ଇଂରେଜ ଅଧିକାରୀମାନେ ମୁକ୍ତ କଣ୍ଠରେ ପ୍ରଶଂସା କରିଛନ୍ତି । ସେ ଯୁଦ୍ଧବିଦ୍ୟାରେ ଯେଉଁ ପ୍ରବୀଣତା ହାସଲ କରିଥିଲେ, ତା'ର ସମ୍ବନ୍ଧ ସିଧା ବାଲ୍ୟାବସ୍ଥା ସହ ଯୋଡ଼ି ହୋଇଥିଲା । ନିଜ ବାଲ୍ୟାବସ୍ଥାରେ ବ୍ରହ୍ମାବର୍ତ୍ତରେ ରହି ସେ ସୈନିକ ପ୍ରଶିକ୍ଷଣ ନେଇଥିଲେ । ସେହି ସମୟରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ ସେ ଶିଖିଥିଲେ, ମଲଖମ୍ବ ବିଦ୍ୟା । ପୁନାରେ ବାଜିରାଓଙ୍କ ଦରବାରୀଙ୍କ ଭିତରେ ବାଲଭଟ୍ଟ ଦେବ ନାମକ ଜଣେ ବ୍ୟକ୍ତି ଥିଲେ । ସେ ଉତ୍ତମ ପ୍ରକାରର କସରତ ପ୍ରଶିକ୍ଷକ, କୁସ୍ତି ପହଲମାନ ଥିଲେ । ସଂପୂର୍ଣ୍ଣ ହିନ୍ଦୁସ୍ଥାନର ଜଣାଶୁଣା କୁସ୍ତିବାଜ ପହଲମାନମାନଙ୍କୁ ସେ ମଲ୍ଲବିଦ୍ୟାରେ ହରାଇଥିଲେ । ଏମିତି ମଲ୍ଲବିଦ୍ୟାରେ ପ୍ରବୀଣତା ପ୍ରାପ୍ତ କରିବାପାଇଁ ସେ 'ମଲଖମ୍' ନାମକ ନୂଆ କସରତ ଶୈଳୀ ଖୋଜି ବାହାର କରିଥିଲେ । ବାଜିରାଓଙ୍କ ସହ ବ୍ରହ୍ମାବର୍ତ୍ତ ଆସିଲାରୁ ବାଲଭଟ୍ଟ କସରତର ଏହି ନୂଆ ଶୈଳୀ ଉତ୍ତର ହିନ୍ଦୁସ୍ଥାନର ଅନେକ ସ୍ଥାନର ଲୋକଙ୍କୁ ଶିଖାଇଲେ । ମନୁ ଅନ୍ୟ ବ୍ୟାୟାମ ସହ 'ମାଲଖମ୍ବ' ବିଦ୍ୟାରେ ପ୍ରବୀଣ ହୋଇଯାଇଥିଲା । ଏହି ପ୍ରକାର ବ୍ୟାୟାମଦ୍ୱାରା ଶରୀର ସୁଗଠିତ ହୋଇଯାଏ । ଅଦ୍‌ଭୂତ ଚପଳତା, ପୂର୍ଣ୍ଣ ଶାରୀରିକ ସଂତୁଳନ, ପୁଷ୍ଟତା, ମନର ଏକାଗ୍ରତା ଓ ଚତୁରତା ଗୁଣ ଆଦି ବୃଦ୍ଧି ହୁଏ । ସୁଗଠିତ ଶରୀର ଦ୍ୱାରା ଘୋଡ଼ାଚଢ଼ା, ତରବାରି ଚାଳନା, ରଣଶିକ୍ଷା ଆଦିରେ ବୈଶିଷ୍ଟ୍ୟ ଓ ପୂର୍ଣ୍ଣତା ପ୍ରାପ୍ତ କରିବା ମନୁକୁ ସହଜ ହେଲା ।

ବ୍ରହ୍ମାବର୍ତ୍ତରେ ବାଜିରାଓ ପରିବାରରୁ ଅନେକ ପିଲା ପ୍ରଶିକ୍ଷଣ ଲାଭ କରୁଥିଲେ । ନାନାସାହେବଙ୍କଠାରୁ ଆରମ୍ଭ କରି ମହଲର ସରକାରୀ ଅଧିକାରୀଙ୍କ ପିଲା, ଆଶ୍ରିତମାନଙ୍କର ପିଲା କୌଣସି ନା କୌଣସି ବିଦ୍ୟା ଶିଖୁଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ନାମ ଅର୍ଜନ କଲେ କେବଳ ମନୁ ଅର୍ଥାତ୍ ଲକ୍ଷ୍ମୀବାଈ ଓ ତାନ୍ତ୍ୟା ଟୋପେ । ସ୍ୱୟଂ ନାନାସାହେବ, ବାଲାସାହେବ, ରାଓସାହେବ, ଏହି ପୋଷ୍ୟପୁତ୍ରମାନେ କୌଣସି ଲଢ଼େଇରେ ନିଜର ପରାକ୍ରମ ଦେଖାଇଛନ୍ତି ଏଭଳି ଉଲ୍ଲେଖ କେଉଁଠାରେ ଦେଖିବାକୁ ମିଳେ ନାହିଁ । ତାନ୍ତ୍ୟା ଟୋପେ ଜଣେ ତୋଫାନୀ ଉତ୍ତମ ଯୋଦ୍ଧା ଭାବେ ପରିଗଣିତ ହେଉଥିଲେ । ଏହାର

ପ୍ରମାଣ ମଧ୍ୟ ଆମକୁ ମିଳେ । ମନୁର ବୀରତା ଓ କୌଶଳ ସଂପର୍କରେ କେବଳ ଦେଶରେ ନୁହେଁ ବିଦେଶରେ ମଧ୍ୟ ପ୍ରଶଂସା କରାଯାଇଛି ।

ଏଠାରେ ପ୍ରଶ୍ନ କରାଯାଇପାରେ ପୁରୁଷମାନଙ୍କ ମଧ୍ୟରେ ରହି ମନୁକୁ ଯୁଦ୍ଧ କଳା ଶିଖିବାର କ'ଣ ଆବଶ୍ୟକତା ପଡ଼ିଲା ? ଯଜ୍ଞଶାଳାରେ କାମକଲାବାଲା ଏକ ଗରିବ ବ୍ରାହ୍ମଣର ମାତୃହୀନ ଝିଅ ଥିଲା ସେ । ସେ ଏଭଳି ପ୍ରୟାସ କରିବା କ'ଣ ଆବଶ୍ୟକ ଥିଲା ? ଅତି ବେଶିରେ ପିତାଙ୍କ ସାଙ୍ଗରେ ରହି ଯଜ୍ଞର, ପୂଜାର, ଯଜ୍ଞସାମଗ୍ରୀର ଫୁଲ ତୋଳିବା, ହାର ଗୁନ୍ଥିବା, ସିଲେଇ ବୁଣାବୁଣି କରିବା ଶିଖିବା, ରୋଷେଇ ଘରେ ରାନ୍ଧିବା ଆଦି ନାରୀସୁଲଭ କାମ ଶିଖିବା ବଦଳରେ ସେ କସରତ କରିବା କାହିଁକି ଶିଖିଲା ? ଝିଅମାନଙ୍କ ଖେଳ ଖେଳିବା ବଦଳରେ ସବୁ ପୁରୁଷସୁଲଭ ବିଦ୍ୟା କାହିଁକି ଶିଖିଲା, ସେଥିରେ ନିପୁଣତା କାହିଁକି ପ୍ରାପ୍ତ କଲା ? ଏମିତି ସାହସ, ପ୍ରେରଣା ତାକୁ କେଉଁଠାରୁ ମିଳିଲା ? କ'ଣ ଏସବୁ ବିଧିର ବିଧାନ ଥିଲା ନା ତା'ର ଆନ୍ତରିକ ପ୍ରେରଣା ? ଗୋଟିଏ ଜିଦ୍‌ଖୋର ଝିଅ ହେଇଥିବାରୁ ସେ ଯାହା ସ୍ଥିର କରୁଥିଲା କରି ଦେଖେଇ ଦେଉଥିଲା । ପିଲାଦିନରୁ ହିଁ କେତେ ଝିଅଙ୍କର କିଛି କରି ଦେଖାଇବାର ସଉକ ଥାଏ । କୁହାଯାଏ ତୁଳସୀ ଦୁଇପତ୍ରରୁ ବାସେ । ନିଜ ମନ ଯେଉଁ କାମ କରିବାକୁ ପ୍ରେରିତ କରେ ତାକୁ ସଂପୂର୍ଣ୍ଣ କରିବାର ଜିଦ୍ ଓ ପ୍ରୟାସ ମନରେ ଦୃଢ଼ ହେବା କଥା ।

ପ୍ରାଚୀନ ପରମ୍ପରା ଓ ରୂଢ଼ି ଅନୁସାରେ ଏହି ଗରିବ ବ୍ରାହ୍ମଣର ଝିଅ କୌଣସି ସାମାନ୍ୟ ବ୍ରାହ୍ମଣ ପୁଅକୁ ବିବାହ କରି ତା' ସହ ଘରସଂସାର କରି ହାଣ୍ଡି ଚୁଲ୍ଲୀ ସମ୍ଭାଳି ପିଲାପାଳିବା କଥା । ସେ କେବେ ଭାବି ବି ନ ଥିବ କି ଏମିତି ପଢ଼ାପଢ଼ି କରି କୁସ୍ତି କସରତ ବ୍ୟାୟାମ ଆଦି ପ୍ରଶିକ୍ଷଣ ନେଇ ତା'ର ଭାବୀ ଜୀବନରେ କିଛି ଲାଭ ହେବ । "ତା'ର ଭାଗ୍ୟରେ ରାଜଯୋଗ ଅଛି, ସେ ରାଣୀ ହେବ"– ଜ୍ୟୋତିଷଙ୍କର ଏହି ଭବିଷ୍ୟତ୍ ବାଣୀ ଉପରେ ବିଶ୍ୱାସ କରି ଜାଣିଶୁଣି ସେ ନିଜ ପିଲାଦିନରୁ ତା' ପାଇଁ କ'ଣ ପ୍ରସ୍ତୁତି ଆରମ୍ଭ କରିଦେଇଥିଲା ? ଛବିଶ–ସତେଇଶ ବର୍ଷ ବୟସରେ ସେ ଯେଉଁ ପରାକ୍ରମ ଦେଖାଇଥିଲା, ଯେଉଁ ଶୌର୍ଯ୍ୟ ପ୍ରଦର୍ଶନ କରିଥିଲା ତା' ପାଇଁ ଅତିକମ୍‌ରେ ଅଠର କୋଡ଼ିଏ ବର୍ଷର ଅଭ୍ୟାସ ଦରକାର ପଡ଼େ । ଏହାର ଅର୍ଥ ହେଲା ନିଜ ବାଲ୍ୟାବସ୍ଥାରୁ ହିଁ ସେ ନିଜର ଏହି ବିଶେଷ ଶିକ୍ଷା ଅତ୍ୟନ୍ତ ଏକାଗ୍ରତାର ସହ ଆରମ୍ଭ କରିଦେଇଥିଲା ଓ ଅନ୍ୟପକ୍ଷରେ ପୁରୁଷଙ୍କ କର୍ତ୍ତବ୍ୟ ଓ ପ୍ରବୀଣତା କ୍ଷେତ୍ରରେ ସେ କୋଉ ସୁରାକରେ ପ୍ରବେଶ କରି ନିଜ ନାଁର ମୋହର ଲଗାଇ ଦେଇଥିଲେ । ନିୟତିକୁ ବଦଳେଇଦେବା ତାଙ୍କର ସ୍ୱଭାବ ଥିଲା । ସେ ଏସବୁ ଜାଣିଶୁଣି ଯୋଜନାପୂର୍ବକ କରିଥିବେ, ଏମିତି କହି ହେବ ନାହିଁ, କିନ୍ତୁ ଜିଦି ସ୍ୱଭାବ, ମନ ମୁତାବକ କାମ କରିବାର ଇଚ୍ଛା, ସ୍ୱାଭିମାନ, ସେଇ ଅନୁସାରେ ସବୁ କିଛି ଘଟୁଥିଲା ।

ବ୍ରହ୍ମାବର୍ତ୍ତରେ ଏହି ପ୍ରଶିକ୍ଷଣ ସହ ତାଙ୍କ ଉପରେ ଅନେକ ସଂସ୍କାରର ପ୍ରଭାବ ପଡ଼ିଥିଲା । ନାନାସାହେବଙ୍କ ସହ କାନପୁରର ମେଜର ଜେନେରାଲ ହ୍ୟୁ ହ୍ୱିଲରଙ୍କର

ଘନିଷ୍ଠ ମିତ୍ରତା ଥିଲା । ନାନାସାହେବଙ୍କର ଆହୁରି ବି ଅନେକ ଇଂରେଜ ମିତ୍ର ଥିଲେ । କିନ୍ତୁ ହ୍ୱିଲରଙ୍କ ଏହି ବିଶେଷତ୍ୱ ଥିଲା ଯେ ତାଙ୍କର ପତ୍ନୀ କୋକଣସ୍ଥ ବ୍ରାହ୍ମଣ ଥିଲେ । ସେହି କାରଣରୁ ସେ ବ୍ରହ୍ମାବର୍ତ୍ତ ଯିବାଆସିବା କରୁଥିଲେ । ନାନାସାହେବ ଭଲ ଇଂରେଜୀ କହୁଥିଲେ । ଯେତେବେଳେ ବି ତାଙ୍କର କେହି ଇଂରେଜ ବନ୍ଧୁ ଆସୁଥିଲେ ସେତେବେଳେ ମହଲରେ ଭୋଜିର ଆୟୋଜନ କରାଯାଉଥିଲା । ସଂଗୀତ ନୃତ୍ୟ କାର୍ଯ୍ୟକ୍ରମ ହେଉଥିଲା । ସାଙ୍ଗମାନଙ୍କ ସହ ବିଲିୟାର୍ଡ୍ସ ବି ଖେଳୁଥିଲେ । 'ଲଣ୍ଡନ ଟାଇମ୍ସ', 'ଦିଲ୍ଲୀ ଗେଜେଟ' ଇଂରେଜୀ ସମ୍ବାଦପତ୍ର ନାନାସାହେବଙ୍କ ଘରକୁ ଆସୁଥିଲା । ନାନାସାହେବଙ୍କ ଇଂରେଜୀ ମିତ୍ରମାନଙ୍କ ସହ ଘଣ୍ଟା ଘଣ୍ଟା ଧରି ଆଳାପ ଆଲୋଚନା ହେଉଥିଲା । ଅନେକ ବିଷୟରେ ଚର୍ଚ୍ଚା ବି ହେଉଥିଲା ଓ ଏହିସବୁ ଗତିବିଧି ମନୁ ପରି ବୁଦ୍ଧିମାନ୍ ଝିଅ ଧ୍ୟାନ ଦେଇ ଦେଖୁଥିଲା, ଶୁଣୁଥିଲା, ସେହି କାରଣରୁ ତା' ମନରେ ଇଂରେଜମାନଙ୍କ ପ୍ରତି କୌଣସି ତିରସ୍କାର ଭାବ ନ ଥିଲା କି ଈର୍ଷା ଭାବ ନ ଥିଲା । ସେମାନଙ୍କ ପ୍ରତି କୌଣସି ଭୟ ନ ଥିଲା କି ସେମାନଙ୍କ ଶକ୍ତି, ଶ୍ରେଷ୍ଠତ୍ୱ ସ୍ୱୀକାର, ତାଙ୍କ ପ୍ରଭାବ ଆଗରେ ନଇଁଯିବାର ଭାବନା ନ ଥିଲା । ଇଂରେଜମାନଙ୍କ ଆଚରଣ ବ୍ୟବହାର ସହ ସେ ପରିଚିତ ଥିଲା । ଝାନ୍ସୀ ରାଜ୍ୟ ଅଧିକୃତ ହେବା ପରେ ଲକ୍ଷ୍ମୀବାଈ ଯେଉଁ ସାହସର ସହ ତାଙ୍କ ସହ ପତ୍ର ବ୍ୟବହାର କଲେ ସେଥିରୁ ତାଙ୍କର ପରିପକ୍ୱତା ଓ ବୁଦ୍ଧିମତ୍ତା ପ୍ରକାଶ ପାଏ ।

ପିଲାଦିନେ ଯେତେବେଳେ ମନୁ ବ୍ରହ୍ମାବର୍ତ୍ତରେ ରହୁଥିଲା, ସେତେବେଳର ଦୁଇଟି ଜନଶ୍ରୁତି ବହୁତ ପ୍ରସିଦ୍ଧ ଥିଲା । ଥରେ ନାନାସାହେବ ହାତୀ ଉପରେ ବସି ବୁଲିବାକୁ ଯିବାକୁ ପ୍ରସ୍ତୁତ ହେଉଥିଲେ । ଛୋଟ ଝିଅ ମନୁ କହିଲା "ମୁଁ ବି ହାତୀ ଉପରେ ବସିବି" ସିଏ ବି ନାନାସାହେବଙ୍କ ସହ ହାତୀ ଉପରେ ଚଢ଼ି ବୁଲିବାକୁ ଯିବାକୁ ଚାହୁଁଥିଲା । ନାନାସାହେବ ବି ସେତେବେଳେ ଛୋଟ ପିଲା ଥିଲେ, ସେ ମନୁକୁ ସାଙ୍ଗରେ ନେବାକୁ ମନା କରିଦେଲେ । ମନୁ ନିଜ ଜିଦ୍‌ରେ ଅଟଳ ରହିଲା ଓ କହିଲା "ମୁଁ ବି ହାତୀ ଉପରେ ନିଶ୍ଚୟ ବସିବି । ଜମା କାହା କଥା ମାନିବି ନାହିଁ ।" ମୋରୋପନ୍ତ ଦୁଃଖୀ ହୋଇଗଲେ ଓ ରାଗରେ କହିଲେ "ତୋ ଭାଗ୍ୟରେ ହାତୀରେ ବସିବା ଲେଖା ନାହିଁ । କାହିଁକି ଅଯଥାରେ ଜିଦ୍ କରୁଛୁ ।" ମନୁ ସିଧା ଠିଆ ହୋଇଗଲା ଆଉ ବାପାଙ୍କୁ ଆହ୍ୱାନ ଦେଇ କହିଲା, "କାହିଁକି ଲେଖା ନାହିଁ ? ମୋ ଭାଗ୍ୟରେ ଗୋଟିଏ ନୁହେଁ ୧୦ଟା ହାତୀ ଲେଖା ହୋଇଛି । ଚାରିପଟରେ ହାତୀ ବୁଲୁଥିବେ ଦେଖିବ ।"

ଏହି ଘଟଣା ଘଟିଥାଉ ବା ନ ଘଟିଥାଉ କିନ୍ତୁ ଲୋକଙ୍କ ମନରେ ଆଜିବି ସେହିପରି ବିଦ୍ୟମାନ । ଅନ୍ୟ ଏକ ଘଟଣାର ଉଲ୍ଲେଖ ପାରସନିସ୍ କରିଛନ୍ତି । ଆଜି ବି ଝାନ୍ସୀବାସୀଙ୍କ ମନରେ ଏହି ଜନଶ୍ରୁତି ପ୍ରଚଳିତ । ମନୁର ବିବାହ ସମୟର ତାହାର ସାହସିକତା ସଂପର୍କରେ ଏକ ଚମତ୍କାର ଘଟଣା । ପୁରୋହିତ ଯେତେବେଳେ ମନୁ ଓ ଗଙ୍ଗାଧର ରାଓଙ୍କୁ ବନ୍ଧନ ସୂତ୍ରରେ ଯୋଡ଼ିବା ପାଇଁ ବରର ଚାଦର ଓ ବଧୂର ଶାଢ଼ୀ କାନି ହାତରେ ଧରି ଗଣ୍ଠି

ପକାଉଥିଲେ, ସେତେବେଳେ ଅତି ନିର୍ଭୟତା ସହ ସେ କହିଲା, ''ଏମିତି ବାନ୍ଧନ୍ତୁ ଯେମିତି କେବେ ଖୋଲିବ ନାହିଁ କି ଛିଣ୍ଡିବ ନାହିଁ ।'' ଏହି ଘଟଣା ପ୍ରତ୍ୟକ୍ଷରୂପେ ଘଟିଥିବ କି ନାହିଁ । ଯଦି ଏହି କଥାରେ ସତ୍ୟତା ଥିବ ତାହେଲେ ମନୁ କ୍ଷେତ୍ରରେ ତାହା ଅତିରଞ୍ଜିତ ନୁହେଁ । ସେହି ଯୁଗରେ କେବଳ ନୁହେଁ, ଆଜିକାଲି ବି କୌଣସି ବୋହୂ ଏହିପ୍ରକାର କଥା ବିବାହ ବେଦୀରେ କହିପାରିବ ନାହିଁ । ଏ ପ୍ରକାର କଥା ସାଧାରଣତଃ ଘଟେ ନାହିଁ । ସେ କାଳ ତ ପ୍ରାଚୀନ ପରମ୍ପରା ଓ ରୂଢ଼ିକୁ ମାନିବାର ଯୁଗ ଥିଲା । ଝିଅମାନଙ୍କର ଆଚରଣ ଓ କଥା ଉପରେ ଶକ୍ତ କଟକଣାମାନ ଥିଲା । ସେଥିପାଇଁ ମନୁ ଏମିତି କହିଥିବ ବୋଲି ମନ ସ୍ୱୀକାର କରିବାକୁ ପ୍ରସ୍ତୁତ ହୁଏ ନାହିଁ । ପୁଣି ଇଏ 'ଝାନ୍‌ସୀର ରାଣୀ' ହୋଇଗଲା ତ କ'ଣ ହେଲା ? ଅନ୍ୟ ପକ୍ଷରେ ମନ କହେ ମନୁ ଜାଣିଥିଲା କି ତା'ର ପତି ତା'ଠାରୁ ତିରିଶ ବତିଶ ବର୍ଷ ବଡ଼ ସେହି କାରଣରୁ ଦୁହିଁଙ୍କର ବନ୍ଧନ ଅଧିକ ପକ୍କା ହେବା ଜରୁରି । ସେ ଏମିତି ଭାବିବା ସ୍ୱାଭାବିକ ଥିଲା । ଏମିତି ବିଚାର କେବଳ ଜନଶ୍ରୁତି କାରଣରୁ ହିଁ ମନକୁ ଆସେ । କୌଣସି ବ୍ୟକ୍ତିର ଗୁଣଦୋଷକୁ ଧ୍ୟାନରେ ରଖି ଜନମାନସ ନିଜର ଏକ ଧାରଣା ନିର୍ଦ୍ଧାରିତ କରେ । ସେଇ ଅନୁସାରେ ଚିନ୍ତା କରି ତାକୁ ବାସ୍ତବତାର ପୋଷାକ ପିନ୍ଧାଏ । ପରେ ସେକଥା ସବୁ କେବଳ ଜନଶ୍ରୁତି ହୋଇ ରହିଯାଏ । ସେଥିରେ ମଣିଷ ମନର ଇଚ୍ଛା, ଆଶା, ଆକାଂକ୍ଷା, ଭୟ ବି ବ୍ୟକ୍ତ ହୋଇଯାଏ । ବିବାହ ପରେ ଲକ୍ଷ୍ମୀବାଈଙ୍କ ବ୍ୟକ୍ତିତ୍ୱ ଏକ ତେଜସ୍ୱୀ, ସାହସିକ, ଜିଦ୍ଦି ଓ ବୀରାଙ୍ଗନା ରୂପରେ ଦିବ୍ୟ ଅଗ୍ନିରୁ ପ୍ରକଟିତ ହେଲା । ବୋଧହୁଏ ସେହି ଆଧାରରେ ହିଁ ଏହିଭଳି ଏକ ଜନଶ୍ରୁତି ଜନ୍ମ ନେଇଛି ।

## ମନୁରୁ ରାଣୀ ଲକ୍ଷ୍ମୀବାଈ

ମନୁର ଜନ୍ମ ପରେ ମୋରୋପନ୍ତ କାଶୀରେ ହିଁ ତା'ର ଜାତକ ତିଆରି କରି ଜ୍ୟୋତିଷକୁ ଦେଖାଇଲେ । ସେତେବେଳେ ସେହି ଜ୍ୟୋତିଷ ଭବିଷ୍ୟବାଣୀ କରିଥିଲେ ''ଏହି କନ୍ୟା ବଡ଼ ବୁଦ୍ଧିମାନ୍ ହେବ ଓ ବହୁତ ନାମ ଅର୍ଜନ କରିବ । ତା'ର କୀର୍ତ୍ତି ଚାରିଆଡ଼େ ସୁଗନ୍ଧ ପରି ମହକିବ । ଏ କୌଣସି ରାଜାର ରାଣୀ ହେବ । ଯେତେବେଳେ ମନୁର ବିବାହ ସ୍ଥିର ହେବାବେଳ ଆସିଲା ସେତେବେଳେ ମୋରୋପନ୍ତଙ୍କୁ ଜ୍ୟୋତିଷର ଏହି କଥା ଉପରେ ନିଶ୍ଚୟ ବିଶ୍ୱାସ ହେଇଯାଇଥିବ । କିନ୍ତୁ ଗୋଟିଏ ପ୍ରଶ୍ନ ମନରେ ଉଠେ କ'ଣ ଜ୍ୟୋତିଷ ଅଳ୍ପ ବୟସରେ ମନୁ ବିଧବା ହୋଇଯିବ ବୋଲି ଭବିଷ୍ୟଦ୍ ବାଣୀ କରିଥିଲେ ! ସାଧାରଣତଃ ଜ୍ୟୋତିଷମାନେ ଏହିପ୍ରକାର ଅଶୁଭ ପରିଣାମକୁ ବ୍ୟକ୍ତ କରନ୍ତି ନାହିଁ । ଯଦି କହନ୍ତି ବି ସାଙ୍କେତିକ ଶବ୍ଦ ଦ୍ୱାରା ଏସବୁର ଚର୍ଚ୍ଚା କରନ୍ତି । କିନ୍ତୁ ଏଭଳି ଭବିଷ୍ୟଦ୍ ଜ୍ୟୋତିଷ ବତାଇବା କ'ଣ ବା ଦରକାର ? ସେ ଯୁଗରେ ପୁରୋହିତଗିରି କରୁଥିବା ସବୁ ବ୍ରାହ୍ମଣମାନଙ୍କୁ ଗ୍ରହ, ନକ୍ଷତ୍ରର ପରିଣାମ ବିଷୟରେ ମାମୁଲି ଜ୍ଞାନ ଥିଲା । ଏଣୁ ମୋରୋପନ୍ତଙ୍କ ମନରେ ବି ମନୁର ଅଳ୍ପ ବୟସରେ ବିଧବା ହେଇଯିବାର ସମ୍ଭାବନାର କଳ୍ପନା ଥିବ । ନ ହେଲେ ତିରିଶ ବତିଶ ବର୍ଷ ବଡ଼ ଗଙ୍ଗାଧର ରାଓଙ୍କ ସହ ମନୁର ବିବାହ କାହିଁକି ସ୍ଥିର କରାଗଲା ।

କେବଳ ଏତିକି ନୁହେଁ ମୋରୋପନ୍ତ ଏକଥା ବି ଜାଣିଥିଲେ ଯେ ରାଜା ଗଙ୍ଗାଧର ରାଓ ନିଜର ଚିଡ଼ଚିଡ଼ା ଗୁଣ ଓ ନାରୀସୁଲଭ ବ୍ୟବହାର ପାଇଁ ବଦନାମ ଥିଲେ । ଦ୍ୱିତୀୟ ବିବାହ ସମୟରେ ସେଥିପାଇଁ ନିଜ କନ୍ୟାର ସମ୍ବନ୍ଧ ତାଙ୍କ ସହ ଯୋଡ଼ିବାକୁ କେହି ରାଜି ହେଉ ନ ଥିଲେ । ମୋରୋପନ୍ତ ଏଭଳି ସଂପର୍କ ପାଇଁ କେମିତି ରାଜି ହେଇଗଲେ ? ସଂଭବତଃ ଗୋଟିଏ କାରଣ ଏହା ବି ହୋଇପାରେ ସେ ସମୟରେ ବାଳବିବାହ ପ୍ରଥା ପ୍ରଚଳିତ ଥିଲା । ବିଧବା ବିବାହ ନିଷେଧ ଥିଲା । ସମାଜରେ ବାଳା-ଜ୍ୟେଷ୍ଠ ବିବାହର ପ୍ରଚଳନ ଜୋରସୋରରେ ଥିଲା । ସେଥିପାଇଁ ବୋଧହୁଏ ମୋରୋପନ୍ତ ଏମିତି ବେମେଳ ବିବାହର ଅନୁମତି ଦେଇଥିବେ କିମ୍ବା ଜ୍ୟୋତିଷୀର ଏହି ଭବିଷ୍ୟବାଣୀ ଆଧାରରେ ମନୁ କୌଣସି ରାଜାର ରାଣୀ ହେବ ଏହି କଥାକୁ ସତ୍ୟରେ ପରିଣତ କରିବାକୁ ଏମିତି କରିଥିବେ ବା ଗଙ୍ଗାଧର ରାଓ ମୋରୋପନ୍ତଙ୍କର ସବୁ ସର୍ତ୍ତ ମାନି ନେଇଥିବେ । ସେଇଥିପାଇଁ ଏହି ବିବାହକୁ ମାନ୍ୟତା ଦିଆଯାଇଥିବ । ଏହି ତିନିଟି କାରଣ ମନୁର ବିବାହ ପାଇଁ ଉପଯୁକ୍ତ ପ୍ରମାଣିତ ହେଲା । ସ୍ୱୟଂ ବାଜିରାଓ ପେଶୱା ବି ଏହି ବିବାହ ପାଇଁ ଆଗେଇ ଆସିଲେ ଓ ଆଗ୍ରହ ଦେଖାଇଲେ ।

ଏହି ବିବାହ ସମ୍ବନ୍ଧ କୌଣସି ପ୍ରକାରେ ଅନୁଚିତ ବୋଲି କେହି ବି ଅନୁଭବ କରି ନ ଥିବେ । ମୋରୋପନ୍ତ କହ୍ଲାଡ଼େ ବ୍ରାହ୍ମଣ ଥିଲେ । ନିଜ ଜାତିର ଜାମାତା ପାଇବାକୁ ଚାହୁଁଥିଲେ । ମନୁ ଆଠ, ନ' ବର୍ଷର ହେଲାକ୍ଷଣି ତତ୍କାଳୀନ ସମାଜ ବ୍ୟବସ୍ଥା ଅନୁସାରେ ମୋରୋପନ୍ତ, ଜାଲୌନ, ଗୁଲସରାଇ ଆଦି ସ୍ଥାନରେ ବର ଖୋଜିବା ଆରମ୍ଭ କରିଦେଲେ । ସେହି ପ୍ରଦେଶ ଗୋବିନ୍ଦପନ୍ତ ବୁନ୍ଦେଲ(ଖରେ), ଏହି କହ୍ଲାଡ଼େ ବ୍ରାହ୍ମଣଙ୍କ ବଂଶଜଙ୍କ ଅଧିକାରରେ ଥିଲା । ସେଠାରେ ଅନେକ କହ୍ଲାଡ଼େ ବ୍ରାହ୍ମଣ ପରିବାର ରହୁଥିଲେ । କିନ୍ତୁ ଜାତକ ମେଳ ହୋଇ ନ ପାରିବାରୁ ବାହାଘରରେ ବାଧା ସୃଷ୍ଟି ହେଉଥିଲା । ମନୁର ବୟସ ବି ବଢ଼ିଚାଲିଥିଲା । ଗୋଡ଼ସେ ଭଟ୍ଟଙ୍କ ଚାଚା ତାଙ୍କୁ ବତାଇଥିଲେ ଯେ ମନୁର ବିବାହ କେଉଁଠାରେ ବି ସ୍ଥିର ହୋଇପାରୁ ନ ଥିଲା । ତା'ର ବୟସ ବଢ଼ିବା ଦେଖି ଚିନ୍ତାରେ ତା'ର ପିତାଙ୍କର ରାତିରେ ନିଦ ବି ହେଉ ନ ଥିଲା । ସେହି ଯୁଗର ପରିପାଟୀ ଅନୁସାରେ ମନୁର ବାର-ତେର ବର୍ଷ ବୟସ ଅର୍ଥାତ୍ ଆବଶ୍ୟକତାରୁ ଅଧିକ ବୟସ ହୋଇଯାଇଥିଲା । ସେହି କାରଣରୁ ଗଙ୍ଗାଧର ରାଓଙ୍କ ପ୍ରସ୍ତାବ ଆସିବା କ୍ଷଣି ମୋରୋପନ୍ତ ଓ ସ୍ୱୟଂ ବାଜିରାଓ ପେଶୱା ମଧ୍ୟ ନିଜ ସ୍ୱୀକୃତି ପ୍ରଦାନ କଲେ । କାରଣ ଝିଅର ବିବାହ ବୟସ ଗଡ଼ିଯିବା ଅନୁସାରେ ସବୁକିଛି ମନମୁତାବକ ହେଉଥିଲା । ଗଙ୍ଗାଧର ରାଓ ମୋରୋପନ୍ତଙ୍କର ସବୁ ସର୍ତ୍ତ ମାନି ନେଇଥିଲେ । ଜ୍ୟୋତିଷଙ୍କ ଭବିଷ୍ୟତ୍ ବାଣୀ ବି ସତ ହେବାକୁ ଯାଉଥିଲା । କେବଳ ସେତିକି ନୁହେଁ, ବାଲ୍ୟବିବାହ ପଦ୍ଧତି ଓ ବିଧବାବିବାହ ବିରୋଧ ହେତୁ ସେ ସମୟରେ ବିଷମ ବିବାହ ହେବା ସାଧାରଣ କଥା ଥିଲା । ସେହି କାରଣରୁ ମନୁର ବିବାହ ସ୍ଥିର କରାଯାଇଥିଲା, ସ୍ୱୟଂ ବାଜିରାଓ ପେଶୱା ମଧ୍ୟ ଏମିତି

ଝିଅକୁ ବିବାହ କରିଥିଲେ, ଯିଏ ବୟସରେ ତାଙ୍କଠାରୁ ବହୁତ ସାନ ଥିଲା ଓ ଦେଖିଲେ ତାଙ୍କ ନାତୁଣୀ ପରି ଲାଗୁଥିଲା । ତାକୁ ବି ବିଷମ ବିବାହର ସତ୍ୟତାକୁ ଭାଗ୍ୟ ବୋଲି ଭାବି ସ୍ୱୀକାର କରିବାକୁ ପଡ଼ିଥିଲା । କନ୍ୟା ମନା କରିବାର କୌଣସି ଅଧିକାର ନ ଥିଲା । ସତକଥା ବାସ୍ତବରେ ଝିଅର ପସନ୍ଦକୁ ସେ ଯୁଗରେ କେହି ପଚାରୁ ନ ଥିଲେ ।

ବ୍ରହ୍ମାବର୍ତ୍ତରୁ ତାକୁ ବିଦା କରିବା ସମୟରେ ବାଜିରାଓ ପେଶଓ୍ୱା ନିଜ ପ୍ରତିଷ୍ଠା ଓ ତା ପ୍ରତି ଥିବା ମମତା ଅନୁସାରେ ତାକୁ ବିଦା କରିଥିବେ । ବାଟ, ଘାଟ ଟପି ବରଯାତ୍ରୀ ଝାନ୍ସୀ ପରିସରରେ ଆସି ପହଞ୍ଚିଲେ । ବରଯାତ୍ରୀ ଦଳ ଯେତେ ଯେତେ ଝାନ୍ସୀ ସହର ଆଡ଼କୁ ଆଗେଇ ଚାଲିଲେ, ସେତେ ସେତେ ଝାନ୍ସୀର ପ୍ରାଚୀନ ଓ ସୁଦୃଢ଼ କିଲ୍ଲା ସ୍ପଷ୍ଟ ଦେଖାଗଲା । ସେହି କିଲ୍ଲାର ଅତୀବ ରମଣୀୟତା, ତା'ର ଉଚ୍ଚ ପ୍ରାଚୀର ମନୁର ଆଖିକୁ ଭଲ ଲାଗିଲା । ସହରର ପଶ୍ଚିମ ଭାଗରେ ଗୋଟିଏ ଛୋଟ-ପାହାଡ଼ ଉପରେ ନିର୍ମିତ କିଲ୍ଲାର ବିସ୍ତାର, ଆକାଶକୁ ଛୁଉଁଥିବା ମଜଭୁଦ୍ ଗମ୍ବୁଜ, ପାଚେରିର ସୌନ୍ଦର୍ଯ୍ୟ ଦେଖି ତା'ର ଦୃଷ୍ଟି କିଲ୍ଲା ଉପରେ ସ୍ଥିର ହୋଇଗଲା । ସେ ସେହି ଅଦ୍‌ଭୁତ ଚମତ୍କାରକୁ ଚାହିଁ ରହିଗଲା । ବ୍ରହ୍ମାବର୍ତ୍ତର ଏହି ଗାଁ ଗଙ୍ଗା କୂଳରେ ଅବସ୍ଥିତ ଥିଲା । ସମତଳ ଅଞ୍ଚଳ । ସେଠାକାର ଭବ୍ୟ ଏକମାତ୍ର ଅଟ୍ଟାଳିକାଟି ପେଶଓ୍ୱାଙ୍କର ମହଲ ଥିଲା । ପେଶଓ୍ୱାମାନଙ୍କର ସତ୍ତା କେବଳ ସେହି ମହଲରେ ରହୁଥିବା ଓ ମହଲର ସୀମା ପର୍ଯ୍ୟନ୍ତ ପ୍ରତିଷ୍ଠିତ ଥିଲା । ଏପର୍ଯ୍ୟନ୍ତ ମନୁର ଜୀବନର ତ ଦୁନିଆ ଏତିକି ଭିତରେ ହିଁ ସୀମିତ ଥିଲା । ସେହି ତୁଳନାରେ ଏବେ ଦୃଷ୍ଟିଗୋଚର ହେଉଥିବା ମହଲ ଓ କିଲ୍ଲା ଏକପ୍ରକାର ସ୍ୱତନ୍ତ୍ର ରାଜ୍ୟ ସତ୍ତାର, କଳ୍ପନାର ପ୍ରତୀକ ଥିଲା । ସେହି କିଲ୍ଲାକୁ ଦେଖି ତା' ମନରେ ବିଚାରର ଝଡ଼ ସୃଷ୍ଟି ହୋଇଥିବ । କାରଣ ସେ ତୀବ୍ର ବୁଦ୍ଧିମତୀ ଓ ଗୁଣବତୀ ଝିଅ ଥିଲା । ଏବେ ସେ ଏହି ବିଶାଳ କିଲ୍ଲାର ସ୍ୱାମିନୀ ହେବାକୁ ଯାଉଛି । ସମ୍ଭବତଃ ରାଜ୍ୟର ପଥପ୍ରଦର୍ଶକ କିମ୍ବା ପୁଣି ନିନ୍ଦିତ ଦରବୁଢା ସ୍ୱାମୀର ଏକ ଖେଳନା ହେବାକୁ ଯାଉଥିଲା । ଅଥବା ସେ ରାଜ୍ୟକୁ ଉତ୍ତରାଧିକାରୀ ପ୍ରଦାନ କରିବାର କର୍ତ୍ତବ୍ୟ ପାଳନ କରିବାକୁ ଏକ ପତ୍ନୀ ଭାବରେ ବଞ୍ଚିବାକୁ ଚାହୁଁଥିଲା । ଅଥବା ଏହି କର୍ତ୍ତବ୍ୟଟିକୁ ପୂର୍ଣ୍ଣ କଲା ପରେ ଗୋଟିଏ କୋଠରିରେ ରାଜାଙ୍କର ଏକ ଉପେକ୍ଷିତ ରାଣୀ ଭାବରେ ବଞ୍ଚିବାକୁ ଚାହୁଁଥିଲା । କେଜାଣି କ'ଣ ଥିଲା, ତା ଭାଗ୍ୟରେ ମନରେ ବିଚାରର ବୋଝ ବୋହି ଏ ଆଶା ଆକାଂକ୍ଷାର ଭରସାରେ ସେ ଗୋଟିଏ ନୂଆ ଜୀବନ ଆରମ୍ଭ କଲା । କ'ଣ ଏହି ନୂଆ ଜୀବନରେ ନିଜ ଭାଗ୍ୟ ନିର୍ମାଣ ମୁଁ ନିଜେ କରିପାରିବି ? ଏମିତି ବିଚାରର କ୍ଷୀଣ ଆଶା ଟିକିଏ ତା ମନରେ ଜାଗ୍ରତ ହୋଇଥିବ । ନିଜ ବ୍ୟକ୍ତିତ୍ୱର ନିର୍ମାଣ ସ୍ୱୟଂ କରିବାର ଅଛି ଏମିତି ଏକ ନିର୍ଣ୍ଣୟ ସେ ନିଜ ଭିତରେ ନେଇସାରିଥିଲା ।

ଝାନ୍ସୀର ଏକ ପୁରୁଣା ଗଣେଶ ମନ୍ଦିରକୁ ଲାଗିଥିବା ଏକ ଉଆସରେ କନ୍ୟାଯାତ୍ରୀମାନଙ୍କର ରହିବାର ବନ୍ଦୋବସ୍ତ ରାଜା କରିଥିଲେ । ତା ସହ ରାଣୀଙ୍କର ପ୍ରତିଷ୍ଠା

ଅନୁସାରେ ବ୍ୟବସ୍ଥା କରାଯାଇଥିଲା । ବିବାହର ସବୁ ବିଧିବିଧାନ ନିର୍ବିଘ୍ନରେ ସଂପୂର୍ଣ୍ଣ ହୋଇଗଲା । ମୋରୋପନ୍ତ ତାଙ୍କର ଝିଅ ମଣିକର୍ଣ୍ଣିକା ଏବେ ଝାନ୍‌ସୀର ରାଜା ଗଙ୍ଗାଧର ରାଓଙ୍କ 'ରାଣୀ ଲକ୍ଷ୍ମୀବାଈ' ବୋଲାଇଲା ।

ନିଜ ବିବାହ ପରେ ତୁରନ୍ତ ଗଙ୍ଗାଧର ରାଓ ନିଜଠାରୁ କମ୍ ବୟସର ଶ୍ୱଶୁର ମୋରୋପନ୍ତଙ୍କର ବିବାହ ଗୁଲସରାଇ ରିୟାସତ୍‌ର ବାସୁଦେବ ଶିବରାମ ଖାନବଲକରଙ୍କ କନ୍ୟା ଚିମାବାଈ ସହ କରେଇଦେଲେ । ସେ ସମୟରେ ଚିମାବାଈର ଆୟୁ ନ' ଦଶ ବର୍ଷ ହେଇଥିଲା । କହିବାର ତାତ୍ପର୍ଯ୍ୟ ଏହା ଯେ ତତ୍କାଳୀନ ପ୍ରଥା ଅନୁସାରେ ବିଷମ ବିବାହ ହେଉଥିଲା । ମନୁ ମୋରୋପନ୍ତଙ୍କର ଏକମାତ୍ର କନ୍ୟା ଥିଲା । ତାଙ୍କର ପୁଅ ନ ଥିଲା । ତାଙ୍କ ବଂଶର କେହି ଉତ୍ତରାଧିକାରୀ ହେବା ଜରୁରି ଥିଲା । ଉତ୍ତରାଧିକାରୀ ବିନା ମୋରୋପନ୍ତଙ୍କୁ ମୁକ୍ତି ମିଳି ନ ଥାନ୍ତା । ବିବାହ କରିବା ଆବଶ୍ୟକ ଥିଲା । ଏହି ସଂପର୍କରେ ଗୋଡ଼ସେ ଭଟ୍ଟ ଝାନ୍‌ସୀରେ ଶୁଣିଥିବା ସତ୍ୟ ଘଟଣାର ବର୍ଣ୍ଣନା କରିଛନ୍ତି– "ବ୍ରହ୍ମାବର୍ତ୍ତ ପହଞ୍ଚିଲାକ୍ଷଣି ମଧ୍ୟସ୍ଥ ଜୋଶୀ ପଣ୍ଡିତ ପ୍ରସ୍ତାବ ରଖିଲେ କନ୍ୟା ବଦଳରେ ଆମେ ଝାନ୍‌ସୀବାଲାଙ୍କଠାରୁ ପଇସା ନେବୁ ନାହିଁ । ପରନ୍ତୁ ତାଙ୍କର କୌଣସି ପୁତ୍ରସନ୍ତାନ ନାହିଁ, ସେଥିପାଇଁ ତାଙ୍କୁ ଦ୍ୱିତୀୟ ବିବାହ କରିବାର ଅଛି । ସେଥିପାଇଁ ସମସ୍ତ ଖର୍ଚ୍ଚ କରି ଆପଣ ତାଙ୍କର ଦ୍ୱିତୀୟ ବିବାହ କରାଇବେ ଓ ଝାନ୍‌ସୀରେ ହିଁ ତାଙ୍କୁ ରହିବା ଜାଗା ଆପଣ ହିଁ ଦେବେ । ସବୁ କଥା ଶୁଣି ଝାନ୍‌ସୀରୁ ଆସିଥିବା ଦୂତ ସବୁ ବୃତ୍ତାନ୍ତ ଲେଖି ଗଙ୍ଗାଧରଙ୍କ ପାଖକୁ ପଠାଇଦେଲେ । ତା'ପରେ ଗାଡ଼ିଭଡ଼ା କରି ମୋରୋପନ୍ତ ତାଙ୍କ ଝିଅକୁ ନେଇ ଝାନ୍‌ସୀ ଚାଲିଆସିଲେ । ସହରରେ ରହିବା ପାଇଁ ତାଙ୍କୁ ଏକ ଉଆସ ଦିଆଗଲା । ରୋଷେଇଆ, ଗଉଡ଼, ବ୍ରାହ୍ମଣ, ବୋଲକରା ଓ ଚାକର-ବାକର ବି ସେବା ପାଇଁ ନିଯୁକ୍ତ କରିଦିଆଗଲା । ଶୁଭ ମୁହୂର୍ତ୍ତ ଦେଖି ବିବାହ ସମାରୋହ ସଂପନ୍ନ ହେଲା । ନବବଧୂର ନାମ ଲକ୍ଷ୍ମୀବାଈ ରଖାଗଲା । ପୁଣି ପରେ ମୋରୋପନ୍ତଙ୍କର ବିବାହ କରି ଦିଆଗଲା । ତାଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ ଏମିତି ଦୁଇଟି ସନ୍ତାନ ହେଲେ (ମାଝାପ୍ରବାସ, ପୃଷ୍ଠା ୩୫-୩୬) । ଏଥିରେ ମନୁର ବିବାହ ସଂବନ୍ଧିତ ଯାହା କିଛି ଦିଆ-ନିଆ ହେଲା, ସେ ସଂପର୍କରେ ସ୍ପଷ୍ଟ ସୂଚନା ମିଳିଯାଏ । ସବୁ କଥା ତତ୍କାଳୀନ ପ୍ରଥା ଓ ରୀତିନୀତି ଅନୁରୂପ ହେଇଥିଲା । ମନୁର ବିବାହ ଏକପ୍ରକାର ସଉଦା କରାଯାଇଥିଲା, ଏମିତି ବି କୁହାଯାଇପାରେ । ଏମିତି ସନ୍ଦେହ ହେବାର ଯଥେଷ୍ଟ କାରଣ ରହିଛି । ସେ ଯୁଗରେ ଏମିତି ପରସ୍ପର ଫାଇଦା ପାଇଁ ବିବାହ ବହୁସଂଖ୍ୟାରେ ହେଉଥିଲା । ଏହାର ବହୁତ ପ୍ରମାଣ ୧୯ଶହ ଶତାବ୍ଦୀର ଗବେଷଣାକାରୀଙ୍କୁ ମିଳିଥାଏ ।

## ରାଣୀ ପଦର ପ୍ରତିଷ୍ଠା

ଲକ୍ଷ୍ମୀବାଈଙ୍କର ନୂଆ ଜୀବନ ଆରମ୍ଭ ହେଇଥିଲା ଝାନ୍‌ସୀ କିଲ୍ଲାରେ । ରାଣୀ କିଲ୍ଲାରେ ଥିବା ମହଲରେ ପ୍ରାୟ ରହୁଥିଲେ । ନୂଆ ବାତାବରଣରେ, ଚମତ୍କାରୀ ଓ ଅସାଧାରଣ

ବ୍ୟବହାର କରୁଥିବା ବୟସ୍କ ପତି ସହ କେଜାଣି କେମିତି ସମୟ କଟାଇଥିବେ ? ଗୋଡ଼ସେ ଭଟ୍ଟ ଯେଉଁ ବର୍ଣ୍ଣନା କରିଛନ୍ତି (ମାଝାପ୍ରବାସ, ପୃଷ୍ଠା-୩୪), ତାକୁ ପଢ଼ିଲେ ଜଣାପଡ଼େ ଗଙ୍ଗାଧର ରାଓ ସ୍ତ୍ରୀ ଲମ୍ପଟ (ସ୍ତ୍ରୈଣ) ଥିଲେ । ସ୍ତ୍ରୀଲୋକଙ୍କ ପରି ଲୁଗାପଟା ପିନ୍ଧୁଥିଲେ । ଗହଣା ପିନ୍ଧୁଥିଲେ । ସ୍ତ୍ରୀମାନଙ୍କ ପରି ବେଶଭୂଷା ଶୃଙ୍ଗାର କରି ସ୍ତ୍ରୀଲୋକଙ୍କ ସହ ଗପ ମାରୁଥିଲେ । ପ୍ରତି ମାସରେ ତିନିଦିନ ରଜସ୍ୱଳା ସ୍ତ୍ରୀ ଧର୍ମ ପାଳନ କରୁଥିଲେ । ଚତୁର୍ଥ ଦିନ ସ୍ନାନ କାର୍ଯ୍ୟକ୍ରମ ପୂରା ସମାରୋହପୂର୍ବକ କରାଯାଉଥିଲା । ନାରୀ-ସୁଲଭ ସମସ୍ତ ସଂସ୍କାର ପାଳନ କରୁଥିଲେ । ଏହା ସତ୍ତ୍ୱେ ବି ଗଙ୍ଗାଧର ରାଓ ପୂରାପୂରି ଅଣପୁରୁଷ ନ ଥିଲେ । ତାଙ୍କର ପ୍ରଥମ ସ୍ତ୍ରୀର ସନ୍ତାନ ହେଇଥିଲା । ରାଣୀ ଲକ୍ଷ୍ମୀବାଈ ମଧ୍ୟ ଗୋଟିଏ ସନ୍ତାନ ଜନ୍ମ ଦେଇଥିଲେ ଓ ଏହି ଦୁଇ ରାଣୀଙ୍କର ଚରିତ୍ର ପୂରାପୂରି ନିଷ୍କଳଙ୍କ ଥିଲା, ନିର୍ବିବାଦ ଥିଲା ।

ଲକ୍ଷ୍ମୀବାଈ ବ୍ରହ୍ମାବର୍ତ୍ତରେ ରହୁଥିବା ବାଜିରାଓଙ୍କୁ ସବୁବେଳେ ସ୍ତ୍ରୀଲୋକଙ୍କ ସହ ବ୍ୟଭିଚାରୀ ଜୀବନ ବିତାଉଥିବାର ଦେଖିଥିଲେ । ଗଙ୍ଗାଧର ରାଓ ବି ସ୍ୱୟଂ ସ୍ତ୍ରୀ ବେଶ ଧାରଣ କରି ବଞ୍ଚୁଥିଲେ । ଉପାୟ ଅଲଗା ଅଲଗା । ରାଜପରିବାରର ପୁରୁଷମାନଙ୍କର ଆଚରଣ, ଜୀବନ ଏମିତି ହେଇଥିବ ବୋଲି ଭାବି ଲକ୍ଷ୍ମୀବାଈ ନିଜ ମନକୁ ବୁଝାଇଥିବେ । ଏମିତି ବିଚିତ୍ର ଅଭ୍ୟାସ ସହ ଗଙ୍ଗାଧରଙ୍କ କ୍ରୋଧୀ, କଠୋର, କେତେବେଳେ ସ୍ୱୟଂ ହାତରେ ଚାବୁକ୍ ଧରି ଦୋଷୀକୁ ପିଟିଲାବାଲା, ଫାଶୀଦଣ୍ଡ ଦେଲାବାଲା ରାଜା ରୂପରେ ବି ରାଣୀ ତାଙ୍କୁ ଦେଖିଥିଲେ । ବିବାହ ପରେ ଯେତେବେଳେ ଦୁଇଜଣ କାଶୀ, ପ୍ରୟାଗ ବୁଲିବାକୁ ଯାଇଥିଲେ ସେତେବେଳେ ଗଙ୍ଗାଧର ରାଓ ଇଂରେଜ ଅଧିକାରୀମାନଙ୍କ ସହ ଯେଉଁପ୍ରକାର କଠୋର ଆଚରଣ କରିଥିଲେ ତାହା ମଧ୍ୟ ଲକ୍ଷ୍ମୀବାଈ ଅନୁଭବ କରିଥିଲେ । ଏହା ସତ୍ତ୍ୱେ ଲୋକଙ୍କ ଫାଶୀ ସଜା ବନ୍ଦ କରେଇପାରିଲା ପରି ସଫଳତା ବି ରାଣୀକୁ ମିଳିଥିଲା । କିଲ୍ଲାରେ ସହରର ରାଜମହଲରେ ସଂଗୀତ, ନୃତ୍ୟ, ନାଟକ ଉତ୍ସବ ଆଦି ସବୁବେଳେ ଆୟୋଜିତ କରାଯାଉଥିଲା । ରାଜା ନିଜେ ନାଟକରେ ଅଭିନୟ ବି କରୁଥିଲେ । ଧାର୍ମିକ ପ୍ରବୃତ୍ତି କାରଣରୁ ପୂଜା-ପାଠ ଓ ବିଭିନ୍ନ ପର୍ବପର୍ବାଣିରେ ବି ଯୋଗ ଦେଉଥିଲେ । ସେ ସବୁବେଳେ ଜାତିଭେଦକୁ ନେଇ ଗଣ୍ଡଗୋଳ କଲାବାଲା ଓ ବିଳାସୀ ଓ ମଉଜ, ମଜଲିସ୍‌ରେ ଜୀବନ ବିତାଉଥିବା ଲୋକଙ୍କ ଦ୍ୱାରା ପରିବେଷ୍ଟିତ ହୋଇଥିଲେ । ଗଙ୍ଗାଧର ରାଓଙ୍କ ଗଡ଼ିଯାଉଥିବା ବୟସ ଓ ବିଳାସୀ ଦିନଚର୍ଯ୍ୟାକୁ ଦେଖି ରାଣୀ କଳ୍ପନା କରିନେଇଥିବେ ଯେ ଦିନେ ନା ଦିନେ ତାଙ୍କୁ ରାଜ୍ୟର ଦାୟିତ୍ୱ ସମ୍ଭାଳିବାକୁ ପଡ଼ିପାରେ । ତାଙ୍କ ମନ ଏହିଭଳି ଚିନ୍ତାର ବୋଝ ତଳେ ଦବି ଯାଉଥିଲା । ଯଦି ଏଭଳି ସମସ୍ୟା ଦେଖାଦେବ ତା'ହେଲେ ଠିକ୍ ଢଙ୍ଗରେ ସମାଧାନ କରିବାକୁ, ଏଭଳି ସମସ୍ୟାର ଦୃଢ଼ତାର ସହ ସାମନା କରିବାକୁ ହେବ ଭାବି ଧୀରେ ଧୀରେ ରାଣୀଙ୍କ ସ୍ୱଭାବରେ ବି ପରିବର୍ତ୍ତନ ଘଟିଲା । ସେ ଗମ୍ଭୀରରୁ ଗମ୍ଭୀରତର ହୋଇଗଲେ । ରାଜ୍ୟ ପ୍ରଶାସନର ଅଭିଜ୍ଞତା ହାସଲ କରିବାର

ଆବଶ୍ୟକତା ସେ ବୁଝିପାରିଥିବେ । ଅନ୍ୟ ରାଜପରିବାରର ପ୍ରଥା ଅନୁସାରେ ଲକ୍ଷ୍ମୀବାଈ ଦରବାରକୁ ଯାଇ ପରଦା ଆଢୁଆଳରେ ଦରବାର କାମ ଦେଖାଦେଖି କଲେ । କିନ୍ତୁ ଗଙ୍ଗାଧର ରାଓ ଏହା ପସନ୍ଦ କଲେ ନାହିଁ । ସେ ଏହି କଥା ରାଣୀଙ୍କୁ ବି ଜଣାଇଦେଲେ । ଲକ୍ଷ୍ମୀବାଈ ତା'ପରେ ଦରବାରକୁ ଯିବା ବନ୍ଦ କରିଦେଲେ । ସ୍ୱାମୀର ଇଚ୍ଛା ବିରୋଧରେ କାମ କରିବା କୌଣସି ବି ସ୍ତ୍ରୀଲୋକ ପାଇଁ, ସେ ରାଜପରିବାରର ହେଇଥାଉ ନା କାହିଁକି ସେ ସମୟରେ ମୁସ୍କିଲ ଥିଲା ।

ରାଣୀ ଏଭଳି ବାତାବରଣରୁ ଦୂରରେ ରହିବାକୁ ଚାହୁଁଥିଲେ । ନିଜର ସ୍ୱାଭିମାନ ଓ ସ୍ୱତନ୍ତ୍ରତା ରକ୍ଷା ପାଇଁ ତାଙ୍କ ଆଗରେ ମାତ୍ର ଗୋଟିଏ ରାସ୍ତା ଖୋଲା ଥିଲା । ସେ ନିଜର ବ୍ୟାୟାମ, କସରତ, ଘୋଡ଼ାଚଢ଼ା, ତରବାରି ଚାଳନା ଆଦି ପୁଣି ନିୟମିତରୂପେ ଆରମ୍ଭ କରିଦେଲେ । ମୁଖ୍ୟ କିଲ୍ଲା ପଟୁ ଶଙ୍କର କିଲ୍ଲା ଆଡ଼କୁ ଯିବାବେଳେ ମଝିରେ ଗୋଟିଏ ପ୍ରମୋଦ ଉଦ୍ୟାନ ଥିଲା । ସେଇଠାରେ ଲକ୍ଷ୍ମୀବାଈ ନିଜ ପିଲାଦିନ ପରି ଯୌବନ କାଳରେ ମଧ ଦରକାର ନ ଥାଇ ବି ପ୍ରତିଦିନ ନିଜର କସରତ ଅଭ୍ୟାସ ଜାରି ରଖିଲେ । ପିଲାଦିନେ ଶିଖିଥିବା କୌଶଳକୁ ସେ କଳଙ୍କି ଲାଗିବାକୁ ଦେଲେ ନାହିଁ । ରାଣୀ ନିଜ ସହ କାଶୀ ସୁନ୍ଦର, ମୁନ୍ଦରଙ୍କୁ ବି ଏହି କଳା ଶିଖାଇଲେ । ଗାଁର ଅନ୍ୟ ମହିଳାମାନଙ୍କୁ ମଧ ନାନା ପ୍ରକାର ବ୍ୟାୟାମ, ଅଶ୍ୱାରୋହଣ, ତରବାରି ଚାଳନା ଆଦି ପ୍ରଶିକ୍ଷଣ ଦେଇ ତାଙ୍କୁ ବି ପାରଙ୍ଗମ କରାଇଲେ । ବଡ଼ କଥା ଥିଲା ସେହି ସ୍ତ୍ରୀଲୋକମାନେ କୌଣସି ଉଚ୍ଚପଦସ୍ଥ ଅଧିକାରୀମାନଙ୍କ ପରିବାରର ନ ଥିଲେ ବରଂ ଅଧିକାଂଶ ଦଳିତବର୍ଗର ସାଧାରଣ ଘରର ଥିଲେ । ବିଶେଷକରି ଚାଷୀ ଓ କୁମ୍ଭାର ସମାଜର ଥିଲେ । ଏହାକୁ ଈଶ୍ୱରଙ୍କ ଇଚ୍ଛା ବୋଲି ଭାବିବା ଉଚିତ । ଏସବୁ ସ୍ତ୍ରୀଲୋକମାନେ ରାଣୀଙ୍କ ଭବିଷ୍ୟତ୍ ଜୀବନରେ ଉପଯୋଗୀ ସିଦ୍ଧ ହେଲେ ।

ଗୋଡ଼ସେ ଭଟ୍ଟ ରାଣୀସାହେବାଙ୍କ ଦିନଚର୍ଯ୍ୟାର ଯେଉଁ ବର୍ଣ୍ଣନା କରିଛନ୍ତି ତାହା ହେଲା ୧୮୫୭ରେ ଯେତେବେଳେ ରାଣୀଙ୍କ ସହ ଭଟ୍ଟଜୀଙ୍କର ଦେଖା ହୋଇଥିଲା । ଝାନ୍ସୀ କିଲ୍ଲାରେ ଯେତେବେଳେ ସେ ରହୁଥିଲେ ଏହା ସେଇ ସମୟର କଥା । ଅର୍ଥାତ୍ ଏଭଳି ଦିନଚର୍ଯ୍ୟା ୧୮୫୭ ମସିହା ତିନି ଚାରି ବର୍ଷ ପୂର୍ବରୁ ଚାଲିଆସୁଥିବ । କିନ୍ତୁ ଯୁଦ୍ଧ କାରଣରୁ ସେଆଡ଼କୁ ସମସ୍ତଙ୍କର ଧ୍ୟାନ ଆକର୍ଷିତ ହୋଇଥିବ । ଭଟ୍ଟଜୀ ଲେଖିଛନ୍ତି "ବାଈସାହେବ ନିଜ ଶରୀରର ବହୁତ ଯତ୍ନ ନେଉଥିଲେ । ଭୋରରୁ ଉଠି ବ୍ୟାୟାମଶାଳାରେ କୁସ୍ତି କରିବା, ଦଣ୍ଡ ଉଠେଇବା, ପୁଣି ଘୋଡ଼ା ଚଢ଼ି ବୁଲିବାକୁ ଯିବା ଇତ୍ୟାଦି ବିଭିନ୍ନ ପ୍ରକାରର କସରତ କରୁଥିଲେ । କେବେ କେବେ ହାତୀ ଉପରେ ଚଢ଼ି ବୁଲିବାକୁ ବାହାରୁଥିଲେ । ଏହିପରି ତିନିଚାରି ଘଣ୍ଟା କଠିନ ଶ୍ରମ କଲା ପରେ ଜଳଖିଆ ଖାଉଥିଲେ । ଦୁଧ ପିଉଥିଲେ । ପୁଣି ଗାଧୋଇବାକୁ ଚାଲିଯାଉଥିଲେ । ତାଙ୍କର ମାଲିସ ଗାଧୁଆ ଅର୍ଥାତ୍ ଲେପ ଲଗାଇବା ଶରୀର ତେଲ ମାଲିସ କରିବା ପରେ ସଂପନ୍ନ ହେଉଥିଲା । ଉଣେଇଶ-

କୋଡ଼ିଏ ହଣ୍ଡା ପାଣି ତାଙ୍କର ଗାଧୋଇବା ପାଇଁ ଦରକାର ହେଉଥିଲା । ସ୍ୱତନ୍ତ୍ରତା ଥିଲା, ପୁଣି ବି ବାଇସାହେବା କେବେ ଅନାଚାର କରି ନ ଥିଲେ । ଶାରୀରିକ ସଉକ ପୂରା କରିବାପାଇଁ ସେ କେବେବି ଦାୟିତ୍ୱହୀନ ଆଚରଣ ଦେଖାଇ ନ ଥିଲେ ।'' (ମାଝାପ୍ରବାସ, ପୃଷ୍ଠା–୬୭)

ଗୋଡ଼ସେ ଭଟ୍ଟ ରାଣୀଙ୍କର ଆଚାର–ବିଚାର, ସ୍ୱତନ୍ତ୍ର ଅଭିବ୍ୟକ୍ତି ବିଷୟରେ ନିଜର ବିଚାର ବ୍ୟକ୍ତ କରି କହିଛନ୍ତି ଓ ସ୍ପଷ୍ଟ କରିଛନ୍ତି ରାଣୀ କେବେବି କୌଣସି ପ୍ରକାରର ଭୁଲ୍ ଆଚରଣ କରି ନାହାନ୍ତି । ଏଭଳି ଉଲ୍ଲେଖ ସେ ସମୟର ସାମାଜିକ ବ୍ୟବସ୍ଥା ଅନୁସାରେ ଜରୁରି ଥିଲା, ଏକଥା ବି ଆମର ଭୁଲିବା ଉଚିତ ନୁହେଁ । ଏହି ଉଲ୍ଲେଖ ସେହି ସମୟର ଯେତେବେଳେ ଯୁଦ୍ଧ ଆରମ୍ଭ ବି ହୋଇ ନ ଥିଲା । ରାଣୀ ଲକ୍ଷ୍ମୀବାଈଙ୍କର ଶୌର୍ଯ୍ୟ ଓ ବଳିଦାନ ପୂର୍ବର ଘଟଣା ଇଏ । ସେ ସମୟରେ ଜଣେ ହିନ୍ଦୁ ବ୍ରାହ୍ମଣ ବିଧବା ଯୁବତୀ ନିୟମିତରୂପେ ପୁରୁଷସୁଲଭ କସରତ କରିବା, ବିଧବା ହୋଇ ଲଣ୍ଡାହେବା ବଦଳରେ ତେଲ ମାଲିସ ହୋଇ ଗାଧୋଇବା ଇତ୍ୟାଦି ଲୋକଅପବାଦକୁ ନିମନ୍ତ୍ରଣ କରି ଡାକିଆଣିବା ଭଳି କଥା ହୋଇଥାନ୍ତା । ଲୋକେ ଏଭଳି କାର୍ଯ୍ୟକୁ ଭର୍ତ୍ସନା ବି କରିଥିଲେ । ୧୯୯୦ରେ ପୁନାଠାରେ ଆୟୋଜିତ ବସନ୍ତ ବ୍ୟାଖ୍ୟାନମାଳାରେ କେଉଁ ବସନ୍ତ ରାଓ ପଣ୍ଡିତ ନାମକ ବ୍ୟକ୍ତି ରାଣୀଙ୍କ ସଂପର୍କରେ ନିନ୍ଦନୀୟ ଶବ୍ଦ କହିଥିଲେ । ସେ 'ସୁଖବିଳାସ'ରେ ବିଚରଣ କଲାବାଲୀ ରାଣୀ ବୋଲି କହିଥିଲେ । ସେ କଥାର ଉତ୍ତରରେ ପୋଷ୍ୟପୁତ୍ର ଦାମୋଦର ରାଓ ସେ କଥାର ସ୍ପଷ୍ଟୀକରଣ ଦେଲେ । ସେତେବେଳେ ରାଣୀଙ୍କର ପ୍ରକୃତ ଅସ୍ତିତ୍ୱ ମହାରାଷ୍ଟ୍ର ଲୋକମାନଙ୍କ ଆଗକୁ ଆସିଲା । ଏହାର ଚର୍ଚ୍ଚା ଆମେ ପୂର୍ବରୁ କରିସାରିଛେ । କିଛି ଇଂରେଜ ଲେଖକ ରାଣୀଙ୍କୁ 'କୁଳଟା' ସଂଜ୍ଞା ଦେଇଛନ୍ତି । କିନ୍ତୁ ଜଣେ ମରାଠୀ ବ୍ୟକ୍ତି ଯେତେବେଳେ ଏହିଭଳି ନିନ୍ଦନୀୟ କଥା ରାଣୀଙ୍କ ନାଁରେ କହିଲା ସେତେବେଳେ ଗୋଟିଏ କଥା ପ୍ରମାଣିତ ହୁଏ ଯେ ଜଣେ ନାରୀ ଯେତେ ଗୌରବପୂର୍ଣ୍ଣ କାମ କରୁନା କାହିଁକି ସାମାଜିକ ରୂଢ଼ିକୁ ନ ମାନି ଯେତେ ପ୍ରଗତିଶୀଳ ହୋଇଥାଉ, ସମାଜ ସବୁବେଳେ ନାରୀଜାତିର ଅବହେଳା କରି ଆସିଛି । ତାକୁ ରୋଷେଇଘର ଓ ବୈଠକଘରର ଏକୁଣ୍ଡିବନ୍ଧ ଯାଏ ସୀମିତ ରଖି ଆସିଛି । ସେଥିପାଇଁ ଗୋଡ଼ସେ ଭଟ୍ଟ ଲେଖିଥିବା କଥା ସେ କୌଣସି ଅନୈତିକ ଆଚରଣ କରି ନାହାନ୍ତି ଲେଖିବା ବହୁତ ଜରୁରି ଥିଲା । ଗୋଟିଏ ଦୃଷ୍ଟିରୁ ଦେଖିଲେ ମହତ୍ତ୍ୱପୂର୍ଣ୍ଣ ବି ଥିଲା ।

ଝାନ୍ସୀର ହ୍ୟୁରୋଜ ବିରୋଧରେ ଏଗାର ଦିନ ପର୍ଯ୍ୟନ୍ତ ଘମାଘୋଟ ଯୁଦ୍ଧରେ ନିଜର ରଣନୀତିର କୌଶଳ ଓ ଶୌର୍ଯ୍ୟ ପ୍ରଦର୍ଶିତ କଲାସତ୍ତ୍ୱେ ବି ରାଣୀଙ୍କୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଲା । ରାଣୀ ବଞ୍ଚିଥିବା ଅବସ୍ଥାରେ ଇଂରେଜମାନଙ୍କ ହାତରେ ପଡ଼ିବାକୁ ଚାହୁଁ ନ ଥିଲେ । ରାତାରାତି ରାଣୀ ଲକ୍ଷ୍ମୀବାଈ କିଲ୍ଲାରୁ ବାହାରି ପେଶୱାଙ୍କ ଆଶ୍ରୟ ନେବାକୁ କାଲ୍ପୀ ଉଦ୍ଦେଶ୍ୟରେ ବାହାରିଗଲେ । ସେ ଝାନ୍ସୀଠାରୁ କାଲ୍ପୀ ୧୨୫

ମାଇଲ ରାସ୍ତା ଘୋଡ଼ାଚଢ଼ି ୨୪ ଘଣ୍ଟାରେ ପହଞ୍ଚିଗଲେ, ଏଭଳି ଉଲ୍ଲେଖ କରାଯାଇଛି । ରାଣୀଙ୍କ ପାଇଁ ତାହା ସୁରକ୍ଷିତ ସ୍ଥାନ ଥିଲା । ଏତେ ତୀବ୍ରଗତିରେ ଘୋଡ଼ା ଦଉଡ଼ାଇବା ନିଜେ ଗୋଟିଏ ଦୁର୍ଲଭ ଦୃଶ୍ୟ ହୋଇଥିବ । ଆଉ ଏକ ଉଲ୍ଲେଖ ବି ମିଳେ କି ଏତେ ତୀବ୍ର ଗତିରେ ଦଉଡ଼ିବା କାରଣରୁ ରାଣୀଙ୍କର ଘୋଡ଼ା ବହୁତ ଥକିଗଲା ଓ ମାଟି ଉପରେ ଟଳିପଡ଼ିଲା । ସେତେବେଳେ ରାଣୀ ସର୍ବପ୍ରଥମେ ଏହି ଘୋଡ଼ାକୁ ମାଲିସ୍ ଆଦି କରି ତା'ର ଉପଯୁକ୍ତ ତତ୍ତ୍ୱ ନେବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ଆଉ ଗୋଟେ କଥାର ସଂଭାବନା ଅଧିକ ଥିଲା ଯେ ନିଜ ଯାତ୍ରା ସମୟରେ ରାଣୀ ଦୁଇ-ଚାରିଟା ଘୋଡ଼ା ବଦଳାଇ ଥିବେ । ସେହି ଯୁଗରେ ସେଭଳି ପରମ୍ପରା ଥିଲା । ନିଶ୍ଚିତ ଦୂରତ୍ୱରେ ଗୋଟିଏ ଗୋଟିଏ ବିଶ୍ରାମ ସ୍ଥଳ ରହୁଥିଲା । ସେହିଠାରେ ହିଁ ଘୋଡ଼ା ବଦଳା ଯାଉଥିଲା । ସେଠାରେ ଲୋକ ଖିଆପିଆ କରି କିଛି ସମୟ ବିଶ୍ରାମ କରୁଥିଲେ । ଯେଉଁମାନଙ୍କର ଶୀଘ୍ର ଯାତ୍ରା କରିବାର ଥାଏ ସେମାନେ ଚଟିଘରେ ନ ରହି କେବଳ ଘୋଡ଼ା ବଦଳାଇଦେଇ ଆଗକୁ ବଢ଼ି ଯାଉଥିଲେ ଓ ଥକିଯାଇଥିବା ନିଜର ଘୋଡ଼ାମାନଙ୍କୁ ଦାନା-ପାଣି ଓ ଆରାମର ବ୍ୟବସ୍ଥା କରାଇ ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚାଇ ଦେଉଥିଲେ । ରାଣୀ ବି ଏମିତି କରିଥିବେ ।

ଯେତେବେଳେ ବି ଏମିତି ଜୀବନମୂର୍ଚ୍ଛା ଘୋଡ଼ା ଦଉଡ଼ାଇବା ଦରକାର ପଡୁଥିଲା, ସେତେବେଳେ ଘୋଡ଼ା ଓ ଆରୋହୀ ଭିତରେ ପରସ୍ପର ସଂପର୍କ ପୂରାପୂରି ବିଶ୍ୱାସପୂର୍ଣ୍ଣ, ସାମଞ୍ଜସ୍ୟ ଓ ତାଳମେଳ ରହୁଥିବା ତଥା ବୁଝାମଣା ରହିବା ନିତାନ୍ତ ଆବଶ୍ୟକ । ଅଶ୍ୱାରୋହୀ ଯଦି ଘୋଡ଼ାକୁ ନିଜ 'କାବୁ'ରେ ରଖିପାରିଲା ତାହେଲେ ଯାଇ ଘୋଡ଼ା ନିଜ ଆରୋହୀର ଆଜ୍ଞା ପାଳନ କରୁଥିଲା । ଅଶ୍ୱାରୋହୀର ବସିବାରୁ ହିଁ ଆରୋହୀ କେତେ ଶକ୍ତିଶାଳୀ ସେକଥା ଘୋଡ଼ା ଅନୁମାନ କରି ନେଉଥିଲା । ଅଶ୍ୱାରୋହୀର ବସିବାଭଙ୍ଗୀ ସନ୍ତୁଳିତ ହେବା ଆବଶ୍ୟକ ।

ତା' ସହ ଚଢୁଥିବା ଲୋକର ବୋଝ ଘୋଡ଼ା ଉପରେ ବହୁତ ଭାରି ହେବା ଉଚିତ ନୁହେଁ । ଚଢ଼ାଳି ଘୋଡ଼ାର ଲଗାମ କେମିତି ଧରୁଛି, କେତେବେଳେ ଟାଣୁଛି, କେତେବେଳେ ଢିଲା କରୁଛି ଏଇ ସବୁଥିରୁ ହିଁ ଘୋଡ଼ା ତା ଚଢ଼ାଳିର ଗୁଣ ଅନୁମାନ କରିନିଏ । ଚଢ଼ାଳିର ପରୀକ୍ଷା ନେଉ ନେଉ ତା' ଉପରେ ଚଢୁଥିବା ବ୍ୟକ୍ତି କେତେ ଶକ୍ତିମାନ୍, କେତେ ବିଶ୍ୱାସ ପାତ୍ର ସେ ବିଷୟରେ ଥରେ ଭରସା ହୋଇଗଲା ପରେ ଘୋଡ଼ା ନିଜକୁ ଚଢ଼ାଳି ନିକଟରେ ସମର୍ପଣ କରିଦିଏ, ତା'ପରେ ଚଢ଼ାଳି ଓ ଘୋଡ଼ା ଏକ ରୂପ ଏକ ଆତ୍ମା ହୋଇଯାଆନ୍ତି । ଏସବୁ ସମ୍ଭବ ହେଲା ପରେ ଘୋଡ଼ା ଚଢ଼ାଳି ନିଜର ଘୋଡ଼ାକୁ ନିଜର ମନପସନ୍ଦର ଗତି ପ୍ରଦାନ କରି ଲକ୍ଷ୍ୟସ୍ଥଳରେ ପହଞ୍ଚିବାର ସଫଳ ହୋଇପାରେ । ଏସବୁ କୌଶଳ ରାଣୀଙ୍କୁ ଜଣା ଥିଲା । ସେଥିପାଇଁ କାଲ୍ପୀ ପର୍ଯ୍ୟନ୍ତ ଦୂରତ୍ୱ ସେ ୨୪ ଘଣ୍ଟାରେ ଅତିକ୍ରମ କରିବାରେ ସଫଳ ହୋଇପାରିଲେ ।

ଦୁଇ ହାତରେ ତରବାରି ନେଇ ଯୋଦ୍ଧା ଶତ୍ରୁର ସାମନା କରିପାରେ । ସେ ସମୟରେ ଅଶ୍ୱାରୋହୀର ଲଗାମ ଧରିବାର ଆବଶ୍ୟକତା ନ ଥାଏ । ଆରୋହୀ ଶରୀର ଚାଳନା ଅନୁସାରେ ଘୋଡ଼ା ହଲଚଲ ହୋଇପାରେ । ଘୋଡ଼ାକୁ ସେହି ପ୍ରକାର ପ୍ରଶିକ୍ଷଣ ଦିଆଯାଏ ।

ଘୋଡ଼ା ଉପରେ ଚଢ଼ି ଲଢ଼ିବା ସମୟରେ ଘୋଡ଼ା ବି ପୂରା ପ୍ରଶିକ୍ଷିତ ହେବା ଆବଶ୍ୟକ । ସେହିପରି ଅଶ୍ୱାରୋହୀ ବ୍ୟକ୍ତିର ତରବାରି ଚାଳନା କୌଶଳ ବି ଅଲଗା ପ୍ରକାର ହୋଇଥାଏ । ଅଶ୍ୱାରୋହଣ କରି ଲଢ଼ିବା ସମୟରେ, ଅଶ୍ୱାରୋହୀର ପାଦ ଭୂମି ଉପରେ ସ୍ଥିର, ଦୃଢ଼ ରହେ ନାହିଁ ବରଂ ନିରନ୍ତର ହଲଚଲ୍ ହେଉଥିବା ଘୋଡ଼ା ଉପରେ ରହି ନିଜ ଘୋଡ଼ାକୁ ଅକ୍ତିଆରରେ ରଖି ଲଢ଼ିବାକୁ ପଡ଼େ । ମାଟି ଉପରେ ଲଢ଼ିବା ସମୟରେ ତରବାରିର ଲମ୍ୱ, ଓଜନ ଯେତିକି ହୁଏ ତା'ଠାରୁ ଅଧିକ ଲମ୍ୱ ଓ ଓଜନ ଘୋଡ଼ା ଉପରେ ଚଢ଼ି ଲଢ଼ିଲାବେଳେ ହୁଏ । ଏ ସମସ୍ତ ବ୍ୟବଧାନ ସମ୍ଭାଳି ଅଶ୍ୱାରୋହୀକୁ ଲଢ଼ିବାକୁ ପଡ଼େ। କେହି କେହି ଦୁଇ ହାତରେ ତରବାରି ଧରି ଲଢ଼ନ୍ତି, କାରଣ ଏମିତି କରିବା ବଡ଼ ବିପଦପୂର୍ଣ୍ଣ ଓ କଷ୍ଟକାମ । ଏସବୁ କଥା ଜାଣିଥିବା ଯୋଗୁଁ ଇଂରେଜମାନେ ଯେତେବେଳେ ରାଣୀକୁ ଘୋଡ଼ା ଉପରେ ଚଢ଼ି ଦୁଇହାତରେ ଖଣ୍ଡା ଧରି ଲଢୁଥିବାର ଦେଖିଲେ ସେମାନେ ଆଶ୍ଚର୍ଯ୍ୟ ଚକିତ ହୋଇଗଲେ । ଝାନ୍ସୀ କିଲ୍ଲା ଉପରେ ଯେଉଁ ଯେଉଁ ସ୍ଥାନରେ ସୈନ୍ୟସଜ୍ଜା କରାଯାଇଥିଲା, ତୋପ ଲଗାଯାଇଥିଲା, ସେଇସବୁ ଜାଗାରେ ରାଣୀ ଘୋଡ଼ା ଉପରେ ଚଢ଼ି ଓ କେବେ କେବେ ପାଦରେ ଚାଲି ଚାଲି ବୁଲୁଥିଲେ । ଚାରିପଟର ବନ୍ଦୋବସ୍ତ ସେ ନିଜେ ନିରୀକ୍ଷଣ କରୁଥିଲେ । ଇଂରେଜମାନେ ଯେତେବେଳେ ଦୂରବୀକ୍ଷଣ ଦ୍ୱାରା ଏହିସବୁ ଦୃଶ୍ୟ ଦେଖିଲେ ତ ତାଙ୍କୁ ବହୁତ ଆଶ୍ଚର୍ଯ୍ୟ ଲାଗିଲା । ରାଣୀଙ୍କ ସହ ସେମାନେ କିଛି ମହିଳାଙ୍କୁ ବି ଦେଖିଲେ ଯେଉଁମାନେ କେବଳ ଭାଙ୍ଗିଥିବା ଗମ୍ବୁଜମାନଙ୍କୁ ମରାମତି କରୁ ନ ଥିଲେ ତା' ସହ ବରଂ ତୋପ ଗୋଳାଗୁଡ଼ିକୁ ନିଆଅଣା କରୁଥିଲେ । ଏମିତିକି ସେମାନେ ବିଶାଳ ତୋପଗୁଡ଼ିକରୁ ଅବ୍ୟର୍ଥ ଲକ୍ଷ୍ୟ ସାଧି ମାଡ଼ କରୁଥିବା ଦେଖି ଇଂରେଜମାନେ ଆହୁରି ଆଶ୍ଚର୍ଯ୍ୟ ହେଇଗଲେ । ଝାନ୍ସୀ ସହରରେ ଯେତେବେଳେ ଇଂରେଜ ଫଉଜ ପ୍ରବେଶ କଲେ ସେହି ସମୟରେ ରାଣୀ ପ୍ରବଳ ଉତ୍ସାହର ସହ ଭିଡ଼ ଭିତରେ ପଶି ଇଂରେଜ ସୈନ୍ୟମାନଙ୍କର ନରସଂହାର କରିଥିଲେ । ତାକୁ ଦେଖି ଇଂରେଜମାନଙ୍କର ଯଦି ଆଖି ଖୋଷି ହୋଇ ଯାଇଥିବ ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ହ୍ୟୁରୋଜ ଏହି ଯୁଦ୍ଧରେ ସଂପୂର୍ଣ୍ଣ ବିବରଣୀ ଗଭର୍ଣ୍ଣର ଜେନେରାଲଙ୍କୁ ପଠାଇବା ସମୟରେ ରାଣୀଙ୍କ ବିଷୟରେ ଲେଖିଥିଲେ "ତାଙ୍କ ପରି ସର୍ବୋତ୍କୃଷ୍ଟ ସାମରିକ ନେତୃତ୍ୱ ଓ ସର୍ବାଧିକ ସାହସୀ ଆଉ କେହି ଦୃଷ୍ଟିଗୋଚର ହେଲେ ନାହିଁ ।"

## କ୍ରାନ୍ତିର ଦେବୀ ପ୍ରତିମା

କେତେଥର ଏପରି ଉଲ୍ଲେଖ ମିଳେ ଯେ, ବୀରାଙ୍ଗନା ରାଣୀ କେବେ କେବେ ପୁରୁଷବେଶ ଧାରଣ କରୁଥିଲେ । ଗୋଡ୍‌ସେ ଭଟ୍ଟ ଏହି ସଂପର୍କରେ ଲେଖିଛନ୍ତି । ରାଣୀ ଲକ୍ଷ୍ମୀବାଈ ସେହି ସମୟରେ କେବେ କେବେ ପୁରୁଷ ବେଶଭୂଷାରେ ବିଚରଣ କରୁଥିଲେ । ପାଇଜାମା, ଜାମୁକୋଳି ରଙ୍ଗର କୁର୍ତ୍ତା ବା ଜ୍ୟାକେଟ ସେ ପିନ୍ଧୁଥିଲେ । ମୁଣ୍ଡ ଉପରେ ଟୋପି ରଖି ପଗଡ଼ି ବାନ୍ଧୁଥିଲେ । ଅଣ୍ଟାରେ ଜରି ଓଢ଼ଣୀ ଖୋଷାହୁଏ, ସେଥିରେ ଖଣ୍ଡା ଲଟକିଥାଏ । (ମାଝାପ୍ରବାସ, ପୃଷ୍ଠା ୬୬)

ବ୍ରିଟିଶ୍ ଅଧିକାରୀମାନେ ମଧ ରାଣୀର ସୌନ୍ଦର୍ଯ୍ୟ, ପୋଷାକ ଓ ବହୁମୁଖୀ ବ୍ୟକ୍ତିତ୍ୱର ବର୍ଣ୍ଣନା କରିଛନ୍ତି ।

ରାଣୀ ଲକ୍ଷ୍ମୀବାଈ ରାଜ୍ୟ ଅଧିକୃତ ହେବା ସମ୍ବନ୍ଧରେ କଂପାନୀ ସରକାରଙ୍କ ସହ ପତ୍ର ବ୍ୟବହାର ବିଷୟରେ ପରାମର୍ଶ ନେବାପାଇଁ ଜନ୍ ଲେଙ୍ଗ ନାମକ ଜଣେ ଇଂରେଜ ବାରିଷ୍ଟରଙ୍କୁ ନିଜ ରାଜ୍ୟକୁ ଡକାଇଥିଲେ । ସେହି ସମୟରେ ଜନ୍ ଲେଙ୍ଗ ଲକ୍ଷ୍ମୀବାଈଙ୍କୁ ପ୍ରତ୍ୟକ୍ଷରୂପେ ଦେଖିଥିଲେ । ତାଙ୍କ ସହ କଥାବାର୍ତ୍ତା ମଧ କରିଥିଲେ । ତାଙ୍କ ବର୍ଣ୍ଣନାରୁ ଏହା ଜଣାପଡ଼େ ଯେ ସେ ରାଣୀଙ୍କ ସହ ସାକ୍ଷାତ୍ କରି ବହୁତ ପ୍ରଭାବିତ ହୋଇଥିଲେ । ସେ ଲେଖିଥିଲେ ରାଣୀ ମଧମ ଉଚ୍ଚତାର ଓ ଆକର୍ଷକ ଅଙ୍ଗସୌଷ୍ଠବ ବିଶିଷ୍ଟ ମହିଳା ଥିଲେ । ତାଙ୍କ ଯୌବନ କାଳରେ ତାଙ୍କର ଚେହେରା ବହୁତ ସୁନ୍ଦର ଓ ମୋହକ ହୋଇଥିବ । ଆଜି ବି ବହୁତ ଗୁଣ ବାକି ରହିଯାଇଛି । ସୌନ୍ଦର୍ଯ୍ୟ ବିଷୟରେ ମୋର ଯାହା କଳ୍ପନା ଅଛି, ସେହି ଅନୁସାରେ ତାଙ୍କ ଚେହେରାମତେ ବହୁତ ଚଉଡ଼ା ଦେଖାଗଲା । ଚେହେରା, ହାବଭାବ ବହୁତ ଉତ୍ତମ ଥିଲା ଓ ତାଙ୍କ ଚେହେରାରେ ବୁଦ୍ଧିମତ୍ତାର ଚମକ ଥିଲା । ବିଶେଷତଃ ତାଙ୍କ ଆଖି ବିଶାଳ ଓ ଚମକ୍‌ଦାର ଥିଲା । ନାକ ମଧ ସିଧା ଓ କୋମଳ । ସାରା ଶରୀର ଶ୍ୟାମଳ ହେବା ସତ୍ତ୍ୱେ ବି ପୂରା ଗୌରବର୍ଣ୍ଣ ବି କୁହାଯାଇପାରିବ ନାହିଁ । ଆଶ୍ଚର୍ଯ୍ୟର କଥା ତାଙ୍କ ଶରୀରରେ କାନରେ ସୁନାର ବୁନ୍ଦା ଛଡ଼ା ଆଉ କୌଣସି ଗୋଟିଏ ଅଳଙ୍କାର ବି ଦେଖାଗଲା ନାହିଁ । ସେ ସ୍ୱଚ୍ଛ ଧଳା ମଖମଲୀ ବସ୍ତ୍ର ପିନ୍ଧିଥିଲେ । ତାଙ୍କ ବେଶଭୂଷା ଦେଖି ତାଙ୍କର ଶାରୀରିକ ଗଠନ ଓ ବ୍ୟକ୍ତିତ୍ୱ ଆକର୍ଷକ ପ୍ରତୀତ ହେଉଥିଲା । ସେଥିରେ ଖୁଣ ବାହାର କରିବା କଠିନ ଥିଲା । କେବଳ ଗୋଟିଏ କଥାର ଖଟ୍‌କା ଲାଗୁଥିଲା ତାଙ୍କ ସ୍ୱର ଓ କଥା କହିବାର ଶୈଳୀ । ତାଙ୍କ ସ୍ୱରରେ ମଧୁରତା ନ ଥିଲା, କର୍କଶତା ଥିଲା ।

ଯେଉଁ ଯେଉଁ ଲୋକମାନେ ୧୮୫୭ ଯୁଦ୍ଧ ବିଷୟରେ ଲେଖିଛନ୍ତି ସେମାନେ ସମସ୍ତେ ରାଣୀ ଲକ୍ଷ୍ମୀବାଈଙ୍କ ବିଷୟରେ ବି ଲେଖିଛନ୍ତି । ରାଣୀଙ୍କ ପୁରୁଷବେଶ ଧାରଣ କରିବା ସଂପର୍କରେ ଅଧିକ ଲୋକ ଲେଖିଛନ୍ତି । ଏହାର ଅର୍ଥ ତାଙ୍କର ଏହି ବେଶ ଲୋକଙ୍କ ପାଇଁ ଆକର୍ଷଣର ବିଷୟ ଥିଲା । ନିଜ ଲୋକଙ୍କ ଛଡ଼ା ଇଂରେଜମାନଙ୍କୁ ବି ତାଙ୍କର ଏହି ବେଶଭୂଷା ଅଧିକ ଆକର୍ଷିତ କରୁଥିବାର ଦେଖାଗଲା । ଜଣେ ସ୍ତ୍ରୀଲୋକ ହାତରେ ତରବାରି

ଧରି, ଘୋଡ଼ା ଚଢ଼ି ଅନେକ ଦିନ ପର୍ଯ୍ୟନ୍ତ ଶତ୍ରୁର ମୁକାବିଲା କରିବା, ସାହସର ସହିତ ନିଜ ସେନାର ସେନାପତି ପଦ ସମ୍ଭାଳିବା ସେ ଯୁଗରେ ଏକ ଅଦ୍‌ଭୁତ ଘଟଣା ଥିଲା । ଗୋଟିଏ ସ୍ତ୍ରୀଲୋକ କେବଳ ଯୁଦ୍ଧଭୂମିରେ ନୁହେଁ, ଦରବାରରେ ବସି ପ୍ରଶାସନ ସଂଚାଳନ କରି, ଦେବଦର୍ଶନ ପାଇଁ ଯିବାଆସିବା କରିବା, ଲୋକଙ୍କ ମଝିରେ ରହିବା ଆଦି ଘଟଣା ଆଶ୍ଚର୍ଯ୍ୟଜନକ ଥିଲା । କୌଣସି ଇଂରେଜ ଭେଟିବାକୁ ଆସିଲେ ସେ ସେତେବେଳେ ପୁରୁଷ ବେଶରେ ହିଁ ରହୁଥିଲେ । ଏହି କଥା ସେତେବେଳର ଦୁନିଆରେ ଏକ ବ୍ୟତିକ୍ରମ ପରି ଲାଗୁଥିଲା । ଲୋକଙ୍କ ପାଇଁ ଏହା ଏକ କୌତୂହଳର ବିଷୟ ଥିଲା । ଏହିପରି ପୁରୁଷ ବେଶରେ ବୁଲୁଥିବା ଅନ୍ୟ କୌଣସି ସ୍ତ୍ରୀଲୋକର ଉଲ୍ଲେଖ ସେ ଯୁଗରେ ମିଳେ ନାହିଁ ।

ଆମ ଇତିହାସରେ ଚାନ୍ଦବିବି, ଶିବାଜୀ ମହାରାଜଙ୍କ ବୋହୂ, ରାଜାରାମଙ୍କ ପତ୍ନୀ ମହାରାଣୀ ତାରାବାଈ, ଅହଲ୍ୟାବାଈ ହୋଲ୍‌କର, ରାଣୀ ଚିନ୍ନମ୍ମାଙ୍କ ପରି ବୀରାଙ୍ଗନାମାନେ ମଧ୍ୟ ଥିଲେ । ସେମାନେ ରଣଭୂମିରେ ବି ଯାଇ ଲଢ଼ିଥିଲେ, କିନ୍ତୁ ତାଙ୍କ ଭିତରୁ କେହି ବି ପୁରୁଷ ବେଶ ଧାରଣ କରୁଥିବାର ଉଲ୍ଲେଖ ମିଳେ ନାହିଁ । ହେଇପାରେ ସେମାନେ ଏଭଳି ପୁରୁଷ ପୋଷାକ ପିନ୍ଧିବାର ଆବଶ୍ୟକତା ଅନୁଭବ କରି ନ ଥିବେ । କିନ୍ତୁ ଲକ୍ଷ୍ମୀବାଈଙ୍କୁ ଏମିତି ଆବଶ୍ୟକତା କାହିଁକି ପଡ଼ିଲା ? ଗୋଟିଏ କଥା ମନକୁ ଆସେ କି ଗଙ୍ଗାଧର ରାଓଙ୍କର ନାରୀସୁଲଭ ଅଭ୍ୟାସ, ସ୍ତ୍ରୀ ବେଶଭୂଷାରେ ବୁଲିବା, ସ୍ତ୍ରୀଲୋକଙ୍କ ଆଭୂଷଣ ପିନ୍ଧିବା, ଶୃଙ୍ଗାର କରିବା, ନାରୀ ସଂବନ୍ଧିତ ସବୁପ୍ରକାର ସଂସ୍କାର କରିବା ଇତ୍ୟାଦି କାରଣରୁ ରାଣୀ ଲକ୍ଷ୍ମୀବାଈଙ୍କ ମନରେ ଏକପ୍ରକାର ତିରସ୍କାରର ଭାବନା ସୃଷ୍ଟି ହୋଇଥିବ । ସେଥିପାଇଁ ବିଧବା ହୋଇଗଲା ପରେ ସେ ପୁରୁଷ ପୋଷାକ ଧାରଣ କରିବା କଥା ଭାବିଥିବେ । ରାଣୀଙ୍କୁ ଏମିତି ପୋଷାକରେ ଦେଖି କିଛି ଇଂରେଜ ରାଣୀଙ୍କୁ 'ଲେସ୍‌ବିୟନ' (ସମଲୈଙ୍ଗିକ ବ୍ୟବହାର କଲାବାଲା) କହିଥିଲେ । ଶ୍ରୀମତୀ ଜାୟସୀ ଲେବ୍ରା ଚୈପମୈନ ନିଜ ପୁସ୍ତକ 'ଦି ରାନୀ ଅଫ୍ ଝାନ୍‌ସୀ'ରେ ଲେଖିଛନ୍ତି ହିନ୍ଦୁ ସଂସ୍କୃତି, ପରମ୍ପରା, ମାନସିକତାରେ ଅର୍ଦ୍ଧନାରୀ ନଟେଶ୍ୱରଙ୍କର ଏକ ବିଶିଷ୍ଟ ସ୍ଥାନ ରହିଛି । ପଶ୍ଚିମୀ ବିଚାରଧାରା ଅନୁସାରେ ନରନାରୀଙ୍କର ଏହି ରୂପ ଗୌଣ ସ୍ଥାନ ଅଧିକାର କରିଛି । କିନ୍ତୁ ହିନ୍ଦୁଙ୍କ ମନରେ ନଟେଶ୍ୱର ରୂପରେ ଶିବ-ପାର୍ବତୀଙ୍କ ରୂପ ଦେଖାଯାଏ ଓ ସେଥିପାଇଁ ଲୋକେ ଏଇ ରୂପକୁ ଈଶ୍ୱରୀୟ ରୂପ ଭାବେ ମାନିଥାନ୍ତି । କାରଣ ଏହି ରୂପ ଆକ୍ରମକ, ଅତିଆକ୍ରମକ ନରରୂପକୁ ନିୟନ୍ତ୍ରିତ କରି ଶାନ୍ତ, ସୌମ୍ୟ, ନବ ଜୀବନ ପ୍ରଦାନ କରେ । ନାରୀର ରୂପ ବି ସେଥିରେ ଥାଏ, ପୁରୁଷ ପୋଷାକ ପିନ୍ଧୁଥିବା ରାଣୀଙ୍କୁ ଏହି ରୂପ ବୋଧହୁଏ ପସନ୍ଦ ହୋଇଥିବ ।

ଚୈପମୈନ ପରି ମହିଳା ଅର୍ଦ୍ଧନାରୀ ନଟେଶ୍ୱର ବିଷୟରେ ଉଲ୍ଲେଖ କରିଛନ୍ତି । କାରଣ ଶିବ-ପାର୍ବତୀଙ୍କ ଏଭଳି ଉଲ୍ଲେଖ ହିନ୍ଦୁ ସଂସ୍କୃତିର ଏକ ଅଂଶ ହୋଇଥିଲେବି, ପୁରୁଷ ପୋଷାକ ପିନ୍ଧିବା ପାଇଁ ଇଏ ଏକ କାରଣ ହୋଇପାରେ । ମିସେସ୍ ଚୈପମୈନଙ୍କର

ଏହି କଥନ ମୋ ହିସାବରେ ଟାଣିଓଟାରି ନିଜ କଥା କହିବା ପାଇଁ କରାଯାଇଛି । ପାଶ୍ଚାତ୍ୟ ପାଠକମାନଙ୍କ ମନରେ ଭ୍ରାନ୍ତି ସୃଷ୍ଟି କରିବା ଭଳି । କିନ୍ତୁ ମୁଁ ଭାବୁଛି ଏହା ପଛରେ କିଛି ନା କିଛି କାରଣ ନିଶ୍ଚିତ ଭାବରେ ଥିବ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେ ଯେତେବେଳେ ଗଙ୍ଗାଧର ରାଓ ଜୀବିତ ଥିଲେ ସେତେବେଳେ ଲକ୍ଷ୍ମୀବାଈ ପୁରୁଷ ପୋଷାକ ପିନ୍ଧୁଥିଲେ ଏଭଳି ଉଲ୍ଲେଖ କେଉଁଠାରେ ବି କରାଯାଇ ନାହିଁ । ଏ ସମସ୍ତ ଉଲ୍ଲେଖ ଗଙ୍ଗାଧର ରାଓଙ୍କ ମୃତ୍ୟୁ ପରବର୍ତ୍ତୀ କାଳର । କଂପାନୀ ସରକାରଙ୍କ ଦ୍ୱାରା ପୋଷ୍ୟପୁତ୍ରର ଅଧିକାରକୁ ମାନ୍ୟତା ନ ଦେଇ ଝାନ୍ସୀକୁ ନିଜେ ଅଧିକାର କରିବାର ପରବର୍ତ୍ତୀ ସମୟରେ ହିଁ ଏଭଳି ଉଲ୍ଲେଖ ମିଳେ । ତାତ୍ପର୍ଯ୍ୟ ଏହା ଯେ ପରିବର୍ତ୍ତିତ ସ୍ଥିତିରେ ରାଣୀ ଲକ୍ଷ୍ମୀବାଈ ପୁରୁଷ ପୋଷାକ ପିନ୍ଧିବାକୁ ସ୍ଥିର କରିଥିବେ, ଏଭଳି ମନେହୁଏ ।

ଚାନ୍ଦବିବି, ତାରାରାଣୀ, ଅହଲ୍ୟାବାଈ ହୋଲ୍‌କରଙ୍କଠାରୁ ଲକ୍ଷ୍ମୀବାଈଙ୍କର ପରିସ୍ଥିତି ଅପେକ୍ଷାକୃତ ଭାବେ ଅଲଗା ଥିଲା । ରାଣୀଙ୍କର ଚିନ୍ତାଧାରା ବି ପୂରାପୂରି ଅଲଗା ଥିଲା । ସେ ଗାଦିରୁ ହଟାଯାଇଥିବା ବିଧବା ରାଣୀ ଥିଲେ । ''ମୁଁ ଗୋଟେ ବିଧବା ସେଥିପାଇଁ ମୋତେ ଅବଳା ଓ ଦୁର୍ବଳା ବୋଲି ଭାବନ୍ତୁନି । ସହଜରେ କ୍ଷୀରରୁ ମାଛି ବାହାରକରି ପକାଇଲା ପରି ମତେ ପକେଇ ଦେଇପାରିବେ ସେମିତି ଧାରଣା ବି ମନରେ ନ ଆଣିବା ଭଲ ।'' ଏହି ସଂଦେଶ ଲୋକମାନଙ୍କ ପାଖରେ ପହଞ୍ଚାଇବା ପାଇଁ କ'ଣ ପୁରୁଷ ପୋଷାକ ଭଳି ଉପାୟ ଉପଯୁକ୍ତ ଥିଲା । ଆରମ୍ଭରୁ ଇଂରେଜମାନଙ୍କ ସହ ଯେଉଁ ମୁକାବିଲା କଲେ, ତାହା ସେ ନିଜେ ସ୍ଥିର କରିଥିବା ମାର୍ଗରେ, ବୈଧ ଉପାୟ ଆପଣେଇ, କାନୁନ୍‌ର ଭାଷା କହି ଓ ନିଜ ଅଧିକାରକୁ ସୁରକ୍ଷିତ ରଖି ଇଂରେଜମାନଙ୍କ ଦ୍ୱାରା ଉପସ୍ଥାପିତ ଗୋଟିଏ ଗୋଟିଏ ଯୁକ୍ତିକୁ ଓକିଲ ଭାଷାରେ ନିଜ ପତ୍ରାଚାର ମାଧ୍ୟମରେ ସେ ନିରସ୍ତ କରିଦେଲେ । ଜୁନ୍ ୧୮ରେ ଝାନ୍ସୀରେ ବିପ୍ଳବ ପରେ ରାଣୀଙ୍କୁ ପୁଣି ଥରେ ଶାସନ ଭାର ସମ୍ଭାଳିବାର ସୁଯୋଗ ମିଳିଥିଲା । ସେହି ସମୟରେ ସେ ନିଜର ପ୍ରଜାମାନଙ୍କୁ ସ୍ପଷ୍ଟରୂପେ ସୂଚାଇ ଦେବାକୁ ଚାହିଁଥିଲେ ''ମୁଁ ପୁଣି ଥରେ ଶାସନ ଅଧିକାର ଫେରିପାଇଛି, ମୁଁ ନିଜର ସଂପୂର୍ଣ୍ଣ ଶକ୍ତିସାମର୍ଥ୍ୟ ଓ ଦୃଢ଼ତାର ସହ ରାଜ୍ୟ କାର୍ଯ୍ୟ ସଂଚାଳନ କରିବାକୁ ଯାଉଛି'' । ଠିକ୍ ଏହି ଖବର ସେ ନିଜର ବିରୋଧୀ ଆଖପାଖର ଛୋଟ ରାଜ୍ୟ, ବିଦ୍ରୋହୀ ଭୀଲ, ଡାକୁ, ଲୁଟେରା, ଠାକୁରମାନଙ୍କୁ ଏମିତିକି ଇଂରେଜମାନଙ୍କୁ ମଧ୍ୟ ଜଣାଇ ଦେବାକୁ ଚାହୁଁଥିଲେ । ନିଜର ସମର୍ଥକମାନଙ୍କ ଭିତରେ ସେ ଆତ୍ମବିଶ୍ୱାସ ଜନ୍ମାଇବାକୁ ଚାହୁଁଥିଲେ । ଅନ୍ୟମାନଙ୍କୁ ସାବଧାନ କରିବାକୁ ବି ଚାହୁଁଥିଲେ । ଲୋକଙ୍କ ଦୃଷ୍ଟିରେ ନିଜର ଆତ୍ମବିଶ୍ୱାସ ବଢ଼ାଇବାକୁ ଚାହୁଁଥିଲେ । ସେହି ସବୁ ପାଇଁ ପୁରୁଷ ପୋଷାକ ଧାରଣ କରିବା ତାଙ୍କ ହିସାବରେ ଜରୁରି ହୋଇଥାଇପାରେ । କାରଣ ପୁରୁଷପ୍ରଧାନ ସଂସ୍କୃତିରେ ଓ ସମାଜ ବ୍ୟବସ୍ଥାରେ ପୁରୁଷାର୍ଥ ଦେଖାଇବା ନିଜେ ହିଁ ଗୋଟିଏ ମହତ୍ତ୍ୱପୂର୍ଣ୍ଣ କଥା । କାରଣ ଏହାର ସିଧା ସଂପର୍କ, ରାଜ୍ୟାଧିକାର ଓ ଶକ୍ତି ସହ କରାଯାଏ ।

ଏଥିପାଇଁ ପ୍ରଜାର ପ୍ରେମ, ଆଦର, ବିଶ୍ୱାସ ଓ ମାନ୍ୟତା ସଂପାଦିତ କରିବାପାଇଁ ପୁରୁଷ ପୋଷାକ ଧାରଣ କରିବା ତାଙ୍କୁ ଅଧିକ ଉପଯୁକ୍ତ ଲାଗିଥିବ । ରାଣୀ ନିଜର ରାଜନୀତିକ ବକ୍ତବ୍ୟ ପୁରୁଷ ପୋଷାକ ପିନ୍ଧିକରି ହିଁ ପ୍ରଦାନ କରୁଥିଲେ । ସେ ବକ୍ତବ୍ୟରେ ତାଙ୍କ ବୁଦ୍ଧିମତ୍ତା ଓ ଉଦ୍ଦେଶ୍ୟ ସ୍ପଷ୍ଟ ପ୍ରକଟିତ ହେଉଥିଲା । ତାହା ଏକପ୍ରକାର ଘୋଷଣାପତ୍ରର କାମ କରୁଥିଲା । ''ମୁଁ ଏକ ସମର୍ଥ ରାଜା ପରି ରାଜ୍ୟ ସଂଚାଳନ କରିବାକୁ ଆସିଛି ।'' ଏଠାରେ ଗୋଟିଏ କଥା ଉଲ୍ଲେଖ କରିବା ଜରୁରି ଯେ ୧୮୫୩ରେ ପତିଙ୍କ ମୃତ୍ୟୁ ପରେ ସେ ନିଜ ନାମରେ ଏକ ମୋହର ବି ପ୍ରସ୍ତୁତ କରିଥିଲେ । ସେହି ମୋହର ଉପରେ 'ମହାରାଣୀ ଲକ୍ଷ୍ମୀବାଈ' ସନ ୧୯୧୦ ଲେଖା ହୋଇଥିଲା । ମୋହର ଉର୍ଦ୍ଦୁରେ ତିଆରି ହୋଇଥିଲା । ଉର୍ଦ୍ଦୁରେ ମୋହର ତିଆରି ହେବା ଅର୍ଥ ସତ୍ତା ଗ୍ରହଣ ଓ ତାଙ୍କର ରାଜ୍ୟ ସ୍ଥାପନା ।

ଆଜିର ଯୁଗରେ ସଂପୂର୍ଣ୍ଣ ଦୁନିଆରେ ମହିଳାମାନେ ଯେତେବେଳେ ପୁରୁଷମାନଙ୍କ ସହ ସମାନ ଅଧିକାର, ଅବସର ଅଧିକାର ପାଇଁ ଦାବି କରିଥିଲେ ଓ ପୁରୁଷଙ୍କଠାରୁ କୌଣସି ପ୍ରକାର ତୁଳନାରେ ଆମେ ବି କମ ନୋହୁ, ଏହା ଜଣାଇଦେବାକୁ ଆନ୍ଦୋଳନ ଆରମ୍ଭ କରିଥିଲେ, ସେତେବେଳେ ସ୍ତ୍ରୀଲୋକମାନେ ପୁରୁଷଙ୍କ ପରି ପୋଷାକ ପିନ୍ଧିବା ଆରମ୍ଭ କରିଦେଲେ । ମହିଳାମାନେ ବି ଶାର୍ଟ-ପ୍ୟାଣ୍ଟ ପିନ୍ଧିବାରେ ଲାଗିଲେ । ଏହି କଥା ପାଇଁ ମହିଳାମାନଙ୍କ ମଧ୍ୟରେ କଡ଼ା ଆଲୋଚନା ବି ହୋଇଥିଲା । ଲୋକମାନଙ୍କୁ ଲାଗିଲା ନାରୀ ଏବେ ତା'ର ପ୍ରାକୃତିକ ଦୁର୍ବଳତାରୁ ଓ ପରମ୍ପରାର ବନ୍ଧନରୁ ଏକୁଣ୍ଡି ବନ୍ଧ ଡେଇଁ ବାହାରକୁ ବାହାରୁଛି । କିନ୍ତୁ ରାଣୀ ଲକ୍ଷ୍ମୀବାଈଙ୍କ ଯୁଗରେ କେହି ଏହାର ନିନ୍ଦା କରି ନ ଥିଲେ ବରଂ ତାଙ୍କର ପ୍ରଶଂସା କରିଥିଲେ ।

ସେହି ଯୁଗର ଆଉ ଏକ ଧ୍ୟାନ ଦେଲା ଭଳି କଥା ହେଲା, ସେ ପୁରୁଷ ପୋଷାକ ପିନ୍ଧି କେବଳ ନିଜକୁ ଶକ୍ତିଶାଳୀ ଶାସକ ସିଦ୍ଧ କରିବାକୁ ଯେ ଚେଷ୍ଟା କରିଥିଲେ ତା ନୁହେଁ ବରଂ ତାଙ୍କର ପ୍ରଶାସନ, ବ୍ୟବହାର, କଥାବାର୍ତ୍ତା କରିବାର ଢଙ୍ଗ, ସବୁକିଛି ପ୍ରଜାମାନଙ୍କର ବିଶ୍ୱାସ ହେଲାଭଳି, ଧୈର୍ଯ୍ୟ ପ୍ରଦାନ କଲାଭଳି ଥିଲା । ଝାନ୍‌ସୀ ଅଧିକାର କଲା ପରେ ତିନିବର୍ଷ ପର୍ଯ୍ୟନ୍ତ ଇଂରେଜମାନେ ଯେଉଁ ଯେଉଁ ଜିନିଷ ପ୍ରଜାମାନଙ୍କଠାରୁ ଜବରଦସ୍ତି ଛଡ଼ାଇ ନେଇଥିଲେ, ଲୋକମାନଙ୍କ ସ୍ୱାଭିମାନ, ନିଷ୍ଠା, ସୁଖସୁବିଧା ଉପରେ ଯେଉଁ କୁଠାରାଘାତ କରିଥିଲେ– ରାଣୀ ସେହି ସମସ୍ତ ସୁଖ, ସୁବିଧା ଲୋକଙ୍କୁ ଫେରାଇଦେଲେ । ସ୍ୱାଧୀନତା ପାଇଁ ସେହି ସମୟରେ ଝାନ୍‌ସୀବାସୀ ଯେଉଁ ପୀଡ଼ା ସହୁଥିଲେ, ସେ ସବୁଥିରୁ ମୁକ୍ତି ଦିଆଇ ସ୍ୱରାଜ୍ୟ ପୁଣି ଥରେ ସ୍ଥାପିତ କରିବାକୁ ସେ ଯଥାସାଧ୍ୟ ଚେଷ୍ଟା କଲେ । ଏହି କଥା ତାଙ୍କ ଦିନଚର୍ଯ୍ୟାରୁ ସଂପୂର୍ଣ୍ଣ ପ୍ରମାଣିତ ହୁଏ ।

ଗୋଡ଼ସେ ଭଟ୍ଟ ଏହି ବିଷୟରେ ଲେଖିଛନ୍ତି ଯେ 'ବାଇସାହେବ କେବେ ଖର୍ଚ୍ଚ ପାଇଁ ଚିନ୍ତା କରି ନାହାନ୍ତି' । ତାଙ୍କର ଦୁଇଟି ଗୁଣ ବିଶେଷରୂପେ ବର୍ଣ୍ଣନାଯୋଗ୍ୟ । ଗୋଟିଏ

ଶୂରତା ଓ ଅନ୍ୟଟି ଉଦାରତା । ଏହି ଦୁଇଟି ଗୁଣର ମୂଲ୍ୟ ଅଙ୍କା ଯାଇପାରିବ ନାହିଁ । ବାଈସାହେବଙ୍କର ସବୁବେଳେ ଚେଷ୍ଟା ଥାଏ ଯେ ତାଙ୍କର ପ୍ରଜା କେମିତି ଖୁସିରେ ରହନ୍ତୁ । ସଫା-ସୁତୁରା ଓ ସୁନ୍ଦର ବସ୍ତ୍ର ପିନ୍ଧିବା ତାଙ୍କର ସଉକ ଥିଲା । ବାଈସାହେବ ପଢ଼ିବା-ଲେଖିବା ବି ଜାଣିଥିଲେ । ହୁକୁମନାମା ସ୍ୱୟଂ ନିଜ ହାତରେ ଲେଖି ଜାରି କରୁଥିଲେ । ସକାଳେ ପ୍ରାତଃକାଳୀନ ସ୍ନାନ ପରେ ଧଳା ଚନ୍ଦେରୀ ଶାଢ଼ୀ ପିନ୍ଧି, ଧଳା ବ୍ଲାଉସ୍ ପିନ୍ଧି, ପୂଜା ଘରେ ଆସନ ଜମାଇ ବସି ଯାଉଥିଲେ । ପୁଣି ଭସ୍ମ ଲଗାଉଥିଲେ । ସେଠାରେ ଚାନ୍ଦିର ଏକ ତୁଳସୀ ବୃନ୍ଦାବନ ବି ରଖା ହୋଇଥିଲା । ଯେଉଁଥିରେ ଏକ ତୁଳସୀ ଗଛ ଲଗାଯାଇଥିଲା । ସର୍ବପ୍ରଥମେ ଆଚମନ କରିସାରି ତିନିଟା କୃଚ୍ଛ ଅର୍ଥାତ୍ ତିନି ଟଙ୍କା ବ୍ରାହ୍ମଣଙ୍କୁ ଦାନ ଦେଉଥିଲେ ପୁଣି ତୁଳସୀର ପୂଜା କରୁଥିଲେ ଓ ତା'ପରେ ପାର୍ଥିବ ଲିଙ୍ଗ ପୂଜା ଆରମ୍ଭ ହେଉଥିଲା । ସେହି ସମୟରେ ଗାୟକ ଗୀତ ଗାଉଥିଲେ, ପୁରାଣ ପାଠ କରାଯାଉଥିଲା । ସରଦାର ଓ ଆଶ୍ରିତ ଲୋକ ଆସି ରାଣୀଙ୍କୁ ପ୍ରଣାମ କରୁଥିଲେ । ସମୁଦାୟ ଦେଢ଼ଶହ ଲୋକ ଏହି କାର୍ଯ୍ୟକ୍ରମରେ ଯୋଗ ଦେଉଥିଲେ । ଯଦି କୌଣସି କାରଣରୁ ଜଣେ ବି ବ୍ୟକ୍ତି କୌଣସି ଦିନ ଅନୁପସ୍ଥିତ ରହୁଥିଲା ତା ହେଲେ ଦ୍ୱିତୀୟ ଦିନ ରାଣୀ ତାଙ୍କୁ ପଚାରି ଦେଉଥିଲେ ଆପଣ କାଲି କାହିଁକି ଆସି ନ ଥିଲେ ? ଏହିପରି ବାଈସାହେବ ସମସ୍ତଙ୍କ ପ୍ରତି ଧ୍ୟାନ ଦେଉଥିଲେ । ପ୍ରତିଦିନ ତୃତୀୟ ପ୍ରହରରେ ପାଖାପାଖି ତିନିଟା ବେଳକୁ କଚେରି ବସୁଥିଲା । ଏହି ସ୍ଥାନଟି ଗୋଟିଏ ବଡ଼ ବୈଠକଖାନା ପରି ଥିଲା । ସେଠାରେ ଗୋଟିଏ କୋଠରି ତିଆରି କରାଯାଇଥିଲା । ତା'ର ଦୁଆରମୁହଁ ବାହାରେ ଏକ ଆସନ ପଡୁଥିଲା । କୋଠରି ଭିତରେ ଗଦି ବିଛା ଯାଇଥିଲା । ବାଈସାହେବ ସେଠାରେ ତକିଆରେ ଆଉଜାଇ ହୋଇ ବସୁଥିଲେ । କେତେବେଳେ ପୁରୁଷ ବେଶରେ ତ କେତେବେଳେ ସ୍ତ୍ରୀ ବେଶରେ ସେ ଦରବାରରେ ପହଞ୍ଚୁଥିଲେ । ବୈଠକଖାନା ବାହାର ଦ୍ୱାର ପାଖରେ ଜଣେ ସିପାହି ଠିଆ ହୋଇ ରହୁଥିଲା । ଯାହା ହାତରେ ଏକ ଚାନ୍ଦିର ଡାଲା ରହୁଥିଲା । ଆଗରେ ମାନ୍ୟବର ଲକ୍ଷ୍ମଣ ରାଓ ଦିଓ୍ୱାନଜୀ ହାତରେ କାଗଜପତ୍ର ଧରି ଠିଆ ହୋଇ ରହୁଥିଲେ । ଦୁଇପଟରେ ରାଣୀଙ୍କ ସେବାରେ ପାଞ୍ଚ-ସାତ ଜଣ ସେବକ ଠିଆ ହୋଇ ରହୁଥିଲେ । କଚେରିରେ ଦିଓ୍ୱାନି, ଫୌଜଦାରୀ, ମୁଲକୀ ସବୁ କାମ ହେଉଥିଲା ।

ରାଜଗାଦି ଗଲା ପରେ ଲକ୍ଷ୍ମୀବାଈ ତିନିବର୍ଷ ଯାଏ ସହରର ରାଜମହଲରେ ରହିଲେ । କମ୍ପାନୀ ସରକାର ଯେତିକି ପେନ୍‌ସନ୍ ଦେଉଥିଲେ ସେତିକିରେ ତାଙ୍କୁ ଚଳିବାକୁ ପଡୁଥିଲା । ପିଲାର ବ୍ରତୋପନୟନ ସଂସ୍କାର ପାଇଁ ନିଜର ବ୍ୟକ୍ତିଗତ ସମ୍ପତ୍ତିରୁ ପଇସା ବାହାର କରିବାକୁ ଚାରିଜଣ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ପ୍ରତିଜ୍ଞାପତ୍ର ଦେବାକୁ ପଡ଼ିଲା । ଏମିତି ଅବସ୍ଥାରେ ଦାନଧର୍ମ କରିବା ତ ଦୂରର କଥା । କିନ୍ତୁ ପୁଣି ଥରେ ରାଣୀଙ୍କ ସୁଖର ଦିନ ଫେରିଲା, ଲକ୍ଷ୍ମୀବାଈ ପୁଣି କିଲ୍ଲାରେ ଆସି ରହିବାରେ ଲାଗିଲେ । ସେଠାକାର

ରାଜମହଲରେ ପୁଣିଥରେ ଆଗଭଳି ଜୀବନର ଦିନଚର୍ଯ୍ୟା ଆରମ୍ଭ ହୋଇଗଲା । ପ୍ରତିଦିନ ପୁଣି ଦରବାର ଲାଗିଲା । ଗୀତ, ବାଜଣା କରୁଥିବା ଲୋକଙ୍କୁ ପୁଣି ପଚରାଉଚୁରା କରାଗଲା । ରାଜାଙ୍କର ପ୍ରତିଷ୍ଠା ଅନୁରୂପ ଦାନ-ଧର୍ମ ଆରମ୍ଭ ହୋଇଗଲା । ଏହିପରି ନିଜର ପୂର୍ବବର୍ତ୍ତୀ ରାଜାଙ୍କ ପରି ରାଜଗାଦି ଉପରେ ବିରାଜମାନ ହୋଇ ନିଜର ପରମ୍ପରାଗତ କର୍ତ୍ତବ୍ୟ ପାଳନ କରିବା ପ୍ରଜାଙ୍କ ଦୃଷ୍ଟିରେ ଆବଶ୍ୟକ ଥିଲା । ଏହାର ମହତ୍ତ୍ୱ ରାଣୀ ଲକ୍ଷ୍ମୀବାଈ ଭଲଭାବରେ ବୁଝି ପାରୁଥିଲେ ।

ପ୍ରତି ମଙ୍ଗଳବାର, ଶୁକ୍ରବାର ଦିନ ରାଣୀ ଝାନ୍‌ସୀ ସହରର ସୀମା ବାହାରେ ଥିବା କୁଳଦେବୀ ମହାଲକ୍ଷ୍ମୀ ମନ୍ଦିରକୁ ଦର୍ଶନ ପାଇଁ ପୂରା ରାଜକୀୟ ପଟୁଆରରେ ଯାଉଥିଲେ । ଏସବୁ ଲୋକଙ୍କ ପାଇଁ ଆକର୍ଷକ ଓ କୌତୂହଳ ସୃଷ୍ଟି କଲାଭଳି ଘଟଣା ଥିଲା । ରାଣୀଙ୍କ ଶବାରୀ ପୂରା ରାଜକୀୟ ଥାଟବାଟରେ ଦର୍ଶନ ପାଇଁ ବାହାରୁଥିଲା । 'ତାମ-ଝାମ' ନାମକ ପାଲିଙ୍କିରେ ବସି ରାଣୀ ଯାଉଥିଲେ, ସେହି ଶବାରୀର ଆଡ଼ମ୍ବର ଦେଖି ଲୋକେ ଆଶ୍ଚର୍ଯ୍ୟ ଚକିତ ହୋଇ ଯାଉଥିଲେ । 'ତାମ-ଝାମ' ପାଲିଙ୍କିକୁ ଅତ୍ୟନ୍ତ କଳାତ୍ମକ ଢଙ୍ଗରେ ମଣି-ମାଣିକ୍ୟରେ ସଜା ଯାଉଥିଲା । ପାଲିଙ୍କି ଆଗରେ ଢୋଲ, ମର୍ଦ୍ଦଳ, ନରସିଂଗା ପରି ବାଦ୍ୟ-ବାଦକ ଯାଉଥିଲେ । ପାଲିଙ୍କିର ଆଗରେ-ପଛରେ ଶହେ ଅଶ୍ୱାରୋହୀ ଯାଉଥିଲେ । ଏହାଛଡ଼ା ଦେଢ଼ଶହ ଆଫଗାନ ଓ ଅନ୍ୟ ସୈନିକ ବି ଯାଉଥିଲେ । ଯେତେବେଳେ ପାଲିଙ୍କି ଯାଉଥିଲା ସେତେବେଳେ ରାଜ୍ୟର କର୍ମଚାରୀ, ଅଧିକାରୀ, ମାନ୍ୟବର ଓ ଧାର୍ମିକ କାର୍ଯ୍ୟ କରାଇଲାବାଲା ମହତ୍ତ୍ୱପୂର୍ଣ୍ଣ ପୁରୋହିତମାନେ ମଧ୍ୟ ସାଙ୍ଗରେ ଯାଉଥିଲେ । ପାଲିଙ୍କିର ଗୋଟେ ପଟେ ପାଲିଙ୍କି ଧାରକୁ ଧରି ତା' ସାଙ୍ଗରେ ଚାରି-ପାଞ୍ଚଜଣ ଦାସୀ ବି ଦୌଡ଼ି ଦୌଡ଼ି ସାଙ୍ଗରେ ଯାଉଥିଲେ । ଏହି ଦାସୀମାନଙ୍କୁ ସରକାରୀ ଭଣ୍ଡାରରୁ ସୁନା, ମୋତି ଓ ହୀରାର ଗହଣାମାନ ପିନ୍ଧିବାକୁ ଦିଆଯାଉଥିଲା । ଏହି ଦାସୀମାନେ ପୂରାପୂରି ଗୋଡ଼ଠାରୁ ମୁଣ୍ଡପର୍ଯ୍ୟନ୍ତ ନିଜକୁ ସଜାଉଥିଲେ । ରେଶମୀ, ଜରୀ ଧଡ଼ି ଥିବା ଶାଢ଼ୀ ଏହି ଦାସୀମାନେ ପିନ୍ଧୁଥିଲେ । ଗୋଡ଼ରେ ଲାଲରଙ୍ଗର ଜୋତା ପିନ୍ଧି ହାତରେ ସୁନାରୁପାର ଚାମର ଧରି ପାଲିଙ୍କି ସାଙ୍ଗରେ ଚାଲୁଥିଲେ । ଶୋଭାଯାତ୍ରା ଯେତେବେଳେ କିଲ୍ଲା ଭିତରୁ ବାହାରୁଥିଲା ସେତେବେଳେ କିଲ୍ଲା ଭିତରେ ନାଗରା ବାଜିବା ଆରମ୍ଭ ହୋଇଯାଉଥିଲା ଓ ଫେରିବା ପର୍ଯ୍ୟନ୍ତ ସେମିତି ବାଜୁଥିଲା । ଠିକ୍ ସେହିପରି ରାଣୀ ଜଳ-ମନ୍ଦିରର ପ୍ରାଙ୍ଗଣରେ ପ୍ରବେଶ କଲାବେଳେ ସେଠି ବି ନାଗରା ବାଜୁଥିଲା ଯେ ରାଣୀ ଫେରିଆସିବା ପର୍ଯ୍ୟନ୍ତ ବଜା ହେଉଥିଲା ।

ରାଣୀ କେବେ କେବେ ପାଲିଙ୍କି ବଦଳରେ ଘୋଡ଼ା ଚଢ଼ି ବି ମହାଲକ୍ଷ୍ମୀଙ୍କ ଦର୍ଶନ ପାଇଁ ଯାଉଥିଲେ । ସେତେବେଳର ଦୃଶ୍ୟ ପୂରାପୂରି ଅଲଗା ଥିଲା । ରାଣୀଙ୍କ ଘୋଡ଼ା ଆଗରେ ପଛରେ ସଶସ୍ତ୍ର ସୈନିକ, ଅଶ୍ୱାରୋହୀ ଚାଲୁଥିଲେ । ରାଣୀ ପୁରୁଷ ପୋଷାକ ପିନ୍ଧି ଘୋଡ଼ା ପିଠିରେ ବସି ଯେତେବେଳେ ପବନ ଗତିରେ ଯାଉଥିଲେ ସେତେବେଳେ

ତାଙ୍କ ପଗଡ଼ିର ରେଶମୀ କାନି ପବନରେ ଉଡୁଥିଲା । ନିଜ ରାଣୀଙ୍କୁ ପୁରୁଷ ବେଶରେ ଦେଖି ଝାନ୍ସୀର ପ୍ରଜା ଗର୍ବ ଅନୁଭବ କରୁଥିଲେ ଓ ନିଜକୁ ଧନ୍ୟ ମଣୁଥିଲେ ।

ରାଜ୍ୟ ଲୋକମାନଙ୍କର ଯେତେବେଳେ ଶୋଭାଯାତ୍ରା ବାହାରୁଥିଲା ତାହା ବି ପୂରା ଆଡ଼ମ୍ବର ସହକାରେ ନିଜର ବୈଭବ ପ୍ରଦର୍ଶନ କରି ବାହାରୁଥିଲା । ଏହା ସେହି ସମୟର ଗୋଟିଏ ପରମ୍ପରା ଥିଲା । ରାଣୀ ସ୍ୱୟଂ ଆଭୂଷଣ ପିନ୍ଧୁ ନ ଥିଲେ, କିନ୍ତୁ ତାଙ୍କର ଦାସୀମାନେ ଅତ୍ୟନ୍ତ ପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନ ବିତାଉଥିଲେ । ଜଣେ ବ୍ରାହ୍ମଣ ବିଧବା, ରାଜପରିବାରର ହେଉ ପଛକେ, ଏହା କ'ଣ ଜରୁରି ଥିଲା ଯେ ଦେବଦର୍ଶନକୁ ଗଲାବେଳେ ଏତେ ରାଜକୀୟ ଥାଟବାଟରେ ପୁରୁଷ ପୋଷାକ ପିନ୍ଧି କ'ଣ ଯିବା କଥା ? ଏମିତି ପ୍ରଶ୍ନ ଲୋକଙ୍କ ମନରେ ଉଠିବା ଅତି ସ୍ୱାଭାବିକ କଥା । କିନ୍ତୁ ଲକ୍ଷ୍ମୀବାଈ ପ୍ରଶାସନ ଚଳାଇବା ପାଇଁ ଯେଉଁ ନିଜର ନୀତିଗତ କାର୍ଯ୍ୟଶୈଳୀ ପ୍ରସ୍ତୁତ କରିଥିଲେ, ସେହି ଅନୁସାରେ ବୋଧହୁଏ ତାଙ୍କୁ ଏମିତି କରିବାର ଆବଶ୍ୟକ ମନେ ହେଇଥିବ । ରାଣୀଙ୍କର ଏସବୁ ଚେଷ୍ଟା ଏଥିପାଇଁ ଥିଲା ଯେ ଲୋକମାନେ ତାଙ୍କୁ ଜଣେ ରାଜ୍ୟର କର୍ତ୍ତା ଭାବରେ ଚିହ୍ନନ୍ତୁ, ସେହି ରୂପରେ ହିଁ ଦେଖନ୍ତୁ । ସମ୍ଭବତଃ ନିଜକୁ ଏକ ସମୃଦ୍ଧ ଓ ସବଳ ମଣିଷ ଭାବରେ ଦର୍ଶାଇବାକୁ ତାଙ୍କର ଇଚ୍ଛା ଥିବ । ଏଇଥିପାଇଁ ନିଜର ବ୍ୟକ୍ତିଗତ ଜୀବନର ଅତି ସାଧାସିଧା ଭାବରେ ରହୁଥିବା ଲକ୍ଷ୍ମୀବାଈଙ୍କର ଏହା ଭାବିଚିନ୍ତି ଉଠାଇଥିବା ପଦକ୍ଷେପ ହୋଇଥାଇପାରେ ।

ପ୍ରଜାଙ୍କ ମନରେ ରାଜାଙ୍କ ପ୍ରତି ଆତ୍ମୀୟତା ସୃଷ୍ଟି କରିବାପାଇଁ ରାଜା ଉଦାରମନା ହେବା ଆବଶ୍ୟକ । ରାଣୀ ଲକ୍ଷ୍ମୀବାଈ ଏହି ପରୀକ୍ଷାରେ ପୂରାପୂରି ସଫଳ ହୋଇଥିଲେ । ଗୋଡ଼ସେ ଭଟଜୀ ଲେଖିଛନ୍ତି ''ବାଈସାହେବାଙ୍କ ଦାନ-ଶୂରତା ପ୍ରସିଦ୍ଧ ଥିଲା । ପ୍ରତିଦିନ ସେ ଦାନ-ଧର୍ମ କରୁଥିଲେ । ଥରକର ଘଟଣା କି ବେଦଶାସ୍ତ୍ରସଂପନ୍ନ ଜଣେ ଯୁବକ ବ୍ରାହ୍ମଣ ଦରିଦ୍ରତା କାରଣରୁ ବିବାହ କରି ପାରୁ ନ ଥିଲା । ସେତେବେଳେ ଲକ୍ଷ୍ମୀବାଈ ତାକୁ ଧନଦାନ କରି ବିବାହ କରିବାକୁ କହିଲେ । କେବଳ ସେତିକି ନୁହେଁ ସେ ତାକୁ ଏହା ବି କହିଲେ ''ମତେ ବିବାହର ନିମନ୍ତ୍ରଣପତ୍ର ଦେବାକୁ ଯେମିତି ଭୁଲି ନ ଯାଅ ।'' ଏମିତି ଅନେକ ଗରିବ ବିଦ୍ୱାନ୍ ଲୋକ ଥିଲେ, ଯେଉଁମାନଙ୍କୁ କି ସେ ଏଭଳି ସାହାଯ୍ୟ କରୁଥିଲେ । ଗରିବଙ୍କ ପ୍ରତି ତାଙ୍କର ଅଧିକ ସ୍ନେହଭାବ ଥିଲା ଓ ଆଗ୍ରହପୂର୍ବକ ସେ ସେମାନଙ୍କ ସହାୟତା କରୁଥିଲେ । ଦାରିଦ୍ର୍ୟ କାରଣରୁ ଶୀତଦିନରେ ଯେଉଁମାନଙ୍କ ପାଖରେ ଶରୀର ଢାଙ୍କିବା ପାଇଁ ଲୁଗାପଟା ନ ଥିଲା, ଏଭଳି ହଜାର-ଦେଢ଼ହଜାର ଲୋକଙ୍କୁ, ସାଧୁ-ସନ୍ନ୍ୟାସୀଙ୍କୁ ତୁଳାର ରେଜେଇ ସିଲାଇ କରାଇ ଓ କମ୍ବଳ ଦେବାର ବ୍ୟବସ୍ଥା କରୁଥିଲେ । ତୁଳାର ଏଇ ରେଜେଇ ସିଲାଇ ପାଇଁ ଗାଁର ସବୁ ଦର୍ଜିଙ୍କୁ ସେ କାମରେ ଲଗାଇ ଦେଇଥିଲେ । ରାଣୀ ଲକ୍ଷ୍ମୀବାଈଙ୍କର ଉଦାରତା, ଦୟାଳୁତା ଓ ନରମ ହୃଦୟ କଥା ଇଂରେଜ ଅଧିକାରୀମାନେ ମଧ୍ୟ ବର୍ଣ୍ଣନା କରିଛନ୍ତି ।

ରାଜକର୍ତ୍ତାଙ୍କର ଦୟାଳୁ ହେବା, ପ୍ରଜାଙ୍କ ପ୍ରତି ଆତ୍ମୀୟଭାବ ପୋଷଣ କରିବା ଏକ ଉତ୍ତମ ରାଜାର ପ୍ରତୀକ ବୋଲି କୁହାଯାଏ ।

କିନ୍ତୁ କେବଳ ଏତିକି ଯଥେଷ୍ଟ ନୁହେଁ । ରାଜକର୍ତ୍ତା ପ୍ରଜାଙ୍କ ପ୍ରତି ନିଜର ଦାୟିତ୍ୱ କେତେ ପରିମାଣରେ ନିର୍ବାହ କରୁଛନ୍ତି ଏହାବି ଏକ ମହତ୍ତ୍ୱପୂର୍ଣ୍ଣ କଥା । କଲ୍ୟାଣ ସିଂହ କୁଡ଼ରୀ ନିଜ 'ଲକ୍ଷ୍ମୀବାଈ ରାସୋ' କାବ୍ୟରେ ଯେଉଁ ବର୍ଣ୍ଣନା କରିଛନ୍ତି ତାହା ଦେଖିବାର କଥା । ନଥେଖାନ୍ ସହ ଯେତେବେଳେ ମୁକାବିଲା କରିବାର ସମୟ ଆସିଲା, ସେତେବେଳେ ରାଣୀ ନିଜ ସିପାହିମାନଙ୍କୁ ସଂବୋଧିତ କରି କହିଥିଲେ-

ବାଈ ବିନତି କଲେ ଶୁଣ ସିପାହି ମୋ କଥା
ଏବେ ନଉକା ମଝି ଦରିଆରେ ଲାଜରକ୍ଷା ତୁମ ହାତରେ
ଲାଜରକ୍ଷା ତୁମ ହାତରେ, କୌଣସି ଶଙ୍କା କର ନାହିଁ
ଯେ ପର୍ଯ୍ୟନ୍ତ ଜୀବନ ରହିବ ସେପର୍ଯ୍ୟନ୍ତ
ତୁମ ଗୁଣ ଗାଇବି
କହେ କଲ୍ୟାଣ ମନାସିବି, ଲୁଣର ଗୁଣ ଗାଇବି
ବିଧବାଙ୍କୁ ପୋଷିବି ପ୍ରତିଜ୍ଞା କରୁଛି ବାଈ ।
''ବାଈନେ ବିନତି କରୀ ସୁନୌ ସିପାଇ ବାତ ।
ଅବକେ ନ୍ୟାବ କଠିନ ଜୁରୈ ଲାଜ ତିହାରେ ହାତ ।।
ଲାଜ ତିହାରେ ହାତ, କୌନଉ ସଂକ ନ ମାନୌ ।
ଜାଂ ତକ ଜୀବତ ରହୌ ତାଂ ତକ ସୁବ ଗୁନ ମାନୋ ।।
କହି କଲିୟାନ ବିଚାର ନୌନ କୀ ଲେବ ଭଂଜାଇ ।
ରାଂଡ଼ନ ରୋଟି ଦେଉଁ ସନଦ କରକୈ ମୈ ବାଈ ।।''

ଏହାର ଅର୍ଥ ହେଲା ଯେ ରାଣୀ ନିଜ ସିପାହିମାନଙ୍କୁ ଅନୁନୟ ବିନୟ ସହ କହିଲେ ''ଉପସ୍ଥିତ ପରିସ୍ଥିତି ବହୁତ କଠିନ, ଲଜ୍ଜା ନିବାରଣ କରିବା ଆପଣମାନଙ୍କ ହାତରେ । ଏ ବିଷୟରେ କେହି କିଛି ସନ୍ଦେହ ରଖିବାର ଆବଶ୍ୟକତା ନାହିଁ । ମୁଁ ଯେପର୍ଯ୍ୟନ୍ତ ବଞ୍ଚିଥିବି ସେପର୍ଯ୍ୟନ୍ତ ଆପଣମାନଙ୍କ ଉପକାର ଭୁଲିବି ନାହିଁ । ଲୁଣର ଋଣ ଶୁଝିବାର ସମୟ ଓ ସୁଯୋଗ ଆପଣଙ୍କୁ ମିଳିଛି । ଯଦି ଯୁଦ୍ଧଭୂମିରେ ଆପଣମାନେ ବୀରଗତିକୁ ପ୍ରାପ୍ତ ହେବେ ତ ଆପଣମାନଙ୍କର ବିଧବାମାନଙ୍କର ଜୀବନ ନିର୍ବାହର ବ୍ୟବସ୍ଥା ମୁଁ କରିବି, ଏହି ଆଶ୍ୱାସନା ମୁଁ ଆପଣମାନଙ୍କୁ ଦେଉଛି ।

ଦେଶ ପାଇଁ ମୃତ୍ୟୁବରଣ କରିବାକୁ ପ୍ରସ୍ତୁତ ସୈନିକମାନଙ୍କର ପରିବାରର ଦାୟିତ୍ୱ ଗ୍ରହଣ କଲାବାଲା ରାଜକର୍ତ୍ତା ଇତିହାସରେ ଖୋଜିଲେ ମଧ୍ୟ ମିଳିବେ ନାହିଁ । ଝାନ୍ସୀର ରାଣୀ ଏହିକଥା ପାଇଁ ଅନୁପମ ଓ ଅଦ୍ୱିତୀୟ ଉଦାହରଣ ବୋଲି କୁହାଯାଇପାରେ । କୁଡ଼ରା ଲକ୍ଷ୍ମୀବାଈଙ୍କର ସମକାଳୀନ ଥିଲେ । ସେ 'ଲକ୍ଷ୍ମୀବାଈ ରାସୋ'ରେ ନିଜର ପ୍ରତ୍ୟକ୍ଷ

ଅନୁଭବ ଓ ପ୍ରତ୍ୟକ୍ଷରୂପେ ଭାଗ ନେଇଥିବା ଲୋକଙ୍କ ସହ କଥାବାର୍ତ୍ତା କରି ଲେଖିଛନ୍ତି । ସେଥିପାଇଁ ତାଙ୍କର ଏହି ପୁସ୍ତକ ଏକ ମହତ୍ତ୍ୱପୂର୍ଣ୍ଣ ଓ ବିଶ୍ୱସନୀୟ ପ୍ରମାଣ ବୋଲି ମାନିନିଆଯାଇପାରେ ।

ସମୃଦ୍ଧି ଓ ଶାନ୍ତିପୂର୍ଣ୍ଣ ପ୍ରଶାସନର ବିଶେଷତା ଏହିଥିରୁ ଜଣାଯାଏ ଯେ ରାଜ୍ୟରେ ବିବିଧ କଳାର ଯତ୍ନ କରାଯାଇଥାଏ । ପ୍ରତି ପଦକ୍ଷେପରେ ରାଜ୍ୟ ପ୍ରଗତି ପଥରେ ବଢୁଥାଏ ଓ ପ୍ରଜାଜନ ନିଜକୁ ପରାଧୀନତାମୁକ୍ତ ଏକ ସ୍ୱଚ୍ଛନ୍ଦ ବାତାବରଣରେ ରହିବାର ଉପଯୁକ୍ତ ବୋଲି ଅନୁଭବ କରନ୍ତି । ଝାନ୍ସୀର ଲୋକଙ୍କ ମଧ୍ୟରେ ସଂଗୀତ, ନାଟକ ଆଦି ପ୍ରତି ରୁଚି ଗଙ୍ଗାଧର ରାଓଙ୍କ ଶାସନକାଳରୁ ହିଁ ଦେଖିବାକୁ ମିଳୁଥିଲା । ଗଙ୍ଗାଧର ରାଓ ସ୍ୱୟଂ ସଂସ୍କୃତ ନାଟକର ନିର୍ଦ୍ଦେଶନା ଦେଉଥିଲେ । କେତେବେଳେ କେତେବେଳେ ନାଟକରେ ନାରୀ ପାତ୍ରରୂପେ ଅଭିନୟ ବି କରୁଥିଲେ । ରାଣୀ ଲକ୍ଷ୍ମୀବାଈ ପୁନଶ୍ଚ ଯେତେବେଳେ କିଲ୍ଲାକୁ ରହିବାକୁ ଗଲେ ସେତେବେଳେ ତାଙ୍କର ନ' ମାସର ସମୟରେ ଝାନ୍ସୀରେ ପନ୍ଦରଟି ମରାଠୀ ନାଟକ ମଞ୍ଚସ୍ଥ କରାଯାଇଥିଲା । କୋଙ୍କଣର ଏକ ନାଟ୍ୟମଣ୍ଡଳୀ ଗ୍ୱାଲିୟର ଆସିଥିଲା । ସେଠାରେ ସେହି କଂପାନୀ କେତେଗୁଡ଼ିଏ ନାଟକ ପ୍ରସ୍ତୁତ କରିଥିଲେ । ତାଙ୍କର ନାଟକ ବହୁତ ଲୋକପ୍ରିୟ ହୋଇଥିଲା । ଏହାର କୀର୍ତ୍ତି ଝାନ୍ସୀ ପର୍ଯ୍ୟନ୍ତ ପହଞ୍ଚିଥିଲା । ଝାନ୍ସୀ ନିବାସୀଙ୍କ ସହ ବିଶିଷ୍ଟ ଲୋକମାନେ ବି ଅନୁଭବ କଲେ ଏମିତି ନାଟକ ଝାନ୍ସୀରେ ବି ମଞ୍ଚସ୍ଥ ହେବା କଥା । କିନ୍ତୁ ରାଣୀଙ୍କୁ ନ ପଚାରି ନାଟକ କଂପାନୀକୁ ଆମନ୍ତ୍ରଣ କରିବା ଉଚିତ ହେବ ନାହିଁ । ଏହି କଥା ଭାବି ଦରବାରର ମହତ୍ତ୍ୱପୂର୍ଣ୍ଣ ଲୋକମାନେ ଲକ୍ଷ୍ମୀବାଈଙ୍କ ସହ ଏହି ସଂପର୍କରେ ଚର୍ଚ୍ଚା କଲେ । ସେତେବେଳେ ସେ ସେମାନଙ୍କୁ କହିଲେ "ସରକାରଙ୍କ ତରଫରୁ ନାଟକ କଂପାନୀକୁ ନିମନ୍ତ୍ରିତ କରାଯାଇପାରିବ ନାହିଁ, ଯଦି ସେମାନେ ପଇସା ରୋଜଗାର କରିବାପାଇଁ ନିଜ ନାଟକ କଂପାନୀକୁ ଝାନ୍ସୀରେ ପ୍ରଦର୍ଶିତ କରିବାକୁ ଆସିବେ ତାହାର ଅନୁମତି ସେ ଦେଇପାରିବେ ।" ସହରର ଲୋକମାନେ ଚିଠି ଲେଖି ନାଟକ କଂପାନୀକୁ ଝାନ୍ସୀ ଡକାଇଲେ । ସରକାର ତାଙ୍କର ରହିବା ଖାଇବାର ବନ୍ଦୋବସ୍ତ କରିଦେଲେ । ସହରର ରାଜପ୍ରାସାଦ ଆଗରେ ଥିବା ପଡ଼ିଆରେ ନାଟକ ମଞ୍ଚସ୍ଥ କରିବାପାଇଁ ବ୍ୟବସ୍ଥା କରି ଦିଆଗଲା । ନିଜେ ଲକ୍ଷ୍ମୀବାଈ ବି ସମୟ ବାହାର କରି ସେହି ନାଟକ ଦେଖିବାପାଇଁ କିଛି ସମୟ ଉପସ୍ଥିତ ରହୁଥିଲେ । ନାଟକ ମରାଠୀରେ ହେଉଥିବାରୁ ଝାନ୍ସୀରେ ରହୁଥିବା ବହୁସଂଖ୍ୟକ ହିନ୍ଦୀଭାଷୀ ଲୋକଙ୍କର ପସନ୍ଦ ହେଲା ନାହିଁ । ନାଟକ ରାଜା ହରିଶ୍ଚନ୍ଦ୍ର–ତାରାମତୀ କଥାବସ୍ତୁ ଉପରେ ଆଧାରିତ ଥିଲା । ନାଟକର ଏକ ଦୃଶ୍ୟରେ ମାଟିହାଣ୍ଡି ଭାଙ୍ଗିବାର ଥିଲା; ଯାହା ପାଇଁ ନାଟକବାଲା ସରକାରଙ୍କଠାରୁ ଅନୁମତି ମାଗିଥିଲେ, ସରକାର ଅନୁମତି ବି ଦେଇଦେଲେ । ସେହି ଅନୁସାରେ ରାଜପ୍ରାସାଦ ଆଗରେ ଥିବା ପଡ଼ିଆରେ ନାଟକ ମଞ୍ଚସ୍ଥ ହେବା ସମୟରେ ମାଟିହାଣ୍ଡି ଭଙ୍ଗାଗଲା । ଲୋକଙ୍କୁ ଏଇ କଥା ବହୁତ ବାଧିଲା । ଲୋକଙ୍କୁ ଲାଗିଲା କି ଅଶୁଭ ହୋଇଗଲା । ଚାରିଆଡ଼େ ମାଟିହାଣ୍ଡି

ଭଙ୍ଗାଯିବାର ଚର୍ଚ୍ଚା ହେଲା । କାରଣ ହିନ୍ଦୁ ଶାସ୍ତ୍ର ଅନୁସାରେ ଡମ ହାତରେ ମାଟିହାଣ୍ଡି ଭଙ୍ଗେଇବା ସନ୍ଦର୍ଭ ମୃତ୍ୟୁ ଘଟଣା ସହ ଯୋଡ଼ାଯାଇଛି । ସେଥିପାଇଁ ଏଭଳି ଘଟଣା ଅଶୁଭ ବୋଲି କୁହାଗଲା ।

ତେବେବି ନାଟକର ନିଶା ଲୋକଙ୍କ ମୁଣ୍ଡରେ ଏମିତି ଚଢ଼ିଲା ଯେ କଂପାନୀ ଦ୍ୱାରା ହରିଶ୍ଚନ୍ଦ୍ର–ତାରାମତୀ ଛଡ଼ା ଚିତ୍ରଲେଖା, ରାସକ୍ରୀଡ଼ା, ବାଣାସୁର ଇତ୍ୟାଦି ନାଟକ ମରାଠୀ ଭାଷାଭାଷୀଙ୍କ ପାଇଁ ମଞ୍ଚସ୍ଥ କରାଗଲା । ରାଣୀସାହେବା ଅଳ୍ପ ସମୟ ପାଇଁ ନାଟକ ଦେଖିବାକୁ ଆସୁଥିଲେ । ପରେ କିଲ୍ଲାର ଦରବାରୀମାନଙ୍କ ପାଇଁ, ଦରବାରୀମାନଙ୍କ ସ୍ତ୍ରୀଙ୍କ ପାଇଁ ବିଶେଷରୂପେ ନାଟକ ମଞ୍ଚସ୍ଥ କରାଗଲା । ମହିଳାମାନଙ୍କ ପାଇଁ ଆୟୋଜିତ ହେଉଥିବା ନାଟକ ମଞ୍ଚସ୍ଥ ହେବା ସମୟରେ ରାଣୀ ପୂରା ନାଟକଟିକୁ ଦେଖୁଥିଲେ । ସବୁ ମିଶି ୧୫ଟି ନାଟକ ମଞ୍ଚସ୍ଥ କରାଯାଇଥିଲା । ଶେଷରେ ନାଟକମଣ୍ଡଳୀକୁ କିଲ୍ଲା ଭିତରେ ବହୁତ ଥାଟବାଟର ସହ ଭୋଜି ଦିଆଗଲା । କଂପାନୀର ମାଲିକକୁ ଜରି କାରିଗରୀ ହୋଇଥିବା ସାଲ୍ ଓ ପଗଡ଼ି ଦିଆଗଲା । ଅନ୍ୟମାନଙ୍କୁ ରେଶମୀ ଧଡ଼ିଥିବା ଧୋତି ଦିଆଯାଇ ସମ୍ମାନିତ କରାଗଲା । କଂପାନୀକୁ ଚାରିହଜାର ଟଙ୍କା ବିଦାକି ଭାବରେ ବି ଦିଆଗଲା । ଏ ସମସ୍ତ ସେହି ସମୟରେ ଆୟୋଜିତ କରାଯାଇଥିଲା । ଯେତେବେଳେ ପାଖ–ଆଖ ସବୁ ପ୍ରଦେଶରେ ଯୁଦ୍ଧର ନିଆଁ ଜଳୁଥିଲା । ପରିସ୍ଥିତି ବଡ଼ ଗମ୍ଭୀର ଓ ଅସ୍ଥିର ଥିଲା । ଖୋଦ୍ ଝାନ୍‌ସୀର ସ୍ଥିତିବି ଅସ୍ଥିର ଥିଲା । ସେଥିପାଇଁ ପତ୍ରାଚାର ଜରିଆରେ କଂପାନୀ ସରକାରଙ୍କ ସହିତ ଓ ବାଣପୁର ରାଜାଙ୍କ ସହିତ ଲଗାତାର ସଂପର୍କ ରକ୍ଷା କରିବାକୁ ଲକ୍ଷ୍ମୀବାଈ ଚେଷ୍ଟା କରୁଥିଲେ । ଏମିତି ପ୍ରତିକୂଳ ବାତାବରଣରେ ସେ ନାଟକ ପରି ମନୋରଞ୍ଜନ ପାଇଁ, ଛୋଟ ଛୋଟ କଥା ପାଇଁ ସମୟ ବାହାର କରିବା, ପଇସା ଖର୍ଚ୍ଚ କରିବା କ'ଣ ଏତେ ମହତ୍ତ୍ୱପୂର୍ଣ୍ଣ ଥିଲା ? ଆଖପାଖର ଗମ୍ଭୀର ସ୍ଥିତି ବିଷୟରେ ପୂରା ଧାରଣା ରାଣୀଙ୍କର ଥିଲା । ସେହି ସମୟରେ 'ଆଗାମି ବ୍ୟବସ୍ଥା ହେବା ପର୍ଯ୍ୟନ୍ତ' ଝାନ୍‌ସୀର ପ୍ରଶାସନ ସମ୍ଭାଳିବାର ଦାୟିତ୍ୱ ବି କଂପାନୀ ସରକାର ରାଣୀଙ୍କୁ ଅର୍ପଣ କରିଥିଲେ । ରାଣୀ ବି ନିଜ ଦାୟିତ୍ୱ ଠିକ୍ ଭାବରେ ତୁଲାଉଥିଲେ । ରାଜ୍ୟ ଉପରେ ସଦାଶିବ ରାଓ ଭାଇ ଓ ନଥେଖାନ୍‌ଦ୍ୱାରା ସୃଷ୍ଟି କରାଯାଇଥିବା ସଂକଟର ବି ରାଣୀ ସଫଳତାପୂର୍ବକ ନିରାକରଣ କରି ଦେଇଥିଲେ । ଏହି କାରଣରୁ ସେ ନିଜର ସ୍ଥାନ ନିଶ୍ଚିତ କରି ଦେଇଛନ୍ତି । ଏହି ବିଶ୍ୱାସ ତାଙ୍କ ମନରେ ଥିଲା । ଏଥିପାଇଁ ଯେଉଁ ସମୟରେ ଯୁଦ୍ଧର ପ୍ରସ୍ତୁତିରେ ରାଣୀ ଲାଗିଥିଲେ, ନୂଆ ତୋପଖାନା ଆରମ୍ଭ କରାଯାଇଥିଲା, ସେହି ସମୟରେ ନାଟକ ମଞ୍ଚସ୍ଥ ବି କରାଯାଉଥିଲା । କଳାକାରମାନଙ୍କ ସମ୍ମାନ ରଖି, ଏକ ସ୍ଥିର, ସୁରକ୍ଷିତ, ସମୃଦ୍ଧ ରାଜ୍ୟ ରୂପେ ଝାନ୍‌ସୀର ଗୌରବ ବଢ଼ାଇଥିଲେ ଓ ପ୍ରତିଷ୍ଠା ସ୍ଥାପିତ କରିଥିଲେ ।

## ଶ୍ରଦ୍ଧାର ରକ୍ଷା

ଇଂରେଜମାନଙ୍କ ବିରୋଧରେ ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା ତାହାର ତତ୍କାଳୀନ କାରଣ ଧାର୍ମିକ ଥିଲା । ଏମିତି ତ ଇଂରେଜମାନଙ୍କ ପ୍ରତି ରୋଷ ଓ ତିରସ୍କାରର ଅନେକ କାରଣ ଥିଲା, କିନ୍ତୁ ଉଗ୍ରରୂପ ନେଲା ଗାଈ ଓ ଘୁଷୁରି ଚର୍ବି ଲଗା କାରତୁସ୍‌କୁ ନେଇ । ଏମିତି କରି ଲୋକମାନଙ୍କର ଧାର୍ମିକ ଶ୍ରଦ୍ଧାକୁ ଆଘାତ କରାଯାଇଥିଲା । ଝାନ୍ସୀ ଅଧିକାର କଲା ପରେ କଂପାନୀ ସରକାର 'ଗୋହତ୍ୟା' ଉପରୁ ନିଷେଧାଦେଶ ଉଠାଇ ଦେଇଥିଲେ । ଏହାଦ୍ୱାରା ବି ଲୋକଙ୍କ ଭାବନା ଉପରେ ଆଘାତ କରାଯାଇଥିଲା । ରାଣୀ ପୁଣି ଶାସନଭାର ନେଲାକ୍ଷଣି ସର୍ବପ୍ରଥମେ 'ଗୋହତ୍ୟା' ବନ୍ଦ କରାଇଦେଲେ । କଂପାନୀ ସରକାରର ଅସନ୍ତୋଷକୁ ସେ ଖାତିର କଲେ ନାହିଁ କି ଭୟଭୀତ ହେଲେ ନାହିଁ । ସେ ନିଜ ପ୍ରଜାମାନଙ୍କର ଶ୍ରଦ୍ଧାକୁ ସମ୍ମାନ ଦେଲେ । ସେ ନିଜେ ବି ଧାର୍ମିକ ପ୍ରବୃତ୍ତିର ଥିଲେ ଓ ଶ୍ରଦ୍ଧାବାନ୍ ବି ଥିଲେ । କିନ୍ତୁ ପ୍ରଜାର ଶ୍ରଦ୍ଧାକୁ ସମ୍ମାନ ଦେବା ଗୋଟିଏ ମହତ୍ତ୍ୱପୂର୍ଣ୍ଣ କଥା । ସକାଳ ଭୋଜନ ପରେ ରାଣୀ ପ୍ରତିଦିନ ଏକହଜାର ଏକଶହ ଥର ରାମ-ନାମ କାଗଜରେ ଲେଖୁଥିଲେ ଓ ସେହି କାଗଜକୁ ପୋଖରୀରେ ମାଛମାନଙ୍କ ପାଇଁ ପକାଇ ଦେଉଥିଲେ । ଏହି କଥାର ଉଲ୍ଲେଖ ପାରସନିସ୍ ତାଙ୍କ ପୁସ୍ତକରେ କରିଛନ୍ତି । ପୁଣି ବି ଏହି ବିଷୟରେ ମନରେ ସନ୍ଦେହ ଜାତ ହୁଏ । କାରଣ ଗୋଡ଼ସେ ଭଟ୍ଟଜୀ ରାଣୀଙ୍କ ଦିନଚର୍ଯ୍ୟାର ଯେଉଁ ବିବରଣ ନିଜ ପୁସ୍ତକରେ କରିଛନ୍ତି ସେଥିରେ ଏହି ଘଟଣାଟି କୌଣସିଠାରେ ଉଲ୍ଲେଖ କରି ନାହାନ୍ତି । ଏକ ସମ୍ଭାବନା ବ୍ୟକ୍ତ କରାଯାଇପାରେ ଯେତେବେଳେ ରାଣୀ ସହରର ରାଣୀମହଲରେ କଂପାନୀ ସରକାରଙ୍କର ଆଶ୍ରିତ ହୋଇ ରହୁଥିଲେ ସେତେବେଳେ ଏମିତି ହୁଏତ କରିଥିବେ । ବିଦ୍ରୋହ ପରେ ରାଣୀ ଯେତେବେଳେ ପୁଣି ଥରେ କିଲ୍ଲାରେ ରହିବାକୁ ଆସିଲେ ସେତେବେଳେ ତାଙ୍କୁ କେଉଁଠି ଏତେ ସମୟ ମିଳୁଥିଲା ଯେ ସେ ପ୍ରତିଦିନ ଏଗାରଶହ ଥର ରାମନାମ ଲେଖୁଥିଲେ ? ଦ୍ୱିତୀୟ କଥା ହେଲା ରାଣୀ ଏମିତି ମନୋବୃତ୍ତିର ନ ଥିଲେ । ଯଦି ସେ ସେମିତି କରିଥିବେ ତ କେବଳ ନିଜ ମନ ବହଲେଇବା ପାଇଁ ବା ଧର୍ମଶାସ୍ତ୍ର ବିଷୟରେ ନିରର୍ଥକ ଦଲିଲ ଦେଲାବାଲାଙ୍କ ମୁହଁ ବନ୍ଦ କରିବାପାଇଁ । ଏହାର ଏକମାତ୍ର ଉଦ୍ଦେଶ୍ୟ ହୋଇଥିବ ଲୋକେ ଏକଥା ବି ଚର୍ଚ୍ଚା କରନ୍ତୁ ଯେ କି ଏମିତି ବିକଟ ପରିସ୍ଥିତିରେ ମଧ୍ୟ ଜଣେ ବିଧବାଠାରୁ ଅପେକ୍ଷିତ କର୍ତ୍ତବ୍ୟ ବି ସେ ପାଳନ କରିଛନ୍ତି ।

ରାଣୀ ଲକ୍ଷ୍ମୀବାଈ ଲୋକଙ୍କ ଶ୍ରଦ୍ଧାକୁ ସବୁବେଳେ ସମ୍ମାନ ଦେଇଛନ୍ତି । କିଲ୍ଲାରେ ତିନିବର୍ଷ ପର୍ଯ୍ୟନ୍ତ ଫିରିଙ୍ଗିମାନଙ୍କର ନିବାସ ଥିଲା । ସେଠାକୁ ପୁଣି ଥରେ ଆସିବା ପୂର୍ବରୁ ସେ ରାଜପ୍ରାସାଦକୁ 'ଶୁଦ୍ଧ' କରାଇନେଲେ । ଗୋଡ଼ସେ ଭଟ୍ଟ ଲେଖିଛନ୍ତି– ''କିଲ୍ଲାରେ ଯେଉଁ ଭାଗରେ ସାହେବମାନେ ଅଧିକାର କରି ରହୁଥିଲେ, ସେପଟର ସଂପୂର୍ଣ୍ଣ ଭାଗକୁ ଶୁଦ୍ଧ କରିବାକୁ ସେ ଆଦେଶ ଦେଇଥିଲେ । ଶତ୍ରୁର ବିନାଶ ହେଉ, ରାଜ୍ୟର ଉତ୍ତମ ରକ୍ଷଣାବେକ୍ଷଣ ପାଇଁ ସେ ନବୀନ ଅନୁଷ୍ଠାନମାନ କରାଇଲେ । ମହାଲକ୍ଷ୍ମୀ ମନ୍ଦିରରେ

ରୋଜ ନବ ଚଣ୍ଡୀ ଆରମ୍ଭ କରାଇଲେ । ଗୃହ ଶାନ୍ତି ପାଇଁ ଅନେକ ଜପତପ ଓ ଦାନ ବି କରାଗଲା । ଶ୍ରୀ ଗଣପତି ଦେବାଳୟରେ ପ୍ରତିଦିନ ଅଥର୍ବ ଶୀର୍ଷର ସହସ୍ର ଆବର୍ତ୍ତନ ବି କରାଗଲା ।

ଲକ୍ଷ୍ମୀବାଈ ସ୍ୱୟଂ ପୂଜା ଅର୍ଚ୍ଚନା, ଜପତପ ପ୍ରତିଦିନ କରୁଥିଲେ । ଏହାଛଡ଼ା ସବୁ ଧାର୍ମିକ, ପାରମ୍ପରିକ ପର୍ବପର୍ବାଣି, ଉତ୍ସବ, ଧାର୍ମିକ ଅନୁଷ୍ଠାନ ବି ନିୟମିତ ଆୟୋଜିତ ହେବାରେ ଲାଗିଲା । ହୋଲି ପର୍ବ ବି ଉତ୍ସାହପୂର୍ବକ ପାଳନ କରାଗଲା । କେବଳ ସ୍ତ୍ରୀଲୋକମାନଙ୍କ ପାଇଁ 'ହଳଦୀ କୁମ୍‌କୁମ୍' କାର୍ଯ୍ୟକ୍ରମ ଆୟୋଜିତ କରାଗଲା । ସେଥିରେ ଗାଁର ପ୍ରତି ବର୍ଗର ସ୍ତ୍ରୀଲୋକମାନଙ୍କୁ ନିମନ୍ତ୍ରିତ କରାଗଲା । ବିନା ଭେଦଭାବରେ ଏହା ଏକ ମହତ୍ତ୍ୱପୂର୍ଣ୍ଣ କଥା ଥିଲା ।

ଗୋଡ଼ସେଜୀ ରାଣୀ ଲକ୍ଷ୍ମୀବାଈ କିଲ୍ଲାରେ ଯାଇ ରହିଲା ପରେ କାମ୍ୟଗୃହ-ଯଜ୍ଞ ଓ ନାରୀ-ଶ୍ରାଦ୍ଧର ଘଟଣା ବର୍ଣ୍ଣନା କରିଛନ୍ତି । ସେ ଘଟଣାର ନିଜସ୍ୱ ବିଶେଷତା ଅଛି । ନିଜର ସବୁ ଇଚ୍ଛା ପୂରଣ ହେଉ । ସେଥିପାଇଁ ପୂର୍ବଜଙ୍କ ଶ୍ରାଦ୍ଧ ଆଦି ଧାର୍ମିକ କୃତ୍ୟ କରିବା ସମୟରେ କିଛି ଶାସ୍ତ୍ରୀୟ ବିବାଦ ଉପସ୍ଥିତ ହେଲା । ପରମ୍ପରାନୁସାରେ ସ୍ତ୍ରୀକୁ ଧାର୍ମିକ କାର୍ଯ୍ୟ କରିବାପାଇଁ ବେଦ ଅଧିକାର ଦେଇ ନାହିଁ । କିନ୍ତୁ ନାନ୍ଦୀ-ଶ୍ରାଦ୍ଧର ସଂକଳ୍ପ ଲକ୍ଷ୍ମୀବାଈଙ୍କ ନାମରେ କରାଗଲା । ସେଥିପାଇଁ ସେ ହିଁ ପିତୃପୁରୁଷକୁ ଶ୍ରାଦ୍ଧ ଦେବା ଉଚିତ । ଏହି ନିର୍ଣ୍ଣୟ ଗୋଡ଼ସେ ଭଟ୍ଟଜୀ ଧର୍ମଶାସ୍ତ୍ର ଆଧାରରେ ଶୁଣାଇଦେଲେ । ସେହି ଅନୁସାରେ ଲକ୍ଷ୍ମୀବାଈ ସ୍ୱୟଂ ନାନ୍ଦୀ-ଶ୍ରାଦ୍ଧ କଲେ । ଏହା ଏକ ଅଭାବନୀୟ ଘଟଣା ଥିଲା । ବେଦାଧିକାର ନ ଥିଲେ ବି ତର୍କଶାସ୍ତ୍ର ଆଧାରରେ ତାଙ୍କୁ ସୁଯୋଗ ମିଳିଲାକ୍ଷଣି ହିଁ ସେ ତା'ର ସୁଯୋଗ ନେଲେ । ଧାର୍ମିକ ପରମ୍ପରା, ଶ୍ରଦ୍ଧା ଓ ବିଚାରର ଅନାଦର ନ କରି, ଯେଉଁଠି ଟିକିଏ ଫାଙ୍କ ଦେଖାଯାଇଛି, ସେ ସେଠାରେ ତାଙ୍କ ଅଧିକାର ସାବ୍ୟସ୍ତ କରିବାରେ କୋଉଠି ଭୁଲ୍ କରି ନାହାନ୍ତି । ଏହା ତାଙ୍କର ନୀତି ଥିଲା । ଗୋଡ଼ସେ ଭଟ୍ଟଙ୍କ ସାହାରା ମିଳିଲା କ୍ଷଣି ସେ ତା'ର ସୁଯୋଗ ନେଲେ । ନାନ୍ଦୀ-ଶ୍ରାଦ୍ଧ କରିବାରୁ ଓହରିଲେ ନାହିଁ ।

## କେଶ ମୁଣ୍ଡନର ସମସ୍ୟା

ରାଣୀ ଲକ୍ଷ୍ମୀବାଈ ନିଜର ବାଳକାଟି ପକାଇ ଲଣ୍ଡା ହୋଇ ନ ଥିଲେ । ଏହା ଯେତେ ବିଶେଷକଥା ଥିଲା, ସେତିକି ସମସ୍ୟାବହୁଳ ମଧ୍ୟ । ସେତେବେଳେ ଏମିତି ଯୁଗ ଥିଲା । ଯେତେବେଳେ ପତିର ମୃତ୍ୟୁ ପରେ ବ୍ରାହ୍ମଣ ବିଧବା ସାମ୍ନାରେ ଦୁଇଟି ମାତ୍ର ବିକଳ୍ପ ଥିଲା । ଗୋଟିଏ ହେଲା ପତି ସହ ସତୀ ହୋଇଯିବା ନ ହେଲେ ପତିର ମୃତ୍ୟୁର ଦଶଦିନ ଭିତରେ କେଶ କାଟି ଦେଇ ଲଣ୍ଡା ହୋଇଯିବା । ଏହି ପ୍ରଥାରୁ ଖସିଯିବା ବଡ଼ ମୁସ୍କିଲ ଥିଲା । 'ସୋବଳେ ଘେଣେ' ଏହାର ଅର୍ଥ ଏଇଆ ଥିଲା ଯେ ଆଜୀବନ ନିଜ କେଶକୁ ବାରମ୍ବାର ମୁଣ୍ଡନ କରାଇବା । ମୋଟା ଖଦଡ଼ା, ମଇଳା ଲାଲ ରଙ୍ଗର ଶାଢ଼ୀ ପିନ୍ଧିବା ।

ଶରୀରରେ କୌଣସି ଆଭୂଷଣ ଧାରଣ ନ କରିବା, ଅନ୍ନ ଗ୍ରହଣ କରିବା ସମୟରେ ଅସଂଖ୍ୟ ଓ ଅସହନୀୟ କଟକଣା ପାଳନ କରିବା, ବ୍ରତ କରି ଶରୀରକୁ ଜର୍ଜର କରିବା, କୌଣସି ପ୍ରକାରର ଆଶା ଆକାଂକ୍ଷା ମନରେ ନ ରଖି ଅତ୍ୟନ୍ତ କଠୋର ନିୟମମାନ ପାଳନ କରି ଲୋକମାନଙ୍କ ଛାଇଠାରୁ ବି ଦୂରରେ ରହିବା ଆଦି ନିୟମ ଥିଲା । ଏତେ ସବୁ କଲା ପରେ ବି ବିଧବା ସ୍ତ୍ରୀ ଉପରେ ଲାଗୁ ହେଉଥିବା ନିୟମସବୁ ସଂପୂର୍ଣ୍ଣ ହୋଇ ପାରୁ ନ ଥିଲା । ଏସବୁ କରିବାର ପ୍ରକୃତ ଅର୍ଥ ଏହା ଥିଲା ଯେ ବିଧବା ସ୍ତ୍ରୀକୁ ନିଜ କେଶମୁଣ୍ଡନ କରି 'ଶୁଦ୍ଧି' ହୋଇଗଲା ପରେ ବି ଦୈନନ୍ଦିନ ସାମାନ୍ୟ ଜୀବନରୁ ତାକୁ ବହିଷ୍କୃତ କରାଯାଉଥିଲା । ତା' ମୁହଁ ଚାହିଁବା ମନା ଥିଲା । ତାକୁ ଅମଙ୍ଗଳର କାରଣ ବୋଲି ମନେ କରାଯାଉଥିଲା । ଏମିତି ଏକ ଭୟଙ୍କର ଜୀବନ ବଞ୍ଚିବାକୁ ବ୍ରାହ୍ମଣଘରର ବିଧବାଙ୍କୁ ବାଧ କରାଯାଉଥିଲା । ତତ୍କାଳୀନ ସମାଜରେ ତାକୁ ପରମ୍ପରା ବୋଲି କୁହାଯାଉଥିଲା । ସେଭଳି ଦୟନୀୟ ଜୀବନରୁ ମୁକ୍ତି ମିଳିବା ଅସମ୍ଭବ ଥିଲା । ଅଳ୍ପ ଟିକିଏ ଦୟା କରାଯାଉଥିଲା । ଟିକିଏ ଛାଡ଼ ମିଳୁଥିଲା ଯଦି ପତିର ମୃତ୍ୟୁ ସମୟ ବେଳକୁ ପତ୍ନୀର ବୟସ ୧୦ ବର୍ଷରୁ ବି କମ୍ ଥିଲା । ସେ ଯଦି ସେତେବେଳେ ଗର୍ଭବତୀ ଥିବ ବା ତା କୋଳରେ ଛୋଟ ଶିଶୁ ଥିବ ଏହି ତିନୋଟି ଅବସ୍ଥା ବିତିଯିବା ପରେ ତାକୁ କେଶ ମୁଣ୍ଡନ କରିବାକୁ ପଡୁଥିଲା । ଏହା ଏକ ଅତିରିକ୍ତ ନିୟମ ଥିଲା । ବିଧବା ରାଜପରିବାରର ହେଲେ ମଧ ତାକୁ ମଧ କେଶ ମୁଣ୍ଡନ କରିବାକୁ ପଡୁଥିଲା । କେବଳ ତାକୁ କମ୍ ଶାରୀରିକ କଷ୍ଟ ଭୋଗ କରିବାକୁ ପଡୁଥିଲା । ସ୍ୱୟଂ ପେଶୱା ପରିବାରର ସ୍ତ୍ରୀଲୋକମାନଙ୍କୁ ମଧ ସମାଜର ଏହି କଠିନ ନିୟମ ମାନିବାକୁ ପଡୁଥିଲା । କିନ୍ତୁ ରାଣୀ ଲକ୍ଷ୍ମୀବାଈ ଏସବୁ କିଛି ପାଳନ କରି ନ ଥିଲେ । ଗଙ୍ଗାଧର ରାଓଙ୍କ ମୃତ୍ୟୁ ପରେ ପରେ ରେସିଡେଣ୍ଟ ଭଣ୍ଡାରକୁ ତୁରନ୍ତ ତାଲା ଲଗାଇ ଦେଇଥିଲେ । ଝାନ୍ସୀର ଅଧିକାର ନିଜ ହାତକୁ ନେବାକୁ ପ୍ରକ୍ରିୟା ଆରମ୍ଭ କରି ଦେଇଥିଲେ । ପୋଷ୍ୟପୁତ୍ରକୁ ମାନ୍ୟତା ମିଳିବ କି ନାହିଁ ଏସବୁର ଚିନ୍ତା ଲକ୍ଷ୍ମୀବାଈ ଓ ଦରବାରୀମାନଙ୍କୁ ଘାରିଥିଲା । କିଛି ଦିନ ପରେ ରାଜ୍ୟକୁ ଅଧିକୃତ କରି ନିଆଗଲା । ଏହି ସଂପର୍କରେ ରାଣୀ ପତ୍ରାଚାର ଆରମ୍ଭ କରି ଦେଇଥିଲେ । ତେବେବି କିଲ୍ଲାର ରାଜମହଲ ଛାଡ଼ି, ସହରର ରାଜମହଲରେ ଆସି ରହିବାକୁ ପଡ଼ିଲା । ସେହି ରାଜମହଲର ଛାତ ଉପରୁ, ଝରକାରୁ କିଲ୍ଲାର ମଜଭୁତ୍ ଗମ୍ବୁଜ ଓ ପାଚେରି ଅତି ନିକଟରୁ ନିରନ୍ତର ଦେଖାଯାଉଥିଲା । ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ଦୃଶ୍ୟ ବି ବହୁତ ସୁନ୍ଦର ଦେଖାଯାଉଥିଲା । ଏମିତି ଲାଗୁଥିଲା ଯେମିତିକି କିଲ୍ଲା ସୁନେଲି ଖରାରେ ଗାଧୋଇସାରି ବାହାରକୁ ଆସିଛି । ଗୋଟିଏ ସମୟରେ ରାଣୀ ସେଠି ରହୁଥିଲେ । ଏବେ ଫିରିଙ୍ଗି ରହୁଛନ୍ତି । କେତେ ଲୋକଙ୍କୁ ଆଶ୍ରୟ ଦେଲାବାଲୀ ରାଣୀ ଏବେ ନିଜେ ପରାଧୀନ, ନାଚାର ହୋଇ ଜୀବନ ଜୀଇଁବାକୁ ବାଧ ହୋଇଥିଲେ ।

ଏସବୁ ସତ୍ତ୍ୱେ ବି ତାଙ୍କ ମନରେ ଗୋଟିଏ ଆଶା ବଞ୍ଚି ରହିଥିଲା । ଦିନେ ନା ଦିନେ କଂପାନୀ ସରକାର ତାଙ୍କର ପୋଷ୍ୟପୁତ୍ର ଅଧିକାରକୁ ନିଶ୍ଚିତରୂପେ ମାନିନେବେ ।

ସମୟ ସମୟରେ ଘଟିତ ହେଉଥିବା ଘଟଣା ପ୍ରତି ଧ୍ୟାନ ରଖି, ନିଜର କର୍ତ୍ତବ୍ୟ-ବୁଦ୍ଧି, ନିଜର ବିବେକବୁଦ୍ଧି ପ୍ରତି ସେ ଜାଗରୂକ ଥିଲେ । ଇଂରେଜଙ୍କ ଅଧିକାର ରଦ୍ଦ ହେଲା ପରେ ପୋଷ୍ୟପୁତ୍ର ଦାମୋଦର ରାଓ ସାବାଳକ ହେବା ପର୍ଯ୍ୟନ୍ତ ଲକ୍ଷ୍ମୀବାଈ ଝାନ୍ସୀର ଶାସକ ହୋଇ ରହିବାକୁ ଚାହୁଁଥିଲେ । ଦାମୋଦର ରାଓଙ୍କୁ ସାବାଳକ ହେବାପାଇଁ ଆହୁରି ୧୦-୧୨ ବର୍ଷ ବାକି ଥିଲା । ଲକ୍ଷ୍ମୀବାଈ ଗୋଟିଏ ବିଧବା ରୂପରେ ସନ୍ୟାସିନୀ ହୋଇ ନିଜର ପ୍ରଜାର ସାମନା କରିବାକୁ ଚାହୁଁ ନ ଥିଲେ । ସେ ନିଜର କେଶ ମୁଣ୍ଡନ କରି, ଅମଙ୍ଗଳୀ ବୋଲାଇ ଶାସକ ହେବାପାଇଁ ଚାହୁଁ ନ ଥିଲେ । ପ୍ରଜା ମଧ୍ୟ ଏମିତି ବେଶଭୂଷାରେ ନିଜ ରାଣୀଙ୍କୁ ଦେଖିବାକୁ ଚାହୁଁ ନ ଥିଲେ ।

କୌଣସି ବି ସ୍ତ୍ରୀଲୋକ, ସେ ବୟସରେ ବଡ଼ ହେଉ ବା ଛୋଟ ହେଉ, ସେ କେତେ ପତିନିଷ୍ଠ ହେଉ ତେବେବି ବିଧବା ହେବା କାରଣରୁ କେଶ ମୁଣ୍ଡନ କରେଇବା ଓ ତା ସହ କଷ୍ଟପ୍ରଦ, ଅପମାନଜନକ ଜୀବନ ବଞ୍ଚିବାକୁ କେବେବି ପ୍ରସ୍ତୁତ ହୁଏ ନାହିଁ, ଏହା ମନୁଷ୍ୟର ଏକ ସ୍ୱଭାବ । ରାଣୀ ଲକ୍ଷ୍ମୀବାଈ ବ୍ୟତିକ୍ରମ କେମିତି ହେବେ ? ପିଲାଦିନର ଛବିଲୀ ଭରାଯୌବନରେ ଉପସ୍ଥିତ ହୋଇଗଲା ଓ ବିଧବା ତଥା ସନ୍ୟାସିନୀ ବନିବା ତା ଭାଗ୍ୟରେ ଲେଖା ହୋଇଥିଲା ।

କିନ୍ତୁ ଝାନ୍ସୀର ଶାସକ ହେବା ହିଁ ତା'ର ଉତ୍କୃଷ୍ଟ ଅଭିଳାଷ ଥିଲା । ସେଥିପାଇଁ ସେ ପ୍ରଯତ୍ନଶୀଳ ଥିଲା । ଏମିତି ସମୟରେ ନିଜକୁ ଶକ୍ତିଶାଳୀ କରିବା ଆବଶ୍ୟକ ଥିଲା । ନିଜ ଶରୀରର ଗଠନକୁ, ଶକ୍ତିକୁ ବଞ୍ଚାଇ ରଖିବାକୁ ସୌଖୀନ ଯୁବତୀ ଲକ୍ଷ୍ମୀବାଈଙ୍କର ସନ୍ୟାସିନୀ ରୂପ ଧାରଣ କରିବାର ନ ଥିଲା । ଅସୁନ୍ଦର ହେବାର ନ ଥିଲା, ରାଜଗାଦିକୁ ଅପବିତ୍ର କରିବାର ନ ଥିଲା ।

୧୩ ସେପ୍ଟେମ୍ବର ୧୮୮୪ରେ ସାଗର ପ୍ରାନ୍ତର ଲେଫ୍ଟନାଣ୍ଟ ଗଭର୍ଣ୍ଣର ଜେନେରାଲଙ୍କ ଏଜେଣ୍ଟ ଇର୍କସନ ବାୟବ୍ୟ ପ୍ରାନ୍ତର ସେକ୍ରେଟାରୀ (ଝାନ୍ସୀ ଏବେ ଏହାର ଅଧୀନକୁ ଆସି ଯାଇଥିଲା) ମାୟରଲଙ୍କୁ ଲେଖିଥିବା ପତ୍ରର ଅନ୍ୟ ବୃତ୍ତାନ୍ତ ସହିତ ଗୋଟିଏ ବିଶେଷ କଥା ବି ଲେଖିଥିଲେ । ଇର୍କସନ କହିଲେ କି ରାଣୀଙ୍କୁ ଦେଖା କରିବାକୁ ଯାଇଥିବା ଲେଫ୍ଟନାଣ୍ଟ ଗଭର୍ଣ୍ଣର ଓ ଅନ୍ୟ ଇଂରେଜ ଅଧିକାରୀଙ୍କ ସହ ରାଣୀ ଶିଷ୍ଟତାପୂର୍ଣ୍ଣ ବ୍ୟବହାର କରିଥିଲେ । ତାଙ୍କର ଆଦର ସତ୍କାର କରିଥିଲେ । ତାଙ୍କର ଏବେବି ଏହି ଆଶା ଥିଲା ଯେ କଂପାନୀ ସରକାର ତାଙ୍କର ପୋଷ୍ୟପୁତ୍ର ଗ୍ରହଣ ଅଧିକାରକୁ ମାନିନେବେ ଓ ଅଧିକୃତ ହୋଇଥିବା ରାଜ୍ୟ ଫେରାଇଦେବେ । ତା' ସହ ତାଙ୍କ ମନ ଏହା ବି କହୁଥିଲା ଯେ ଯେଉଁ ପରିସ୍ଥିତିରେ ସେ ଅଛନ୍ତି ସୁଖୀ ଅଛନ୍ତି । ହାତରେ ସମାଧାନ ଅଛି । କିନ୍ତୁ ତାଙ୍କ ଆଖପାଖର ଲୋକଙ୍କୁ ହିଁ ତାଙ୍କ ଅଧିକାର ସମ୍ବନ୍ଧରେ ଅଧିକ ଚିନ୍ତା, ଅଧିକ ଆସ୍ଥା ଥିବା ପରି ମନେ ହେଉଥିଲା । କିନ୍ତୁ ମହତ୍ତ୍ୱପୂର୍ଣ୍ଣ କଥା ହେଲା ଯେ ରାଣୀ ବନାରସ ଯିବାର ପ୍ରସ୍ତାବ ଦେଉଛନ୍ତି । ଇର୍କସନ କହିଲେ "ଝାନ୍ସୀ ସବୁଦିନ ପାଇଁ ଛାଡ଼ିଦେଇ ଯିବା ତାଙ୍କ ମନରେ କଳ୍ପନା

ଥିବ, ଏମିତି ମତେ ଲାଗୁ ନାହିଁ ।'' ଅତି ବେଶିରେ ସେ ବନାରସ ଯାଇ ପୁଣି ଫେରିଆସିବେ । ବନାରସ ଗଲେ ତାଙ୍କର ନିଜର ମହତ୍ତ୍ୱ କମିଯିବ, ଏକଥା ରାଣୀ ନିଶ୍ଚୟ କଳ୍ପନା କରିଥିବେ । ଏହାଛଡ଼ା ବନାରସ ଯିବାର ଅର୍ଥ ଏହା ବି ହେବ ଯେ ସେ ଅଧିକାର ଫେରି ପାଇବାର ଚିନ୍ତା ପାଣିରେ ପକେଇ ଦେଇଛନ୍ତି । କିନ୍ତୁ ସେ ଏବେବି ଆଶାନ୍ୱିତ ଥିଲେ । ସ୍ୱର୍ଗବାସୀ ରାଜାଙ୍କ ଆଶ୍ରିତ ଦରବାରୀ ଲୋକମାନେ ଏହି ଆଶାର କିରଣ ଏବେବି ଜାଗ୍ରତ ରଖିଛନ୍ତି କାରଣ ଯେତେବେଳଯାଏ ଆଶା ଅଛି ସେତେବେଳଯାଏ ରାଣୀ ସେହି ଲୋକଙ୍କର ଖବର ବୁଝାଶୁଝା କରୁଥିବେ ।'' (ଝାନ୍ସୀ କି ରାଣୀ, ସୁମନ ତାମ୍ବେ-୪୬)

ଇର୍କସନଙ୍କ ଏହି ପତ୍ରରୁ ଗୋଟିଏ କଥା ସ୍ପଷ୍ଟ ହୋଇଯାଏ ଯେ ରାଣୀ କଂପାନୀ ସରକାରଙ୍କୁ ବନାରସ ଯାଇ ରହିବାକୁ ଅନୁମତି ମାଗିଥିବେ । କାରଣ ଝାନ୍ସୀ ଛାଡ଼ି ଅନ୍ୟତ୍ର ଯିବାପାଇଁ ହେଲେ ତାଙ୍କ ପାଇଁ ଏକ ସର୍ତ୍ତ ରଖାଯାଇଥିଲା । ନିଜ ମନରେ ପୁଣି ଥରେ ରାଜ୍ୟସତ୍ତା ପାଇବା ପାଇଁ ନିରନ୍ତର ଆଶା ରଖିଲାବାଲୀ, ସେହି ହିସାବରେ ବରାବର ପ୍ରଯତ୍ନ କଲାବାଲୀ ରାଣୀ ବନାରସ ଯାଇ ରହିବା ପାଇଁ ଅଥବା ଯାଇ ପୁଣି ଫେରିବାପାଇଁ ଅନୁମତି କାହିଁକି ମାଗୁଥିଲେ ? ସେ ବନାରସ ଯିବାକୁ କାହିଁକି ଚାହୁଁଥିଲେ ? ଧାର୍ମିକ ଶ୍ରଦ୍ଧା କାରଣରୁ ବା ଧାର୍ମିକ କାର୍ଯ୍ୟ ସଂପୂର୍ଣ୍ଣ କରିବାପାଇଁ ? ଯେଉଁ ଧାର୍ମିକ କାର୍ଯ୍ୟ କରିବା ବାକି ଥିଲା ତା'ର ପ୍ରାୟଶ୍ଚିତ୍ତ କରିବାପାଇଁ ବନାରସ ଯିବାକୁ ପଡୁଥିଲା । ସେ ଏହାବି ଜାଣିଥିଲେ ଯେ ତାଙ୍କୁ ଅନୁମତି ମିଳିବ ନାହିଁ । କାରଣ କଂପାନୀ ସରକାର ଚାହୁଁ ନ ଥିଲେ ରାଣୀ ଅସନ୍ତୁଷ୍ଟ ରାଜା-ମହାରାଜାଙ୍କ ସହ କୌଣସି ପ୍ରକାର ସଂପର୍କ ରଖନ୍ତୁ । ସେଥିପାଇଁ ଅନୁମତି ନ ଦିଆଯାଉ ବୋଲି ସୁପାରିସ କରି ଇର୍କସନ କହିଛନ୍ତି- ''ରାଣୀ ସ୍ୱୟଂ ନିଜର ପେନ୍‌ସନ୍ ଝାନ୍ସୀର ଲୋକମାନଙ୍କ ପାଇଁ ଖର୍ଚ୍ଚ କରୁଛନ୍ତି । ଯଦି ସେ ବନାରସ ଚାଲିଯିବେ ଓ ସେ ଖର୍ଚ୍ଚ ବନ୍ଦ ହୋଇଯିବ ଓ୍ ଏହି ବୋଝ କଂପାନୀ ସରକାର ଉପରେ ପଡ଼ିବ । ଝାନ୍ସୀବାସୀଙ୍କ କ୍ରୋଧର ସାମ୍ନାବି ସରକାରଙ୍କୁ କରିବାକୁ ପଡ଼ିବ ।'' ସେଥିପାଇଁ ସରକାର ଖାଲିଟାରେ ଏହି ବିପଦକୁ କିଣିବାକୁ ଚାହୁଁ ନ ଥିଲେ ।

ଗଙ୍ଗାଧର ରାଓଙ୍କ ମୃତ୍ୟୁ ପରେ ଯେଉଁ ବିଶିଷ୍ଟ ପରିସ୍ଥିତିରେ କେଶ ମୁଣ୍ଡନ କାମ ରହିଯାଇଥିଲା, ଅଥବା ଏମିତି ବି କହିପାରିବା ଯେ ଲକ୍ଷ୍ମୀବାଈ କେଶ ମୁଣ୍ଡନ କରି ନ ଥିଲେ । ଲୋକଙ୍କ ଶ୍ରଦ୍ଧା ଅନୁସାରେ ଲକ୍ଷ୍ମୀବାଈ ଏମିତି କରି ପାପ କରିଥିଲେ । ଲକ୍ଷ୍ମୀବାଈଙ୍କ ପୂର୍ବ ସଂସ୍କାର କାରଣରୁ ତାଙ୍କୁ ବି ଏହା ପାପ ଭଳି ଲାଗିଥିବ । ସେଥିପାଇଁ ସେହି ପାପର ପ୍ରକ୍ଷାଳନ ପାଇଁ ସେ ପ୍ରତିଦିନ କୃଚ୍ଛ୍ର ପ୍ରାୟଶ୍ଚିତ୍ତ କରୁଥିଲେ । ବ୍ରାହ୍ମଣମାନଙ୍କୁ ପ୍ରତିଦିନ ତିନୋଟି ଚାନ୍ଦିର ଟଙ୍କା ଦାନସ୍ୱରୂପ ଦେଉଥିଲେ । ଖାଇବା-ପିଇବା ବନ୍ଧନକୁ ପରାକାଷ୍ଠା ପୂର୍ବକ ପାଳନ କରୁଥିଲେ । ସପ୍ତାହରେ ତିନିଦିନ କେବଳ ପାନୀୟ ଗ୍ରହଣ କରୁଥିଲେ । ଉଦାହରଣସ୍ୱରୂପ ଗୋଟିଏ ଦିନ କେବଳ ପାଣି, ଗୋଟିଏ ଦିନ କେବଳ ସରବତ୍ ଓ ଗୋଟିଏ ଦିନ କେବଳ କ୍ଷୀର ପିଇ ରହୁଥିଲେ । ଗୋଟିଏ ଦିନ ସେ ପୂରା ଉପବାସ

ରହୁଥିଲେ । ଯେଉଁଦିନ ସେ ଅନ୍ନ ଗ୍ରହଣ କରୁଥିଲେ ସେଦିନ ଖାଇବା ପିଇବା ଉପରେ ଅସଂଖ୍ୟ ବନ୍ଧନ ରଖିଥିଲେ । ଏତେ ସବୁ କରିବା ସତ୍ତ୍ୱେ, ନିଜର ସବୁ ପାପ-ପୁଣ୍ୟର ହିସାବ କିତାବ ରଖିବା ସତ୍ତ୍ୱେ ତାଙ୍କ ମନରେ କାଶୀ, ବନାରସ ଯାଇ ଧାର୍ମିକ କାମ କରିବାକୁ, ପ୍ରାୟଶ୍ଚିତ୍ତ କରିବାକୁ ଇଚ୍ଛା ପୁଣି ବି ବାକି ରହିଯାଇଥିଲା । ମନରେ ଏମିତି ବି ବିଚାର ଆସେ କି କେଶ ମୁଣ୍ଡନ କରାଇବା ରହିଯାଇଥିଲା । ସେଥିପାଇଁ କାଶୀ ଯାଇ ଧର୍ମଶାସ୍ତ୍ର ଅନୁସାରେ ପ୍ରାୟଶ୍ଚିତ୍ତ କରି ରାଣୀ ନିଜର ଧର୍ମ ପାଳନ କରିବାକୁ ଚାହୁଁଥିବେ । ନ ହେଲେ ସେହି ଲୋକମାନଙ୍କ ଆଗରେ ନିଜର ଏଇ ଇଚ୍ଛାକୁ ପ୍ରକଟ କରି ସେହି ଲୋକଙ୍କୁ ଜଣାଇବାକୁ ଚାହୁଁଥିବେ ଯେଉଁମାନେ ଖୋଲାଖୋଲି ନ ହେଲେ ବି ଫୁସ୍‌ଫାସ୍ ହୋଇ ବିରୋଧ କରୁଥିଲେ । କିନ୍ତୁ ସେ କଂପାନୀ ସରକାର ଅନୁମତି ଦେବେ ନାହିଁ ଜାଣି ବି, ଅନୁମତି ପାଇଁ ଆବେଦନ କରିଥିଲେ । ପରେ ଏହି ବିଷୟରେ ରାଣୀ କୌଣସି ଚର୍ଚ୍ଚା କରି ନ ଥିଲେ । ଏହା ବି ଏକ ବିଚାରଯୋଗ୍ୟ କଥା । କାଶୀ ଯାଇପାରିଲେ ନାହିଁ । ସେଥିପାଇଁ କେଶ ମୁଣ୍ଡନ ବି କରାଇପାରିଲେ ନାହିଁ । ଏହି ସଂଦେଶ ସେ ଲୋକମାନଙ୍କ ପାଖରେ ପହଞ୍ଚାଇବାକୁ ଚାହୁଁଥିଲେ । କେଶ ମୁଣ୍ଡନ ନ କରିବାର ନିଷ୍ପତ୍ତି ସେ ପ୍ରଥମରୁ କରିସାରିଥିଲେ । ଧରାଯାଉ କେହି ଏହି କଥା ପାଇଁ ତାଙ୍କର ନିନ୍ଦା କରିଥିବ ତ ତାହାରି ଜବାବ ଦେବାକୁ ହୁଏତ ଏମିତି ଇଚ୍ଛା ପ୍ରକଟ କରିଥିବେ ? ଏମିତି ଶଙ୍କା ବି ମନ ଭିତରେ ଦେଖାଦିଏ, ଗୋଡ୍‌ସେ ଭଟ୍ଟଜୀ ଏହାର ଉଲ୍ଲେଖ ଏହି ଶବ୍ଦରେ ବର୍ଣ୍ଣନା କରିଛନ୍ତି ଯେ "ଲକ୍ଷ୍ମୀବାଈ ରାଣୀ କେଶ ମୁଣ୍ଡନ ପାଇଁ ତୀର୍ଥସ୍ଥାନ ପ୍ରୟାଗ ଯିବାପାଇଁ ସାହେବଙ୍କୁ ପଚାରିଥିଲେ, କିନ୍ତୁ ତାଙ୍କ ଅନୁମତି ବିନା ଯିବା ସମ୍ଭବ ନ ଥିଲା ।" (ମାଝାପ୍ରବାସ, ପୃଷ୍ଠା ୬୦) ଏହାର ଅର୍ଥ ସ୍ପଷ୍ଟ ଥିଲା ଯେ କେଶ ମୁଣ୍ଡନ ଟାଳିବାକୁ ତୀର୍ଥସ୍ଥାନ ଯିବାର ବାହାନା ବନେଇ ସେ ଏହାର ସମାଧାନ କରିଥିଲେ । କାରଣ ଝାନ୍‌ସୀରେ ଏହି ବିଷୟକୁ ନେଇ ବହୁତ ଚର୍ଚ୍ଚା ହୋଇଥିବ, ଗୋଡ୍‌ସେଜୀଙ୍କ କଥାରୁ ଏହା ପ୍ରମାଣିତ ହେଉଛି । କାଶୀ ଯାଇ ସନ୍ନ୍ୟାସିନୀ ସାଜି ରହିବା ପାଇଁ ରାଣୀଙ୍କର ନା ଇଚ୍ଛା ଥିଲା ନା ସେ ବିଷୟରେ ସେ କେବେ ଭାବିଥିଲେ । ସେ ତ ରାଜ୍ୟଶାସକ ହେବାକୁ ଚାହୁଁଥିଲେ । ଏସବୁ ପ୍ରତିଷ୍ଠା ସେ କେବଳ ଇଂରେଜମାନଙ୍କ ଅଧିକାର ହଟେଇବାକୁ କରୁଥିଲେ । ସେଥିପାଇଁ ରାଣୀଙ୍କର ବୁଦ୍ଧିମତ୍ତାପୂର୍ଣ୍ଣ ଏହି ଚତୁରତାକୁ ପ୍ରଶଂସା ନ କରି ରହିହେବ ନାହିଁ । ସେ ଅତ୍ୟନ୍ତ ଧାର୍ମିକ ପ୍ରବୃତ୍ତିର ଥିଲେ । ଶ୍ରଦ୍ଧା ଓ ଭକ୍ତିରେ ବିଶ୍ୱାସ କରୁଥିଲେ । ସବୁ ଧାର୍ମିକ କାମ ଠିକ୍ ଭାବରେ ସଂପୂର୍ଣ୍ଣ କରୁଥିଲେ । ଏହା ସତ୍ତ୍ୱେ ନିଜ ଉଦ୍ଦେଶ୍ୟ ପୂର୍ତ୍ତି ପାଇଁ ସେ ଧାର୍ମିକ ରୂଢ଼ି, ରୀତି, ନୀତି, ଶ୍ରଦ୍ଧାକୁ ବାଧକ ହେବାକୁ ଦେଲେ ନାହିଁ ।

ପୁଣି ବି ମନରେ ଏହି କଥା ଉଠେ ଯେ ସେହି ସମୟକୁ ଧ୍ୟାନରେ ରଖି ରାଣୀ ଲକ୍ଷ୍ମୀବାଈ କେଶମୁଣ୍ଡନ ନ କରିବା କଥା ଝାନ୍‌ସୀର ବ୍ରାହ୍ମଣମାନେ କିପରି ସହ୍ୟ କଲେ ? ରୋଜ ତିନିଜଣ ବ୍ରାହ୍ମଣଙ୍କୁ ଗୋଟିଏ ଗୋଟିଏ ଟଙ୍କା ଦାନସ୍ୱରୂପ ମିଳୁଥିଲା । ତଥାପି

ସମାଜ ତାଙ୍କୁ କେମିତି ବରଦାସ୍ତ କଲା ? ପେଶୱା ଘରର ସ୍ତ୍ରୀଲୋକଙ୍କଦ୍ୱାରା ଯାହା ହୋଇପାରିଲା ନାହିଁ ତାହା ଲକ୍ଷ୍ମୀବାଈ କେମିତି ଟାଳିପାରିଲେ ?

ମୁଁ ଯେତେବେଳେ ଝାନ୍‌ସୀ ଯାଇଥିଲି ସେତେବେଳେ ମୁଁ ଏହି ପ୍ରଶ୍ନ ସେଠାକାର ନିବାସୀମାନଙ୍କୁ ପଚାରି ମଧ ଥିଲି । ମୁଁ ସେମାନଙ୍କୁ କହିଲି–"ଆପଣମାନେ ରାଣୀ ଲକ୍ଷ୍ମୀବାଈ ସଂପର୍କରେ ଅନେକ ଜନଶ୍ରୁତି ମତେ ଶୁଣାଇଲେ । କିନ୍ତୁ ସେ କେଶ ମୁଣ୍ଡନ କଲେ ନାହିଁ । ଏହି କଥାକୁ କ'ଣ ଜନତା ବିରୋଧ କଲେ ନାହିଁ ? ସକେଶା ବିଧବା ରୂପରେ କ'ଣ ତାଙ୍କୁ ଅମଙ୍ଗଳୀ ବୋଲି ଭାବୁ ନ ଥିଲେ ? ଏହି ସମ୍ବନ୍ଧରେ କୌଣସି ଜନଶ୍ରୁତି ନାହିଁ କି ?" ସେ କଥାରେ ଶ୍ରୀ ଜାନକୀଶରଣ ଶର୍ମା ତୁରନ୍ତ ଜବାବ ଦେଲେ । "କାହାର ସାହସ ନ ଥିଲା, ବାଈସାହେବାଙ୍କ ବିରୋଧରେ ପଦଟିଏ ବି କହିବାକୁ ? ଲୋକେ ତାଙ୍କୁ କ'ଣ ଏତେ ଡରୁଥିଲେ ?" ମୁଁ ତାଙ୍କୁ ପଚାରିଲି, "ଡରୁ ନ ଥିଲେ, ତାଙ୍କୁ ଅସୀମ ପ୍ରେମ କରୁଥିଲେ । ତାଙ୍କୁ ଆଦର କରୁଥିଲେ । ବାଈସାହେବା ଯାହା ବି କରିବେ ଉଚିତ ହୋଇଥିବ । ସେ କେବେ କୌଣସି ଭୁଲ୍ କାମ କରିବେ ନାହିଁ; ଏମିତି ଝାନ୍‌ସୀବାସୀଙ୍କର ବିଶ୍ୱାସ ଥିଲା । ସଦାଶିବ ରାଓ ନଥେଖାନ୍‌କୁ ସଂପୂର୍ଣ୍ଣ ପରାଜିତ କରିବା ପରେ ଝାନ୍‌ସୀ ଆଖପାଖର ବିଦ୍ରୋହୀ ଦଳ ଓ ଝାନ୍‌ସୀ ସହରର ସବୁ ବର୍ଗର ଲୋକଙ୍କର ରାଣୀଙ୍କ ପ୍ରତି ପୂର୍ଣ୍ଣ ସମର୍ଥନ ଥିଲା । ବାଈସାହେବା ଯଦି ମାଟି ବି ଛୁଇଁ ଦେଉଥିଲେ ତ ତାହା ସୁନା ହୋଇଯାଉଥିଲା । ଯଦି ସେ କାଠଖଣ୍ଡକୁ ବି ସ୍ପର୍ଶ କରି ଦେଉଥିଲେ ତ ତାହା ଲୁହା ହୋଇଯାଉଥିଲା । ଲୋକେ ତାଙ୍କ ବିଷୟରେ ଏଇଭଳି କଥାବାର୍ତ୍ତା କରୁଥିଲେ । ଏତେ ଶ୍ରଦ୍ଧା ଥିଲା ସମସ୍ତଙ୍କ ମନରେ ବାଈସାହେବଙ୍କ ପ୍ରତି । ଏମିତି ସ୍ଥିତିରେ କେଶମୁଣ୍ଡନ କଥା କିଏ କହିବ ?" ଜାନକୀଶରଣ ମତେ ଏହି କଥା ବତାଇଲେ ।

ରାଣୀ ଲକ୍ଷ୍ମୀବାଈଙ୍କର କେଶ ମୁଣ୍ଡନ ନ କରିବା ଓ ପୁରୁଷ ପୋଷାକ ଧାରଣ କରିବା ଏଇ ଦୁଇଟିଯାକ କଥା ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱଭଳି ଥିଲା । ଝାନ୍‌ସୀରେ ରହୁଥିବା ପ୍ରତ୍ୟେକ ବ୍ୟକ୍ତିକୁ ଲକ୍ଷ୍ମୀବାଈ ସବୁ ଦିଗରୁ ଆଦର୍ଶ ବ୍ୟକ୍ତି ବୋଲି ମନେ ହେଉଥିଲେ । ପ୍ରତ୍ୟେକଙ୍କ ମନରେ ଲକ୍ଷ୍ମୀବାଈ ରୂପରେ ସେ ସ୍ୱତନ୍ତ୍ରତାର, ସ୍ୱାଭିମାନର ଜୀବନ୍ତ ପ୍ରତିମା ଭାବରେ ଶୋଭା ପାଉଥିଲେ ।

ରାଣୀ ଲକ୍ଷ୍ମୀବାଈଙ୍କର ଦିନଚର୍ଯ୍ୟା, ନିଜର ଶାରୀରିକ ସଉକ ସତ୍ତ୍ୱେ ବି ସାଧାସିଧା ଜୀବନ ବିତେଇବା, ରାଜକୀୟ ଥାଟବାଟରେ ଦେବଦର୍ଶନକୁ ଯିବା, ପର୍ବପର୍ବାଣି ମନେଇବା, ନାଟକ ମଞ୍ଚସ୍ଥ କରେଇବା, ପ୍ରଜାମାନଙ୍କର ସୁଖଦୁଃଖ ପ୍ରତି ସ୍ପଷ୍ଟ ଦୃଷ୍ଟି ରଖିବା, ଏସବୁ କଥା ଦେଖିଲେ ଲାଗେ କି ଅସମୟ ବୈଧବ୍ୟ, ନିଜ ଛୋଟ ଛୁଆର ମୃତ୍ୟୁ, ଇଂରେଜଙ୍କ ଝାନ୍‌ସୀ ଅଧିକାର, ଯୁଦ୍ଧର ଦୁଶ୍ଚିନ୍ତା ଏସବୁ କଥାରେ ନ ଡରି ନିଜର ସଂପୂର୍ଣ୍ଣ ଶକ୍ତି ଖଟାଇ, ଆଶାର ସହିତ ବାଟ ଖୋଜିଲାବାଲୀ, ନିଜ ରାଣୀ ପଦର ମର୍ଯ୍ୟାଦା ରକ୍ଷାକଲାବାଲୀ ରାଣୀ ସେ ଥିଲେ । ରାଜକର୍ତ୍ତାର ଭୂମିକା ହେଉ ବା ଯୋଦ୍ଧାର ଭୂମିକାରେ ହେଉ, ଏହି

ଦୁଇଟିଯାକ ଭୂମିକାକୁ ସେ ପୂର୍ଣ୍ଣତା ପ୍ରଦାନ କରିଥିଲେ । ଜୀବନ ବିଷୟରେ କଠୋର କର୍ତ୍ତବ୍ୟ କରିବାର ଇଚ୍ଛା, ତା'ସହ ଜୀବନରେ ଉତ୍ସାହ ନ ଥିଲେ ଏକଥା ସମ୍ଭବ ହୋଇ ନ ଥାନ୍ତା । ସେହି କାରଣରୁ ଝାନ୍ସୀବାସୀ ସେ ବଞ୍ଚିଥିବାଯାଏ ତାଙ୍କୁ ବହୁତ ଭଲ ପାଉଥିଲେ ଓ ତାଙ୍କ ମୃତ୍ୟୁ ପରେ ମଧ୍ୟ ଲୋକଙ୍କ ମନରେ ସେ ସ୍ମୃତିରୂପେ ସବୁଦିନେ ଜୀବିତ ରହିବେ ।

## ପତ୍ର ବ୍ୟବହାରର ଚତୁରତା

କମ୍ପାନୀ ସରକାରଙ୍କ ସହିତ କରାଯାଉଥିବା ପତ୍ରାଚାରରୁ ଲକ୍ଷ୍ମୀବାଈଙ୍କର ପ୍ରକୃତ ଚତୁରତାର ଦର୍ଶନ ମିଳିଥାଏ । ଗଭର୍ଣ୍ଣର ଜେନେରାଲ ଡେଲହାଉସୀ ହିନ୍ଦୁସ୍ଥାନର ରାଜ୍ୟମାନଙ୍କୁ ଖାଲସା (ଉତ୍ତରାଧିକାରୀ ନ ଥିଲେ କବ୍‌ଜା କରିନେବା) କରିବାର ନିଷ୍ପତ୍ତି ଗ୍ରହଣ କରିଥିଲେ । ଇଷ୍ଟଇଣ୍ଡିଆ କଂପାନୀର ବୋର୍ଡ଼ ଅଫ୍ ଡାଇରେକ୍ଟରଙ୍କୁ ଏହି ନିଷ୍ପତ୍ତି ପସନ୍ଦ ନ ଥିଲା । କିନ୍ତୁ କମ୍ପାନୀର ଆର୍ଥିକ କ୍ଷତି ଭରଣା କରିବା ଦୃଷ୍ଟି ଏହି ଗୋଟିଏ ଆଦେଶ ଦେବାର ରାସ୍ତା ଖୋଲା ଥିଲା । ଏହି କାରଣରୁ ବୋର୍ଡ଼ ଅଫ୍ ଡାଇରେକ୍ଟର ଡେଲହାଉସୀଙ୍କ ନିଷ୍ପତ୍ତିରେ ହସ୍ତକ୍ଷେପ କଲେ ନାହିଁ । ଭିନ୍ନ ଭିନ୍ନ ସଂସ୍ଥାକୁ ଭିନ୍ନ ଭିନ୍ନ ଉପାୟରେ କୌଣସି ନା କୌଣସି କାରଣ ଦର୍ଶାଇ କରଗତ କରାଯିବାରେ ଲାଗିଲା । ଝାନ୍ସୀର ରାଜା ଗଙ୍ଗାଧର ରାଓ ବେମାରି ଯୋଗୁଁ ବିବ୍ରତ ଥିଲେ । ଏହା ଦେଖି ରାଜାଙ୍କ ଜୀବିତାବସ୍ଥାରେ ମଧ୍ୟ ଝାନ୍ସୀକୁ କବ୍‌ଜା କରିବାର ବିଚାର କରାଯିବାରେ ଲାଗିଲା । ଏହା ଆମେ ଗତ ଅଧ୍ୟାୟମାନଙ୍କରେ ପାଠ କରିଛୁ । ରାଜାଙ୍କ ମୃତ୍ୟୁ ପରେ ପୋଷ୍ୟସନ୍ତାନ କାରଣ ଦର୍ଶାଇ ଝାନ୍ସୀକୁ କବ୍‌ଜା କରିନିଆଗଲା ।

କମ୍ପାନୀ ସରକାର ଯେଉଁସବୁ କାରଣ ଦର୍ଶାଇ ଦତ୍ତକ-ଅଧିକାରକୁ ନାମଞ୍ଜୁର କରି ରାଜ୍ୟକୁ ଖାଲସା ବା ଅଧିକାର କରିବାକୁ ସମର୍ଥନ କରିଥିଲେ ସେ ସମସ୍ତ ବିଷୟକୁ ରାଣୀ ମୁହାଁମୁହିଁ ଜବାବ ଦେଇ ଖାରଜ କରି ଦେଇଥିଲେ । କମ୍ପାନୀ ସରକାରଙ୍କର ଶବ୍ଦରେ, ତାଙ୍କରି ଶୈଳୀରେ ତାଙ୍କର ତର୍କକୁ ଆଧାର କରି ରାଣୀ ଉତ୍ତର ମଧ୍ୟ ପଠାଇଥିଲେ ।

ନିଜ ପତ୍ରରେ ରାଣୀ ଲେଖିଛନ୍ତି-"ଝାନ୍ସୀ ମୂଳତଃ ପେଶବାମାନଙ୍କର ରାଜ୍ୟ ଥିଲା । କିନ୍ତୁ ପେଶବାଙ୍କ ପରେ ଝାନ୍ସୀ ରାଜ୍ୟ କମ୍ପାନୀ ସରକାରଙ୍କ ସହିତ ମୈତ୍ରୀପୂର୍ଣ୍ଣ ସନ୍ଧିରେ ଅନୁବନ୍ଧିତ ହୋଇଥିଲା । କମ୍ପାନୀ ସରକାରଙ୍କ ଅଧୀନ ରାଜା କିମ୍ବା ରାଜ୍ୟ ନ ଥିଲା । ବିଭିନ୍ନ ସମୟରେ କମ୍ପାନୀ ସରକାରଙ୍କ ସହିତ କରାଯାଇଥିବା ମୈତ୍ରୀପୂର୍ଣ୍ଣ ସନ୍ଧିର ଦ୍ୱାହି ଦେଇ, ତାଙ୍କରି ଭାଷାରେ ଶବ୍ଦକୁ ବ୍ୟବହାର କରି ଲକ୍ଷ୍ମୀବାଈ କମ୍ପାନୀ ସରକାରଙ୍କ ଆଗରେ ଝାନ୍ସୀର ନିଜସ୍ୱ ସ୍ୱତନ୍ତ୍ରତା ଏବଂ ସ୍ୱାୟତ୍ତତା ହରାଇ ନ ଥିବାର ବିଷୟ ବାରମ୍ବାର ଉପସ୍ଥାପନ କରିଥିଲେ । ସ୍ୱାୟତ୍ତ ରାଜ୍ୟମାନଙ୍କର ନିଃସନ୍ତାନ ରାଜାଙ୍କୁ ଧର୍ମଶାସ୍ତ୍ର ଅନୁଯାୟୀ ଦତ୍ତକ-ସନ୍ତାନ ଗ୍ରହଣ କରିବାର ଅଧିକାର ମିଳିଥିଲା । କମ୍ପାନୀ ସରକାର ବ୍ୟକ୍ତିଗତ

କାରଣ ପାଇଁ ପୋଷ୍ୟସନ୍ତାନ ନେବାର ଅଧିକାରକୁ ମାନ୍ୟତା ଦେଲେ । କିନ୍ତୁ ପୋଷ୍ୟସନ୍ତାନକୁ ରାଜ୍ୟର ଉତ୍ତରାଧିକାରୀ ହେବାର ଅଧିକାରକୁ ମାନ୍ୟତା ଦେଲେ ନାହିଁ । ଏହି କଥାକୁ ପତ୍ରରେ ଉଲ୍ଲେଖ କରି କମ୍ପାନୀ ସରକାରର ଅତ୍ୟାଚାର, ଷଡ଼ଯନ୍ତ୍ର ଏବଂ ବେଆଇନ୍ କାର୍ଯ୍ୟପ୍ରଣାଳୀକୁ ସେ ପଦାରେ ପକାଇ ଦେଇଥିଲେ । ମିଥ୍ୟା କାରଣ ଦର୍ଶାଇ ଭୁଲ୍‌ଭାଲ୍ ପ୍ରସଙ୍ଗ ପ୍ରସ୍ତୁତି କରି କମ୍ପାନୀ ସରକାର ଯେତେବେଳେ ଦତ୍ତକ-ଆଇନ୍‌କୁ ନାମଞ୍ଜୁର କରି ଝାନ୍ସୀ ରାଜ୍ୟକୁ ଅଧିକାର କରିବାର ହୁକୁମ୍ ଶୁଣାଇଲେ ସେତେବେଳେ ରାଣୀ ସେହି ହୁକୁମ୍‌କୁ ଆହ୍ୱାନ ଜଣାଇଲେ । ଦତ୍ତକ ନାମଞ୍ଜୁର କରିବାର ଅଧିକାର କମ୍ପାନୀ ସରକାର କିପରି ପାଇଲେ ? ନାମଞ୍ଜୁର କଲା ପରେ ମଧ୍ୟ ଝାନ୍ସୀ ରାଜ୍ୟ ଉପରେ ରାଜୁତି କରିବାର ଅଧିକାର କମ୍ପାନୀ ସରକାରଙ୍କୁ କିପରି ମିଳିଗଲା ? ରାଣୀଙ୍କର ଏବଂ ଦତ୍ତକ ପୁତ୍ରଙ୍କର ବ୍ୟକ୍ତିଗତ ସମ୍ପତ୍ତି ଉପରେ କବ୍‌ଜା କରିବାର ଅଧିକାର ସେମାନଙ୍କୁ କିପରି ମିଳିଲା ? ରାଜ୍ୟରୁ ଆଦାୟ ହୋଇଥିବା ସମସ୍ତ ଖଜଣାରୁ ଏକ ଅତ୍ୟନ୍ତ ନଗଣ୍ୟ ଅଂଶ ରାଜ୍ୟର ଆଇନ୍‌ସମ୍ମତ ମାଲିକାଣୀଙ୍କୁ କେବଳ ଆଜୀବନ ପେନ୍‌ସନ୍ ଭାବରେ ପ୍ରଦାନ କରିବାର ଅଧିକାର କମ୍ପାନୀ ସରକାରଙ୍କ ପାଖରେ କେଉଁଠୁ ଆସିଲା ? ରାଜାଙ୍କର ଆଇନ୍‌ସମ୍ମତ ଉତ୍ତରାଧିକାରୀ ଏବଂ ତାଙ୍କ ବଂଶପରମ୍ପରାଗତ ରାଜକୋଷ ଉପରୁ ତାଙ୍କର ଅଧିକାର ଛଡ଼ାଇନେବାର ଅଧିକାର କମ୍ପାନୀ ସରକାରଙ୍କ ପାଖରେ କୋଉଠୁ ଆସିଲା ? ଶିବରାମ ରାଓ ଏବଂ ତାଙ୍କର ଉତ୍ତରାଧିକାରୀଙ୍କ ସହିତ ସମୟ ସମୟରେ କରାଯାଉଥିବା ସନ୍ଧି, ଦିଆଯାଉଥିବା ଆଶ୍ୱାସନାର ପାଳନ କରିବା କମ୍ପାନୀ ସରକାରଙ୍କ ପାଇଁ ଆଇନ୍ ଏବଂ ନୈତିକତା ସହିତ କ'ଣ ଅନୁବନ୍ଧିତ ନୁହେଁ ? ଏପରି ପ୍ରଶ୍ନ କରି ଲକ୍ଷ୍ମୀବାଈ କମ୍ପାନୀ ସରକାରଙ୍କୁ ପ୍ରେରଣ କରିଥିବା ପତ୍ରର ଶେଷରେ କହିଛନ୍ତି– "ଝାନ୍ସୀ ରାଜ୍ୟକୁ କବ୍‌ଜା କରିବା କାରଣରୁ ହିନ୍ଦୁସ୍ଥାନର ଅନ୍ୟ ରାଜାମହାରାଜାମାନେ, ରାଜବଂଶ, ସୁବେଦାର ଏବଂ ସର୍ବସାଧାରଣ ଲୋକଙ୍କ ମନରେ ଝାନ୍ସୀ ପ୍ରତି ଚିନ୍ତା ସୃଷ୍ଟି ହୋଇଯାଇଛି । ଏହା ସହିତ ଲୋକମାନଙ୍କ ମନରେ ମଧ୍ୟ ଅସ୍ଥିରତା ଦେଖାଦେଇଛି । ଏ ବିଷୟରେ କ'ଣ ନିଷ୍ପତ୍ତି ନିଆଯାଉଛି ? ଏହାକୁ ନେଇ ସେମାନଙ୍କ ଭିତରେ ଚିନ୍ତାଜନକ ଉତ୍ସୁକତା ଲାଗିରହିଛି । ପରିଶେଷରେ ଯାହା ମଧ୍ୟ ନିଷ୍ପତ୍ତି ନିଆଯିବ, ସେହି ଅନୁଯାୟୀ କମ୍ପାନୀ ସରକାରଙ୍କ ପ୍ରତି ବିଶ୍ୱାସ କିମ୍ବା ଅବିଶ୍ୱାସ ସୃଷ୍ଟି ହେବ ।" (ରାଣୀ ଲକ୍ଷ୍ମୀବାଈ ଅଫ୍ ଝାନ୍ସୀ, ସିହ୍ନା ୧୯୮୦, ପୃ. ୩୦)

ପ୍ରାରମ୍ଭିକ ଦିନମାନଙ୍କରେ କମ୍ପାନୀ ସରକାରଙ୍କ ପ୍ରତି ନିଷ୍ଠା, ଶିବରାମ ରାଓଙ୍କ ବେଳୁଁ ଚାଲି ଆସିଥିବା ପରସ୍ପର ମୈତ୍ରୀର ଆଧାରରେ ଲକ୍ଷ୍ମୀବାଈ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ଖାଲ୍‌ସା ରଦ୍ଦ କରିବାକୁ ବାରମ୍ବାର ଅନୁରୋଧପତ୍ର ପଠାଇ ଚାଲିଥିଲେ । କମ୍ପାନୀ ସରକାରଙ୍କ ନ୍ୟାୟ ବୁଦ୍ଧି ଉପରେ ଆସ୍ଥା ପ୍ରକଟ କରି ସରକାରଙ୍କ ନୈତିକତାକୁ ଆହ୍ୱାନ କରି ଚାଲିଥିଲେ । କିନ୍ତୁ କମ୍ପାନୀ ସରକାର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହନ୍ତି ଦେଖି ଲକ୍ଷ୍ମୀବାଈ ନିଜର

ଅନୁରୋଧପତ୍ରକୁ ୨୧ ଡିସେମ୍ବର ୧୮୫୪ ମସିହା ଦିନ ସିଧା ଲଣ୍ଡନରେ ଥିବା ଇଷ୍ଟଇଣ୍ଡିଆ କମ୍ପାନୀର ବୋର୍ଡ୍ ଅଫ୍ ଡାଇରେକ୍ଟରଙ୍କ ନାମରେ ପଠାଇଦେଲେ । ଉକ୍ତ ପତ୍ରରେ ସେ ଝାନ୍‌ସୀ ରାଜ୍ୟ ଏବଂ କମ୍ପାନୀ ସରକାରଙ୍କ ମଧ୍ୟରେ ଥିବା ପଚାଶବର୍ଷର ମୈତ୍ରୀସଂପର୍କ, ପରସ୍ପର ବିଶ୍ୱାସ ଏବଂ ହିତସଂପର୍କର ଦ୍ୱାହି ଦେଇଥିଲେ । ପୋଷ୍ୟସନ୍ତାନ ଗ୍ରହଣ ସମାରୋହ ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ହୋଇଛି ତଥା ତାହା ମଧ୍ୟ ରାଜ୍ୟର ପ୍ରତିଷ୍ଠିତ ବ୍ୟକ୍ତି ଏବଂ କମ୍ପାନୀ ସରକାରଙ୍କ ପ୍ରତିନିଧିଙ୍କ ଉପସ୍ଥିତିରେ କରାଯାଇଛି । ଉକ୍ତ ପତ୍ରରେ ସେ ଏ କଥା ମଧ୍ୟ ଉଲ୍ଲେଖ କରିଥିଲେ । ଝାନ୍‌ସୀର ଲୋକମାନଙ୍କ ମଧ୍ୟ ରାଜା ଏବଂ ରାଣୀ ଏହି ଉଭୟଙ୍କ ନିମନ୍ତେ ଅସୀମ ଶ୍ରଦ୍ଧା ଓ ବିଶ୍ୱାସ ଅନୁଭୂତ ହେଉଛି– ଏ ସଂପର୍କରେ ପୂର୍ଣ୍ଣ ବିଶ୍ୱସନୀୟ ସୂଚନା ପତ୍ରରେ ଦେଲା ପରେ ମଧ୍ୟ ଶେଷ ବାକ୍ୟଟି ପଢ଼ିଲେ ଏପରି ଲାଗେ ଯେ ରାଣୀ ଲକ୍ଷ୍ମୀବାଈ କମ୍ପାନୀ ସରକାରଙ୍କୁ ଏକପ୍ରକାର ଚେତାବନୀ ହିଁ ଦେଇଥିଲେ ।

ଏହାଠାରୁ ମଧ୍ୟ ମହତ୍ତ୍ୱପୂର୍ଣ୍ଣ କଥା ହେଉଛି ବିଭିନ୍ନ ସମୟରେ ମୈତ୍ରୀପୂର୍ଣ୍ଣ ସନ୍ଧି କଲା ପରେ, ଆବଶ୍ୟକତା ପଡ଼ିଲେ ଝାନ୍‌ସୀର ସବୁପ୍ରକାରର ସାହାଯ୍ୟ ନେଇ ମୈତ୍ରୀ–ସଂପର୍କ ପାଳନ କରିବାର ଆଶ୍ୱାସନା ଦେଲା ପରେ ମଧ୍ୟ, ବିଦେଶୀ ଧର୍ମ, ବିଦେଶୀ ସତ୍ତାବାଲା କମ୍ପାନୀ ସରକାରକୁ କୌଣସି ଆଇନ୍‌ସମ୍ମତ ରାଜ୍ୟକୁ ଖାଲ୍‌ସା କରିବାର ଅଧିକାର କେଉଁଠୁ ପ୍ରାପ୍ତ ହୋଇଗଲା ? ଏଥିରେ କେଉଁପ୍ରକାର ନୈତିକତା ଅଛି ? ଏପରି ମୌଳିକ ପ୍ରଶ୍ନକରି ରାଣୀ ଲକ୍ଷ୍ମୀବାଈ କମ୍ପାନୀ ସରକାରଙ୍କୁ ଆହ୍ୱାନ କରିଥିଲେ । ନିଜର ବଚନବଦ୍ଧତାକୁ ଭାଙ୍ଗି କମ୍ପାନୀ ସରକାରଙ୍କ ଦାୟିତ୍ୱହୀନ ଏବଂ ଅନୈତିକ ଅଧିକାରକୁ ଆହ୍ୱାନ କରିଥିବା ଏକମାତ୍ର ପ୍ରଥମ ବ୍ୟକ୍ତି ଥିଲେ ରାଣୀ ଲକ୍ଷ୍ମୀବାଈ । ଲକ୍ଷ୍ମୀବାଈ ଯେଉଁସବୁ ଯୁକ୍ତି ଉପସ୍ଥାପନ କରିଥିଲେ ସେଥିରେ କୌଣସି ସନ୍ଦେହ ନ ଥିଲା । ତାହା ପୂରାପୂରି ସ୍ପଷ୍ଟ ଏବଂ ସତ୍ୟ ଆଧାରିତ ଥିଲା । ଇଷ୍ଟଇଣ୍ଡିଆ କମ୍ପାନୀ ସମ୍ମୁଖରେ ତାହା ଉପସ୍ଥାପନ କରିବାର ସାହସ ତାଙ୍କ ପାଖରେ ଥିଲା । ତାଙ୍କର ଏହି ସାହସ ନିମନ୍ତେ ତାଙ୍କୁ ସ୍ୱତନ୍ତ୍ରତାର ଦେବୀ ବୋଲି କୁହାଯାଏ ।

ପୋଷ୍ୟସନ୍ତାନ ଅଧିକାରକୁ ମାନ୍ୟତା ନ ଦେଇ ଝାନ୍‌ସୀକୁ ଖାଲ୍‌ସା କରିଦେବାର ଆଘାତ ଏବଂ ଅପମାନକୁ ଲକ୍ଷ୍ମୀବାଈ ହଜମ କରିଦେବାକୁ ଚାହୁଁଥିଲେ । ଏହା ତାଙ୍କର ଧୈର୍ଯ୍ୟର ପରୀକ୍ଷା ଥିଲା । ସେ ଭଲଭାବିରେ ଜାଣିଥିଲେ ଇଂରେଜଙ୍କର ଶକ୍ତି ଖୁବ୍ ବେଶି ଅଟେ । ତାଙ୍କ ପକ୍ଷରେ କେବଳ ଝାନ୍‌ସୀର ଜନସାଧାରଣ ହିଁ ରହିଥିଲେ । ତାଙ୍କ ହାତରେ କେବଳ କମ୍ପାନୀ ସରକାରଙ୍କୁ ପ୍ରେରଣ କରିଥିବା ପତ୍ର ଏବଂ ଅନୁରୋଧପତ୍ର ଥିଲା । ମନ ଭିତରେ ଜମାଟ ବାନ୍ଧିଥିବା ବ୍ୟଥା ସମାପ୍ତ ହେଉ ନ ଥିଲା ।

ଏପରି ପରିସ୍ଥିତିରେ ରହୁଥିବା ରାଣୀ ଲକ୍ଷ୍ମୀବାଈଙ୍କ ମନଃସ୍ଥିତିର ବର୍ଣ୍ଣନା ନିଜର ପୁସ୍ତକ 'ହିଷ୍ଟ୍ରି ଅଫ୍ ଇଣ୍ଡିଆନ୍ ମ୍ୟୁଟିନୀ'ରେ ଦେଇ ଇଂରେଜ ଐତିହାସିକ ମେଲିସନ୍ ଲେଖିଛନ୍ତି ଯେ "୧୮୫୪ରେ ଝାନ୍‌ସୀକୁ ଖାଲ୍‌ସା କରାଗଲା । ସେବେଠାରୁ ଆଜି ମୁଁ

ଯେଉଁ ଘଟଣା ସଂପର୍କରେ ଲେଖୁଛି ତିନିବର୍ଷ ବିତିଗଲାଣି । ଇଂରେଜମାନଙ୍କ ନୀତିଯୋଗୁଁ ତାଙ୍କ ଉପରେ ଅନ୍ୟାୟ କରାହୋଇଛି । ନିଜର ଦିବଂଗତ ସ୍ୱାମୀଙ୍କର, ରାଜବଂଶର ଅପମାନ ହୋଇଛି, ରାଣୀ ଏପରି ମନେ କରୁଥିଲେ । ବିଗତ ତିନିବର୍ଷ ଧରି ତାଙ୍କ ମନରୁ ଏହି ବ୍ୟଥା ତିଳେମାତ୍ର ଊଣା ହୋଇ ନ ଥିଲା । ବରଂ ଏହାର ବିପରୀତରେ ୧୮୫୭ ପର୍ଯ୍ୟନ୍ତ ଆସୁ ଆସୁ ସେ ନିଜର ଦୁଃଖରେ ଏତେ ବୁଡ଼ିଯାଇଥିଲେ ଯେ ପରେ ଏହା ପ୍ରତିଶୋଧର ଜ୍ୱାଳା ହୋଇ ଜଳି ଉଠିଥିଲା ।

ମେଲିସନ୍‌ଙ୍କର ଏପରି ଲେଖିବା ସତ୍ତ୍ୱେ ଲକ୍ଷ୍ମୀବାଈ ପୂରାପୂରି ସତର୍କ ଥିଲେ । ଝାନ୍ସୀର ସିପାହିମାନଙ୍କର ବିଦ୍ରୋହ କରିବା, ଝାନ୍ସୀର ସମସ୍ତ ଇଂରେଜ ସ୍ତ୍ରୀ, ପୁରୁଷ, ଶିଶୁଙ୍କୁ ମାରିପକାଇବା ଇତ୍ୟାଦି କାର୍ଯ୍ୟ ଯେ ଲକ୍ଷ୍ମୀବାଈ ପ୍ରତିଶୋଧ ଭାବନାରୁ କରିଛନ୍ତି ଏହାର କୌଣସି ସ୍ପଷ୍ଟ ପ୍ରମାଣ ମିଳେ ନାହିଁ । ଇଂରେଜ ଅଧିକାରୀମାନେ, ଐତିହାସିକମାନେ ଦୁଇଆଡ଼ୁ ପରସ୍ପର ବିରୋଧାତ୍ମକ କଥା ଲେଖିଛନ୍ତି ।

ସୁରକ୍ଷା ଦୃଷ୍ଟିରୁ କିଲ୍ଲା ଭିତରେ ରହୁଥିବା ଇଂରେଜମାନଙ୍କ ପାଇଁ ଅଟା, ଘିଅ, ଚିନି ଇତ୍ୟାଦି ପଠାଇବା କଥା ଗୋଡ଼ସେ ଭଟ୍ଟଜୀଙ୍କ ପରି ଇଂରେଜ ଲେଖକମାନେ ମଧ୍ୟ କହିଛନ୍ତି । କିନ୍ତୁ ମୁଖ୍ୟ ପ୍ରସଙ୍ଗ ହେଉଛି ଯେ ରାଣୀ ଲକ୍ଷ୍ମୀବାଈ ସିପାହିମାନଙ୍କୁ ଇଂରେଜମାନଙ୍କ ବିରୋଧରେ ମତାଇଥିଲେ ନା ନାହିଁ ? ସେଥିରେ ତାଙ୍କର ନିଜର ସହଯୋଗ କେତେ ଥିଲା ? ସେ ସବୁ ସମୟର ଘଟଣା ପରିପ୍ରେକ୍ଷୀରେ ଦେଖିଲେ ରାଣୀ ଯେ ସିପାହିମାନଙ୍କୁ ପ୍ରୋତ୍ସାହିତ କରିଥିଲେ, ଏହାର ସ୍ପଷ୍ଟ ପ୍ରମାଣ ମିଳେ ନାହିଁ । ସହଯୋଗ ସଂପର୍କରେ କୁହାଯାଇପାରେ ଯେ ନା ସେ ବିଦ୍ରୋହରେ ସେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରିଥିଲେ ନା ସିପାହିମାନଙ୍କର ନେତୃତ୍ୱ ନେଇଥିଲେ । କିନ୍ତୁ ସେ ଉକ୍ତ ବିଦ୍ରୋହରୁ ନିଜର ଫାଇଦା ନିଶ୍ଚୟ ଉଠାଇଥିଲେ । ନରସଂହାର କାରଣରୁ ଝାନ୍ସୀରେ ଜଣେ ହେଲେ ଇଂରେଜ ବାକି ବଞ୍ଚି ରହି ନ ଥିଲେ । ରାଣୀଙ୍କଠାରୁ ଜୋରଜବରଦସ୍ତି ଟଙ୍କାପଇସା ଆଦାୟ କରି ସିପାହିମାନେ ଦିଲ୍ଲୀ ଚାଲି ଯାଇଥିଲେ । ଦିଲ୍ଲୀର ପ୍ରଶାସନ ଚଳାଇବା ପାଇଁ କେହି ନ ଥିଲେ । ରାଣୀ ଲକ୍ଷ୍ମୀବାଈ ସେହି ଇଲାକାର କମିଶନର ମେଜର ଇର୍କସନଙ୍କୁ ଚିଠି ଲେଖି ଝାନ୍ସୀର ପରିସ୍ଥିତି ଅବଗତ କରାଇ ଆଗକୁ କାର୍ଯ୍ୟପନ୍ଥା କରିବାକୁ ପଚରାଉଚୁରା କରିଥିଲେ । ସେ ସଂପର୍କରେ ଉଚିତ ହୁକୁମ ଦେବାପାଇଁ ଅନୁରୋଧ ମଧ୍ୟ କରିଥିଲେ ।

ଆଜି ମନରେ ଏହି ପ୍ରଶ୍ନ ଉଠେ ଯେ ସୁଯୋଗର ଫାଇଦା ଉଠାଇ ଲକ୍ଷ୍ମୀବାଈ ପୁନରାୟ ରାଜଗାଦି କାହିଁକି ଅଧିକାର କଲେ ନାହିଁ ? ଶାସକ ଭାବରେ ନିଜର ନାମ କାହିଁକି ଘୋଷଣା କଲେ ନାହିଁ ? ଯଦି ସେ ଏପରି କରିଥାନ୍ତେ ତ ଝାନ୍ସୀର ଲୋକମାନେ ଉତ୍ସାହପୂର୍ବକ ତାଙ୍କୁ ସହଯୋଗ କରିଥାନ୍ତେ । ଏମିତି ମଧ୍ୟ ସିପାହିମାନେ "ଖୁଲକ (ସୃଷ୍ଟି) ଖୁଦା କା, ମୁଲକ (ଦେଶ) ବାଦଶାହ କା, ରାଜ୍ୟ ଲକ୍ଷ୍ମୀବାଈକା" ଘୋଷଣା କରି କରି ଦିଲ୍ଲୀ ଦିଗରେ ଯାତ୍ରା କରିଥିଲେ । ସେତେବେଳେ ଝାନ୍ସୀର ଲୋକମାନେ ଏହି ଘୋଷଣାକୁ

ଉତ୍ସାହର ସହିତ ସ୍ୱାଗତ କରିଥିଲେ । କିନ୍ତୁ ରାଣୀ ତରବରିଆ ଭାବରେ କୌଣସି ପଦକ୍ଷେପ ନେବାକୁ ଚାହିଁ ନ ଥିଲେ । ସେଥିପାଇଁ ସେ କ୍ଷମତା ଦଖଲ କଲେ ନାହିଁ । ବରଂ ଆଗାମି ବ୍ୟବସ୍ଥା କ'ଣ ହେବା ଉଚିତ ସେ ସଂପର୍କରେ କମ୍ପାନୀ ସରକାରଙ୍କ ପରାମର୍ଶ ଲୋଡ଼ିଲେ । ଏଥିରୁ ରାଣୀଙ୍କର ଚତୁରତା, ନୀତି ଏବଂ ସାବଧାନତା ସଂପର୍କରେ ସୂଚନା ମିଳେ । ଯଦି ସେ ଶାସନକ୍ଷମତା ହାତକୁ ନିଅନ୍ତି ତା'ହେଲେ ତା'ର ପରିଣାମ ଭଲ ହେବ ନାହିଁ ବୋଲି ସେ ନିଶ୍ଚୟ କଳ୍ପନା କରିପାରିଥିଲେ । ଶକ୍ତିଶାଳୀ ଇଂରେଜ ଶକ୍ତି ଆଗରେ ଆମର ସ୍ଥିତି ଅତ୍ୟନ୍ତ ଦୁର୍ବଳ, ଏ ଧାରଣା ମଧ୍ୟ ତାଙ୍କର ରହିଥିବ । ଏଥିପାଇଁ ତରବର ହୋଇ କ୍ଷମତା ଗ୍ରହଣ କରିବାର ବାହାଦୁରି ପ୍ରଦର୍ଶନ କରିବା ବଦଳରେ, ଇଂରେଜଙ୍କ ପକ୍ଷରୁ ଏପରି ପ୍ରସ୍ତାବ ଆସିବା ହିଁ ଅଧିକ ଉଚିତ ହେବ, ସେ ଏପରି ନିଶ୍ଚୟ ଭାବିଥିବେ । କାରଣ ଏପରି ପରିସ୍ଥିତିରେ ତାଙ୍କୁ କ୍ଷମତା ଗ୍ରହଣ କରିବାର ଅନୁମତି ଦେବା ବ୍ୟତୀତ କମ୍ପାନୀ ସରକାରଙ୍କ ନିକଟରେ ଅନ୍ୟ ବିକଳ୍ପ ହିଁ ନ ଥିଲା । ଏ ସଂପର୍କରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଏବଂ ଥରେ ଇଂରେଜ ସରକାରଙ୍କ ତରଫରୁ କ୍ଷମତା ଗ୍ରହଣ କରିବାର ଅନୁମତି ମିଳିଗଲେ, ତା'ପରେ ଦତ୍ତକମାନ୍ୟତା ପ୍ରାପ୍ତ କରିବା ଅଧିକ ସହଜ ହୋଇଯିବ । କୌଣସି ପ୍ରକାରର ଭବିଷ୍ୟତ୍ ପ୍ରତାରଣାକୁ ଅଙ୍ଗୀକାର ନ କରି ଝାନ୍ସୀକୁ ନିଜର ଅଧିକାର ଭିତରକୁ ଫେରାଇ ଆଣିବା ପାଇଁ ଏକମାତ୍ର ଏହି ରାଜମାର୍ଗ ଥିଲା । ରାଣୀ ଲକ୍ଷ୍ମୀବାଈ ଏହାରି ଉପରେ ଗତି କରିବାକୁ ଅଧିକ ଉପଯୁକ୍ତ ମଣିଲେ ।

କିନ୍ତୁ ଲକ୍ଷ୍ମୀବାଈ ଚୁପ୍‌ଚାପ୍ ବସିଯାଇ ନ ଥିଲେ । କିଲ୍ଲାରେ ରହିବା ପାଇଁ ଯିବାମାତ୍ରେ ହିଁ ସେ ନିଜର ସୈନିକ–ଶକ୍ତି ବଢ଼ାଇବା ନିମନ୍ତେ ନିରନ୍ତର ପ୍ରୟାସ ଜାରି କରିଥିଲେ ଏବଂ ତତ୍‌ସହିତ ନିରନ୍ତର ଇଂରେଜଙ୍କୁ ଅନୁରୋଧପତ୍ର ପ୍ରେରଣ କରି ସେମାନଙ୍କ ସହିତ ମୈତ୍ରୀସମ୍ବନ୍ଧ ବଢ଼ାଇବାକୁ ନିଜର ପ୍ରଯତ୍ନ ମଧ୍ୟ ଜାରି ରଖିଥିଲେ ।

ଏଠାରେ ମଧ୍ୟ ସ୍ଥିତି ଭ୍ରମାତ୍ମକ ଦେଖାଯାଏ । କେତେକ ଐତିହାସିକଙ୍କ ମତ ହେଲା ଯେ ରାଣୀ ଏପରି ପତ୍ର ଲେଖି ହିଁ ନ ଥିଲେ । ବରଂ ଇଂରେଜ ସତ୍ତାକୁ ଏଡ଼େଇଯାଇ ରାଣୀ ନିଜ କ୍ଷମତାକୁ ମଜବୁତ୍ କରିବାପାଇଁ ନିଜର ପ୍ରଯତ୍ନ ଜାରି ରଖିଥିଲେ । କିନ୍ତୁ ପାରସନିସ୍‌ଙ୍କ ପରି କେତେକ ଲେଖକ କହନ୍ତି ଯେ ଲକ୍ଷ୍ମୀବାଈ ଏପରି ପତ୍ର ଲେଖିଥିଲେ । କିନ୍ତୁ ଯେଉଁ ଲୋକମାନେ ରାଣୀ ଏବଂ ଇଂରେଜଙ୍କ ମଧ୍ୟରେ ମୈତ୍ରୀସଂପର୍କ ରହୁ ବୋଲି ଚାହୁଁ ନ ଥିଲେ, ସେହି ଲୋକମାନେ ସେହି ପତ୍ରସବୁକୁ ନିଜର ଅଧିକାରୀମାନଙ୍କ ପର୍ଯ୍ୟନ୍ତ ପହଞ୍ଚିବାକୁ ଦେଇ ନ ଥିଲେ । ଏହି କାରଣରୁ ଇଂରେଜମାନଙ୍କ ମନରେ ରାଣୀଙ୍କ ଉଦ୍ଦେଶ୍ୟକୁ ନେଇ ଭୁଲ୍ ବୁଝାମଣା ସୃଷ୍ଟି ହୋଇଯାଇଥିଲା । ଏହି ଦୁଇଟି କଥା ଆଂଶିକଭାବରେ ଘଟିବାର ସମ୍ଭାବନା ଠିକ୍ ମନେହୁଏ । ଲକ୍ଷ୍ମୀବାଈ ସତର୍କତାର ସହ ଉଚିତ ସୁଯୋଗର ସନ୍ଧାନରେ ଥିଲେ । କୌଣସି ଦୃଢ଼ ନିଷ୍ପତ୍ତି ନେବାକୁ ସେ ଏଡ଼ାଇ ଚାଲିଥିଲେ । ପରିସ୍ଥିତିର ଅନୁମାନ ଲଗାଇ ଚାଲିଥିଲେ । ଖୋଲାଖୋଲି ସେ ଇଂରେଜଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହୁଁ

ନ ଥିଲେ, ସେଥିପାଇଁ ସେ ପତ୍ରାଚାରର ଇଣ୍ଟାଳ ଜାରି ରଖିଥିଲେ ଏବଂ ସେତିକିବେଳେ ଭବିଷ୍ୟଦ୍‌ରେ ଦରକାର ପଡ଼ିଲେ ଇଂରେଜଙ୍କ ସହିତ ମୁକାବିଲା କରିବାର ପ୍ରସ୍ତୁତି ମଧ୍ୟ ସେ ଜାରି ରଖିଥିଲେ । ବାଣପୁରର ରାଜା ମର୍ଦ୍ଦାନସିଂହଙ୍କୁ ଲେଖିଥିବା ପତ୍ରରେ ତାଙ୍କର ଏହି ମନୋବୃତ୍ତିର ସୂଚନା ମିଳେ ।

ରାଣୀ ଲକ୍ଷ୍ମୀବାଈ ଯେଉଁ ସମୟରେ ଇଂରେଜଙ୍କୁ ପତ୍ର ପ୍ରେରଣ କରୁଥିଲେ, ସେତିକିବେଳେ ବାଣପୁର ରାଜା ମର୍ଦ୍ଦାନସିଂହଙ୍କୁ ମଧ୍ୟ ପତ୍ର ପ୍ରେରଣ କରୁଥିଲେ । ତାନ୍ତିଆ ଟୋପେ ରାଣୀ ଲଡ଼ଈ ଦୁଲେୟାଙ୍କୁ ମଧ୍ୟ ପତ୍ର ପ୍ରେରଣ କରି ନିଜର ସଂପର୍କ ଜାରି ରଖିଥିଲେ । ଏମିତିରେ ତ ରାଣୀ ଲକ୍ଷ୍ମୀବାଈ ଏବଂ ମର୍ଦ୍ଦାନ ସିଂହଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ହିଁ ପତ୍ରାଚାର ଆରମ୍ଭ ହୋଇଯାଇଥିଲା । 'ମାଝାପ୍ରବାସ'ରେ ଗୋଡ଼ସେ ଭଟ୍ଟଜୀ ଲେଖିଛନ୍ତି– "୧୮୫୭ ମସିହା ମାର୍ଚ୍ଚ ମାସରେ କମ୍ପାନୀ ସରକାର ହିନ୍ଦୁସ୍ଥାନୀ ରାଜ୍ୟମାନଙ୍କର ସବୁ ରାଜାଙ୍କୁ କଲିକତାରେ ଏକ ବୈଠକକୁ ଆମନ୍ତ୍ରଣ କରିଥିଲେ ।" ଏହି ସନ୍ଦର୍ଭରେ ବାଣପୁରର ମଣବଇଆ ୧୯୭୮ରେ ପ୍ରକାଶିତ ନିଜ ପୁସ୍ତକ 'ବୁନ୍ଦେଲଖଣ୍ଡର ବିସ୍ମୃତ ବୈଭବ'ରେ ଲେଖିଛନ୍ତି ଯେ ରାଜାମାନଙ୍କର ବୈଠକରେ ରାଜା ମର୍ଦ୍ଦାନସିଂହ ମଧ୍ୟ ଭାଗ ନେଇଥିଲେ । କମ୍ପାନୀ ସରକାର ବୈଠକରେ ସମସ୍ତ ରାଜାମାନଙ୍କ ସମକ୍ଷରେ ଏକ ୮୪ ସୂତ୍ରୀୟ ଯୋଜନା ଉପସ୍ଥାପିତ କରିଥିଲେ । ସେଥିରେ ହିନ୍ଦୁ ଏବଂ ମୁସଲମାନମାନଙ୍କ ମଧ୍ୟରେ ସାମାଜିକ, ଧାର୍ମିକ, ରୀତିନୀତି ଏବଂ ପରମ୍ପରାରେ ପରିବର୍ତ୍ତନ ଆଣିବାର କଥା କୁହାଯାଇଥିଲା । ସେହି ବୈଠକରେ ଏକମାତ୍ର ମର୍ଦ୍ଦାନସିଂହ ଏପରି ରାଜା ଥିଲେ ଯିଏକି ଏହି ଯୋଜନାର ଘୋର ବିରୋଧ କରିଥିଲେ । ମର୍ଦ୍ଦାନସିଂହ ନିଜର ବକ୍ତବ୍ୟ ଉପସ୍ଥାପନ କରି କହିଥିଲେ– "ହିନ୍ଦୁସ୍ଥାନ ଏକ ବହୁତ ବିରାଟ ଦେଶ ଅଟେ । ଆମ୍ଭେମାନେ ଏହାକୁ ଆମର କର୍ମଭୂମି ବୋଲି ମାନିଥାଉ । ଏହି ଭୂମି ସହିତ ଆହୁରି ଅନେକ ଉପମହାଦ୍ୱୀପ ମଧ୍ୟ ସଂଯୁକ୍ତ ଅଛନ୍ତି । କିନ୍ତୁ ଏହା ହିନ୍ଦୁମାନଙ୍କର ପ୍ରମୁଖ ସ୍ଥାନ ଅଟେ । ଯେଉଁ ଲୋକମାନଙ୍କର ଦେବୀ–ଦେବତାଙ୍କ ଉପରେ ଶ୍ରଦ୍ଧା ନାହିଁ, ଆସ୍ଥା ନାହିଁ, ସେହି ଲୋକମାନଙ୍କ ନିମନ୍ତେ ସାହେବମାନେ ଏ ପ୍ରକାରର ଏକ ମାର୍ଗ ପ୍ରସ୍ତାବ କରିଛନ୍ତି । ଏହାକୁ ପ୍ରତ୍ୟାହାର କରାଯିବା ଉଚିତ ନଚେତ୍ ଯାହା ହେବାର କଥା, ତାହାହିଁ ହେବ ।" କୌଣସି ସାର୍ବଭୌମିକ ରାଜା ଯଦି ଅଧର୍ମ ଆଚରଣର ଆଜ୍ଞା ଦିଅନ୍ତି ତେବେ ପ୍ରଜା ତାହା ସ୍ୱୀକାର କରିବେ ନାହିଁ । ତେଣୁ ଯଦି ସରକାର ଏହି ୮୪ ସୂତ୍ରୀୟ ଯୋଜନାକୁ ଅମଲାତାନ୍ତ୍ରିକ ଜାମା ପିନ୍ଧାଇବାକୁ ଚାହାନ୍ତି ତ ନିଶ୍ଚୟ ତାହା କରିପାରନ୍ତି । କିନ୍ତୁ ଏହା ଫଳରେ ଧାର୍ମିକ ଅସନ୍ତୋଷର ଜ୍ୱାଳା ନିଶ୍ଚିତଭାବେ ଜଳିଉଠିବ । ମର୍ଦ୍ଦାନସିଂହଙ୍କ ବକ୍ତବ୍ୟର ପରିଣାମରେ ଇଂରେଜଙ୍କର ଏହି ପ୍ରୟାସ ପୂରାପୂରି ନିଷ୍ଫଳ ହୋଇଯାଇଥିଲା । ରାଜାମାନଙ୍କ ମନରେ ମଧ୍ୟ ଇଂରେଜଙ୍କ ପ୍ରତି ଅସନ୍ତୋଷ ବ୍ୟାପିବାରେ ଲାଗିଲା । ଏହାର ଠିକ୍ ପରେ ଅର୍ଥାତ୍ ୧୮୫୭ ଏପ୍ରିଲ ୧ ତାରିଖରେ, ବିଦ୍ରୋହ ହେବାର ୧ ମାସ ୧୦ ଦିନ ପୂର୍ବରୁ ରାଣୀ ଲକ୍ଷ୍ମୀବାଈ ରାଜା

ମର୍ଦ୍ଦାନସିଂହଙ୍କୁ ଏକ ପତ୍ର ପ୍ରେରଣ କରିଥିଲେ । ଏହା ସେତେବେଳର କଥା ଯେତେବେଳେ ରାଣୀଙ୍କର ନିବାସ ଝାନ୍‌ସୀ ସହରରେ ଥିବା ରାଜପ୍ରାସାଦ ଥିଲା । ସେହି ପତ୍ରରେ ରାଣୀ ଲେଖିଥିଲେ "ଦୁଲାରେଲାଲଙ୍କ ହାତରେ ପଠାଇଥିବା ଆପଣଙ୍କର ପତ୍ର ମୁଁ ପାଇଛି । ଆପଣ ଲେଖିଛନ୍ତି ଯେ ଆପଣ ଫଉଜ ପ୍ରସ୍ତୁତିରେ ଲାଗିପଡ଼ିଛନ୍ତି ଜାଣି ଖୁସି ହେଲି । ମୋର ମତ ହେଲା ଯେ ଭାରତବର୍ଷ ଉପରେ ବିଦେଶୀଙ୍କ ଶାସନ ରହିବା ହିଁ ଅନୁଚିତ । ଆପଣଙ୍କ ଉପରେ ଆମର ସମ୍ପୂର୍ଣ୍ଣ ଭରସା ରହିଛି । ଇଂରେଜଙ୍କ ସହିତ ଯୁଦ୍ଧ କରିବା ଆବଶ୍ୟକ ହୋଇଗଲାଣି । ମୁଁ ମଧ ନିଜ ତରଫରୁ ସମ୍ପୂର୍ଣ୍ଣ ପ୍ରସ୍ତୁତିରେ ଲାଗିପଡ଼ିଛି ।" (ଉପରୋକ୍ତ ଗ୍ରନ୍ଥ, ପୃ. ୧୯) ଏହି ପତ୍ରରୁ ଗୋଟିଏ କଥା ଜଣାପଡୁଛି ଯେ ଇଂରେଜଙ୍କ ବିରୋଧରେ ସବୁ ଲୋକେ ପ୍ରତ୍ୟକ୍ଷ ଭାବରେ ଏକଜୁଟ ହେବାରେ ପ୍ରଯତ୍ନଶୀଳ ହୋଇପଡ଼ିଥିଲେ ।

ପରେ ଲେଖିଥିବା ଅନ୍ୟ ଏକ ପତ୍ରରେ ରାଣୀ କହିଛନ୍ତି– "ଇଂରେଜମାନେ ଦାମୋଦର ରାଓଙ୍କର ଦତ୍ତକପୁତ୍ର ହେବାର ଅଧିକାରକୁ ମଂଜୁର କଲେ ନାହିଁ ।" ବିଦେଶୀ କାହାର ମଧ ନିଜର ନୁହନ୍ତି । ଏ ସମ୍ବନ୍ଧରେ ଆମ୍ଭେମାନେ ସବିସ୍ତାର ଚର୍ଚ୍ଚା କରିସାରିଛେ । ଆପଣ ବୁନ୍ଦେଲଖଣ୍ଡର ସବୁଠାରୁ ବରିଷ୍ଠ ରାଜା ଅଟନ୍ତି । ଆପଣଙ୍କ ଉପରେ ମୋର ପୂର୍ଣ୍ଣ ବିଶ୍ୱାସ ରହିଛି । ଆପଣଙ୍କଠାରୁ ଉତ୍ତମ ପରାମର୍ଶ ପାଇଁ ନିରନ୍ତର ସଂପର୍କ ରଖିଥିବି, କାରଣ ଆମେ ଆପଣଙ୍କ ଉପରେ ହିଁ ପୂରାପୂରି ନିର୍ଭର କରିଅଛୁ ।" (ଉପରୋକ୍ତ ଗ୍ରନ୍ଥ, ପୃ. ୧୯)

ରାଣୀ ଲକ୍ଷ୍ମୀବାଈ ଏବଂ ରାଜା ମର୍ଦ୍ଦାନସିଂହଙ୍କ ଭିତରେ ବିଚାର–ବିମର୍ଶର ଶୃଙ୍ଖଳା, ଝାନ୍‌ସୀ ରାଜ୍ୟ ଖାଲ୍‌ସା ହେବା ପରେ ରାଣୀ ସହରରେ ଥିବା ପ୍ରାସାଦରେ ରହିବାକୁ ଯିବା ପୂର୍ବରୁ ହିଁ ଆରମ୍ଭ ହୋଇଯାଇଥିଲା । ଏହି ଦୁଇଜଣଙ୍କର ସଂପର୍କ ରାଜନୀତିକ ପତ୍ରାଚାର ପର୍ଯ୍ୟନ୍ତ କେବଳ ସୀମିତ ନ ଥିଲା । ବରଂ ସେମାନଙ୍କ ମଧରେ ପାରିବାରିକ ସଂପର୍କ ମଧ ରହିଥିଲା । ମର୍ଦ୍ଦାନସିଂହ ରାଣୀ ଲକ୍ଷ୍ମୀବାଈଙ୍କୁ ନିଜର ଛୋଟ ଭଉଣୀ ଭାବରେ ଦେଖୁଥିଲେ । ଲକ୍ଷ୍ମୀବାଈ ମଧ ମର୍ଦ୍ଦାନସିଂହଙ୍କ ପ୍ରତି ଆଦର ବ୍ୟକ୍ତ କରୁଥିଲେ । ମର୍ଦ୍ଦାନସିଂହଙ୍କର ଯେତେବେଳେ ନାତି ହୋଇଥିଲା ସେତେବେଳେ ରାଣୀ ଗୋଟିଏ ପତ୍ର ଲେଖି ନିଜର ଆନନ୍ଦ ପ୍ରକାଶ କରିଥିଲେ ଓ ତତ୍‌ସହିତ ଉପହାର ମଧ ପ୍ରେରଣ କରିଥିଲେ ।

ଆଶ୍ୱିନ ଶୁକ୍ଳ ୧୪ ସମ୍ବତ୍, ୧୯୧୪ ଦିନ, ଆନୁମାନିକ ଅକ୍ଟୋବର ୧୮୫୭ରେ ପଠାଯାଇଥିବା ଏକ ପତ୍ର ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ମିଳିଅଛି । ଉକ୍ତ ପତ୍ରରେ ରାଣୀ ଲେଖିଛନ୍ତି– "ଦିୱାନ ଗଣେଶଜୁଙ୍କ ମାର୍ଫତରେ ପ୍ରେରିତ ଆପଣଙ୍କର ପତ୍ର ପାଇଛି । ପଢ଼ି ପ୍ରସନ୍ନତା ପ୍ରାପ୍ତ ହୋଇଛି ମୁଁ, ଆପଣ, ଶାହଗଡ଼ର ରାଜା, ନାନାସାହେବ ଏବଂ ତାନ୍ତିଆ ଟୋପେ, ଅର୍ଥାତ୍ ଆମେ ସମସ୍ତେ ମିଶି ଏହି ନିଷ୍ପତ୍ତି କରିଥିଲେ ଯେ ଏବେ ଆମକୁ ସ୍ୱରାଜ୍ୟ ପ୍ରାପ୍ତ କରିବାକୁ ହିଁ ହେବ । ସ୍ୱରାଜ୍ୟ ଆମକୁ ପ୍ରାପ୍ତ ହେବା ହିଁ ଉଚିତ । ଏହି ଭାରତ ଆମର ନିଜ

ଦେଶ ଅଟେ । ବାଣପୁରର କିଲ୍ଲାରେ ଆପଣ ଯେଉଁ ନୂତନ ତୋପ, ଗୋଳାବାରୁଦ ଇତ୍ୟାଦି ପ୍ରସ୍ତୁତ କରି ରଖୁଛନ୍ତି ତା'ର ସୂଚନା ଫିରିଙ୍ଗିଙ୍କ ପାଖରେ ପହଞ୍ଚିବା ଉଚିତ ନୁହେଁ । ଏହାର ଧ୍ୟାନ ରଖିବାକୁ ହେବ । ଟିକମଗଡ଼ର ରାଣୀ ଲଡ଼ଇ ଏବଂ ନଥେଖାନ୍ ଦିୱାନ ଫିରିଙ୍ଗିଙ୍କ ସହିତ ହାତ ମିଳାଇ ସାରିଛନ୍ତି । ଏହି କଥାକୁ ଆମେ ଭୁଲିଯିବା ଉଚିତ ନୁହେଁ । ଏ ସଂପର୍କରେ ଦିୱାନ ଗଣେଶଜୁ ଆପଣଙ୍କୁ ସବିସ୍ତାର ସୂଚନା ଦେବେ ।'' (ଉପରୋକ୍ତ ଗ୍ରନ୍ଥ, ପୃ.୧୯-୨୦)

ଏହି ପତ୍ର ସଂପର୍କରେ ଶ୍ରୀ କୈଳାଶ ମଡ଼ବଇଆ କହନ୍ତି ଯେ 'ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ' ପୁସ୍ତକର ଔପନ୍ୟାସିକ ବୃନ୍ଦାବନଲାଲ ବର୍ମା ଏବଂ ବିଦ୍ରୋହୀ ବାଣପୁରର ଲେଖକ ବାସୁଦେବ ଗୋସ୍ୱାମୀ ଏ ଦୁଇଜଣ ଏହି ପତ୍ରକଥା ଜାଣିଥିଲେ କିନ୍ତୁ ଏହି ପତ୍ର ସେମାନଙ୍କୁ ମିଳିପାରି ନ ଥିଲା । ମଡ଼ବଇଆଙ୍କୁ ଏହା ଖୋଜିବାକୁ ପଡ଼ିଥିଲା । ଏଥିପାଇଁ ବହୁତ ଧାଁ ଧଉଡ଼ କରିବାକୁ ପଡ଼ିଥିଲା । ବହୁତ ପ୍ରଯତ୍ନ କଲା ପରେ, ଜୀର୍ଣ୍ଣ-ଶୀର୍ଣ୍ଣ ଅବସ୍ଥାରେ ଏହି ପତ୍ର ବାଣପୁର ବଂଶଜ ଛତ୍ରପୁର ନିବାସୀ ଦିୱାନ ବାହାଦୁର କୃଷ୍ଣପ୍ରସାଦ ସିଂହ ଏବଂ ରାଓସାହେବ ରାମପ୍ରସାଦ ସିଂହଙ୍କଠାରୁ ୩୦ ଅଗଷ୍ଟ ୧୯୭୬ରେ ପାଇଲେ । ଏହି ପତ୍ରର ସବୁଠୁ ବଡ଼ ବିଶେଷତ୍ୱ ଏହା ଯେ ଏଥିରୁ କୌଣସି ପତ୍ରରେ ଲକ୍ଷ୍ମୀବାଈ 'ସର୍ବଧର୍ମ', 'ଧର୍ମପାଇଁ' ପରି ଶବ୍ଦର ବ୍ୟବହାର କରି ନ ଥିଲେ । ସେ କେବଳ 'ସ୍ୱରାଜ୍ୟ' ଶବ୍ଦର ବ୍ୟବହାର କରିଥିଲେ । ଗୋଡ଼ସେ ଭଟ୍ଟଜୀଙ୍କ ସହିତ ବିଚାର ବିନିମୟବେଳେ ସ୍ୱଧର୍ମ ସଂପର୍କରେ ଚର୍ଚ୍ଚା କରୁଥିଲେ ତ ବାଣପୁର ରାଜାଙ୍କୁ ସେ ଜଣେ ପ୍ରଶାସକ ଭାବରେ ହିଁ ପତ୍ର ଲେଖୁଥିଲେ ।

ଶ୍ରାବଣ ଶୁଦ୍ଧ ୧୪, ସୋମବାର ସମ୍ବତ୍ ୧୯୧୪ (ସାଧାରଣତଃ ୪ ଅଗଷ୍ଟ ୧୮୫୭) ଦିନ ଲକ୍ଷ୍ମୀବାଈ କାଲ୍‌ପୀରୁ ଏକ ପତ୍ର ମର୍ଦାନସିଂହଙ୍କ ନିକଟକୁ ପ୍ରେରଣ କରିଥିଲେ । ସେହି ପତ୍ରରେ ରାଣୀ ଲେଖିଥିଲେ- ''ଆପଣ ସାଗରଆଡ଼କୁ ଯାତ୍ରା କରନ୍ତୁ, ସେଠାରେ ଯେତେ ମଧ୍ୟ ଇଂରେଜ ଫଉଜ ଅଛନ୍ତି ତାଙ୍କ ଉପରେ ଆକ୍ରମଣ କରି ତାଙ୍କୁ ମାରିପକାନ୍ତୁ ଏବଂ ତା'ପରେ ଶାହଗଡ଼ର ରାଜାଙ୍କୁ ନିଜ ସାଥିରେ ନେଇ କାଲ୍‌ପୀ ଦିଗରେ ପ୍ରସ୍ଥାନ କରନ୍ତୁ । ମୁଁ, ତାନ୍ତିଆ ଟୋପେ, ନାନାସାହେବଙ୍କ ସୈନ୍ୟ ସମସ୍ତେ ଏଠାରେ ପ୍ରସ୍ତୁତି ଚଳାଇଛୁଁ । ଆପଣ ବୋରଘାଟରେ ହ୍ୟୁରୋଜଙ୍କୁ ଅଟକାଇବାର ଚେଷ୍ଟା କରନ୍ତୁ । ତାଙ୍କୁ ନିଧନ କରି ତା'ପରେ କାଲ୍‌ପୀ ଆଡ଼କୁ ଯାତ୍ରା କରନ୍ତୁ । ଆମେ ସମସ୍ତେ ମିଶି ଗୋଆଲିଅରରେ ଇଂରେଜଙ୍କ ଉପରେ ଚଢ଼ାଉ କରିବା । ଆପଣ ଏଥିପାଇଁ ଆଉ ଡେରି କରନ୍ତୁ ନାହିଁ ।'' ଏହି ପତ୍ରରୁ ଏପରି ମନେହୁଏ ଯେ ସେତେବେଳେ ରାଣୀ ଲକ୍ଷ୍ମୀବାଈ ବୋଧହୁଏ କାଲ୍‌ପୀରେ ହିଁ ଥିଲେ ।

ଗୋଡ଼ସେ ଭଟ୍ଟଜୀଙ୍କର 'ମାଝାପ୍ରବାସ'ରୁ ଜଣାଯାଏ ଯେ ହ୍ୟୁରୋଜ ନିଜର ବିଶାଳ ସେନା ନେଇ ବୁନ୍ଦେଲଖଣ୍ଡର ଛୋଟ ଛୋଟ ରାଜ୍ୟକୁ ଧ୍ୱସ୍ତ-ବିଧ୍ୱସ୍ତ କରି ଝାନ୍‌ସୀ ଅଭିଯାନ

ନିମନ୍ତେ ସେହି ଦିଗରେ ଅଗ୍ରସର ହୋଇଥିଲେ । ସେତେବେଳେ ମର୍ଦାନସିଂହ ଲକ୍ଷ୍ମୀବାଈଙ୍କୁ ଏହି ପରାମର୍ଶ ଦେଇଥିଲେ ଯେ–''ହ୍ୟୁରୋଜ ସହିତ ଯୁଦ୍ଧ କରିବା ଖୁବ୍ କଷ୍ଟକର କାର୍ଯ୍ୟ ଅଟେ । ତେଣୁ ଆପଣ କାଲ୍ପୀ ଚାଲିଯାନ୍ତୁ । ସେଠାରେ ତାନ୍ତିଆ ଟୋପେ, ପେଶବାଙ୍କ ସୈନ୍ୟଦଳ ସାହାଯ୍ୟରେ ହ୍ୟୁରୋଜ ସହିତ ଯୁଦ୍ଧର ସମ୍ମୁଖୀନ ହୁଅନ୍ତୁ ।'' ଲକ୍ଷ୍ମୀବାଈ ଭାବିଥିଲେ ଯେ ଯୁଦ୍ଧ ଝାନ୍‌ସୀରେ ହିଁ ହେବ । ସେଥିପାଇଁ ସେ ନିଜର ପୂରା ପ୍ରସ୍ତୁତି ଏବଂ ବନ୍ଦୋବସ୍ତ ଝାନ୍‌ସୀ ଏବଂ ତା'ର ଆଖପାଖରେ ସଂପୂର୍ଣ୍ଣ କରିଦେଇଥିଲେ । ଦ୍ୱିତୀୟତଃ ଜୀବନ ପ୍ରତି ବିପଦ ଆଶଙ୍କା କାରଣରୁ ସେ ମାନସିକଭାବେ କାଲ୍ପୀ ଯିବାପାଇଁ ପ୍ରସ୍ତୁତ ନ ଥିଲେ । କିନ୍ତୁ ଏହି ପତ୍ରରୁ ଏପରି ସଙ୍କେତ ମିଳେ ଯେ ସମ୍ଭବତଃ ରାଣୀ ଲକ୍ଷ୍ମୀବାଈ ତାନ୍ତିଆ ଟୋପେ, ରାଓସାହେବ ପେଶବାଙ୍କ ପରାମର୍ଶ ନେବାପାଇଁ କାଲ୍ପୀ ଯାଇଥିବେ । ସେମାନଙ୍କ ସହିତ ବିଚାର ବିମର୍ଶ କରିବା ପରେ ହିଁ ହୁଏତ ସେ ମର୍ଦାନସିଂହଙ୍କୁ ଉକ୍ତ ପରାମର୍ଶମୂଳକ ପତ୍ର ଲେଖିଥିବେ । ଇତିମଧ୍ୟରେ ମର୍ଦାନସିଂହ ଯୁଦ୍ଧରେ ପରାସ୍ତ ହୋଇସାରିଥିଲେ । ତାଙ୍କୁ ବାଣପୁର ଛାଡ଼ିବାକୁ ପଡ଼ିଥିଲା । ସେଥିପାଇଁ ଲକ୍ଷ୍ମୀବାଈ କାଲ୍ପୀରେ ଆଶ୍ରା ନେବା ଛାଡ଼ି ଝାନ୍‌ସୀ ଫେରିଆସିଥିଲେ କି ? ଏହାର କୌଣସି ନିଶ୍ଚିତ ଅର୍ଥ ମିଳିବା କଷ୍ଟକର । ଏହି ପତ୍ର ଏକ ଦ୍ୱନ୍ଦ୍ୱ ସୃଷ୍ଟି କରେ, ଏଥିରେ ଦ୍ୱିମତ ନାହିଁ ।

ଗୋଆଲିଅରର ସରକାରୀ ପ୍ରାଚୀନ ବସ୍ତୁ ସଂଗ୍ରହାଳୟରେ ରାଣୀ ମର୍ଦାନସିଂହଙ୍କୁ ପଠାଇଥିବା ଏକ ପତ୍ର ପଢ଼ିବାକୁ ମିଳେ । ଏହି ପତ୍ର ଜ୍ୟେଷ୍ଠ ବଦୀ ୧୩, ଗୁରୁବାର ସମ୍ବତ୍ ୧୯୧୪ର ପାଖାପାଖି ପ୍ରେରିତ ହୋଇଥିଲା ।

ଉକ୍ତ ପତ୍ରରେ ରାଣୀ ଲେଖିଛନ୍ତି–''ମୋର ଦୂତ ହସ୍ତରେ ପ୍ରେରିତ ଏହି ପତ୍ର ମିଳିବାମାତ୍ରେ ଆପଣ ତୁରନ୍ତ ଝାନ୍‌ସୀ ଆସିଯାଆନ୍ତୁ । ଆପଣଙ୍କ ସହିତ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଚର୍ଚ୍ଚା କରିବାର ଅଛି । ସାମାନ୍ୟ ମଧ୍ୟ ବିଳମ୍ବ କରନ୍ତୁ ନାହିଁ । ଏଠାରେ ତାନ୍ତିଆ ଟୋପେ, ନାନାସାହେବ ମଧ୍ୟ ପହଞ୍ଚି ସାରିଛନ୍ତି । ତେଣୁ ଆସିବାରେ ବିଳମ୍ବ କରନ୍ତୁ ନାହିଁ । ଏହି ପତ୍ର ଜୁନ୍ ୧୦ ତାରିଖ ୧୮୫୭ରେ ଲେଖାଯାଇଥିଲା । ଏହାର ଅର୍ଥ ହେଲା ଯେ ୭ ଜୁନ୍‌ରେ ଝାନ୍‌ସୀର ବିଦ୍ରୋହ ହେବାର ତିନିଦିନ ପରେ ଏହି ପତ୍ର ପ୍ରେରଣ କରାଯାଇଥିଲା । (ଏହି ସମସ୍ତ ପତ୍ର ଅସଲି ଅଟେ ବୋଲି ଛତ୍ରପୁରର ଆସିଷ୍ଟାଣ୍ଟ ଜିଲ୍ଲା କଲେକ୍ଟର ପ୍ରମାଣ ଦେଇଛନ୍ତି ।)

ଏଥିରୁ ଗୋଟିଏ ବିଷୟ ସିଦ୍ଧ ହୁଏ ଯେ ରାଣୀ ଲକ୍ଷ୍ମୀବାଈ ଝାନ୍‌ସୀରେ ହୋଇଥିବା ବିଦ୍ରୋହର ସୂଚନା ସାଗରର କମିଶନର ଇର୍କସନଙ୍କୁ ଯେଉଁ ପତ୍ରଦ୍ୱାରା ଦେଇଥିଲେ ତାହାର ତାରିଖ ଥିଲା ୧୨ ଜୁନ୍ ୧୮୫୭ । ଏହାର ଦୁଇଦିନ ପୂର୍ବରୁ ରାଣୀ ମର୍ଦାନସିଂହଙ୍କୁ ଚିଠି ଲେଖି ଇଂରେଜଙ୍କ ବିରୋଧରେ ଏକଜୁଟ୍ ହୋଇ ଯୁଦ୍ଧ କରିବାର ପ୍ରସ୍ତୁତି ସଂପର୍କରେ ସୂଚନା ଦେଇଥିଲେ । ରାଣୀ ଖୁବ୍ ସାବଧାନତାର ସହ ତଥା ଧୂର୍ତ୍ତତାର ସହ ନିଜର ଖେଳ ଖେଳୁଥିଲେ । ଏକ ପକ୍ଷରେ ସେ ଇଂରେଜଙ୍କୁ ପତ୍ର ଲେଖି ଲେଖି ନିଜର ସ୍ୱାମୀଭକ୍ତି

ଏବଂ ସାହାଯ୍ୟ କରିବାର ଇଚ୍ଛା ବ୍ୟକ୍ତ କରି ଚାଲିଥିଲେ, ଯାହାଫଳରେ ଇଂରେଜ ଦ୍ୱିଧାଗ୍ରସ୍ତ ହେବେ । ଅନ୍ୟପକ୍ଷରେ ମର୍ଦ୍ଦାନସିଂହଙ୍କୁ ଚିଠି ଲେଖି ଫିରିଙ୍ଗିଙ୍କ ବିରୋଧରେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେବାପାଇଁ ପ୍ରୋତ୍ସାହିତ କରି ଚାଲିଥିଲେ । ରାଣୀ ଲକ୍ଷ୍ମୀବାଈଙ୍କର ଏହି ନୀତିକୁ କୂଟନୀତି କୁହାଯିବ ନା ବୁଦ୍ଧିମାନ୍‌ଯୁକ୍ତ ଚାତୁରୀ ନୀତି କୁହାଯିବ ? ଇଂରେଜଙ୍କ ଦୃଷ୍ଟିରେ ଏହା କପଟନୀତି ସାବ୍ୟସ୍ତ ହୋଇଥିଲା, ଭାରତୀୟ ଦୃଷ୍ଟିକୋଣରୁ ଏହାକୁ ଚାତୁର୍ଯ୍ୟନୀତି ଭାବରେ ଗ୍ରହଣ କରାଯାଏ ।

## ନାରୀ ହେବା ଏକ ଅଭିଶାପ

ଏଯାବତ୍ ପରମ୍ପରା ଅନୁଯାୟୀ ଯୁଦ୍ଧ କେବଳ ପୁରୁଷମାନେ ହିଁ ଲଢ଼ନ୍ତି । କିନ୍ତୁ ଇଂରେଜଙ୍କ ବିରୋଧରେ ଏହି ଯୁଦ୍ଧରେ ଜଣେ ପୌରୁଷମୟୀ ରାଣୀ ଲକ୍ଷ୍ମୀବାଈ ଯୁଦ୍ଧର ଆକାଶରେ ଦେଦୀପ୍ୟମାନ ନକ୍ଷତ୍ର ପରି ଉଦ୍‌ଭାସିତା ହୋଇଥିଲେ । ସେ ପୁରୁଷପରି ବୀରତ୍ୱପୂର୍ଣ୍ଣ କାର୍ଯ୍ୟକଳାପ ଦେଖାଇଥିଲେ ତଥାପି ଜଣେ ନାରୀ ହେବା ତାଙ୍କ ଜୀବନର ମହତ୍ତ୍ୱପୂର୍ଣ୍ଣ ଦିଗ ମଧ୍ୟ ଥିଲା । ଜଣେ ନାରୀ ହୋଇଥିବା ଦୃଷ୍ଟିରୁ ଲକ୍ଷ୍ମୀବାଈ ନିଜର ସେହି ସମସ୍ତ କର୍ତ୍ତବ୍ୟକୁ ପୂର୍ଣ୍ଣଭାବରେ ପାଳନ କରିଥିଲେ । ଯାହାସବୁ ଜଣେ ନାରୀଠାରୁ ଆଶା କରାଯାଏ, ସେଥିରେ ସେ କୌଣସି ପ୍ରକାରେ ହେଳା କରି ନ ଥିଲେ । କିନ୍ତୁ ଗୋଟିଏ ନାରୀକୁ ଯେଉଁସବୁ ସାମାଜିକ ଶୃଙ୍ଖଳା ଭିତରେ ରହି ରୀତିନୀତି ପାଳନ କରିବାକୁ ହୋଇଥାଏ, ରାଣୀ ସେସବୁ ଭିତରୁ ବାହାରକୁ ଆସିବା ପାଇଁ ଭରପୂର ପ୍ରୟାସ କରିଥିଲେ ଏବଂ ସେ ସେଥିରୁ ବାହାରକୁ ବାହାରି ମଧ୍ୟ ଆସିଥିଲେ । କିନ୍ତୁ ଯେତେବେଳେ ଆବଶ୍ୟକ ପଡ଼ିଛି ସେ ଜାଣିଶୁଣି ନିଜର ନାରୀହେବାର ଉଲ୍ଲେଖ ମଧ୍ୟ କରିଛନ୍ତି ।

ନଥେଖାନ୍ ନିଜର କୋଡ଼ିଏହଜାର ସୈନ୍ୟ ଏବଂ ଅନେକ ତୋପ ସହିତ ଝାନ୍ସୀ ଉପରେ ଆକ୍ରମଣ କରିବାକୁ ଆସିଥିଲା । ସେତେବେଳେ ସେ ରାଣୀଙ୍କ ପାଖକୁ ଏକ ସନ୍ଦେଶ ପ୍ରେରଣ କରି କହିଥିଲା ଯେ–"ଇଂରେଜମାନେ ଯେଉଁ ମାସିକ ପେନ୍‌ସନ୍ ଆପଣଙ୍କୁ ପ୍ରଦାନ କରୁଛନ୍ତି ତାହା ଆପଣଙ୍କୁ ସେହିପରି ମିଳିବ । ତା'ର ପ୍ରତିବଦଳରେ ଆପଣ ଝାନ୍ସୀର ରାଜଗାଦି ଓର୍‌ଛାର ରାଣୀଙ୍କୁ ଦେଇଦିଅନ୍ତୁ ।" କେତେକ ବ୍ୟକ୍ତି ରାଣୀଙ୍କୁ ନଥେଖାନ୍‌ର ପ୍ରସ୍ତାବ ସ୍ୱୀକାର କରିବାକୁ ପରାମର୍ଶ ଦେଇଥିଲେ । କିନ୍ତୁ ସେମାନଙ୍କର ପରାମର୍ଶକୁ ଅବଜ୍ଞା କରି ରାଣୀ ନଥେଖାନ୍‌ଙ୍କୁ ଖବର ପଠାଇଲେ– "ମୁଁ ଶିବରାମ ରାଓଙ୍କ ବୋହୂ । ଆପଣଙ୍କ ପରି ବୁନ୍ଦେଲି ଲୋକଙ୍କୁ ନପୁଂସକ ବନାଇଦେବାର ସାମର୍ଥ୍ୟ ମୋ ଭିତରେ ଅଛି । ତେଣୁ ଆପଣ ଦୂରଗାମୀ ପରିଣାମ କଥା ଭାବି ଯୁଦ୍ଧ କରିବାର ବିଚାର ପରିତ୍ୟାଗ କରନ୍ତୁ ।" (ପାରସନିସ୍, ପୃ–୯୨) ରାଣୀଙ୍କ ଉତ୍ତର ଶୁଣି ନଥେଖାନ୍ ନିଆଁବାଣ ହୋଇ ଯାଇଥିଲେ ।

ପତ୍ରର ଭାଷା ଅସଭ୍ୟ ଅଟେ । ସେଥିରୁ ନାରୀର ଅଭିମାନ ବାରି ହୋଇପଡ଼େ । ଏଥିରେ ଏକ ଧମକ ଅଛି । ନଥେଖାନ୍‌ର ପୁରୁଷାର୍ଥକୁ ସେ ଆହ୍ୱାନ ଦେଇଥିଲେ । ରାଣୀ

ଏପରି ଭାଷା କାହିଁକି ବ୍ୟବହାର କଲେ ? ଗୋଡ଼ସେ ଭଟ୍ଟଜୀ 'ମାଝାପ୍ରବାସ' ପୁସ୍ତକକୁ ସେ ସମୟର ନିଜର ଅନୁଭବକୁ ଆଧାର କରି ଲେଖିଛନ୍ତି । ଝାନ୍ସୀ ସହରର ସାମାଜିକ ସ୍ଥିତି ସଂପର୍କରେ ଲେଖା ହୋଇଥିବା ବର୍ଣ୍ଣନାକୁ ପଢ଼ିଲେ ଜଣାଯାଏ ଯେ ସେ ସମୟରେ ବୁନ୍ଦେଲଖଣ୍ଡରେ ନୈତିକ ଅନାଚାର, ବିଶୃଙ୍ଖଳ ଆଚରଣର ପ୍ରାବଲ୍ୟ ଥିଲା । ସେ ସବୁ ବିଷୟରେ ଖୋଲାଖୋଲି ଚର୍ଚ୍ଚା କରାଯାଉଥିଲା । ସେଥିରୁ ଜଣାଯାଏ ଯେ ବୁନ୍ଦେଲଖଣ୍ଡର ନାରୀମାନେ ଆକ୍ରମକ ପ୍ରବୃତ୍ତିର ଥିଲେ । ଏହା ଗୋଡ଼ସେ ଭଟ୍ଟଜୀଙ୍କର ମତ ଥିଲା । ବୁନ୍ଦେଲଖଣ୍ଡର ପୁରୁଷମାନେ ଷଣ୍ଢ, ଏପରି ଏକ ବିଚାରଧାରା ମଧ୍ୟ ସେ ସମୟରେ ପ୍ରଚଳିତ ଥିଲା । ଗୋଡ଼ସେ ଭଟ୍ଟଜୀ ଏହାର ମଧ୍ୟ ଉଲ୍ଲେଖ କରିଛନ୍ତି । ଏପରି ପରିସ୍ଥିତିକୁ ଦେଖିଲେ ଯଦି ଲକ୍ଷ୍ମୀବାଈ ନଥେଖାନ୍‌ର ଅପମାନଜନକ ପ୍ରସ୍ତାବର ଉତ୍ତରରେ ଅଭଦ୍ର ଭାଷା ବ୍ୟବହାର କରିଛନ୍ତି ତ ତାହାର ମୁଖ୍ୟ ଉଦ୍ଦେଶ୍ୟ ହେଲା, ଲୋକଙ୍କ ଭାଷାରେ ହିଁ ଏହାର ଉତ୍ତର ଦେବାର ଥିଲା । ଆମେ ଏହାକୁ ଏପରି ମଧ୍ୟ କହିପାରିବା ।

ଆହୁରି ଦୁଇଟି ଉଦାହରଣ ମିଳିଥାଏ । କିନ୍ତୁ ଏହା ଏତେ ତିକ୍ତ ନୁହେଁ । ଝାନ୍ସୀର ଜଣେ ଗୁପ୍ତଚର ସରଦାରର ଏକ ପତ୍ର ବାଣପୁର ରାଜାଙ୍କ ହାତରେ ପଡ଼ିଥିଲା । ସେହି ଗୁପ୍ତଚରକୁ ଖୋଜିବା ପରିବର୍ତ୍ତେ ଲକ୍ଷ୍ମୀବାଈ ସମସ୍ତ ସରଦାରଙ୍କୁ ଏକତ୍ରିତ କରି ରାଜ୍ୟନିଷ୍ଠ ହେବାର ଶପଥ କରାଇବାର ବାଟ ବାଛିଥିଲେ । ନିଜର ସରଦାରଙ୍କ ଉପରେ ବେଇମାନିର ଆରୋପ ଲଗାଇବା ତାଙ୍କୁ ଠିକ୍ ଲାଗି ନ ଥିଲା । ଦ୍ୱିତୀୟତଃ ସନ୍ଦେହ ବ୍ୟକ୍ତ କଲେ ସରଦାରମାନଙ୍କ ମଧ୍ୟରେ ଅସନ୍ତୋଷ ବ୍ୟାପିବାର ଆଶଙ୍କା ଥିଲା । ସେହି ମହତ୍ତ୍ୱପୂର୍ଣ୍ଣ ଏବଂ ସଂକଟଜନକ ସମୟରେ ଏପରି କିଛି ପଦକ୍ଷେପ ନେବା ଉଚିତ ନ ଥିଲା, ଯେଉଁଥିରେ କି ଲୋକମାନଙ୍କ ମନରେ ରୋଷ ସୃଷ୍ଟି ହୋଇଥାନ୍ତା । ସାମାଜିକ ରୀତି ଓ ପରମ୍ପରା ଅନୁଯାୟୀ ବେଲପତ୍ର ହାତରେ ଧରି ରାଜ୍ୟନିଷ୍ଠାର ଶପଥ କରାଇବା ହିଁ ଏକ ଉଚିତ ମାର୍ଗ ଥିଲା ଏବଂ ସେଥିପାଇଁ ସେ ସମସ୍ତ ସରଦାରମାନଙ୍କର ଏକ ସଭା ଡକାଇଲେ ଏବଂ ସେମାନଙ୍କୁ ସମ୍ବୋଧିତ କରି କହିଲେ– ''ମୁଁ ଜଣେ ନାରୀ, ତା' ଉପରେ ଜଣେ ବିଧବା । ପୂରାପୂରି ପ୍ରୌଢ଼ା ଏବଂ ମୁଁ କାହାର ବୋହୂ ଏହା ମଧ୍ୟ ମୋ ପାଇଁ ଭାବିବା ଜରୁରି ଅଟେ । ଏହି ଅବସରରେ ଯଦି କାହାରି ମନରେ କୌଣସି କପଟ ଥାଏ ତ ତାହା ଦୂର କରିବାପାଇଁ ନିଷ୍କପଟ ଭାବରେ ଏହି ଶିବଲିଙ୍ଗ ଉପରେ ହାତ ରଖି ବେଲପତ୍ରୀକୁ ସ୍ପର୍ଶ କରନ୍ତୁ ।'' ଏହିପରି ରାଣୀ ନାରୀ ହେବାର, ବିଧବା ହେବାର, ବୟସ୍କ ହେବାର ସଙ୍କେତ ଦେଇ ସରଦାରମାନଙ୍କର ଭାବନାକୁ ଆହ୍ୱାନ ଜଣାଇଥିଲେ । ବ୍ୟକ୍ତିଗତ ପ୍ରସଙ୍ଗରେ ସେ ନିଜକୁ ନାରୀତ୍ୱର ଦେହଳୀରୁ ମୁକ୍ତି କଲା ପରେ ମଧ୍ୟ ଯେତେବେଳେ ଏପରି ସଙ୍କଟର ପରୀକ୍ଷା ସୃଷ୍ଟି ହୋଇଥିଲା ସେତେବେଳେ ରାଜ୍ୟର କଲ୍ୟାଣ ଦୃଷ୍ଟିରୁ ନିଜକୁ ନାରୀ ଭାବରେ ଜାଣିଶୁଣି ଉଲ୍ଲେଖ କରିବାରେ ସେ କେବେ ପଛେଇ ଯାଇ ନ ଥିଲେ ।

ଦ୍ୱିତୀୟ ଘଟଣାଟି ଏହିପରି ଅଟେ । ହ୍ୟୁରୋଜ ରାଣୀଙ୍କୁ ସାକ୍ଷାତ୍ କରିବାପାଇଁ ଆମନ୍ତ୍ରଣ କରିଥିଲେ । ସେତେବେଳେ ହ୍ୟୁରୋଜ ଏହି ସର୍ତ୍ତ ରଖିଥିଲେ ଯେ ସାକ୍ଷାତ୍ କରିବାକୁ ଆସିଲାବେଳେ ତାଙ୍କ ପାଖରେ ଯେପରି କୌଣସି ଅସ୍ତ୍ର ରହିବ ନାହିଁ । ସେ ନିଜ ସହିତ ଯେଉଁ ଅଧିକାରୀମାନଙ୍କୁ ଆଣିବେ ତାଙ୍କ ନିକଟରେ ମଧ୍ୟ କୌଣସି ଅସ୍ତ୍ରଶସ୍ତ୍ର ରହିବ ନାହିଁ । ଏହି ସର୍ତ୍ତର ଉତ୍ତରରେ ରାଣୀ କହିଥିଲେ "ମୁଁ ଜଣେ ନାରୀ, ମୋ ପକ୍ଷରେ ସାକ୍ଷାତ୍ କରିବାକୁ ଯିବା ସମ୍ଭବ ନୁହେଁ ।" ପ୍ରାୟତଃ ପରାଜିତ ଅଥବା ଅଧୀନସ୍ଥ ରାଜାମାନଙ୍କୁ ପଛକୁ ହାତବାନ୍ଧି ଅର୍ଥାତ୍ ନିରସ୍ତ୍ର ହୋଇ ବିଜୟୀ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେବାର ବହୁ ଉଦାହରଣ ଇତିହାସରୁ ମିଳିଥାଏ । ଏହା ସେ ସମୟର ଏକ ପ୍ରଥା ଥିଲା । ରାଣୀ ନିଜକୁ ଶାସକ ବୋଲି ଭାବୁଥିଲେ । ସେଥିପାଇଁ ସେ ଚାହୁଁଥିଲେ ଯେ ହ୍ୟୁରୋଜ ତାଙ୍କୁ ସମସ୍ତରେ ସମ୍ମାନ ପ୍ରଦାନ କରନ୍ତୁ । କିନ୍ତୁ ହ୍ୟୁରୋଜଙ୍କର ଏପରି ସର୍ତ୍ତ ରଖିବା ପଛରେ ରାଣୀଙ୍କୁ ଅପମାନିତ କରିବାର ଉଦ୍ଦେଶ୍ୟ ସ୍ପଷ୍ଟ ବାରି ହୋଇପଡୁଥିଲା । ଏହି କାରଣରୁ ରାଣୀ ପତ୍ରରେ ନିଜର ପକ୍ଷ ସମର୍ଥନ କରି କହିଥିଲେ ଯେ "ମୁଁ ଜଣେ ନାରୀ ହୋଇଥିବାରୁ ଯିବା ସମ୍ଭବ ହେବ ନାହିଁ ।" ଅର୍ଥାତ୍ ସେ ସ୍ପଷ୍ଟ ସଙ୍କେତ ଦେବାକୁ ଚାହୁଁଥିଲେ ଯେ ଜଣେ ନାରୀ ପରପୁରୁଷଙ୍କ ନିକଟକୁ ଯିବା ଉଚିତ ହେବ ନାହିଁ । ଭାରତୀୟ ପରମ୍ପରା ମଧ୍ୟ ଏହା କହିଥାଏ । ଏପରି ତ ଅନେକ ସ୍ଥାନରେ ଲକ୍ଷ୍ମୀବାଈ ଏହି ପରମ୍ପରାକୁ ଅକ୍ଷରେ ଅକ୍ଷରେ ପାଳନ କରିଥିବାର ଉଦାହରଣ ମିଳେ । ଯେତେବେଳେ ମଧ୍ୟ ଇଂରେଜ ଅଧିକାରୀ ତାଙ୍କୁ ସାକ୍ଷାତ୍ କରିବାକୁ ଆସୁଥିଲେ ସେ ସେମାନଙ୍କ ସହିତ ସାମ୍ନାସାମ୍ନି ବସି କଥାବାର୍ତ୍ତା କରୁଥିଲେ । କିନ୍ତୁ ହ୍ୟୁରୋଜଙ୍କ ଦରବାରରେ ଅସ୍ତ୍ରହୀନ ହୋଇ ଏକ ଅପରାଧୀ ରୂପରେ ଉପସ୍ଥିତ ହେବା ତାଙ୍କର ପସନ୍ଦ ନ ଥିଲା । ସେଠାରେ ସେ ବିଶ୍ୱାସଘାତକତାର ସମ୍ଭାବନା ମଧ୍ୟ ଦେଖୁଥିଲେ । ସେଠାକୁ ଯିବା ପାଗଳାମି ହେବ ବୋଲି ସେ ଭାବୁଥିଲେ । ସେଥିପାଇଁ 'ମୁଁ ଜଣେ ସ୍ତ୍ରୀଲୋକ' ବୋଲି ବାହାନା କରି ସେ ଏହି ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିଥିଲେ । ଲକ୍ଷ୍ମୀବାଈଙ୍କ ସ୍ୱଭାବକୁ ବୁଝି ହ୍ୟୁରୋଜ ଯଦି ତାଙ୍କୁ ସମାନ ଆସନ ଦେଇ କଥାବାର୍ତ୍ତା ନିମନ୍ତେ ଆମନ୍ତ୍ରଣ କରିଥାନ୍ତେ, ତାହେଲେ ହୁଏତ ରାଣୀ ସେହିପରି ଆଟବାଟ ସହିତ ତାଙ୍କୁ ଭେଟିବାକୁ ଯାଇଥାନ୍ତେ ଯେପରି ସେ ମହାଲକ୍ଷ୍ମୀଙ୍କ ଦର୍ଶନ ନିମନ୍ତେ ଯିବାଆସିବା କରୁଥିଲେ । ନାରୀ ଭାବରେ ହେଉ ବା ଶାସକ ଭାବରେ, ସେ କେବେ ମଧ୍ୟ ନିଜର ସ୍ତରକୁ ତଳକୁ ଖସିବାକୁ ଦେଇ ନ ଥିଲେ ।

କେବଳ ଗୋଟିଏ ଥର ଏପରି ଏକ ଘଟଣା ଘଟିଥିଲା ଯେତେବେଳେ ନାରୀ ହୋଇଥିବାରୁ ସେ ଖୁବ୍ ଲଜ୍ଜିତ ଅନୁଭବ କରିଥିଲେ । କୌଚର ପରାଜୟ ପରେ କାଲ୍‌ପୀ ଫେରିବା ବାଟରେ ଅଚାନକ ରାଣୀଙ୍କ ସାକ୍ଷାତ୍ ଗୋଡ଼ସେ ଭଟ୍ଟଜୀଙ୍କ ସହିତ ହୋଇଥିଲା । ଅଚାନକ ରାଣୀଙ୍କୁ ଖୁବ୍ ଶୋଷ ହେଉଥିଲା । ବାଟରେ ଗୋଟିଏ କୂଅ ଦେଖି ସେ ପାଣି ପିଇବାପାଇଁ ସେଠାରେ ଅଟକିଗଲେ । କୂଅ ପାଖରେ ଗୋଡ଼ସେ ଭଟ୍ଟଜୀ ବସିଥିଲେ ।

ସେ ରାଣୀଙ୍କୁ ଚିହ୍ନିପାରିଲେ ଏବଂ ଆଗେଇଯାଇ ଯେପରି କୂଅ ଭିତରେ ମାଠିଆ ପକାଇବାକୁ ଗଲେ, ରାଣୀ କହିଲେ– ''ଆପଣ ବିଦ୍ୱାନ୍ ବ୍ରାହ୍ମଣ ପରି ଲାଗୁଛନ୍ତି, ଆପଣ ମୋ ପାଇଁ ପାଣି କାଢ଼ନ୍ତୁ ନାହିଁ । ମୁଁ ନିଜେ ପାଣି କାଢୁଛି ।'' ତା'ପରେ ସେ ସ୍ୱୟଂ ପାଣି କାଢ଼ି ପିଇଥିଲେ । ତା'ପରେ ସେ ଗୋଡ଼ସେ ଭଟ୍ଟଜୀଙ୍କୁ କହିଲେ ''ଅଧସେର ଅଟା ଉପରେ ମୋର ଅଧିକାର । ମୋ ପରି ରାଣ୍ଡ–ମୁଣ୍ଡକୁ ଏ ସବୁ ଝନ୍‌ଝଟରେ ପଡ଼ିବାର ଦରକାର ନ ଥିଲା । କିନ୍ତୁ ହିନ୍ଦୁମାନଙ୍କର ଧର୍ମର ରକ୍ଷା ପାଇଁ ଏହି କାର୍ଯ୍ୟରେ ପ୍ରବୃତ୍ତ ହେଲି । ଈଶ୍ୱର ଆମକୁ ଯଶ ଦେଲେ ନାହିଁ ।''

ଯେଉଁ ଲକ୍ଷ୍ମୀବାଈ ନିଜର ଅଧିକାର ପାଇଁ କାନୁନ୍, ନୈତିକତା, ମୈତ୍ରୀ ସମ୍ବନ୍ଧର ଆଶ୍ରୟ ନେଇଥିଲେ, ପତ୍ରାଚାର କରିଥିଲେ, ସୁଯୋଗ ପାଇବାମାତ୍ରେ ସରକାରଙ୍କ ବିରୋଧରେ ଯୁଦ୍ଧ ମଧ କରିଥିଲେ, ସେହି ଲକ୍ଷ୍ମୀବାଈ ଦକ୍ଷିଣା ଲାଳସାରେ ନିଜ ଗ୍ରାମ ଦେଶ ଛାଡ଼ି ଗାଁ ଗାଁ ଘୂରି ବୁଲୁଥିବା ଜଣେ ବିଦ୍ୱାନ୍ ବ୍ରାହ୍ମଣଙ୍କୁ ତାଙ୍କର ବୁଝିପାରିବା ଏବଂ ବିଶ୍ୱାସ କରିପାରିବା ପରି ଭାଷାରେ କମ୍ପାନୀ ସରକାରଙ୍କ ସହିତ ଯୁଦ୍ଧ କରିବାର ନିଜ ଭୂମିକା ସମ୍ପର୍କରେ ବୁଝାଉଥିଲେ । ରାଣ୍ଡ–ମୁଣ୍ଡ, ଏହି ଶବ୍ଦର ଧ୍ୱନାତ୍ମକ ବ୍ୟାଖ୍ୟାର ଲକ୍ଷ୍ମୀବାଈଙ୍କ ଜୀବନରେ କୌଣସି ମହତ୍ତ୍ୱ ନ ଥିଲା । ନା ସେ ସେହିପରି ଜୀବନଯାପନ କରୁଥିଲେ । ତଥାପି ମଧ ସେ ସେହି ଶବ୍ଦକୁ ବ୍ୟବହାର କରିଥିଲେ । ତାହା ଏକ ଯଥାର୍ଥ ଥିଲା । କଥିତ ଭାଷାରେ 'ରାଣ୍ଡ' – ଅର୍ଥ ବିଧବା । ସେ ବିଧବା ତ ଥିଲେ ଇ । 'ମୁଣ୍ଡ' ମାନେ ଲଣ୍ଡା ହେବା, କେଶ ଲଣ୍ଡା କରାଇଥିବା ସ୍ତ୍ରୀ । ଏହା ମାନେ କ'ଣ ରାଣୀ ଯୁଦ୍ଧ ଆରମ୍ଭ ହେବା ପରେ ନିଜର କେଶ କାଟି ଦେଇଥିଲେ ? ମନରେ ଏପରି ପ୍ରଶ୍ନ ଉଠିପାରେ । 'ଅଧସେର ଅଟାର ହକ୍‌ଦାର' ଲକ୍ଷ୍ମୀବାଈ 'ଧର୍ମ ସମ୍ବନ୍ଧରେ ଅଭିମାନ ରଖିବାବାଲୀ' ଲଢ଼େଇରେ ପ୍ରବୃତ୍ତ ହୋଇଥିଲେ । ସ୍ୱୟଂ ନିଜପାଇଁ ରାଣୀ ଶବ୍ଦ ଉଲ୍ଲେଖ କରିବାରେ ମନ ବ୍ୟଥିତ ହୋଇଯାଏ । କିନ୍ତୁ ସେ ସମୟରେ ତାଙ୍କ ମନରେ ବିଚାରର ଦ୍ୱନ୍ଦ୍ୱ ପ୍ରତି ଧ୍ୟାନ ଆକର୍ଷିତ ହୁଏ । ଇଂରେଜ ଆମର ଧର୍ମକୁ ବୁଡ଼େଇବାକୁ ଆସିଛି । ସେଥିପାଇଁ ସେମାନଙ୍କ ସହିତ ଲଢ଼ିବା ଆମର କର୍ତ୍ତବ୍ୟ ଅଟେ । ନିଜର ହିଁ ଅଧିକାର ପାଇଁ, ହକ୍‌ପାଇଁ ଲଢ଼ିବା ଅର୍ଥ ଧର୍ମ ପାଇଁ ଲଢ଼ିବା ଅଟେ । ତଥାପି ଗୋଟିଏ ସ୍ତ୍ରୀଲୋକ, ରାଣ୍ଡ–ମୁଣ୍ଡ, ଅଧସେର ଅଟାର ମାଲିକାଣୀ ହୋଇ ବି ପଛେଇଯାଇ ନ ଥିଲେ । ଜଣେ ପୁରୁଷ ପରି ତା'ର ସମକକ୍ଷ ନ ହେଲେହେଁ ନିଃସନ୍ଦେହରେ ଉତ୍ତମ ଉପାୟରେ ଇଂରେଜଙ୍କ ବିରୋଧରେ ଲଢ଼ିଥିଲେ ।

ରାଣୀ ଲକ୍ଷ୍ମୀବାଈଙ୍କର ଅନେକ ସଦ୍‌ଗୁଣ ଏବଂ ବିଶେଷତ୍ୱର ଉଲ୍ଲେଖ ଦେଖିବାକୁ ଏବଂ ପଢ଼ିବାକୁ ମିଳେ । ସେ ନିଜର ଶିଶୁ ପୋଷ୍ୟସନ୍ତାନକୁ ଶେଷନିଃଶ୍ୱାସ ତ୍ୟାଗକଲା ପର୍ଯ୍ୟନ୍ତ ନିରନ୍ତର ନିଜ ପାଖରେ ରଖିଥିଲେ । ଦରକାରବେଳେ ତାଙ୍କୁ ପିଠିରେ ବାନ୍ଧି ଦ୍ରୁତଗତିରେ ଅଶ୍ୱଚାଳନା ମଧ କରୁଥିଲେ । କିନ୍ତୁ ନିଜ ପୁଅର ଦେଖାଶୁଣା ସେ କେବେବି ଅନ୍ୟ ହାତରେ ଛାଡ଼ି ଦେଇ ନ ଥିଲେ । କେବଳ ଯୁଦ୍ଧଭୂମିରେ ଲଢ଼ିବାକୁ ଯିବାବେଳେ

ସେ ତାକୁ ନିଜର ଅତ୍ୟନ୍ତ ବିଶ୍ୱସ୍ତ ଲୋକଙ୍କ ଜିମା ଛାଡ଼ିଯାଉଥିଲେ । ଦାମୋଦର ରାଓଙ୍କ ଦେଖାଶୁଣା କରିବାକୁ ତାଙ୍କ ସହିତ କାଶୀ ଓ ସୁନ୍ଦର ମୁନ୍ଦର ରହିଥିଲେ । ତଥାପି ଲକ୍ଷ୍ମୀବାଈ ନିଜ ପୁଅକୁ କେବେ ଆଖିରୁ ଦୂର ହେବାକୁ ଦେଉ ନ ଥିଲେ । ପୋଷ୍ୟ ଭାବରେ ଗ୍ରହଣ କଲାବେଳେ ଦାମୋଦର ରାଓ ପାଞ୍ଚବର୍ଷର ହୋଇଥିଲେ । ତିନିବର୍ଷ ପାଇଁ ମା'ର ମମତା ଦେଇ ସେ ତାଙ୍କର ଲାଳନପାଳନ କରିଥିଲେ । ସେଥିପାଇଁ କାଲ୍‌ପୀ ଯିବାବେଳେ ସେ ନିଜ ପୁଅ ପାଇଁ ଦୁଧ ଓ ପାଣି ନେବାକୁ ଭୁଲି ନ ଥିଲେ । ପ୍ରଜାମାନଙ୍କୁ ମଧ୍ୟ ସେ ନିଜର ସନ୍ତାନ ପରି ଦେଖୁଥିଲେ । ନିଜର ସନ୍ତାନ ପରି ସେମାନଙ୍କୁ ସ୍ନେହ କରୁଥିଲେ, ସେମାନଙ୍କର ମଙ୍ଗଳ ପାଇଁ ଧ୍ୟାନ ଦେଉଥିଲେ । କାଲ୍‌ପୀ ଯିବାକୁ ସ୍ଥିର କରିସାରିଲା ପରେ ଆଗାମି ପ୍ରସ୍ତୁତି ହେବା ପୂର୍ବରୁ ସେ ସମସ୍ତଙ୍କୁ ଭୋଜି ନିମନ୍ତେ ଆମନ୍ତ୍ରଣ କରିଥିଲେ । କାରଣ ଦିନସାରା କେହି କିଛି ଖାଇ ନ ଥିଲେ । ସେହିପରି ଯୁଦ୍ଧ ନିମନ୍ତେ ହତିଆର ବ୍ୟବସ୍ଥା କରିବାବେଳେ ଲକ୍ଷ୍ମୀବାଈ ଖାଦ୍ୟପଦାର୍ଥ ମଧ୍ୟ ଜମା କରି ରଖିଥିଲେ । କୋଡ଼ିଏ କୋଡ଼ିଏ ମହଣ ଚଣାଭଜା ଇତ୍ୟାଦି ଭର୍ତ୍ତିକରି ରଖିଥିଲେ । ଭିନ୍ନ ଭିନ୍ନ ଜାତିଙ୍କ ପାଇଁ ଅନ୍ନଛତ୍ର ଖୋଲିଥିଲେ । ଯୁଦ୍ଧରେ ଶହୀଦ ହେଉଥିବା ସୈନିକମାନଙ୍କର ବିଧବା, ଶିଶୁ ଏବଂ ପରିବାରଙ୍କ ପାଳନପୋଷଣର ଦାୟିତ୍ୱ ନେବାକଥା ଲକ୍ଷ୍ମୀବାଈ ଘୋଷଣା କରିଥିଲେ । ୧୮୫୭ର ଯୁଦ୍ଧରେ ଅନେକ ରାଜା-ମହାରାଜା, ନବାବ ଇଂରେଜମାନଙ୍କ ବିରୋଧରେ ଜୋର୍‌ଦାର ନିର୍ଣ୍ଣାୟକ ଲଢ଼େଇ ଲଢ଼ିଥିଲେ । କିନ୍ତୁ ପ୍ରଜାଜନଙ୍କୁ ଧ୍ୟାନରେ ରଖି ଏ ପ୍ରକାରର ସର୍ବାଙ୍ଗୀଣ ପ୍ରସ୍ତୁତି ଅନ୍ୟ କେହି କରିଥିବାର ପ୍ରମାଣ ମିଳେ ନାହିଁ । ଯୁଦ୍ଧ ସମୟରେ ଦେଖାଦେଇଥିବା କଠିନ ପରିସ୍ଥିତିର ଫାଇଦା ଉଠାଇ ବେପାରୀମାନେ ଅତ୍ୟାବଶ୍ୟକ ପଦାର୍ଥର ମୂଲ୍ୟ ବଢ଼ାଇ ଦିଅନ୍ତି ଓ ଜନସାଧାରଣଙ୍କ ଉପରେ ଅସୁବିଧାର ପାହାଡ଼ ଭାଙ୍ଗିପଡ଼େ । ସେଥିପାଇଁ ଖାଦ୍ୟଶସ୍ୟ ଇତ୍ୟାଦି ବସ୍ତୁକୁ ସଂଗ୍ରହ କରି ମହଜୁଦ ରଖିବାର ଚିନ୍ତା କେବଳ ଜଣେ ସ୍ତ୍ରୀଲୋକ ହିଁ କରିପାରେ ।

ଜଣେ ସ୍ତ୍ରୀ ହୋଇଥିବା ଯୋଗୁଁ ଗୋଡ଼ସେ ଭଟ୍ଟଜୀ ରାଣୀ ଲକ୍ଷ୍ମୀବାଈଙ୍କୁ ମନକୁ ଉଦାସ କଲାବାଲା, ବୁଦ୍ଧିହୀନ କରିବାବାଲା, ଅସହାୟ କରିଦେବାବାଲା ଭାବରେ ଉଲ୍ଲେଖ କରିଛନ୍ତି । ରାଣୀ ଅଧରାତି ବେଳକୁ କାଲ୍‌ପୀରେ ପହଞ୍ଚିଥିଲେ । "ମୁହଁଟି କିଞ୍ଚିତ୍ ଆରକ୍ତ, ମ୍ଲାନ ଏବଂ ଉଦାସ ଦିଶୁଥିଲା । ରାତି ବହୁତ ହୋଇଯାଇଥିଲା । ସେଥିପାଇଁ ଶ୍ରୀମନ୍ତଙ୍କୁ ନିଜର ଆସିବା ଖବର ଦେଲେ ନାହିଁ । ସକାଳ ହେବାମାତ୍ରେ ଝାନ୍‌ସୀବାଲୀ ବାଈ ଗୋଦାମରେ ପହଞ୍ଚିବା ଖବର ଚାରିଆଡ଼େ ବ୍ୟାପିଗଲା । ସକାଳର ନିତ୍ୟକର୍ମ ସାରି କ'ଣ କରିବାକୁ ହେବ ବିଚାର କରୁଥିବାବେଳେ ହିଁ ନାରୀଧର୍ମ ଅନୁସାରେ ରଜୋଧର୍ମ ଆରମ୍ଭ ହୋଇଗଲା । ସେତେବେଳେ ବାଈସାହେବଙ୍କୁ ଆଗଅପେକ୍ଷା ଦଶଗୁଣ ଅଧିକ ଦୁଃଖ ହେଲା । ମୁଁ ତାହା ବର୍ଣ୍ଣନା କରିପାରିବି ନାହିଁ ।" ପିଣ୍ଡାଲୁଗାଟି ସହିତ କାଲ୍‌ପୀ ପହଞ୍ଚିଥିବା ରାଣୀଙ୍କର ସେହି ଅବସ୍ଥା ବର୍ଣ୍ଣନା କରି ଗୋଡ଼ସେ ଭଟ୍ଟଜୀ ଆଗକୁ ଲେଖିଛନ୍ତି–

''ସେତେବେଳେ ବାଈସାହେବଙ୍କ ଆଖିରୁ ଲୁହ ବୋହିବାକୁ ଲାଗିଲା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନ ଥିଲା । ବାଈସାହେବଙ୍କୁ ଦେଖି ସବୁ ଲୋକ କାନ୍ଦିବାକୁ ଲାଗିଲେ ।'' ଝାନ୍‌ସୀର ରାଣୀସାହିବା କାଲ୍‌ପୀ ପହଞ୍ଚିଗଲେ– ଏ ଖବର ପ୍ରଚାରିତ ହେବାମାତ୍ରେ ହିଁ ରାଓସାହେବ ତାନ୍ତିଆ ଟୋପେଙ୍କୁ କହି ମୂଲ୍ୟବାନ୍ ଶାଢ଼ୀ, ଅନ୍ୟ ପଦାର୍ଥ, ଚାକର ବାକର, ଲୁଗାପଟା, ତମ୍ବୁ ଚାନ୍ଦୁଆ, ବାସନକୁସନ, ଖାଦ୍ୟଶସ୍ୟ ଆଦିର ଉଚିତ ବ୍ୟବସ୍ଥା କରିଦେଲେ ।

ଗୋଡ଼ସେଜୀଙ୍କର ଏହି ବର୍ଣ୍ଣନା ପାଠ କରି ପାଠକର ହୃଦୟ ମଧ ଦ୍ରବୀଭୂତ ହୋଇଯାଏ । ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଝାନ୍‌ସୀର ଗୁପ୍ତଚରଙ୍କଠାରୁ ଖବର ପାଇ ମର୍ଦାନସିଂହ ରାଣୀଙ୍କୁ କାଲ୍‌ପୀ ଚାଲିଯିବା ପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ଅସୁରକ୍ଷାର ଭୟରେ ପୁରୁଷଙ୍କ ଆଶ୍ରୟରେ ଯିବାର ପରାମର୍ଶକୁ ରାଣୀ ନାମଞ୍ଜୁର କରିଦେଇଥିଲେ । ହେଲେ ଯୁଦ୍ଧ ହାରିଯିବା ପରେ ତାଙ୍କୁ ବାଧ ହୋଇ ପେଶବାଙ୍କ ଆଶ୍ରୟରେ ଯିବାକୁ ହେଲା । ଏହି କଥାର ବ୍ୟଥା ତାଙ୍କ ହୃଦୟରେ ରହିବା ସ୍ୱାଭାବିକ ଥିଲା । ଅନ୍ୟ ପକ୍ଷରେ ସ୍ତ୍ରୀଲୋକ ହେବା ଯୋଗୁଁ କିଛି ପ୍ରାକୃତିକ ନିୟମ ମଧ ତାଙ୍କୁ ପାଳନ କରିବାକୁ ପଡୁଥିଲା । ଲାଜ– ଲଜ୍ଜାକୁ ମଧ ପାଳନ କରିବାକୁ ହେଉଥିଲା । ସେ ସମୟରେ ମାସିକ ଧର୍ମ ଆରମ୍ଭ ହେଲେ ସ୍ତ୍ରୀଲୋକଙ୍କୁ ଅସ୍ପୃଶ୍ୟ ମନେ କରାଯାଉଥିଲା । ତିନିଦିନ ଯାଏ ଅଲଗା ହୋଇ ଗୋଟିଏ କଣରେ ବସିବାକୁ ପଡୁଥିଲା । ରାଣୀ ଏହାକୁ ନିଜର ଏବଂ ନାରୀ ଜୀବନର ଅପମାନ ବୋଲି ଭାବୁଥିଲେ । ତତ୍‌କାଳୀନ ରୀତି, ପରମ୍ପରା, ମାନ୍ୟତାକୁ ଧାନ ରଖି ଏପରି ଅସ୍ପୃଶ୍ୟ ଅବସ୍ଥାରେ ସେହି ସ୍ୱାଭିମାନୀ ସ୍ତ୍ରୀଲୋକ କେତେ ସଙ୍କୋଚ ଅନୁଭବ କରୁଥିବେ ? ପ୍ରାକୃତିକ ନିୟମ ଏବଂ ଧାର୍ମିକ ମାନ୍ୟତା, ସାମାଜିକ ରୀତିନୀତି, ପରମ୍ପରା ସମ୍ମୁଖରେ ରାଣୀଙ୍କ ଧୈର୍ଯ୍ୟ ଏବଂ ଶୌର୍ଯ୍ୟ ଦୁର୍ବଳ ହୋଇଯାଉଥିଲା । ଏପରି ପରିସ୍ଥିତିରେ ସେ ରାଓସାହେବ, ତାନ୍ତିଆ ଟୋପେ କିମ୍ବା ଅନ୍ୟ କାହାକୁ ମଧ ସାକ୍ଷାତ୍ କରିପାରୁ ନ ଥିଲେ । ବିଚାର ଆଲୋଚନା କରିବାକୁ ମଧ ଅସମର୍ଥ ଥିଲେ । ଶତ୍ରୁ ପିଛା କରୁଛନ୍ତି ଏହା ଜାଣି ମଧ ଆଗାମି ଯୋଜନା ସ୍ଥିର କରିବା କଷ୍ଟକର ହୋଇପଡୁଥିଲା । ତିନିଦିନଯାଏ ରାଣୀଙ୍କର ସମସ୍ତ କାର୍ଯ୍ୟକ୍ରମ ଅଟକିଗଲା । ପ୍ରକୃତି ଓ ଧର୍ମ, ସାମାଜିକ ମାନ୍ୟତା ଆଗରେ ସେ ନତମସ୍ତକ ହୋଇସାରିଥିଲେ । ସ୍ୱାଭିମାନୀ ରାଣୀ ନିଜକୁ କେତେ ଅସମର୍ଥ ଏବଂ ଅସହାୟ ଅନୁଭବ କରୁ ନ ଥିଲେ ସତେ ?

## ଅନ୍ତିମକ୍ଷଣ

ରାଣୀ ଲକ୍ଷ୍ମୀବାଈଙ୍କ ପାଇଁ 'ସ୍ତ୍ରୀ–ପୁରୁଷ'ର ଅଡୁଆସୂତା ଏପରି ଛନ୍ଦାଯାଇଥିଲା । ସେ ମଣିଷ ନୁହନ୍ତି, ଅବତାରୀ ଥିଲେ, ଅନିର୍ବାଣ ପ୍ରେରଣାପୁଞ୍ଜ । ସବୁଠାରୁ ତେଜସ୍ୱୀ ଏବଂ ହୃଦୟବିଦାରକ ବଳିଦାନୀ ଜୀବନ ତାଙ୍କର ମୃତ୍ୟୁ ସମୟରେ ଦେଖିବାକୁ ମିଳିଥିଲା । ରାଣୀ ପ୍ରାଣକୁ ବାଜି ଲଗେଇ ବୀରତ୍ୱର ସହ ଯୁଦ୍ଧ କରୁଥିଲେ । ରାସ୍ତାରେ ଗୋଟିଏ

ପାଣିନାଳ ପଡ଼ିଲା । ଘୋଡ଼ା ଅଡ଼ିଯାଇ ଠିଆ ହୋଇଗଲା । ଶତ୍ରୁସୈନ୍ୟମାନେ ରାଣୀଙ୍କୁ ଘେରିଗଲେ । ରାଣୀଙ୍କ ଜଙ୍ଘରେ ଆଘାତ ହେଲା ଏବଂ ରାଣୀ ମାଟି ଉପରେ ଖସିପଡ଼ିଲେ । ପ୍ରହାର କରିଥିବା ଅଶ୍ୱାରୋହୀ ଏକଥା ଜାଣିପାରିଲା ନାହିଁ ଯେ ସେ ଯାହାକୁ ଆଘାତ କରିଛି ସେ ଜଣେ ସ୍ତ୍ରୀଲୋକ, ଝାନ୍ସୀର ରାଣୀ ଲକ୍ଷ୍ମୀବାଈ, ଇଂରେଜମାନେ ଯାହାର ତଲାସରେ ଅଛନ୍ତି । ସେହି ଘୋଡ଼ସବାର ଭାବିଥିବ ଯେ ସେ ଆହତ କରିଥିବା ସିପାହି କୌଣସି ତରୁଣ ସୈନିକ ଅଟେ ଏବଂ ତଳକୁ ଖସିପଡ଼ିଛି । ରାଣୀ ଆଗକୁ ବାହାରି ଯାଇଛନ୍ତି । ତେଣୁ ତାଙ୍କର ପିଛା କରିବା ଜରୁରି ଭାବି ସେ ଆଗକୁ ଚାଲିଗଲା ।

ସମସ୍ତ ପରିସ୍ଥିତିକୁ ଅବଲୋକନ କଲେ ଗୋଟିଏ କଥା ମନରେ ଆସେ ଯେ ଯେତେବେଳେ ରାଣୀଙ୍କ ମସ୍ତକରେ ଏତେ ଜୋର୍‌ରେ ପ୍ରହାର ହୋଇଥିଲା ଏବଂ ତାଙ୍କର ଆଖି ବାହାରି ଝୁଲି ପଡ଼ିଥିଲା ସେତେବେଳେ ସେ ମୁଣ୍ଡରେ ବାନ୍ଧିଥିବା ପଗଡ଼ି ବା ସାଫା (ଶିରୋ ଭୂଷା) ମଧ୍ୟ ଫିଟିଯାଇ ତଳେ ପଡ଼ିଯାଇଥିବ । ତାଙ୍କର ଜୁଡ଼ା ମଧ୍ୟ ଫିଟି ଯାଇଥିବ । କେଶ ମଧ୍ୟ ମୁକୁଳା ହୋଇଯାଇଥିବ । ନାରୀ ହେବାର ସମସ୍ତ ପ୍ରମାଣ ମହଜୁଦ୍ ଥିଲେ ହେଁ ଆହତ ହୋଇଥିବା ସିପାହି ଜଣେ ସ୍ତ୍ରୀଲୋକ ଅଟେ, ପ୍ରହାର କରିଥିବା ଲୋକ ଏହା ଅନୁମାନ ମଧ୍ୟ କରିପାରିଲା ନାହିଁ । ଏହାର ଅର୍ଥ ହୋଇପାରେ ଯେ ଯୁଦ୍ଧ ଆରମ୍ଭ ହେଲା ପରେ ରାଣୀ ଲକ୍ଷ୍ମୀବାଈ ହୁଏତ ନିଜର କେଶକୁ ସେ ସମୟର ପୁରୁଷ ସୈନିକଙ୍କ ପରି କାଟି ଛୋଟ କରିଥିଲେ । ଏହା କହିବାର ତାତ୍ପର୍ଯ୍ୟ ହେଲା ଯେ ଲକ୍ଷ୍ମୀବାଈ ବିଧବା ହେଲା ପରେ କେଶମୁଣ୍ଡନ କରି ନ ଥିଲେ । କିନ୍ତୁ ବେଳ ପଡ଼ିଲାବେଳେ ସେହି ଲକ୍ଷ୍ମୀବାଈ ମୁଣ୍ଡନ ତ କଲେ ନାହିଁ, କିନ୍ତୁ କେଶକୁ କାଟି ଛୋଟ ନିଶ୍ଚୟ କରିଦେଇଥିବେ । ଅନ୍ୟଥା ଆହତ ହୋଇ ଖସି ପଡ଼ିଥିବା ସିପାହି ଯେ ଜଣେ ସ୍ତ୍ରୀଲୋକ ଏକଥା ନିଶ୍ଚୟଭାବେ ଶତ୍ରୁକୁ ଜଣାପଡ଼ିଯାଇଥାନ୍ତା ।

ରାଣୀଙ୍କ ଉପରେ ପଡ଼ିଥିବା ପ୍ରହାର ଖୁବ୍ ଗଭୀର ଥିଲା । ଗୋଟିଏ ଜଙ୍ଘ ବିଲ୍‌କୁଲ୍ କାମ କରୁ ନ ଥିଲା । ରକ୍ତର ଫୁଆରା ପେଟ ଏବଂ ଜଙ୍ଘର କ୍ଷତରୁ ଫିଟି ପଡ଼ିଥିଲା । ହୁଏତ ରାଣୀ ସେତେବେଳେ କବଚ ପରିଧାନ କରି ନ ଥିଲେ । ଆହତ ହେବା ପରେ ଏପରି ଅବସ୍ଥାରେ ରାଣୀଙ୍କ ଉନ୍ନତ ବକ୍ଷୋଜକୁ ଦେଖି ମଧ୍ୟ ପ୍ରହାର କରିବାବାଲା ଏହା ଜାଣିପାରିଲା ନାହିଁ ଯେ ସିପାହି ଜଣେ ନାରୀ ଅଟେ । ଏପରି ତ ରାଣୀଙ୍କର ସୌଷ୍ଠବମୟ ଶାରୀରିକ ଗଢ଼ଣର ବର୍ଣ୍ଣନା ସମସ୍ତେ କରିଛନ୍ତି, କିନ୍ତୁ ରାଣୀ ଜାଣିଜାଣି ନିଜେ ନିଜକୁ ଏପରି ଭାବେ ପ୍ରଦର୍ଶିତ କରିବାର ଚେଷ୍ଟା କରିଥିବେ, ଯେପରିକି ସେ ଜଣେ ସ୍ତ୍ରୀଲୋକ ବୋଲି ସହଜରେ କେହି ଜାଣିପାରିବେ ନାହିଁ । ସେ ସର୍ବଦା ସତର୍କ ରହୁଥିଲେ, ଚାରିଆଡ଼କୁ ଦୃଷ୍ଟି ରଖୁଥିଲେ । ଏହି ଦୁଇଟି ଗୁଣ ତାଙ୍କର ନିଜସ୍ୱ ବୈଶିଷ୍ଟ୍ୟ ଥିଲା ।

ସାର୍ ଏଡ଼ୱିନ୍ ଅର୍ନୋଲ୍‌ଡ ଲେଖିଛନ୍ତି– "ଯେଉଁ ନାରୀଙ୍କୁ ରାଜ୍ୟ ସଞ୍ଚାଳନ ନିମନ୍ତେ ଅସମର୍ଥ ବୋଲି ଭାବି ଆମେ ତାଙ୍କ ରାଜ୍ୟକୁ ଖାଲସା କରିଥିଲୁ, ସେହି ନାରୀ ଏକ

ବିଶାଳ ସେନାର ନେତୃତ୍ୱ ଗ୍ରହଣ କରିବାକୁ ଯେ ସମର୍ଥ– ଏହି କଥା ଆମେ ଅନୁଭବ କରୁ ।''

'Empire in India'ରେ ଟରେନ୍‌ସ ଲେଖିଛନ୍ତି ''୧୮୫୭ ମସିହାରେ କ୍ରାନ୍ତିଯୁଦ୍ଧର ଯେତେବେଳେ ଶଙ୍ଖନାଦ ହୋଇଥିଲା ସେତେବେଳେ ରାଣୀ ଅଶ୍ୱାରୋହଣ କରି ପୁରୁଷ ବେଶରେ ହଜାର ହଜାର ସୈନିକଙ୍କର ନେତୃତ୍ୱ ନେବାକୁ ବାହାରି ପଡ଼ିଥିଲେ । ନିଜର ବୀରତ୍ୱ ଯୋଗୁଁ ତାଙ୍କୁ ଜୋଆନ୍ ଅଫ୍ ଆର୍କ କୁହାଗଲା । ସାର୍ ହ୍ୟୁରୋଜଙ୍କ ସେନାକୁ ନାକରେ ଚଣା ଚୋବେଇବାବାଲୀ ସେ ହିଁ ଏକମାତ୍ର ଯୋଦ୍ଧା ସାବ୍ୟସ୍ତ ହୋଇଥିଲେ । ତାଙ୍କର ସମସ୍କନ୍ଧ ଦ୍ୱିତୀୟ କେହି ନ ଥିଲେ । ଭୟଙ୍କର ଯୁଦ୍ଧ ହୋଇଥିଲା । ତଥାପି ରାଣୀ ହତାଶ ହୋଇ ନ ଥିଲେ ।

'Indian Empire'ରେ ମାର୍ଟିନ୍ ଲେଖିଛନ୍ତି ''ରାଣୀ ଯେତେବେଳେ ଯୁଦ୍ଧ କରିବାକୁ ବାହାରିଥିଲେ, ସେତେବେଳେ ସେ ପୂର୍ଣ୍ଣଯୌବନା ଥିଲେ । ଦେଖିବାକୁ ଖୁବ୍ ସୁନ୍ଦରୀ ଥିଲେ । ତାଙ୍କ ଶରୀର ଶକ୍ତିଶାଳୀ ଥିଲା ଏବଂ ମନରେ ଅଦମ୍ୟ ଉତ୍ସାହ ଥିଲା । 'ମୁଣ୍ଡ କଟିଯିବ ପଛେ ନଇଁବ ନାହିଁ' ନୀତିରେ ବିଶ୍ୱାସ ରଖୁଥିବା ସେ ଜଣେ ସ୍ୱାଭିମାନୀ ନାରୀ ଥିଲେ । ରାଜପୁତ୍‌ମାନଙ୍କର ଶୌର୍ଯ୍ୟ ତାଙ୍କ ଶିରା ଶିରାରେ ସଞ୍ଚାରିତ ହେଉଥିଲା ।''

ଜଷ୍ଟିନ୍ ମେକାର୍ଥୀ ନିଜ ବର୍ଣ୍ଣନାରେ କହିଛନ୍ତି – ''ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଯୁଦ୍ଧରେ ସଂଘର୍ଷ କରିବାବାଲୀ କେବଳ ମାତ୍ର ଝାନ୍‌ସୀର ରାଣୀ ହିଁ ଥିଲେ । କ୍ରାନ୍ତି ଯୁଦ୍ଧରେ ସେ ନିଜର ସର୍ବସ୍ୱ ଅର୍ପଣ କରିଦେଇଥିଲେ । ଦିଲ୍ଲୀର ପରାଜୟ ପରେ କେତେ ମାସ ଧରି ସେ ସାର୍ ହ୍ୟୁରୋଜଙ୍କ ସୈନ୍ୟବାହିନୀଙ୍କୁ ନାକେଦମ୍ କରି ରଖିଥିଲେ । ସେ ନିଜର ସେନା ସହିତ ଯୁଦ୍ଧଭୂମିକୁ ଯାଉଥିଲେ ଏବଂ ସ୍ୱୟଂ ଯୁଦ୍ଧକୁ ଡେଇଁପଡୁଥିଲେ । ଗୋଆଲିଅର ଲଢ଼େଇରେ ଆମ ସୈନ୍ୟଙ୍କ ସହିତ ତାଙ୍କର ଘମାଘୋଟ ଯୁଦ୍ଧ ହୋଇଥିଲା । ସେତେବେଳେ ସେ ଘୋଡ଼ା ଉପରେ ସବାର ହୋଇ ଦୁଇ ହସ୍ତରେ ଶତ୍ରୁସେନା ଉପରେ ତରବାରିରେ ଆକ୍ରମଣ କରିବାକୁ ଲାଗିଲେ । ଶେଷରେ ମୁକାବିଲା କରୁ କରୁ ହିଁ ସେ ରଣଭୂମିରେ ନିଜର ପ୍ରାଣ ବିସର୍ଜନ କରିଥିଲେ । ତାଙ୍କର ସାହସ ଦେଖି ସାର ହ୍ୟୁରୋଜଙ୍କୁ ମଧ୍ୟ ରାଣୀଙ୍କ ପ୍ରତି ଗୌରବପୂର୍ଣ୍ଣ ବକ୍ତବ୍ୟ ରଖିବାକୁ ପଡ଼ିଥିଲା ।''

ହ୍ୟୁରୋଜଙ୍କୁ ଯେତେବେଳେ ଜଣାପଡ଼ିଲା ଯେ ଯୁଦ୍ଧରେ ଝାନ୍‌ସୀର ରାଣୀଙ୍କ ମୃତ୍ୟୁ ହୋଇଯାଇଛି, ସେତେବେଳେ ସେ ନିଜର ଭାବନାକୁ ଏହିପରି ଶବ୍ଦରେ ବ୍ୟକ୍ତ କରିଥିଲେ– ''ରାଣୀ ଅତ୍ୟନ୍ତ ଉଚ୍ଚକୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଉଦାରତା ଅସୀମ ଥିଲା । ଏହି କାରଣରୁ ତାଙ୍କର ଆଶ୍ରିତ ଏବଂ ସୈନିକମାନେ ସର୍ବଦା ତାଙ୍କୁ ଅସୀମ ପ୍ରେମ କରୁଥିଲେ । ତାଙ୍କ ପ୍ରତି ସବୁବେଳେ ପ୍ରସନ୍ନ ରହୁଥିଲେ । ରାଣୀ ସ୍ୱୟଂ ଜଣେ ବୀରଯୋଦ୍ଧା ଥିଲେ, ଧୈର୍ଯ୍ୟବାନ୍ ଥିଲେ । ତାଙ୍କରି ଯୋଗୁଁ ହିଁ ଯୁଦ୍ଧକୁ ଏକ ଭୟାନକ ରୂପ ମିଳିଥିଲା । ମହାରାଣୀ ଲକ୍ଷ୍ମୀବାଈଙ୍କ ମୃତ୍ୟୁ ଗୋଆଲିଅର ଯୁଦ୍ଧର ଏକ ମହତ୍ତ୍ୱପୂର୍ଣ୍ଣ ପରିଣାମ ଥିଲା । ଜଣେ ନାରୀ

ହୋଇଥିଲେ ମଧ୍ୟ ବିପକ୍ଷ ଶିବିର ଆଖିରେ ସର୍ବାଧିକ ବୀର, ସର୍ବୋତ୍ତମ ଏବଂ ସମସ୍ତଙ୍କଠାରୁ ଅଦ୍ଭୁତ ସେ ହିଁ ଥିଲେ ।''

ପ୍ରଥମେ ଝାନ୍‌ସୀ, ତା'ପରେ କୌଞ୍ଚ, କାଲ୍‌ପୀ, ଗୋଆଲିଅର ନିକଟର ବାହାଦୁରପୁର ଲଢ଼େଇରେ ଇଂରେଜ ଫଉଜଙ୍କ ଜୋରଦାର ଆକ୍ରମଣରେ ନିରାଶ ଏବଂ ହତୋତ୍ସାହିତ ସିପାହିମାନଙ୍କୁ ନିଜର ଧୀର-ଗମ୍ଭୀର ଶବ୍ଦରେ ଏକ ନୂଆ ଉତ୍ସାହ, ନୂଆ ଚେତନା ନିର୍ମାଣ କରିବାବାଲୀ ଏକୁଟିଆ ରାଣୀ ଲକ୍ଷ୍ମୀବାଈ ହିଁ ଥିଲେ । ତାଙ୍କ ପଦେ କଥାରେ ଜୀବନ ଦେଇଦେବା ପାଇଁ ସିପାହିମାନେ ଗୋଡ଼ ଟେକି ରହିଥିଲେ । ଲକ୍ଷ୍ମୀବାଈଙ୍କ ପରି ଜିଦ୍‌ଖୋର, ଦୂରଦର୍ଶୀ ବୀରସୈନିକ ସେ ସମୟରେ ଖୋଜିପାଇବା କଷ୍ଟକର ଥିଲା । ଇଂରେଜଙ୍କ ସେନାପତି ସାର୍ ଜନ୍ ସ୍ମିଥ୍ ହ୍ୟୁରୋଜଙ୍କ ପରି ନାମକରା ଶ୍ରେଷ୍ଠ ଯୋଦ୍ଧାଙ୍କ ସହିତ ରାଣୀ ଲକ୍ଷ୍ମୀବାଈଙ୍କ ତୁଳନା କରି ଲେଖିଛନ୍ତି- ''ସାର ହ୍ୟୁରୋଜ ଏବଂ ରାଣୀ ଲକ୍ଷ୍ମୀବାଈ ଦୁଇଜଣଯାକ ଗୋଟିଏ ଢାଞ୍ଚାରେ ତିଆରି ହୋଇଥିଲେ । ଦୁଇଜଣଯାକ ପରିସ୍ଥିତିକୁ ଅନୁଧ୍ୟାନ କରୁଥିଲେ ଏବଂ ସେହି ଅନୁଯାୟୀ ନିଜର ଯୋଜନା ପ୍ରସ୍ତୁତ କରିବାରେ ଦକ୍ଷ ଥିଲେ । କେତେବେଳେ କ'ଣ କରାଯିବ, କେଉଁ ପଦକ୍ଷେପ ଗ୍ରହଣ କରାଯିବ ସେହି ଭାବରେ ସେମାନେ ନିଜର ଚାଲ୍ ଚଳାଉଥିଲେ । କେବଳ ଏତିକି ପାର୍ଥକ୍ୟ ଥିଲା ଯେ ଦୁଇଜଣଙ୍କୁ ସହଯୋଗ ଏବଂ ଆଧାର ଦେବା ଲୋକ ଅଲଗା ଅଲଗା ଥିଲେ ।''

ଜନ୍ ସ୍ମିଥ୍ ଲକ୍ଷ୍ମୀବାଈଙ୍କର ପୀଡ଼ାକୁ ମଧ୍ୟ ବର୍ଣ୍ଣନା କରିଛନ୍ତି । ବାଣପୁରର ରାଜା ମର୍ଦ୍ଦାନସିଂହ ରାଣୀଙ୍କୁ ଯଥାସମ୍ଭବ ସହାୟତା କରିଥିଲେ । ରାଓସାହେବ ପେଶବା ମଧ୍ୟ ସାହାଯ୍ୟ କରିଥିଲେ । କିନ୍ତୁ ତାଙ୍କର ସାହାଯ୍ୟ ଗୋଟିଏ ସୀମା ପର୍ଯ୍ୟନ୍ତ ଅସଂପୂର୍ଣ୍ଣ ଥିଲା । ମର୍ଦ୍ଦାନସିଂହ ଗୋଟିଏ ଛୋଟ ରାଜ୍ୟର ରାଜା ଥିଲେ । କିନ୍ତୁ ପେଶବାଙ୍କର ବିଶାଳ ସୈନ୍ୟବାହିନୀ ଥିଲା । ପ୍ରଚୁର ପରିମାଣରେ ଗୋଳାବାରୁଦ ଏବଂ ଧନସମ୍ପତ୍ତି ମଧ୍ୟ ତାଙ୍କ ପାଖରେ ଥିଲା । କେବଳ ରାଓସାହେବଙ୍କର ଉତ୍ସାହ, ଉଦ୍ଦୀପନା, ନୀତିନିର୍ଦ୍ଧାରଣ, କାର୍ଯ୍ୟକ୍ଷମତା ଏବଂ ମନର ବିଶାଳତାର ଅଭାବ ଥିଲା । ହ୍ୟୁରୋଜଙ୍କ ସହିତ ହୋଇଥିବା ଏଗାରଦିନର ଯୁଦ୍ଧରେ ନିଜର କାର୍ଯ୍ୟଦକ୍ଷତା ପ୍ରମାଣିତ କରିଥିବା ଲକ୍ଷ୍ମୀବାଈଙ୍କୁ ରାଓସାହେବ ଯଦି ସେନାପତି କରି ଦେଇଥାନ୍ତେ ଏବଂ ତାଙ୍କୁ ନିଜର ବିଶାଳ ସେନା ସମର୍ପି ଦେଇଥାନ୍ତେ ତାହେଲେ ହୁଏତ ଯୁଦ୍ଧର ଗତି ବଦଳି ଯାଇଥାନ୍ତା । ଇଂରେଜଙ୍କ ମନରେ ସବୁବେଳେ ରାଣୀଙ୍କ ପ୍ରତି ଭୟ ଲାଗି ରହିଥିଲା । ରାଣୀ ନିଜର ମାତ୍ର ଦୁଇଶହ ସୈନିକଙ୍କ ସହିତ ଏକାକୀ ପଡ଼ି ଯାଇଥିଲେ । ବୋଧହୁଏ ରାଓସାହେବ ରାଣୀଙ୍କୁ ଜଣେ ସ୍ତ୍ରୀଲୋକ ଭାବେ ଦୁର୍ବଳ ଭାବି ନେଇଥିଲେ ଏବଂ ସେଥିପାଇଁ ଅଧିକ ମହତ୍ତ୍ୱ ପ୍ରଦାନ କରି ନ ଥିଲେ । ସେନାପତି ପଦ ତ ଦୂରର କଥା ତାଙ୍କୁ ସୈନ୍ୟସାମନ୍ତ ଓ ଗୋଳାବାରୁଦ ମଧ୍ୟ ଦିଆଯାଇ ନ ଥିଲା । ରାଓସାହେବଙ୍କ ପୁରୁଷସୁଲଭ ଅହଙ୍କାର ଏଠାରେ ମଧ୍ୟ ବାଟ ଓଗାଳିଥିଲା । ନାରୀ ଯେତେ

ବୀର ଏବଂ କର୍ତ୍ତବ୍ୟନିଷ୍ଠ ହେଲେହେଁ ପୁରୁଷଠାରୁ ତାକୁ ସର୍ବଦା ଦୁର୍ବଳ ବୋଲି ଗ୍ରହଣ କରାଯାଇଥାଏ । ନିଜର ଏ ପ୍ରକାରର ଚିନ୍ତାଧାରା ଯୋଗୁଁ ପେଶବା ରାଣୀଙ୍କ ମୂଲ୍ୟ ଆକଳନ କରିବାରେ ଅସମର୍ଥ ଥିଲେ । ହୃଦୟର ବିଶାଳତା ଏବଂ ସାମର୍ଥ୍ୟ ତ ତାଙ୍କ ପାଖରେ ଆଗରୁ ନ ଥିଲା ।

ପ୍ରସିଦ୍ଧ କବି କଲ୍ୟାଣସିଂହ କୁଡ଼ରା ୧୮୬୯ରେ 'ଲକ୍ଷ୍ମୀବାଈ ରାସୋ' ନାମକ କାବ୍ୟ ବୁନ୍ଦେଲଖଣ୍ଡି ଭାଷାରେ ରଚନା କରିଥିଲେ । ସେଥିରେ ସେ ଲକ୍ଷ୍ମୀବାଈଙ୍କର ଶୌର୍ଯ୍ୟଗାଥାର ବର୍ଣ୍ଣନା ଅତ୍ୟନ୍ତ ସରସ ଏବଂ ସୁବୋଧ ଭାଷାରେ କରିଛନ୍ତି । ତାଙ୍କର ଏହି କାବ୍ୟ ପ୍ରେରଣାଦାୟକ ଏବଂ ଚେତନାଜାଗ୍ରତକାରୀ ଅଟେ ।

ଠନଂକତ ଢାଲ ଭନଂକତ ଭାଲ । ଖନଂକତ ଖର୍ଗ, ଉଠେ ଅଗ୍ନିଜ୍ୱାଲ ।
ଉଠେ ତିତହି ତିତ ତୁଣ୍ଡବିତୁଣ୍ଡ । ଝିରୈ ସିରନା ଭର ଶ୍ରୋନିତ କୁଣ୍ଡ ।।
କହୈ ଭୁଜପାଉଁ କରୈ ଅତିନ୍ୟାଓ । ଫଟୈ ସିର ସୁର ତଉରତ ଚାଓ ।
ଧରୈ ପନ ପୈଜ ଦୁଚୁନ ଉଛାବା । ଲରୈ ରଜପୁତ ଲଗୈ ତନ ଘାଓ ।।
ଚଲୈ ବନ୍ଧୁକ ତଡ଼ାକ ତଡ଼ାକ । ଲରୈ ପୁନ ଢାଲନ ଖର୍ଗ ଖଡ଼ାକ ।।
ହରୈ ନାହି ଶରହି ସୁର ଲରାକ । ଫଟୈ ସିର ଔର ଧର ହୋଇ ଭଡ଼ାକ ।।

ଝାନ୍‌ସୀ ନିବାସୀ ମଦନେଶ ନାମକ ଜଣେ କବି ମଧ ରାଣୀ ଲକ୍ଷ୍ମୀବାଈଙ୍କର ଗୌରବଗାନ କରି 'ଲକ୍ଷ୍ମୀବାଈ ରାସୋ' ନାମକ କାବ୍ୟ ଲେଖିଛନ୍ତି । କବି ମଦନେଶଙ୍କ ଜେଜେବାପା ରାଣୀଙ୍କର ଦରବାରୀ ଥିଲେ । ସେ ପ୍ରତ୍ୟକ୍ଷରୂପେ ଯୁଦ୍ଧରେ ଅଂଶଗ୍ରହଣ କରିଥିଲେ । ଯୁଦ୍ଧରେ ତାଙ୍କର ଅଙ୍ଗେନିଭା ଅନୁଭୂତିକୁ ମଦନେଶ ନିଜ ଜେଜେଙ୍କ ମୁହଁରୁ ଶୁଣିଥିଲେ । ତାକୁ ହିଁ ଆଧାର କରି କବି ଏହି କାବ୍ୟ ରଚନା କରିଛନ୍ତି । ଏଥିପାଇଁ ଏହାକୁ ଅଧିକ ପ୍ରାମାଣିକ ବୋଲି ଗ୍ରହଣ କରାଯାଇପାରେ । ଯୁଦ୍ଧ ପରେ ମଧ ବହୁବର୍ଷଯାଏ ଲୋକଙ୍କ ମନରେ ଇଂରେଜଙ୍କ ଭୟ ଏପରି ଲାଗିରହିଥିଲା ଯେ ଝାନ୍‌ସୀର ଯୁଦ୍ଧ ଉପରେ ଆଧାରିତ ଏହି କାବ୍ୟକୁ ପ୍ରକାଶ କରିବାକୁ ୧୯୦୦ ମସିହାଯାଏ ଅପେକ୍ଷା କରିବାକୁ ହୋଇଥିଲା । କବି ମଦନେଶଙ୍କ ଏହି କାବ୍ୟ ପ୍ରେରଣା ଦେଇଥାଏ, କବିତାର ଭାବ ଏବଂ ଭାଷାର ସୌନ୍ଦର୍ଯ୍ୟ ମନକୁ ପ୍ରଫୁଲ୍ଲିତ କରିଦିଏ । କବି ରାଣୀଙ୍କ ସମ୍ପର୍କରେ ଲେଖିଛନ୍ତି–

ତନ କବଚ କସେ କାମିନ ସିର ଟୋପ କମାନୀ
ଦସ୍ତାନେ ଜୋଉ କର କ୍ରପାନ ଲୀନେ ପାନୀ
ତରବାର ଚଲାବେମେ ଚଞ୍ଚଲା ଲଜାନୀ
ଜହାଁ ତହାଁ ଲଗୀ ମୁଂଡ଼ନକେ ଝୁଂଡ଼ ଗିରାନୀ ।।

ସେ ଶରୀରରେ କବଚ ଧାରଣ କଲେ । ମସ୍ତକରେ କମାନୀଦାର ଟୋପି ପିନ୍ଧିଲେ । ଦୁଇ ହାତରେ ଦସ୍ତାନା ଚଢ଼ାଇଲେ । ହାତରେ କୃପାଣ ଧରିଲେ । ତରବାରି ତ ଏପରି ଚଳାଇଲେ ଯେ ବିଜୁଳି ମଧ ଲଜ୍ଜିତ ହୋଇଗଲା । ଯେଉଁଠି ଯେଉଁଠି ତରବାରିରେ ଆଘାତ

କଲେ ସେଇଠି ସେଇଠି ମୁଣ୍ଡ ଗଡ଼ିବାକୁ ଲାଗିଲା । ରାଣୀ ଲକ୍ଷ୍ମୀବାଈ ଏହିପରି ଶୂର ବୀରାଙ୍ଗନା ଥିଲେ ।

ନିଜ ସୈନ ଛୋଡ଼ ଆଗେ କୋ କରୌ ପାୟାନୀ
ସଙ୍ଗୈ ନ କୋଉ ଆୟ ଧଂସୀ ଫୌଜ ବିରାନୀ ।
ହୈ ଅତି ନିଶଙ୍କ ତେଜରୂପ ଗୁନ କୀ ଖାନୀ ।
ଶ୍ରୀ ବାଈ ଲକ୍ଷ୍ମୀ ହୈ ପ୍ରତ୍ୟକ୍ଷ ଭବାନୀ ॥

ନିଜ ସୈନ୍ୟଙ୍କୁ ପଛରେ ପକାଇ ସେ ଆଗକୁ ବଢ଼ିଚାଲିଲେ । ତାଙ୍କ ସହିତ କେହି ନ ଥିଲେ । ସେ ଏକାକୀ ଇଂରେଜ ଫଉଜଙ୍କ ଭିତରେ ବାଟ ଚିରି ପଶିଥିଲେ । ନିର୍ଭୟତା, ତେଜସ୍ୱୀୟତା, ରୂପ-ସୌନ୍ଦର୍ଯ୍ୟର ଖଣି ଲକ୍ଷ୍ମୀବାଈ ଏକପ୍ରକାର ପ୍ରକଟ ରୂପରେ ଦେବୀ ଭବାନୀ ହିଁ ଥିଲେ ।

ଇଂରେଜଙ୍କ ପ୍ରାଣରେ ଭୟ ସଞ୍ଚାର କରିବାବାଲା, ହ୍ୟୁରୋଜଙ୍କ ଫଉଜଙ୍କୁ ନିରନ୍ତର ଦହଗଞ୍ଜ କରିବାବାଲା, ହଇରାଣ କରିବାବାଲା, ଅସ୍ଥିରତା ସୃଷ୍ଟି କରିବାବାଲା ଏହି ଯୁଦ୍ଧ ଦୁଇଶହ ମାଇଲ ପରିଧି ଭିତରେ ହୋଇଥିଲା । ମଝି ସମୟକୁ ଛାଡ଼ିଦେଲେ ଏହି ଯୁଦ୍ଧର ଅବଧି ଥିଲା କେବଳ ତିନିମାସ । ସେତେବେଳେ ରାଣୀ ଲକ୍ଷ୍ମୀବାଈଙ୍କ ବୟସ କେବଳ ସତେଇଶ ବର୍ଷ ଥିଲା । ଏହି ଆତ୍ମଘାତୀ ଛୋଟ ଯୁଦ୍ଧରେ ସେହି ତରୁଣୀ ରାଣୀ ଲକ୍ଷ୍ମୀବାଈଙ୍କର କର୍ତ୍ତବ୍ୟଦକ୍ଷତା, ଭାରତୀୟ ଇତିହାସରେ ନିଜର ବୀରତ୍ୱ ଏବଂ ବଳିଦାନର ଯେଉଁ ଅଲିଭା ଦାଗ ଛାଡ଼ି ଦେଇଯାଇଛି ତାହା ଆଜି ମଧ୍ୟ ସ୍ୱର୍ଣ୍ଣାକ୍ଷରରେ ଅଙ୍କିତ ହୋଇ ରହିଅଛି । ଏହିପରି ଶତ୍ରୁ-ମିତ୍ରଙ୍କ ଦ୍ୱାରା ବର୍ଣ୍ଣିତ ଶାଶ୍ୱତ ଦୀପଶିଖା ବୀରା ରାଣୀଙ୍କ ମୃତ୍ୟୁ ମଧ୍ୟ କିପରି ଭବ୍ୟ ଥିଲା । ଏହା ତାଙ୍କର ପ୍ରତିଷ୍ଠାର ଅନୁରୂପ ଥିଲା । ରଣଭୂମିରେ ଯୁଦ୍ଧ କରୁ କରୁ ମିଳିଥିବା ଶହୀଦୀ-ମୃତ୍ୟୁ । ଯେପରି ମୃତ୍ୟୁ ତାଙ୍କର ଅଭିପ୍ରେତ ଥିଲା ସେହିପରି ତାଙ୍କୁ ମିଳିଥିଲା । ଅନ୍ତିମ ଯୁଦ୍ଧ ଗୋଆଲିଅରରେ ହୋଇଥିଲା । ଘମାଘୋଟ ଯୁଦ୍ଧ ହେଲା । ରାଣୀଙ୍କୁ ମୃତ୍ୟୁ କେବେବି ଡରାଇପାରି ନ ଥିଲା । ତାଙ୍କର କେବଳ ଗୋଟିଏ ଚିନ୍ତା ଥିଲା ଯେ ଆହତ ହେଲେ କିମ୍ବା ମରିଗଲା ପରେ ତାଙ୍କର ଅଚେତନ ଶରୀର ଯେପରି ଇଂରେଜଙ୍କ ହାତରେ ନ ପଡ଼େ । ଯଦି ସେପରି ହେବ ତେବେ ଫିରିଙ୍ଗିମାନେ ତାଙ୍କ ଶରୀରର ଦୁର୍ଗତି କରିଦେବେ । ସେହି ଭୟ ତାଙ୍କର ଲାଗି ରହିଥିଲା । ଇଂରେଜଙ୍କ ହାତରେ ପଡ଼ିଲେ ବିଦ୍ରୋହୀମାନଙ୍କୁ ସେମାନେ ତିଳ ତିଳ ଯାତନା ଦେଇ ହତ୍ୟା କରୁଥିଲେ । ଲୋକଙ୍କ ମନରେ ଆତଙ୍କ ସୃଷ୍ଟି କରିବାପାଇଁ ସେମାନଙ୍କର ଶବକୁ ଗଛରେ ଟଙ୍ଗେଇ ଦେଉଥିଲେ । କେବେ କେବେ ସେମାନଙ୍କୁ ତୋପ ମୁହଁରେ ମଧ୍ୟ ଉଡ଼େଇ ଦେଇଥିଲେ । ଏହିପରି ସେମାନେ ବିଦ୍ରୋହୀମାନଙ୍କୁ ପ୍ରାଣମୂର୍ଚ୍ଛା ପିଛା କରିବାରେ ଲାଗିପଡ଼ିଥିଲେ । ଲକ୍ଷ୍ମୀବାଈଙ୍କୁ ଧରାଇଦେବା ପାଇଁ କୋଡ଼ିଏ ହଜାର ଟଙ୍କାର ପୁରସ୍କାର ମଧ୍ୟ ଘୋଷଣା କରାଯାଇଥିଲା । ଧରାପଡ଼ିଲା ପରେ ତାଙ୍କ ଉପରେ ରାଜଦ୍ରୋହ ମକଦ୍ଦମା ଚଳାଇବାର ଫତୱା ମଧ୍ୟ ଜାରି କରି ଦିଆଯାଇଥିଲା । ରାଣୀ ଏସବୁ କଥା ନିଶ୍ଚିତଭାବରେ ଅବଗତ ଥିବେ । ଶତ୍ରୁଙ୍କ

ହାତରେ ପଡ଼ିଗଲେ ତାଙ୍କର ଯେ କି ଦୁର୍ଦ୍ଦଶା ହେବ ସେ ଏକଥା ନିଶ୍ଚୟ କଳ୍ପନା କରିଥିବେ । ସେଥିପାଇଁ ସେ ସର୍ବଦା ଚିନ୍ତାରେ ବୁଡ଼ି ରହୁଥିଲେ । ଏହି କାରଣରୁ ଝାନ୍ସୀର ପରାଜୟ ପରେ ସେ ନିଜକୁ ତୋପର ଗୋଳା ଆଗରେ ଶେଷ କରିଦେବାର ବିଚାର କରିଥିବେ । ସେତେବେଳେ ଏହି ଖବର ଚାରିଆଡ଼େ ବ୍ୟାପିଯାଇଥିଲା । ତୁରନ୍ତ ତାଙ୍କର ବିଶ୍ୱସ୍ତ ଲୋକମାନେ ତାଙ୍କ ସହିତ କଥାବାର୍ତ୍ତା କରିଥିଲେ ଏବଂ ଶପଥ ନେଇ ଏହି ଆଶ୍ୱାସନା ଦେଇଥିଲେ ଯେ କୌଣସି ପରିସ୍ଥିତିରେ ତାଙ୍କର ଶରୀରକୁ ଇଂରେଜଙ୍କ ହାତରେ ପଡ଼ିବାକୁ ଦିଆଯିବ ନାହିଁ । ଯଦି ସେପରି ପରିସ୍ଥିତି ସୃଷ୍ଟି ମଧ୍ୟ ହୁଏ ତା'ହେଲେ ଆସନ୍ନ ମରଣ ଅବସ୍ଥାରେ ମଧ୍ୟ ଶେଷନିଃଶ୍ୱାସ ତ୍ୟାଗର ଅପେକ୍ଷା ନ କରି ତାଙ୍କ ଶରୀରକୁ ଦାହ କରି ଦିଆଯିବ । ପ୍ରତ୍ୟେକ ନାରୀ ନିଜ ଜୀବନରେ ଏହି କଥାକୁ ଭୟ କରିଥାଏ ଯେ ତା'ର ଶରୀରର ବେଇଜତି ହୋଇ ନ ଯାଉ । ଝାନ୍ସୀର ରାଣୀ ମଧ୍ୟ ଏହି ଭୟରୁ ମୁକ୍ତ ନ ଥିଲେ ।

ସ୍ତ୍ରୀଲୋକମାନଙ୍କର ଏହି ଭୟର ଅକାଟ୍ୟ ବର୍ଣ୍ଣନା ଦୁର୍ଗାବାଇ ଭାଗବତଙ୍କର ଜେଜେମା କରିଥିଲେ । ନିଜର 'ରୂପ-ରଙ୍ଗ' ପୁସ୍ତକରେ ସଂଗୃହୀତ 'ନିଦିଧାସ' ଶୀର୍ଷକ ରଚନାରେ ଦୁର୍ଗାବାଇ ନିଜର ଜେଜେମାଙ୍କ ସ୍ମୃତି ସଂପର୍କରେ ଉଲ୍ଲେଖ କରିଛନ୍ତି । ତାଙ୍କର ଜେଜେମା ତାଙ୍କୁ ଥରେ କହିଥିଲେ, "ସାନ ହେଉ, ବଡ଼ ହେଉ, ଯୁବତୀ ହେଉ, ବୁଢ଼ୀ ହେଉ, ପ୍ରତ୍ୟେକ ନାରୀ ଏହା ଚାହେଁ ଯେ କୌଣସି ଦାଗ ନ ଲାଗି ଯେପରି ତା'ର ଶରୀର ଚିତାଗ୍ନିରେ ଭସ୍ମ ହୋଇଯାଉ । ତେବେ ଯାଇ ନାରୀ ନିଜ ଜୀବନକୁ ସଫଳ ମନେକରେ, ଅନ୍ୟଥା ନୁହେଁ । ଜୀବିତ ନାରୀ ମଧ୍ୟ ଏକ ଶରୀର ଅଟେ । ଲାସ୍ ମଧ୍ୟ ଏକ ଶରୀର ଅଟେ । ତା' ଉପରେ ଶାଗୁଣାମାନେ କେତେବେଳେ ଯେ ଝାମ୍ପିପଡ଼ିବେ କହିବା କଷ୍ଟକର ।" ତରୁଣୀ ଦୁର୍ଗାବାଇଙ୍କୁ ସେତେବେଳେ ନିଜ ଜେଜେମାଙ୍କ ଏହି ବକ୍ତବ୍ୟ ପସନ୍ଦ ହୋଇ ନ ଥିଲା । କିନ୍ତୁ ତାଙ୍କ ମନରେ ମଧ୍ୟ ଏହି ଭୟ ଘୁଣ ଖାଇଲାପରି ଚରି ଯାଇଥିଲା । ଭିତରେ ଭିତରେ ଫମ୍ପା କରି ଦେଉଥିଲା । କିଛିଦିନ ପରେ ତାଙ୍କ ଜେଜେମାଙ୍କର ଦେହାନ୍ତ ହୋଇଗଲା । ସେତେବେଳେ ଦୁର୍ଗାବାଇ କହିଥିଲେ "ଜେଜେମାଙ୍କର କିଛିଦିନ ଆଗରୁ ଦେହାନ୍ତ ହୋଇଯାଇଛି । ତା'ର ଶରୀରର ତିନିମୁଠା ପବିତ୍ର ଭସ୍ମାବଶେଷକୁ ସମୁଦ୍ର ବଡ଼ ଗର୍ବରେ ନିଜ ଗର୍ଭରେ ସମାହିତ କରିଦେଇଛି । ଆଜି ସେହି ଭସ୍ମ ଶାମୁକାର ମୁକ୍ତାଟିଏ ହୋଇ ଚକ୍‌ଚକ୍ କରୁଛି । ସେ ଜିତି ଯାଇଛନ୍ତି । ବାରମ୍ବାର ମନରେ ପ୍ରଶ୍ନ ଉଠେ ଯେ ଏହାହିଁ କ'ଣ ଜୀବନର ପରମ ଶ୍ରେୟ ଏବଂ ପ୍ରେୟ ଅଟେ ? କର୍ତ୍ତବ୍ୟ, ସେବା ଏବଂ ଉଦ୍ଦେଶ୍ୟର ସ୍ଥାନ କେଉଁଠି ? ଏ ସବୁର ମୂଲ୍ୟ କ'ଣ ? କ'ଣ ବଡ଼ ବଡ଼ ଉଦ୍ଦେଶ୍ୟ ଗର୍ଭରେ ଏହିପରି ଛୋଟ ଛୋଟ କିନ୍ତୁ ଅଧିକ ମୂଲ୍ୟବାନ୍ ମଣି ଲୁଚି ରହିଥାଏ ? କ'ଣ ସେ ସବୁ ଭିତରେ ସବୁଠାରୁ ସୂକ୍ଷ୍ମ କିନ୍ତୁ ସବୁଠାରୁ ମୂଲ୍ୟବାନ୍ ମୋତି ଏହି ପବିତ୍ର ଦେହର ଭସ୍ମ ଅଟେ ?"

ଏହିପରି ଶବ୍ଦରେ ଦୁର୍ଗାବାଈ ନାରୀ ଜୀବନର ସନାତନ ଆହ୍ୱାନକୁ କେତେ ଭଲଭାବରେ ବ୍ୟକ୍ତ କରିଛନ୍ତି । ଇତିହାସର ପୃଷ୍ଠା ଓଲଟାଇ ଦେଖିଲେ ଦେଖାଯିବ ଯେ ଇସ୍‌ଲାମୀ ଶାସକମାନଙ୍କ ସହିତ ଯୁଦ୍ଧ ସମୟରେ ନିଜର ପରାଜୟ ହେବାର ଦେଖି ରାଣୀ-ମହାରାଣୀଙ୍କଠାରୁ ଆରମ୍ଭ କରି ଦାସୀପର୍ଯ୍ୟନ୍ତ ଶହ ଶହ ନାରୀ ନିଜକୁ ବଳିଦାନର ବଳିବେଦୀରେ ସମାପ୍ତ କରି ଦେଇଛନ୍ତି । ସାରା ବିଶ୍ୱରେ ଆଜିଯାଏ ଯେତେ ଯୁଦ୍ଧ ହୋଇଛି ପ୍ରତ୍ୟେକ ଯୁଦ୍ଧରେ ପରାଜିତ ପକ୍ଷର ନାରୀମାନଙ୍କ ମନରେ ନିଜ ସତୀତ୍ୱ ରକ୍ଷାର ଭୟ ଲାଗିରହିଥାଏ । ବହୁ ନାରୀଙ୍କୁ ଏହି ଭୟ ଭୋଗିବାକୁ ପଡ଼ିଛି । ଝାନ୍ସୀର ରାଣୀ ମଧ ଏହି ସନାତନ ଆତଙ୍କରୁ ମୁକ୍ତ ନ ଥିଲେ । ସେଥିପାଇଁ ସେ ବାରମ୍ବାର କହୁଥିଲେ ଯେ ତାଙ୍କ ସଜୀବ କିମ୍ବା ନିର୍ଜୀବ ଶରୀର ଯେପରି ଫିରିଙ୍ଗିଙ୍କ ହାତରେ ନ ପଡ଼େ । ସେଥିପାଇଁ ତାଙ୍କର ଇଚ୍ଛାନୁଯାୟୀ ତୁରନ୍ତ ତାଙ୍କ ଶରୀରକୁ ଦାହ କରିଦିଆଯାଇଥିଲା । ତାଙ୍କ ଚିତାର ଜ୍ୱଳନ୍ତ ଶିଖାର ଆଞ୍ଚ ଆଜି ବି ଲୋକଙ୍କ ମନକୁ ଜଳାଇ ଚାଲିଛି ।

ହିନ୍ଦୁସ୍ଥାନର ବିଭିନ୍ନ ସ୍ଥାନରେ ୧୮୫୭ରେ ଇଂରେଜଙ୍କ ବିରୋଧରେ ଯେଉଁ ବିଦ୍ରୋହ ହୋଇଥିଲା, ତାହା ଏକପ୍ରକାରର ଦେଶର ସ୍ୱତନ୍ତ୍ରତାର ଯୁଦ୍ଧ ଥିଲା । ଯାହାର ବ୍ୟାପକତା ଏବଂ ମହତ୍ତ୍ୱ ମହାଭାରତ ଯୁଦ୍ଧର ସମକକ୍ଷ ବୋଲି ମାନି ନିଆଯାଇଥାଏ । ମାନବୀୟ ସ୍ୱଭାବର ଅସଂଖ୍ୟ ଉଦ୍ଦେଶ୍ୟ, ବିଚାର, ପରିସ୍ଥିତିରେ ଅଚାନକ ଆଶ୍ଚର୍ଯ୍ୟଜନକ ମୋଡ଼, ଏହାର ପ୍ରଭାବ, ଏ ସମସ୍ତ କଥା ସେହିପରି ଆଶ୍ଚର୍ଯ୍ୟଚକିତ କରିଦିଏ ଯେପରି ମହାଭାରତ ଯୁଦ୍ଧ ଆଶ୍ଚର୍ଯ୍ୟଚକିତ କରି ଦେଇଥିଲା । ଏଥିରେ ନିୟତି କେବଳ ଅଟଳ ରହିଥିଲା । କେବଳ ଗୋଟିଏ ଫରକ୍ ଅଛି । ମହାଭାରତ ସମ୍ପୂର୍ଣ୍ଣଭାବେ ପୁରୁଷମାନଙ୍କଦ୍ୱାରା ଲଢ଼ାଯାଇଥିବା ଯୁଦ୍ଧ ଅଟେ । ପୁରୁଷମାନଙ୍କର ଶୁଣାଇବା, ନିର୍ଣ୍ଣୟ ନେବା ଏବଂ ନିଜ ଅସ୍ତିତ୍ୱର ରକ୍ଷା ନିମନ୍ତେ ଯଥାସମ୍ଭବ ପ୍ରଯତ୍ନ କଲାବେଳେ ସ୍ତ୍ରୀଲୋକମାନେ ସେମାନଙ୍କ ପଛେ ପଛେ ଆଖି ବୁଜି ଅନୁସରଣ କରିବା.... । ସତାବନର ଲଢ଼େଇରେ ରାଣୀ ଲକ୍ଷ୍ମୀବାଈ ସ୍ୱୟଂ ନିଜର ନିଷ୍ପତ୍ତି ନେଇଥିଲେ ଓ ସେହି ଅନୁରୂପ ଆଚରଣ କରିଥିଲେ । ଶେଷମୁହୂର୍ତ୍ତଯାଏ ବିଭିନ୍ନ ସମୟରେ ଉପସ୍ଥିତ ପରିସ୍ଥିତିକୁ ବିଭିନ୍ନ ମୋଡ଼ ଦେବାର ଚେଷ୍ଟା କରି ଚାଲିଥିଲେ । ତାଙ୍କର ସମ୍ପୂର୍ଣ୍ଣ ଚରିତ୍ର ପ୍ରତି ଦୃଷ୍ଟିପାତ କଲେ ଏପରି ଲାଗେ ଯେ ଆମେ ଏକ ଉଚ୍ଚ ଏବଂ ଉଦାତ୍ତ ହିମାଳୟ ଶିଖର ଉପରେ ପହଞ୍ଚିଯାଇଛୁଁ । ସ୍ୱଧର୍ମ ପାଇଁ, ନିଜର ଅଧିକାର ପାଇଁ ଯୁଦ୍ଧ କରିବାକୁ ସେ ସଂକଳ୍ପ କରିଥିଲେ । ଏହି କାରଣରୁ ହିଁ ସେହି ଶୂରବୀର, ଧୈର୍ଯ୍ୟବାନ୍, ଗୁଣବାନ୍‌ଙ୍କର ମୃତ୍ୟୁ ଏତେ ଶୋକମୟ ପରିସ୍ଥିତିରେ ହୋଇଥିଲା । ଯେଉଁମାନେ ଇଂରେଜଙ୍କୁ ସହଯୋଗ କଲେ, ସେମାନେ ବଞ୍ଚିରହିଲେ । ପରବର୍ତ୍ତୀ କାଳରେ ସେମାନଙ୍କୁ ଏକ ଐଶ୍ୱର୍ଯ୍ୟଶାଳୀ ଜୀବନ ଜିଇଁବାର ସୁଯୋଗ ମିଳିଲା । ସେମାନେ ବିକ୍ରି ହୋଇ ସାରିଥିଲେ । ଇଂରେଜଙ୍କର ଗୋଲାମି ସ୍ୱୀକାର କରିସାରିଥିଲେ । ତା' ବଦଳରେ ସେମାନଙ୍କୁ ଭରପୂର

ମୂଲ୍ୟ ମଧ୍ୟ ମିଳିଥିଲା । କିନ୍ତୁ ଏହି ପତନ କେବଳ ରାଣୀ ଲକ୍ଷ୍ମୀବାଈଙ୍କର ହିଁ ନ ଥିଲା, ବରଂ ସମ୍ପୂର୍ଣ୍ଣ ମାନବମୂଲ୍ୟର ପତନ ଥିଲା ।

ରାଣୀ ଲକ୍ଷ୍ମୀବାଈଙ୍କ ପ୍ରାରମ୍ଭିକ ଜୀବନ ଏବଂ ଅନ୍ତ ମଧ୍ୟରେ ରହିଥିବା ଅନ୍ତରାଳର ଗୋଟି ଗୋଟି ଘଟଣା ଆମକୁ ଆଶ୍ଚର୍ଯ୍ୟଚକିତ କରିଦିଏ । ତାଙ୍କ ଜୀବନରେ ମହାକାବ୍ୟର ଏକ ଲୟ ଅଛି । ଫିରିଙ୍ଗିମାନେ ଜୋରଜବରଦସ୍ତି ଏବଂ ଅନ୍ୟାୟପୂର୍ଣ୍ଣ ଢଙ୍ଗରେ ତାଙ୍କର ରାଜ୍ୟ ଛଡ଼ାଇ ନେଇଥିଲେ । ତଥାପି ସେହି ବିଧବା ରାଣୀଙ୍କ ପ୍ରତି ମନରେ ''ଗରିବ ବିଚାରୀ''ର ଭାବନା ଉଦ୍ରେକ ହୁଏ ନାହିଁ । ସେ ସ୍ୱୟଂ ନିଜକୁ କେବେ ଅସହାୟ ମନେ କରି ନ ଥିଲେ । ସେ ପ୍ରତ୍ୟେକ କଠିନ ସମସ୍ୟାର ସମାଧାନ ଖୋଜିଥିଲେ, ସେଥିରୁ ବାହାରକୁ ଆସିବାର କିଛି ନା କିଛି ବାଟ ଖୋଜି ବାହାର କରୁଥିଲେ । ନିଜର ଅସ୍ତିତ୍ୱ ଏବଂ ପ୍ରତିଷ୍ଠାକୁ ରକ୍ଷା କରିବା ଲାଗି ସେ ସର୍ବଦା ପ୍ରଯତ୍ନଶୀଳ ରହୁଥିଲେ । ତାଙ୍କର ଧୀରୋଦାତ୍ତ ଭୂମିକା ଦେଖି ସମସ୍ତେ ବିସ୍ମୟଚକିତ ହୋଇଯାଉଥିଲେ ।

ପ୍ରତ୍ୟେକଙ୍କ ମୁହଁରେ ତାଙ୍କର ପ୍ରଶଂସା ଥିଲା । ନିଜ ଜୀବନରେ ଉଠିଥିବା ପ୍ରତ୍ୟେକ ଝଡ଼କୁ ସେ ନିୟତିର ଖେଳ ବୋଲି ଧରିନେଇ ଏଡ଼ାଇ ଯାଇଥିଲେ । ଚୁପ୍‌ଚାପ୍ ସହି ଯାଇ ନ ଥିଲେ । ସେ କେବେ ହତାଶ ହୋଇ ନ ଥିଲେ, ନିଜ ଜୀବନରେ ସେ କେବେ ନୀରସତା, କରୁଣା ଏବଂ ପଶ୍ଚାତ୍ତାପକୁ ପ୍ରବିଷ୍ଟ ହେବାକୁ ଦେଇ ନ ଥିଲେ । ରାଣୀ ଲକ୍ଷ୍ମୀବାଈ ନିଜ ଜୀବନକୁ ଥାଟ-ବାଟ ଏବଂ ଉତ୍ସାହପୂର୍ବକ ବିତାଇଥିଲେ । ସବୁବେଳେ ନିଜର ପ୍ରଜାମାନଙ୍କର ଚିନ୍ତା କରୁଥିଲେ । ସେମାନଙ୍କର ମଙ୍ଗଳ ପାଇଁ କାର୍ଯ୍ୟ କରୁଥିଲେ । ସେମାନଙ୍କ ଭିତରେ ସବୁବେଳେ ଜୀବନର ଉତ୍ସାହ ନିମନ୍ତେ ବୀଜବପନ କରୁଥିଲେ । ନିଜର ଶତ୍ରୁଙ୍କ ପ୍ରତି ସେ ପ୍ରତିଶୋଧ ଏବଂ ଦ୍ୱେଷର ଭାବନା ପ୍ରଦର୍ଶିତ କରୁ ନ ଥିଲେ । ବରଂ ଶାନ୍ତ ଭାବରେ, ବୁଝି-ବିଚାରି ଶତ୍ରୁର ଦୁର୍ବଳତାର ସନ୍ଧାନ କରି ନିଜର ସତରଂଜର ଗୋଟିକୁ ଆଗକୁ ଚଳାଉଥିଲେ । ସେ ନିୟତି କିମ୍ବା ଭାଗ୍ୟରେଖା ଉପରେ କେବେ ବିଶ୍ୱାସ ରଖି ନ ଥିଲେ । ସେ ନିଜର ଜୀବନକୁ ନିଜସ୍ୱ ଶୈଳୀରେ ସ୍ୱୟଂ ନିର୍ମାଣ କରିବାକୁ ଚାହୁଁଥିଲେ । ନିଜର ଅନ୍ତରକୁ ବିକଶିତ କରିବାକୁ ଚାହୁଁଥିଲେ । ଆନନ୍ଦିତ ଜୀବନ ନିର୍ବାହ କରିବାକୁ ଚାହୁଁଥିଲେ । ମନରେ ସ୍ୱାଧୀନତାର ଆକାଂକ୍ଷା ଥିଲା । ତାକୁ ପାଇବାର ଉଦ୍ଦୀପନା ଥିଲା । ତା'ପରେ ତାହା ଧର୍ମର ସ୍ୱତନ୍ତ୍ରତା ହେଉ, ଦେଶ କିମ୍ବା ପୁଣି ଆତ୍ମ-ସ୍ୱତନ୍ତ୍ରତା ହେଉ । ଅନ୍ୟାୟ ବିରୋଧରେ ଉତ୍ସାହପୂର୍ଣ୍ଣ ସ୍ୱର ଉତ୍ତୋଳନ କରିବାର ଇଚ୍ଛା ପ୍ରତ୍ୟେକ ବ୍ୟକ୍ତିର ମନରେ ଥାଏ, ତା'ପରେ ଏହି ଅନ୍ୟାୟ ଦେଶପ୍ରତି ହୋଇଥାଉ କିମ୍ବା ବ୍ୟକ୍ତିଗତ ଅଧିକାର ପ୍ରତି ହୋଇଥାଉ । ଅଧିକାଂଶ ଲୋକ ନିଜର ଏହି ଆକାଂକ୍ଷାକୁ ବ୍ୟକ୍ତ କରିବାକୁ ପଛେଇଯାନ୍ତି, ନିଜର ସାହସ ହରେଇ ଦିଅନ୍ତି । ଏପରି ଲୋକେ ସଫଳ ହୁଅନ୍ତି ନାହିଁ । ଅସଫଳ ହୋଇ ରହିଯାନ୍ତି । କିନ୍ତୁ ଯେତେବେଳେ ରାଣୀ ଲକ୍ଷ୍ମୀବାଈଙ୍କ ପରି ତେଜୋମୟୀ ବ୍ୟକ୍ତିତ୍ୱ ନିଜର ସର୍ବସ୍ୱ ସମର୍ପିତ କରୁଥିବାର ଦେଖାଯାଏ ସେତେବେଳେ ସମସ୍ତଙ୍କର

ଆଖି ତାଙ୍କ ଆଡ଼କୁ ଆକର୍ଷିତ ହୋଇଯାଏ । ସମସ୍ତେ ତାଙ୍କର ଆଦର୍ଶ ଚରିତ୍ର, ପବିତ୍ର ଆଚରଣକୁ ଦେଖି ମନ୍ତ୍ରମୁଗ୍ଧ ହୋଇଯାନ୍ତି । ତା'ପରେ ତାଙ୍କ ପ୍ରତି ଦୟା କିମ୍ବା କରୁଣା ଉଦ୍ରେକ ହୁଏ ନାହିଁ କିମ୍ବା ତାଙ୍କ ମୃତ୍ୟୁରେ ଦୁଃଖ ମଧ୍ୟ ଉତ୍ପନ୍ନ ହୁଏ ନାହିଁ । ବରଂ ଏପରି ମୃତ୍ୟୁରେ ସମସ୍ତଙ୍କର ମଥା ଗର୍ବରେ ଉନ୍ନତ ହୋଇଯାଏ । ସୀତା ପାତାଳରେ ପଶିବା ଏବଂ ରାମ ସରଯୂ ନଦୀରେ ଆତ୍ମୋତ୍ସର୍ଗ କରିବା ସହିତ ରାମାୟଣର ସମାପ୍ତ ହେବା ଆବଶ୍ୟକ । ମହାଭାରତର ଅନ୍ତ ଶ୍ରୀକୃଷ୍ଣଙ୍କର କେଉଁଠି ଏକୁଟିଆ ଯାଇ ଶିକାରୀର ଶରାଘାତରେ ମରିଯିବା ଏବଂ ପାଣ୍ଡବ ତଥା ଦ୍ରୌପଦୀଙ୍କର ସ୍ୱର୍ଗର ମାର୍ଗରେ ନିଜର ପ୍ରାଣତ୍ୟାଗ କରିବା ସହିତ ହେବା ଆବଶ୍ୟକ । ସେଇଥିରେ ହିଁ ଏକ କାବ୍ୟିକ ନ୍ୟାୟ ପରିଦୃଷ୍ଟ ହୁଏ । ଅସାମାନ୍ୟ ବ୍ୟକ୍ତିଙ୍କର ମୃତ୍ୟୁ ମଧ୍ୟ ଅସାମାନ୍ୟ ଭାବରେ ହେବା ଉଚିତ । ଏପରି ମୃତ୍ୟୁ ସଂପର୍କରେ ମନରେ ଅସ୍ଥିରତା ଜାଗ୍ରତ ହେଲେହେଁ ସେହି ସମୟରେ ଗୌରବର ଭାବନା ମଧ୍ୟ ଉଚ୍ଛୁଳି ପଡ଼ିଥାଏ ।

ମନୁଷ୍ୟର ହୃଦୟରେ ଉଠୁଥିବା ଅନ୍ତଃସ୍ଫୂର୍ତ୍ତି ଏବଂ ନିୟତି ସହିତ ନିର୍ମାଣ ହେଉଥିବା ତା'ର ସଂଘର୍ଷରେ ପଥ ଖୁବ୍ କଣ୍ଟକିତ ହୋଇଥାଏ । ସେଥିପାଇଁ ନିଜର ସର୍ବସ୍ୱ ଅର୍ପଣ କରିବାର ପ୍ରଯତ୍ନର ପରାକାଷ୍ଠା ଦେଖାଇବାକୁ ପଡ଼ିଥାଏ । ସେହିଥିରୁ ଦୁଃଖ, ନିରାଶା ସହିତ ଅଭିମାନ ମଧ୍ୟ ନିର୍ମିତ ହୋଇଥାଏ । ସେଥିରେ ଦୟାର ସ୍ଥାନ ନ ଥାଏ ବରଂ ସେଥିରୁ କରୁଣାମୟ ଓ ଯାତନାମୟ ଯାତ୍ରାର ନିର୍ମାଣ ହୋଇଥାଏ । ଏପରି ଯାତ୍ରାର କେବଳ ଏହିପରି ପରମଗମ୍ଭୀର ମୃତ୍ୟୁରେ ସମାପନ ହୋଇଥାଏ । ଏହାକୁ ହିଁ ମାନବୀୟ ଜୀବନର ଚିରନ୍ତନ ସତ୍ୟ କୁହାଯାଇଥାଏ । ମୃତ୍ୟୁ ମହତ୍ତ୍ୱପୂର୍ଣ୍ଣ ନୁହେଁ, ଆପଣ ଏହାର କିପରି ସାମ୍ନା କରୁଛନ୍ତି, ତାହାହିଁ ମହତ୍ତ୍ୱପୂର୍ଣ୍ଣ ଅଟେ ।

ରାଣୀ ଲକ୍ଷ୍ମୀବାଈଙ୍କ ରୂପରେ ଏହିପରି ମୃତ୍ୟୁର ଆମେ ଦର୍ଶନ କରିଥାଉ । ନିଜର ଛୋଟିଆ ଜୀବନରେ ସେ ଗୋଟିଏ ପରେ ଗୋଟିଏ ଅନେକ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ସେ ସମସ୍ତ ସମସ୍ୟାକୁ ସେ ଦୃଢ଼ଭାବରେ ମୁକାବିଲା କରିଥିଲେ । ସେ ସବୁକୁ ସାମ୍ନା କରିବା ସମୟରେ ତାଙ୍କୁ ମଙ୍ଗଳ-ଅମଙ୍ଗଳ ମଧ୍ୟରେ ନିର୍ଣ୍ଣୟ ନେବାକୁ ହୋଇଥିଲା । ନିଜ ରାଜ୍ୟର ସ୍ୱାଭିମାନ ଏବଂ ନିଜ ଅସ୍ତିତ୍ୱ ପ୍ରତି ଯତ୍ନଶୀଳ ହେବାକୁ ପଡ଼ିଥିଲା । ସତ୍ୟ-ଅସତ୍ୟ ଭିତରେ ଥିବା ଦ୍ୱନ୍ଦ୍ୱ, ଜଟିଳତା ଏବଂ ଚାପକୁ ତାଙ୍କୁ ଦୂର କରିବାକୁ ହୋଇଥିଲା । ସେଥିପାଇଁ ତାଙ୍କର ସଂଯତ ବୁଦ୍ଧି, ସ୍ୱାଭିମାନୀ ପ୍ରବୃତ୍ତି, ନ୍ୟାୟିକ ପ୍ରେରଣା, ଉଚିତ-ଅନୁଚିତ ବାଛିପାରିବାର ନିଷ୍ଠା ହିଁ ତାଙ୍କୁ ଶକ୍ତି ଯୋଗାଇ ଦେଇଥିଲା । ସେଥିଯୋଗୁଁ ଲଢୁ ଲଢୁ ଶେଷରେ ମୃତ୍ୟୁକୁ ମଧ୍ୟ ସେ ସାହସର ସହିତ ଶାନ୍ତଭାବେ ସ୍ୱୀକାର କରିଥିଲେ । ତାଙ୍କର ଏ ପ୍ରକାର ମୃତ୍ୟୁରେ ତାଙ୍କର ସାରାଜୀବନର ସ୍ୱାଭିମାନୀ ବେଦନା ଶାନ୍ତ ହୋଇଯାଏ ଏବଂ ଆମ ମନରେ ଅତ୍ୟନ୍ତ ବ୍ୟାପକ ଏକ ଅସ୍ଥିରତା ଭରିଯାଏ । ଏହା ଏକପ୍ରକାରର ଅନିର୍ବଚନୀୟ ଅନୁଭୂତି ଅଟେ ।

ରାଣୀ ଲକ୍ଷ୍ମୀବାଈ ସ୍ୱତନ୍ତ୍ରତା ସଂଗ୍ରାମର ସେନାନୀଙ୍କ ପାଇଁ ଶାଶ୍ୱତ ପ୍ରେରଣାପୁଞ୍ଜ ହୋଇ ରହିଛନ୍ତି । ଭାରତୀୟ ନାରୀତ୍ୱର ଏକ ନୂଆ ରୂପକୁ ସେ ଉଜାଗର କରିଛନ୍ତି । ଚରିତ୍ର, ଚାରୁତା, ଚାତୁର୍ଯ୍ୟ, ଅତୁଳନୀୟ ଧୈର୍ଯ୍ୟ, ଶୌର୍ଯ୍ୟ, ଉଦାର ମନସ୍ୱିତା ଏବଂ ବୁଦ୍ଧିମତ୍ତା ପରି ତାଙ୍କର ଗୁଣଗୁଡ଼ିକ ଦ୍ୱାରା ପ୍ରଭାବିତ ହୋଇ ମଣିଷ ମନରେ ସୁପ୍ତ ହୋଇଯାଇଥିବା ସେହି ଗୁଣଗୁଡ଼ିକ ପାଇଁ ସ୍ୱଳ୍ପ ହେଲେହେଁ କିଞ୍ଚିତ୍ ପ୍ରେରଣା ନିଶ୍ଚିତଭାବେ ମିଳିଥାଏ । ତାକୁ ଏକ ଦିବ୍ୟ ସ୍ପର୍ଶ ମିଳେ ଏବଂ ରାଣୀ ଲକ୍ଷ୍ମୀବାଈଙ୍କ ବ୍ୟକ୍ତିତ୍ୱ ତାକୁ ନିଜ ଆଡ଼କୁ ଆକର୍ଷିତ କଲାପରି ଲାଗେ । ସେହି ଆକର୍ଷଣ ଯୋଗୁଁ ତାଙ୍କର ମୃତ୍ୟୁକୁ କେନ୍ଦ୍ର କରି ସୃଷ୍ଟି ହୋଇଥିବା ବେଦନା ଏବଂ ଏକ ଭିନ୍ନ ସ୍ତରର ଆନନ୍ଦ ଭିତରେ ମିଳନ ସଂଘଟିତ ହୁଏ ଏବଂ ଆମେମାନେ ଏକ ଉଦାତ୍ତ ଲକ୍ଷ୍ୟସ୍ଥଳରେ ପହଞ୍ଚିଯାଉ ।

# ସନ୍ଦର୍ଭ ସୂଚୀ

ମରାଠୀ

୧. ବରସଇକର, ଗୋଡ଼ସେ ଭଟଜୀ–ମାଝାପ୍ରବାସ, ପ୍ରଥମ ସଂସ୍କରଣ–୧୯୦୭, ଚି.ବି. ବୈଦ୍ୟ, ପୁନେ, ଚତୁର୍ଥ ସଂସ୍କରଣ–୧୯୬୬ ବୀନସ ପ୍ରକାଶନ, ପୁନେ ।

୨. ପାରସନିସ୍, ଦ.ବ.–ମହାରାଣୀ ଲକ୍ଷ୍ମୀବାଈ ଯାଂଚେ ଚରିତ୍ର, ପ୍ର.ସଂ–୧୮୯୪, ନିର୍ଣ୍ଣୟ ସାଗର ପ୍ରେସ, ପୁନେ, ଦ୍ୱିତୀୟ ସଂ. ୧୯୯୬ ବରଦା ପ୍ରକାଶନ, ପୁନେ ।

୩. ବର୍ମା ବୃନ୍ଦାବନଲାଲ (ଅନୁବାଦ ଯମୁନାବାଈ ଶେବଡ଼େ)–ଝାନ୍‌ସୀଚୀ ରାଣୀ ଲକ୍ଷ୍ମୀବାଈ ।

୪. ପୁରାଣିକ, ବି.ଶ୍ରୀ –ଝାନ୍‌ସୀଚୀ ରାଣୀ ଲକ୍ଷ୍ମୀବାଈ, ରୋହନ ପ୍ରକାଶନ, ମୁମ୍ବଇ ୧୯୯୦ ।

୫. ଶିଦୋରେ, ପ୍ରଭାକର–ଝାନ୍‌ସୀଚୀ ରାଣୀ ୧୯୫୪, ରାଜହଂସ ପ୍ରକାଶନ ।

୬. ଭିଡ଼େ, ରା.ଗୋ. (ସହାୟକ ସଂପାଦକ, କେସରୀ) ଝାନ୍‌ସୀଚୀ ସ୍ୱାତନ୍ତ୍ର୍ୟ–ଲକ୍ଷ୍ମୀ, ୧ ଜୁଲାଇ, ୧୯୪୪, ଚିତ୍ରଶାଳା ପ୍ରେସ, ପ୍ରକାଶନ ବିଭାଗ, ପୁନେ ।

୭. ତାମ୍ବେ, ସୁମନ–ସ୍ୱାତନ୍ତ୍ର୍ୟ ଦେବତା ଝାନ୍‌ସୀଚୀ ମହାରାଣୀ ଲକ୍ଷ୍ମୀବାଈ ୧୯୫୮ ପରଚୁରେ ପ୍ରକାଶନ, ମୁମ୍ବଇ ।

୮. ହଡ଼ପ, ବି.ବା–ଝାନ୍‌ସୀଚୀ ରାଣୀ, ଆଦର୍ଶ ବାଙ୍‌ମୟ ପ୍ରକାଶନ ୧୯୪୧ ।

୯. ତିୱାରୀ, ଦୁ.ଆ– ଝାନ୍‌ସୀଚୀ ସଂଗ୍ରାମ ଦେବତା ରାଣୀ ଲକ୍ଷ୍ମୀବାଈ ୧୯୨୪ ।

୧୦. ମନମୋହନ–ମର୍ଦାନୀ ଝାନ୍‌ସୀବାଲୀ, ସୁରସ ଗ୍ରନ୍ଥମାଳା, ପୁନେ ୧୯୭୧ ।

୧୧. ମିଶ୍ର ଆନନ୍ଦସ୍ୱରୂପ (ଅନୁବାଦ, ଢମଢେରେ, ବା.ରା.) ନାନାସାହେବ ଆଣି ସ୍ୱାତନ୍ତ୍ର୍ୟ ଯୁଦ୍ଧ–୧୯୭୩, ମହାରାଷ୍ଟ୍ର ରାଜ୍ୟ ସାହିତ୍ୟ ସଂସ୍କୃତି ମଣ୍ଡଳ, ମୁମ୍ବଇ ।

୧୨. ଫାଟକ, ନ.ର.–ଅଠରାଶେ ସତାବନଚୀ ସିପାଇଗର୍ଦି, ୧୯୫୮, ଚିତ୍ରଶାଳା ପ୍ରେସ ପ୍ରକାଶନ, ପୁନେ ।

୧୩. ଆତ୍ରେ ତ୍ରିଂବକ ନାରାୟଣ–ଗାଓଁଗାଡ଼ା ୧୯୧୬ (ପ୍ର.ସଂ.) ତୃତୀୟ ସଂସ୍କରଣ (୧୯୫୯) ହ.ବି. ମାଟେ ପ୍ରକାଶନ, ମୁମ୍ବଇ ।

୧୪. ଠାକରେ, କେ.ସି.–ପ୍ରତାପସିଂହ ଛତ୍ରପତି ଆଣି ରଙ୍ଗୋ ବାପୁଜୀ–ସାତାରଚ୍ୟା ରାଜ୍ୟ କ୍ରାନ୍ତି ଚା ଇତିହାସ ୧୯୪୯ କେ.ସି. ଠାକରେ ମୁମ୍ବଇ ।

୧୫. କେଲକର, ନ.ଚିଂ.–ଫ୍ରାନ୍‌ସ ଚୀ ଝାନ୍‌ସୀବାଲୀ ଜୋଆନ୍ ଅଫ୍ ଆର୍କ, ତୃତୀୟ ସଂସ୍କରଣ, ୧୯୪୦, ଦି ଇଣ୍ଟରନେସ୍‌ନାଲ୍ ବୁକ୍ ସର୍ଭିସ୍ । ପୁନେ ।

୧୬. ମାଲଶେ, ସ.ଗଂ. (ସଂପାଦକ)-ସତାବନୀ ଉଠାବାଚୀ ସମକାଳୀନ କାତ୍ରଣେଂ, ୧୯୭୭, ମୁମ୍ବଇ ମରାଠୀ ଗ୍ରନ୍ଥ ସଂଗ୍ରହାଳୟ, ମୁମ୍ବଇ ।

୧୭. ଚିପଲୁଣକର, ଧନୟାମ ବାଳକୃଷ୍ଣ-(ଶିକ୍ଷକ, ନିଉ ଇଂଲିଶ୍ ସ୍କୁଲ୍ ଓ ସେବାସଦନ) ।

୧୮. ମାଡ଼ଗାବକର, ଗୋବିନ୍ଦ ନାରାୟଣ-ମୁମ୍ବଇ ଚେ ବର୍ଣ୍ଣନ, ୧୮୬୩ (ପ୍ର.ସଂ.) ୧୯୬୧ (ଦ୍ୱି. ସଂ) ଇତିହାସ ସଂଶୋଧକ ମଣ୍ଡଳ, ମୁମ୍ବଇ ।

୧୯. ସରଦେସାଇ, ଗୋ.ସ.-ବ୍ରିଟିଶ୍ ରିୟାସତ, ୧୯୯୩, କେଶବ ଭିକାଜୀ ଢବଲେ, ମୁମ୍ବଇ (ପ୍ର.ସଂ. ୧୯୩୯) ।

୨୦. ଓକ ପ୍ରମୋଦ-ପେଶବେ ଘରାଣ୍ୟାଚା ଇତିହାସ, କଣ୍ଟିନେଣ୍ଟାଲ ପ୍ରକାଶନ ପୁନେ (ପ୍ର.ସଂ. ୨୦୦୧)।

୨୧. ସମଗ୍ର ତିଲକ ପଞ୍ଚମ ଖଣ୍ଡ, ୧୯୭୬, କେସରୀ ପ୍ରକାଶନ, ପୁନେ ।

୨୨. ସାବରକର ବି.ଦା.-୧୮୫୭ ଚେ ସ୍ୱାତନ୍ତ୍ର୍ୟ ସମର, ୧୯୬୫, ମାଜେଷ୍ଟିକ୍ ପ୍ରକାଶନ, ମୁମ୍ବଇ।

୨୩. ବିଶ୍ୱଭ ଶାରଦା-ପ୍ରଥମ ଖଣ୍ଡ ପ୍ର.ସଂ. ୧୯୭୨, ପୁନଃମୁଦ୍ରଣ-୧୯୯୩, ପପୁଲାର ପ୍ରକାଶନ, ମୁମ୍ବଇ ।

୨୪. ଭାରତ ଇତିହାସ ସଂଶୋଧକ ମଣ୍ଡଳ, ତ୍ରୈମାସିକ ଏପ୍ରିଲ୍ ୧୯୩୮ ।

୨୫. ଦିବେକର, ବା.ଦ.-୧୮୫୭ ଚେ ସ୍ୱାତନ୍ତ୍ର୍ୟ ଯୁଦ୍ଧ ପେଟଲେଲା ଦକ୍ଷିଣ ହିନ୍ଦୁସ୍ଥାନ ୨୦୦୩, ଲୋକମାନ୍ୟ ତିଳକ ସ୍ମାରକ ଟ୍ରଷ୍ଟ, ପୁନେ ।

**ହିନ୍ଦୀ**

୧. କଲ୍ୟାଣ ସିଂ କୁଡ଼ରା-ଲକ୍ଷ୍ମୀବାଇ ରାସୋ, ୧୮୬୯ (ପ୍ରଥମ ସଂସ୍କରଣ) ।

୨. ପଂ. ମଦନମୋହନ ଦ୍ୱିବେଦୀ ମଦନେଶ- ଲକ୍ଷ୍ମୀବାଈ ରାସୋ (୧୯୦୪ର ପୂର୍ବରୁ) ।

୩. ଡଃ. ବରାଡ଼ ପାଣ୍ଡେ ନି.ର.-ସତାବନ କା ସ୍ୱତନ୍ତ୍ରତା ସଂଗ୍ରାମ ଆଣି ତ୍ୟାଚେ ନିନ୍ଦକ-୧୯୯୭, ବିଜୟ ପ୍ରକାଶନ, ନାଗପୁର। (ସଚଦେବ ପ୍ର.ମୁ. (ଅନୁବାଦ) ସତାବନ କା ସ୍ୱତନ୍ତ୍ରତା ସଂଗ୍ରାମ ତଥା ଉସ୍‌କେ ନିନ୍ଦକ ।

୪. ଡଃ ପାଣ୍ଡୟେ ରୁଦ୍ର-ଝାନ୍‌ସୀ ଇତିବୃତ୍ତ, ସ୍ଥାପତ୍ୟ, କଳା ସାଂସ୍କୃତିକୀ ୧୯୯୦, ଆଦିତ୍ୟ ରଶ୍ମି ପ୍ରକାଶନ, ଗୋଆଲିଅର ।

୫. ଡଃ ଗୁପ୍ତ ଭଗବାନ ଦାସ୍-ଡଃ ଗୁପ୍ତ ସୁଧା : ୧୮୫୭ କେ ବିପ୍ଲବକୀ ଅମର ଦୀପଶିଖା ରାଣୀ ଲକ୍ଷ୍ମୀବାଈ ଏବଂ ସମ୍ବନ୍ଧିତ ଲେଖ ୧୯୮୯, ବୁନ୍ଦେଲଖଣ୍ଡ ପ୍ରକାଶନ, ଝାନ୍‌ସୀ ।

୬. ମଡ଼ବୈୟା କୈଲାଶ-ବୁନ୍ଦେଲଖଣ୍ଡକା ବିସ୍ମୃତ ବୈଭବ, ବାନପୁର ୧୯୭୮, ମନୀଶ ପ୍ରକାଶନ, ଟିକମଗଢ଼ ।

**ଇଂରାଜୀ**

୧. ରାଧାକୃଷ୍ଣନ୍ ସର୍ବପଲ୍ଲୀ-ସିଭିଲ ରିବେଲିଅନ ଇନ୍ ଦ ଇଣ୍ଡିଆନ୍ ମ୍ୟୁଟିନି, ୧୯୫୭ ।

୨. ରସେଲ ଉଇଲିଅମ୍ ହାବାର୍ଡ୍- ମାଇଁ ଇଣ୍ଡିଆନ୍ ମ୍ୟୁଟିନୀ ଡାଇରୀ (୧୮୬୦) ୧୯୫୭, ଲଣ୍ଡନ, କାସଲ ଏଣ୍ଡ କମ୍ପାନୀ ଲିମିଟେଡ଼ ।

୩. ହୋଲମେସ. ଟି. ରାଇସ୍–ଏ ହିଷ୍ଟ୍ରି ଅଫ୍ ଇଣ୍ଡିଆନ୍ ମ୍ୟୁଟିନୀ ୧୮୯୮–ପଞ୍ଚମ ସଂସ୍କରଣ, ଲଣ୍ଡନ ।

୪. ମଜୁମଦାର, ଆର୍.ସି.–ଦି. ସିପାୟ ମ୍ୟୁଟିନୀ ଏଣ୍ଡ ଦି ରିଭୋଲ୍ଟ ଅଫ୍ ୧୮୫୭, ଫର୍ସ–କେ. ଏଲ୍. ମୁଖୋପାଧ୍ୟାୟ, କଲକତା ପ୍ରଥମ ସଂସ୍କରଣ–୧୯୫୮, ଦ୍ୱିତୀୟ ସଂସ୍କରଣ–୧୯୬୩ ।

୫. ବେଲ ମେଜର ଇଭାନ୍‌ସ–ଏମ୍ପାୟାର ଇନ୍ ଇଣ୍ଡିଆ ୧୮୬୪ ।

୬. ଟୋରେନ୍‌ସ, ଡବଲ୍ୟୁ. ଏମ୍. (ସାଂସଦ)–ଏମ୍ପାୟାର ଇନ୍ ଏସିଆ : ହାଉ ଉଇ କେମ୍ ବାଇ ଇଟ୍ : ବୁକ୍ ଅଫ୍ କନ୍‌ଫେସନସ୍–୧୮୭୨ ଏଲ୍. ଏମ୍. ବାସୁ, ଆଲାହାବାଦ ।

୭. ମେକାର୍ଥୀ ଜଷ୍ଟିନ୍ (ସାଂସଦ)–ହିଷ୍ଟ୍ରି ଅଫ୍ ଆୱାର ଓନ୍ ଟାଇମସ୍–୧୮୯୮–ଚାଟୋ ଏଣ୍ଡ ଉଇଣ୍ଡସ୍–ଲଣ୍ଡନ ।

୮. ମୀଡ୍ ହେନେରୀ–ଦି ସିପାୟ ରିଭୋଲ୍ଟ, ଇଟ୍‌ସ୍ କଜେସ୍ ଏଣ୍ଡ ଇଟ୍‌ସ୍ କନ୍‌ସିକ୍ୱେନେସେସ୍–୧୮୫୭, ଜନ୍ ମୁରେ ଲଣ୍ଡନ ।

୯. କିଙ୍କେଡ୍–ଲକ୍ଷ୍ମୀବାଈ, ରାନୀ ଅଫ୍ ଝାନ୍‌ସୀ, କାଉନ୍‌ସିଲ ଅଫ୍ ରୟାଲ ଏସିଆଟିକ୍ ସୋସାଇଟି ଅଫ୍ ଆୟର୍ଲାଣ୍ଡ–ଖଣ୍ଡ ୧, ୨–୧୯୪୩ (ପେଜ୍ ୧୦୦–୧୦୪)

୧୦. ମେଲ୍‌ସନ୍ କାନେଲ (ସଂପାଦିତ)–ହିଷ୍ଟ୍ରି ଅଫ୍ ଦ ଇଣ୍ଡିଆନ ମ୍ୟୁଟିନୀ ଅଫ୍ ୧୮୫୭–୫୮, ୧୮୯୭ ।

୧୧. କେ.ଜନ୍ ୱିଲିଅମ୍‌ସ୍–'ଏ ହିଷ୍ଟ୍ରି ଅଫ୍ ଦି ଗ୍ରେଟ୍ ରିଭୋଲ୍ଟ, ଖଣ୍ଡ ୧,୨,୩ (୧୮୮୦) ପୁନଃମୁଦ୍ରଣ–୧୯୯୬ ।

୧୨. ସୁବେଦାର ସୀତାରାମ୍–ଫ୍ରମ୍ ସିପାୟ ଟୁ ସୁବେଦାର, ପ୍ରଥମ ସଂସ୍କରଣ ୧୮୭୩, ୧୯୭୦, ବିକାଶ ପବ୍ଲିକେଶନସ୍, ଦିଲ୍ଲୀ ।

୧୩. ମାର୍କ୍ସ ଏଙ୍ଗେଲ୍‌ସ–ମାର୍କ୍ସ ଏଙ୍ଗେଲ୍‌ସ ଅନ୍ କଲୋନିଆଲିଜମ୍–ପ୍ରଥମ ସଂସ୍କରଣ–୧୯୫୯, ଅଷ୍ଟମ ସଂସ୍କରଣ–୧୯୮୧, ପ୍ରୋଗ୍ରେସ ପବ୍ଲିଶର୍ସ, ମସ୍କୋ ।

୧୪. ଡଫ୍, ଆଲେକ୍‌ଜାଣ୍ଡାର–ଦି ଇଣ୍ଡିଆନ୍ ରିବେଲିଅନ୍, ଇଟ୍‌ସ୍ କଜେଜ୍ ଏଣ୍ଡ ରେଜଲ୍ଟସ୍–୧୮୫୮, ଚୁଗ ପବ୍ଲିଶର୍ସ, ଏଲାହାବାଦ ।

୧୫. ସିହ୍ନା. ଏସ୍.ଏନ୍–ଦି ରିଭୋଲ୍ଟ୍ ଅଫ୍ ୧୮୫୭ ଇନ୍ ବୁନ୍ଦେଲଖଣ୍ଡ (୧୯୮୨)

୧୬. ଏଡ୍‌ୱାର୍ଡ୍‌ସ ମାଇକେଲ୍–ବ୍ୟାଟଲ୍ ଅଫ୍ ଦି ଇଣ୍ଡିଆନ ମ୍ୟୁଟିନୀ ୧୯୬୩, ୱେଷ୍ଟଫୋର୍ଟ ଲିମିଟେଡ୍, ଲଣ୍ଡନ ।

୧୭. ସିଲ୍‌ଭେଷ୍ଟର, ଜନ୍ ହେନେରୀ–ରିକଲେକ୍‌ସନ ଅଫ୍ ଦି କ୍ୟାମ୍ପେନ୍ ଇନ୍ ମାଲୱା ଏଣ୍ଡ ସେଣ୍ଟ୍ରାଲ ଇଣ୍ଡିଆ ଅଣ୍ଡର ମେଜର ଜେନେରାଲ ସାର୍ ହ୍ୟୁରୋଜ–୧୮୬୦ । ସ୍ମିଥ୍ ଟେଲର୍ ଏଣ୍ଡ କମ୍ପାନୀ, ମୁମ୍ବଇ ।

୧୮. ଲୋ. ଥାମସ୍–ସେଣ୍ଟ୍ରାଲ ଇଣ୍ଡିଆ ଡ୍ୟୁରିଙ୍ଗ୍ ଦି ରିବେଲିଅନ୍ ଅଫ୍ ୧୮୫୭ ଟୁ ୧୮୫୮, ୧୮୬୦ ।

୧୯. ଚୈମପନ ଜାୟସୀ ଲେବ୍ରା–ଦି ରାନୀ ଅଫ୍ ଝାନ୍‌ସୀ, ୧୯୮୮ ।
୨୦. ସାର୍ କ୍ୟାମ୍ପବେଲ୍ ଜର୍ଜ–ମେମୋରିଜ୍ ଅଫ୍ ମାଇଁ ଇଣ୍ଡିଆନ୍ କ୍ୟାରିଅର୍, ୧୮୯୩ ।
୨୧. ଧର୍ମପାଲ–ଡିସ୍‌ପୋଲିଏଶନ ଏଣ୍ଡ ଡିଫେମିଙ୍ଗ ଅଫ୍ ଇଣ୍ଡିଆ : ଦି ଆର୍ଲି ନାଇନ୍‌ଥ ସେଞ୍ଚୁରୀ ଅଫ୍ ବ୍ରିଟିଶ୍ କ୍ରୁସେଡ୍ ।
୨୨. ବେଲି ସି.ଏ.–ରୁଲର୍ସ, ଟାଉନ୍‌ମେନ୍ ଏଣ୍ଡ ବଜାର୍ସ (ନର୍ଥ ଇଣ୍ଡିଆନ ସୋସାଇଟି ଇନ୍ ଦି ଏଜ୍ ଅଫ୍ ବ୍ରିଟିଶ୍ ଏକ୍ସପେନ୍‌ସନ୍) (୧୭୭୦–୧୭୯୦), କେମ୍ବ୍ରିଜ୍ ଇଉନିଭରସିଟି ପ୍ରେସ୍, କେମ୍ବ୍ରିଜ୍ ।
୨୩. ଚିକ୍ ଏନ୍ ଏ କ୍ୟାମ୍ପ୍ ଏଣ୍ଡ ହଚିନ୍‌ସନ୍ ଡେଭିଡ୍ (ସଂପାଦିତ)–ଦି ଏନଲାର୍ଜରସ୍ ଅଫ୍ ଦି ଇଣ୍ଡିଆନ୍ ରିବେଲିଅନ୍ ୧୮୫୭, ୧୮୫୮ (ପ୍ରଥମ ସଂସ୍କରଣ ୧୮୫୯, କଲିକତା) ୧୯୭୪ ଚାର୍ଲସ ନାଇଟ୍ ଏଣ୍ଡ କମ୍ପାନୀ ଲିମିଟେଡ୍ ।
୨୪. ଫ୍ରିଡ୍‌ମ୍ ଷ୍ଟ୍ରଗଲ୍ ଇନ୍ ଉତ୍ତରପ୍ରଦେଶ–ସୋର୍ସ ମାଟେରିଆଲ୍ ବୁନ୍ଦେଲଖଣ୍ଡ ଏଣ୍ଡ ଜଏନିଙ୍ଗ୍ ଟେରିଟରିଜ୍ ୧୮୫୭–୫୯, ତୃତୀୟ ଖଣ୍ଡ, ଉତ୍ତର ପ୍ରଦେଶ ପବ୍ଲିକେଶନ, ୧୯୫୯ ।

Printed at : Pushpak Press Pvt. Ltd. 203-204, Okhla Industrial Area, Phase-I, New Delhi-110020

'ଝାନ୍‌ସୀ ଦେବି ନାହିଁ'ର ସ୍ୱର ଉତ୍ତୋଳନ କରିଥିବା ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ ମୂଳତଃ ସାଧାରଣ ପରିବାରର କନ୍ୟା ଥିଲେ । କିନ୍ତୁ ନିଜର ଶୌର୍ଯ୍ୟ, ବୁଦ୍ଧି ଓ ଅସାଧାରଣ କୌଶଳ ଦ୍ୱାରା ୧୮୫୭ର ମୁକ୍ତି ସଂଗ୍ରାମରେ ପ୍ରମୁଖ ଭୂମିକା ନିଭାଇଥିଲେ । ରାଷ୍ଟ୍ର ପାଇଁ ବଳିଦାନ ଓ ପ୍ରେରଣାର ପ୍ରତୀକ ହୋଇପାରିଥିଲେ । ନିୟତି ତାଙ୍କୁ ରାଣୀ କରିଥିଲା; ବିଧବା ଓ ଅଳ୍ପାୟୁ ମଧ୍ୟ କରିଦେଲା । କିନ୍ତୁ ସେ ନିୟତିକୁ ଆହ୍ୱାନ ଜଣାଇଥିଲେ । ନିଜ ସମୟର ସାମାଜିକ ପରଂପରାକୁ ଖୁବ୍ ଚତୁରତାର ସହ ସମ୍ମୁଖୀନ ହୋଇ ସେ ଭାରତୀୟ ନାରୀତ୍ୱର ଏକ ନୂଆ ରୂପ ପ୍ରସ୍ତୁତ କରିଥିଲେ ।

ଇଂରେଜ ସେନାପତିମାନେ ମଧ୍ୟ ରାଣୀଙ୍କର ବୀରତ୍ୱକୁ ସ୍ୱୀକାର କରିଥିଲେ । ଲୋକମାନ୍ୟ ତିଳକ କହିଥିଲେ ଯେ ଆମ୍ଭମାନଙ୍କ ଭିତରେ ଏଭଳି ଅଦ୍ୱିତୀୟା ଜନ୍ମଗ୍ରହଣ କରିଛନ୍ତି ଭାବିଲେ ମନରେ ଅଭିମାନ ଜାତ ହୁଏ । ନେତାଜୀ ସୁଭାଷଚନ୍ଦ୍ର ବୋଷ ନିଜ ସୈନ୍ୟବାହିନୀରେ ରାଣୀ ଝାନ୍‌ସୀ ରେଜିମେଣ୍ଟ ନାମରେ ମହିଳାମାନଙ୍କର ଏକ ସେନାବାହିନୀ ଗଠନ କରିଥିଲେ । ରାଜ୍ୟକୁ ବାଜ୍ୟାପ୍ତି କରିବା ପଛରେ କମ୍ପାନି ସରକାରଙ୍କ ଷଡ଼ଯନ୍ତ୍ର ଓ ପ୍ରତାରଣାକୁ ଚିହ୍ନିପାରି ସରକାରଙ୍କୁ ବିରୋଧ କରିବା ଭିତରେ ସେ ହିଁ ଭାରତୀୟ ରାଜ୍ୟର ପ୍ରଥମ ରାଣୀ ଥିଲେ । ପ୍ରସ୍ତୁତ ଗ୍ରନ୍ଥରେ ଝାନ୍‌ସୀ ରାଣୀଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ଅନେକ ଅପ୍ରକାଶିତ ଘଟଣାବଳୀ ବର୍ଣ୍ଣନା କରାଯାଇଛି ।

ପ୍ରତିଭା ରାନଡେ ହିନ୍ଦୁ ଓ ମୁସ୍‌ଲିମ୍ ନାରୀଙ୍କ ଜୀବନର ସମସ୍ୟା ଏବଂ ସେମାନଙ୍କର ଜୀବନଧାରାକୁ ଏକ ନୂତନ ଦୃଷ୍ଟିକୋଣରୁ ଦେଖୁଥିବା ଲେଖିକା ଭାବରେ ସୁପରିଚିତା । ଐତିହାସିକ ବିଷୟବସ୍ତୁ ଉପରେ ଗବେଷଣାତ୍ମକ ପୁସ୍ତକ ରଚନା କରିବାରେ ତାଙ୍କର ଗଭୀର ଆଗ୍ରହ ରହିଛି । ଆଫଗାନିସ୍ଥାନରେ ଚହଳ ସୃଷ୍ଟି କରିଥିବା ଚାରୋଟି ସତ୍ୟ ଘଟଣା ଉପରେ ଆଧାରିତ 'ଆଫ୍‌ଗାନ୍ ଡାଇରୀ' ପରି ଚର୍ଚ୍ଚିତ ପୁସ୍ତକ ବ୍ୟତୀତ ତାଙ୍କର ବହୁ ପୁସ୍ତକ ପ୍ରକାଶିତ ହୋଇଛି ।ପୁସ୍ତକଟିକୁ ଓଡ଼ିଆରେ ରୂପ ଦେଇଥିବା ଡକ୍ଟର ଅପର୍ଣ୍ଣା ମହାନ୍ତି ଓଡ଼ିଆ ଭାଷାରେ ଜଣେ କବି ଓ ଅନୁବାଦିକା ଭାବେ ସମ୍ମାନିତା ।



ଟ. 105.00

ISBN 978-81-237-5773-5

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ